# ମାନବିକତାର ସ୍ୱର
# MANABIKATAR SWAR


ଲେଖକ :
ଧନେଶ୍ୱର ସାହୁ

Author:
**Dhaneswar Sahoo**



ପ୍ରକାଶନ ଉପଦେଷ୍ଟା
ଶ୍ରୀ ବିନୋଦ ବିହାରି ବିଶୋଇ
ମୋବାଇଲ୍ : ୯୯୩୭୬୯୪୭୮୧

Director of Pubication:
**Sri Binod Bihari Bisoi**
Ph. 9937694781

ପ୍ରକାଶକ :
ପବ୍ଲିଶିଂ ହାଉସ୍
ଏନ୍ -୬/୪୨୮, ଆଇ.ଆର୍.ସି. ଭିଲେଜ୍
ନୟାପଲ୍ଲୀ, ଭୁବନେଶ୍ୱର - ୧୫
ଫୋନ୍ ନଂ : ୦୬୭୪- ୨୩୬୦୭୮୧

Publishers :
**PUBLISHING HOUSE**
N6 - 428, I.R.C. Village
Nayapalli, Bhubaneswar - 15
Ph. : 0674 - 2360281

ଅକ୍ଷର ବିନ୍ୟାସ :
ରାକେଶ ଗ୍ରାଫିକ୍ସ
ନୟାପଲ୍ଲୀ, ଭୁବନେଶ୍ୱର - ୧୨
ଫୋନ୍ - ୯୪୩୭୬୧୨୪୪୪

**DTP:**
**RAKESH GRAPHICS**
Nayapalli, Bhubaneswar - 12
Ph. : 9437612444, 9040246316

ମୁଦ୍ରକ : ଲକ୍ଷ୍ମୀ ପ୍ରିଣ୍ଟର୍ସ, ଭୁବନେଶ୍ୱର
Printer : Laxmi Printers,BBSR

ପ୍ରଚ୍ଛଦ : ସମର
Cover Design : Samar

ପ୍ରଥମ ପ୍ରକାଶ : ୨୦୧୯
First Edition : 2019

ମୂଲ୍ୟ : ଟ.୩୦୦/-
Rs.300/-

---

Published by Smt. Lizashree Sahoo on behalf of Publishing House
N-6/428, IRC Village, Nayapalli, Bhubaneswar - 751015, Odisha
Ph. : (0674) 2360781

# ଉତ୍ସର୍ଗ

ସାମାଜିକ ସମତା ଓ ସମ୍ବେଦନଶୀଳତାର ଅଭିବ୍ୟକ୍ତି ହେଉଛି ମାନବବାଦ । ବିଚାରରେ ଓ ଆଚରଣରେ ଏହି ଜୀବନବୋଧ ପ୍ରତି ପ୍ରତିବଦ୍ଧ ଥିବା ଦରଦୀ ମଣିଷଙ୍କୁ ଏହି ପୁସ୍ତକଟି ଉତ୍ସର୍ଗ କରୁଛି ।

-ଲେଖକ-

# ମୁଖବନ୍ଧ

ଏହି ପୁସ୍ତକଟି ଏହି ଧାରାରେ ମୋର ପଞ୍ଚମ ପ୍ରବନ୍ଧ ସଂକଳନ । ଏହା ପୂର୍ବରୁ ପ୍ରକାଶିତ ପ୍ରବନ୍ଧ ସଂକଳନ ମାନ ହେଲା (୧) ଧର୍ମ, ଦର୍ଶନ ଓ ସମାଜ (୨) ସଂସ୍କୃତି ଓ ସର୍ବୋଦୟ (୩) ଗାନ୍ଧୀ, ବିଜ୍ଞାନ ଓ ମାନବବାଦ (୪) ଜୀବନର ମୂଲ୍ୟ ଓ ହେତୁବାଦ । ଏହି ପ୍ରତ୍ୟେକ ସଂକଳନରେ ଚବିଶଟି ଲେଖାଏଁ ପ୍ରବନ୍ଧ ସ୍ଥାନିତ ହୋଇଥିବା ଯୋଗୁଁ ସମାନତା ରକ୍ଷାକରି ଏହି ସଙ୍କଳନରେ ମଧ୍ୟ ଚବିଶଟି ପ୍ରବନ୍ଧ ସ୍ଥାନିତ କରାଯାଇଛି । ଏହି ସଂକଳନରେ ଅନ୍ତର୍ଭୁକ୍ତ କେତେକ ପ୍ରବନ୍ଧ ପୂର୍ବରୁ ଗୋପବନ୍ଧୁଙ୍କ ସତ୍ୟବାଦୀ, ସମଦୃଷ୍ଟି, ସାମ୍ୟବାଦୀ, ଝଙ୍କାର, ଅଳକାନନ୍ଦା, କୋଣାର୍କ, ନାଗରା, ନୂଆଦୁନିଆ, ହେତୁବାଦୀ ଚିନ୍ତନ ଇତ୍ୟାଦି ପତ୍ରିକାମାନଙ୍କରେ ପ୍ରକାଶିତ ହୋଇଥିଲା । ପ୍ରକାଶ ପାଇଥିବା ପ୍ରବନ୍ଧମାନ ଓ ଅନ୍ୟାନ୍ୟ ପ୍ରବନ୍ଧ ମିଶି ଏହି ସଂକଳନଟି ପ୍ରକାଶ ପାଇବାକୁ ଯାଉଛି ।

ପ୍ରବନ୍ଧଗୁଡ଼ିକ ବିଭିନ୍ନ ପ୍ରସଙ୍ଗ ଉପରେ ଲିଖିତ । କେତେକ ସାରସ୍ୱତ ସାଧକ, ଦାର୍ଶନିକ ଭାବନା, ସାମାଜିକ ମୂଲ୍ୟବୋଧ, ମାନବିକ ସମସ୍ୟା ବା ସଂକଟ, ଶିକ୍ଷା, ଜନଜୀବନରେ ରହିଥିବା କୁସଂସ୍କାର, ହେତୁବାଦ, ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ, ମାନବବାଦ ଇତ୍ୟାଦି ପ୍ରସଙ୍ଗମାନଙ୍କ ଉପରେ ଲେଖାଯାଇଛି । ଅଧିକାଂଶ ପ୍ରବନ୍ଧରେ ମାନବିକତାର ପ୍ରସଙ୍ଗ ଆସିଛି । ମାନବିକତା ଉପରେ ବି ଏକ ସ୍ୱତନ୍ତ୍ର ପ୍ରବନ୍ଧ ରହିଛି । ଏହି ଦୃଷ୍ଟିରୁ ପ୍ରବନ୍ଧ ସଂକଳନଟିର ନାମ "ମାନବିକତାର ସ୍ୱର" ରଖିବାକୁ ସ୍ଥିର କଲି । ପ୍ରବନ୍ଧଗୁଡ଼ିକ ବିଭିନ୍ନ ସମୟରେ ଲେଖା ଯାଇଥିବାରୁ ବେଳେବେଳେ କିଛି ଭାବନାମାନଙ୍କର ପୁନରାବୃତ୍ତି ପାଠକମାନେ ଲକ୍ଷ୍ୟ କରିପାରନ୍ତି । ମୁଁ ଏହି ଦୁର୍ବଳତାକୁ ବିନୟରସହ ସ୍ୱୀକାର କରୁଛି ।

ମାନବବାଦ ଏକ ବ୍ୟାପକ ପ୍ରସଙ୍ଗ ଓ ତାହର ଅନ୍ତଃସ୍ୱର ହେଉଛି ମାନବିକତା । ମାନବିକତା ସମ୍ବେଦନଶୀଳ ଜୀବନବୋଧ ଓ ସଭ୍ୟ ଦୃଷ୍ଟିଭଙ୍ଗୀର ପ୍ରତୀକ । ମାନବ ସଭ୍ୟତାର କ୍ରମବିକାଶ ଓ ନୈତିକ ଉତ୍ତରଣର ଆଧାର ହେଉଛି ମାନବବାଦ । ଜ୍ଞାନ-

ବିଜ୍ଞାନର ବିକାଶ ସହ ମାନବବାଦର ବିକାଶ ସଭ୍ୟତାର କ୍ରମୋନ୍ନତି ପାଇଁ ଅବଶ୍ୟମ୍ଭାବୀ ମନେହୁଏ । ମାନବିକତା ଅଭାବରେ ଜ୍ଞାନବିଜ୍ଞାନ ଯେ ସଭ୍ୟତାକୁ ଧ୍ୱଂସାଭିମୁଖୀ କରିପାରେ ଏହା ଏକ ଐତିହାସିକ ଉପଲବ୍ଧି । ସବୁ ସଭ୍ୟତାରେ ଓ ବିଭିନ୍ନ କାଳଖଣ୍ଡରେ କେତେ କେତେ ମାନବିକ କ୍ରୂରତା, ହିଂସା, ପ୍ରତିହିଂସା, ଶୋଷଣ, ଅନ୍ୟାୟ, ଅତ୍ୟାଚାର ଓ ଭେଦଭାବ ଇତିହାସରେ ଦେଖିବାକୁ ମିଳେ । ଏ ସବୁ ଅନ୍ୟାୟ, ଅହିତ ଓ ମାନବକୃତ ମନ୍ଦ ବା ଇଭିଲକୁ ଦୂର କରିବାକୁ ବିଭିନ୍ନ ସଭ୍ୟତାରେ କିଛି ମାନବବାଦୀ ବ୍ୟକ୍ତି ମାନବିକତାର ବାର୍ତ୍ତା ପ୍ରସାର କରିଛନ୍ତି । ବିଭିନ୍ନ ସଭ୍ୟତାରେ କିଛି ମହାନୁଭବୀ ବ୍ୟକ୍ତି ବିଶ୍ୱଭ୍ରାତୃତ୍ୱ ଓ ମାନବକଲ୍ୟାଣର ବାର୍ତ୍ତା ଶୁଣାଇଛନ୍ତି । ସମାଜରୁ ସକଳ ଭେଦଭାବ, ହିଂସା, କ୍ରୂରତା ଓ ଅମାନବିକତାକୁ ଦୂର କରିବାକୁ ନିଜର ଗମ୍ଭୀର ସଂପୃକ୍ତି ବ୍ୟକ୍ତ କରିଛନ୍ତି । ଏହା ସହିତ ହେତୁବାଦୀ ଓ ଦାର୍ଶନିକମାନେ ମାନବିକ ସ୍ଥିତିର ଅନୁଶୀଳନକରି ସମାଜର ବୌଦ୍ଧିକ ଓ ନୈତିକ ଉତ୍ତରଣ ପାଇଁ ମାନବିକତାର ବାର୍ତ୍ତା ଦେଇଛନ୍ତି । ମାନବିକ ଦୁଃଖଦୁର୍ଦ୍ଦଶାକୁ ଦୂର କରିବାରେ ବୈଜ୍ଞାନିକମାନେ ଗବେଷଣାରେ ସଂପୃକ୍ତ ରହି ପ୍ରାକୃତିକ ପ୍ରତିକୂଳ ସ୍ଥିତିକୁ ସାମ୍ନା କରିବାକୁ ମଣିଷକୁ ଶକ୍ତିଶାଳୀ କରିଛନ୍ତି । ଏସବୁର ସମ୍ମିଳିତ ପ୍ରଭାବରୁ ମାନବ ସଭ୍ୟତାର କ୍ରମବିକାଶ ଘଟିଛି, ଏକ ଆଦିମ ସ୍ଥିତିରୁ କେତେ କେତେ ସୋପାନକୁ ଅତିକ୍ରମ କରି ମଣିଷ ଆଜିର ସ୍ଥିତିକୁ ଆସିପାରିଛି । ଯେତେବେଳେ ସଭ୍ୟତା ପ୍ରତି ଯେଉଁ ଆହ୍ୱାନ ସୃଷ୍ଟି ହୋଇଛି, ମାନବିକ ପ୍ରଜ୍ଞା ଓ ସୃଜନଶୀଳତା ତାକୁ ପ୍ରତିହତ କରିବା ପାଇଁ ପ୍ରୟାସ କରିଛି । ସମାଜର ମଂଗଳ ପାଇଁ ଯେଉଁ ଆନ୍ତରିକତା ପ୍ରକାଶ ପାଇଛି ତାହା ହିଁ ହେଉଛି ମାନବିକତା । ମାନବିକ ହୃଦୟବତ୍ତା ହିଁ ଜୀବନକୁ ଓ ସମାଜକୁ ଉନ୍ନତ କରିବାରେ ଯେ ମୁଖ୍ୟ ଭୂମିକା ନିର୍ବାହ କରିଛି ତାହା ନିଃସନ୍ଦେହ ଭାବେ କୁହାଯାଇପାରେ । ମାନବ ସମାଜ ଯେ ସଂପୂର୍ଣ୍ଣଭାବେ ନ୍ୟାୟ, ସମତା ଓ ସତ୍ୟ ଉପରେ ପ୍ରତିଷ୍ଠିତ ହୋଇଯିବ ଏହା ଆଶା କରାଯାଇ ନପାରେ । ବରଂ ନିରନ୍ତର ଭାବରେ ମାନବବାଦୀ ଦୃଷ୍ଟି ଯେତେ ଅଧିକ ସମାଜରେ ପରିବ୍ୟାପ୍ତ ହେଉଥିବ, ସାମାଜିକ ଉତ୍କର୍ଷ ସେତେ ଅଧିକ ସାଧିତ ହେଉଥିବ । ଅର୍ଥାତ୍ ମାନବିକତାର ସ୍ୱର ଜୀବନ ପ୍ରବାହରେ ଯେତେ ଅଧିକ ପ୍ରତିଫଳିତ ହେବ, ଜୀବନର ଗୁଣାତ୍ମକ ମାନରେ ସେତେ ଉନ୍ନତି ଆସିପାରିବ । ମାନବବାଦ ଯେ ଏକ ସାର୍ବଜନୀନ ମୂଲ୍ୟବୋଧ ଏହା ନିଃସନ୍ଦେହ ମନେହୁଏ । ଏହି ଭାବଧାରା ବିଭିନ୍ନ ପ୍ରବନ୍ଧ ଭିତରେ ପ୍ରତିଫଳିତ ହୋଇଥିବା ମୋର ଅନୁଭବ ।

ଏହି ସଂକଳନର କେତେକ ପ୍ରବନ୍ଧ କେତେକ ପତ୍ରପତ୍ରିକାରେ ପ୍ରକାଶ ପାଇଥିଲା ଓ ଯେଉଁ ପାଠକମାନେ ପ୍ରବଂଧ ପଢ଼ି ସେମାନଙ୍କର ସୁଚିନ୍ତିତ ମତାମତ ପୋଷଣ କରିଛନ୍ତି ମୁଁ ସେମାନଙ୍କୁ ଆନ୍ତରିକ ଧନ୍ୟବାଦ ଜ୍ଞାପନ କରୁଛି । ପବ୍ଲିଶିଂ ହାଉସ୍‌ର ପ୍ରକାଶନ ଉପଦେଷ୍ଟା ଶ୍ରୀ ବିନୋଦ ବିହାରି ବିଶୋଇ ଓ ତାଙ୍କର ସହଯୋଗୀ ଶ୍ରୀ ଦେବରାଜ ସାହୁ ପୁସ୍ତକଟିର ପ୍ରକାଶନ ଦାୟିତ୍ୱ ନେଇଥିବାରୁ ମୁଁ ସେମାନଙ୍କୁ ମୋର କୃତଜ୍ଞତା ଜଣାଉଛି ।

୧ ଜାନୁୟାରୀ, ୨୦୧୯

ଧନେଶ୍ୱର ସାହୁ
ଏ-୧୨, ଭଗୀରଥି ବିହାର, ଢେଙ୍କାନାଳ
ଫୋନ : ୯୪୩୮୫୪୭୮୯୫

# ସୂଚିପତ୍ର

# ସାଂସ୍କୃତିକ ଉତ୍ତରଣ : ଏକ ଦୃଷ୍ଟିପାତ

ମଣିଷ ସମାଜରେ ରହେ, ସେ ଏକ ସାମାଜିକ ପ୍ରାଣୀ । ସାମାଜିକ ଜୀବନକୁ ଆଧାର କରି ସଭ୍ୟତା ଓ ସଂସ୍କୃତି ବିକଶିତ ହୁଏ । ସଭ୍ୟତା ନଥିଲେ ସଂସ୍କୃତି ରୂପରେଖ ନିଏ ନାହିଁ । ତେବେ ସଂସ୍କୃତି ପ୍ରସଙ୍ଗଟି ବେଶ୍ ଜଟିଳ ଓ ଏହାର ଏକ ନିର୍ଦ୍ଦିଷ୍ଟ ସଂଜ୍ଞା ଦେବା ସମ୍ଭବତଃ କଷ୍ଟକର । କାରଣ ସଂସ୍କୃତି ବିଷୟଟି ଆଲୋଚନା କଲାବେଳେ ବହୁ ପ୍ରସଙ୍ଗ ଏହାର ପରିସର ଭିତରକୁ ଆସିଥାଏ । ଏହି ପୃଷ୍ଠଭୂମିରେ ଶଂସିତ ପ୍ରବନ୍ଧରେ ତିନୋଟି ପ୍ରସଙ୍ଗ ଉପରେ ସଂକ୍ଷିପ୍ତ ଆଲୋଚନା କରିବା ଆମର ଲକ୍ଷ୍ୟ । ସେହି ପ୍ରସଙ୍ଗ ଗୁଡ଼ିକ ହେଲା–

୧. ସଂସ୍କୃତିର ପ୍ରକୃତ ତାତ୍ପର୍ଯ୍ୟ ବା ସ୍ୱରୂପ କ'ଣ

୨. ସଂସ୍କୃତି ଠାରୁ ଅପସଂସ୍କୃତି କିପରି ଭିନ୍ନ

୩. ଏକ ଉନ୍ନତ ସଂସ୍କୃତିର ସଂରଚନା କିପରି ସମ୍ଭବ ।

କହିବା ନିଷ୍ପ୍ରୟୋଜନ ଯେ ଏ ପ୍ରତ୍ୟେକଟି ପ୍ରସଙ୍ଗ ବି ବେଶ୍ ବ୍ୟାପକ ଓ ଏହାର ଏକ ବିସ୍ତୃତ ଚିତ୍ର ଦେବା ଏକ କ୍ଷୁଦ୍ର ପ୍ରବନ୍ଧ ପରିସରରେ ସମ୍ଭବ ନୁହେଁ । ତେବେ ଏହି ସବୁ ପ୍ରସଙ୍ଗ ଉପରେ କେତେକ ସାଧାରଣ ବିଷୟକୁ ଆଲୋଚନା କରିବା ପ୍ରବନ୍ଧଟିର ଉଦ୍ଦେଶ୍ୟ ।

ସଂସ୍କୃତି କଥା କହିଲା ବେଳେ ଏକ ଜନଗୋଷ୍ଠୀର ଭାବନା ସ୍ୱତଃ ଆସିଥାଏ । ଏକ ଜନସମୁଦାୟକୁ ବାଦ୍ ଦେଇ ସଂସ୍କୃତିର ପରିକଳ୍ପନା କରାଯାଇପାରିବ ନାହିଁ । ଏକ ଭୌଗୋଳିକ ଭୂଖଣ୍ଡରେ ରହୁଥିବା ବା କୌଣସି ଅସ୍ମିତା ବହନ କରୁଥିବା ଏକ ଜନଗୋଷ୍ଠୀ କ୍ଷେତ୍ରରେ ସଂସ୍କୃତିର ପ୍ରସଙ୍ଗ ଆସିଥାଏ । ଏକ ଜନଗୋଷ୍ଠୀ କ୍ଷୁଦ୍ର ହୋଇପାରେ ବା ବୃହତ୍ ହୋଇପାରେ । ତେବେ ସାମାଜିକ, ଧାର୍ମିକ, ଭୌଗୋଳିକ ବା ସେପରି କିଛି ତାତ୍ପର୍ଯ୍ୟ ଆଧାରରେ ପରସ୍ପର ସହ ସଂଶ୍ଳିଷ୍ଟ ଥିବା ବା ଏକ ଅସ୍ମିତା ବହନ କରୁଥିବା ଗୋଷ୍ଠୀର ସଂସ୍କୃତି ଆଲୋଚନାର ପରିସରକୁ ଆସିଥାଏ । ଭାରତୀୟ ସଂସ୍କୃତି ବିଷୟରେ କହିବା ବେଳେ ଏକ ଭୌଗୋଳିକ ଭୂଖଣ୍ଡର ଜନଗଣଙ୍କର ଜୀବନ-ଚିତ୍ର ଆଲୋଚନାର ପ୍ରସଙ୍ଗ

ହୋଇଥାଏ । ହିନ୍ଦୁ ସଂସ୍କୃତି କହିଲାବେଳେ ଧର୍ମଗତ ଅସ୍ମିତା ଥିବା ଏକ ଜନଗୋଷ୍ଠୀର ଜୀବନବୋଧର ଚିତ୍ର ଆସିଥାଏ । ସେହିପରି ତେଲୁଗୁ ବା ତାମିଲ ବା ଓଡିଆ ସଂସ୍କୃତି କହିଲା ବେଳେ ଭାଷାଗତ ଅସ୍ମିତା ଥିବା ଏକ ଜନଗୋଷ୍ଠୀର ଚିତ୍ର ପ୍ରାଧାନ୍ୟ ନେଇଥାଏ । ମୋଟ ଉପରେ କୌଣସି ସାମଞ୍ଜସ୍ୟ ଥିବା ଏକ ସାମାଜିକ ଗୋଷ୍ଠୀ କ୍ଷେତ୍ରରେ ହିଁ ସଂସ୍କୃତିର ପ୍ରସଙ୍ଗ ଆସିଥାଏ । ଏକ ସାମାଜିକ ଜନଗୋଷ୍ଠୀର ଚିନ୍ତନ, ବିଶ୍ୱାସ ଜୀବନଶୈଳୀ, ନୀତିବୋଧ, ପରମ୍ପରା, କଳା, ଭାଷା, ସାହିତ୍ୟ, ନାନ୍ଦନିକତା ଇତ୍ୟାଦିକୁ ନେଇ ଗୋଷ୍ଠୀର ସଂସ୍କୃତିର ପରିକଳ୍ପନା କରାଯାଏ । ସଂସ୍କୃତି ସହ ବହୁ ପ୍ରସଙ୍ଗ ସଂଶ୍ଳିଷ୍ଟ ହେବା ପରିପ୍ରେକ୍ଷୀରେ ସଂସ୍କୃତିର ଏକ ଆଙ୍ଗିକ ଦିଗ ଓ ଏକ ଆତ୍ମିକ ଦିଗ କ୍ଷେତ୍ରରେ ପାର୍ଥକ୍ୟ କରାଯାଏ । ଏକ ଗୋଷ୍ଠୀର ଖାଦ୍ୟ, ପୋଷାକ, ବିଶ୍ୱାସ, ରୁଚିବୋଧ, ପରମ୍ପରା, କଳାତ୍ମକ ଦୃଷ୍ଟି, ନାନ୍ଦନିକତା ଇତ୍ୟାଦି ଲକ୍ଷଣ ସକଳକୁ ସଂସ୍କୃତିର ଆଙ୍ଗିକ କ୍ଷେତ୍ର ଭାବରେ ନିଆଯାଏ । ତେବେ ଏକ ଜନଗୋଷ୍ଠୀର ବୌଦ୍ଧିକ ବିକାଶ, ନୈତିକ ଜୀବନଦୃଷ୍ଟି, ଜୀବନର ମୂଲ୍ୟଜନିତ ଅବଧାରଣା, ମହତ୍ତର ଓ ମାନବିକ ଅବବୋଧ ଇତ୍ୟାଦି ଲକ୍ଷଣମାନ ସଂସ୍କୃତିର ଆତ୍ମିକ ଦିଗର ପରିଚୟ ଦେଇଥାଏ । ସାମାଜିକ ବିକାଶଧାରାରେ ଯେଉଁ ବୌଦ୍ଧିକ ଓ ନୈତିକ ଜୀବନବୋଧ ପିଢି ପିଢି ଦେଇ ପୁଷ୍ଟ ହୋଇଥାଏ ତାହା ଏକ ଜନଗୋଷ୍ଠୀର ସାଂସ୍କୃତିକ ବୈଶିଷ୍ଟ୍ୟ ହୋଇଥାଏ । ବସ୍ତୁତଃ ସାମାଜିକ ଜୀବନପ୍ରବାହ ମଧ୍ୟରେ ସଂସ୍କୃତି ରୂପରେଖ ନେଇଥାଏ ଓ ସାଂସ୍କୃତିକ ରୂପରେଖ ଗଢି ଉଠିଥାଏ ।

ସାମାଜିକ ବିକାଶ ଓ ପରିବର୍ତ୍ତନ ଯେପରି ଏକ ଅବଶ୍ୟମ୍ଭାବୀ ପ୍ରକ୍ରିୟା, ସାଂସ୍କୃତିକ ପରିବର୍ତ୍ତନ ମଧ୍ୟ ଏକ ସାଧାରଣ ଘଟଣା । ସଭ୍ୟତାର କ୍ରମ-ବିବର୍ତ୍ତନ ଧାରାରେ ସଭ୍ୟତା ବହୁ ସ୍ତର ଦେଇ ଅଗ୍ରସର ହୋଇଥିବା ଏକ ଐତିହାସିକ ସତ୍ୟ । ସମାଜ, ସଭ୍ୟତା ଏକ ସ୍ଥିର ବା ସ୍ଥିତିଶୀଳ ବସ୍ତୁ ନୁହଁ । ସମାଜ ଯେପରି କ୍ରମ ପରିବର୍ତ୍ତନଶୀଳ, ସଂସ୍କୃତି ମଧ୍ୟ ଏକ ପ୍ରବାହମାନ ଧାରା । ସାମାଜିକ ବିବର୍ତ୍ତନ ଧାରାରେ ସାମାଜ କେତେ ସ୍ତର ଦେଇ ଅଗ୍ରସର ହୋଇଥିବା ଦେଖାଯାଏ । ଆଦିମ ସମାଜ, କୃଷିଭିତ୍ତିକ ସମାଜ, ସାମନ୍ତବାଦୀ ସମାଜ, ପିତୃ ବା ମାତୃ କୈନ୍ଦ୍ରିକ ସମାଜ ବ୍ୟବସ୍ଥାରେ କେତେକ ସାଧାରଣ ବୈଶିଷ୍ଟ୍ୟ ଦୃଷ୍ଟିଗୋଚର ହୋଇଥାଏ । ବିଶେଷକରି ବିଜ୍ଞାନର ବିକାଶ, ଶିଳ୍ପ ସଭ୍ୟତା, ସାମ୍ରାଜ୍ୟବାଦର ଯୁଗ ଆସିବା ପୂର୍ବରୁ ସମାଜ ଗୋଟିଏ ନିର୍ଦ୍ଦିଷ୍ଟ ଢାଞ୍ଚା ମଧ୍ୟରେ ଅଗ୍ରସର ହୋଇଥିବା ଦେଖାଯାଏ । ଏହି ସ୍ଥିତିରେ ଜନଗଣଙ୍କର ସାଂସ୍କୃତିକ ଚେତନାର ସ୍ତର ଗୋଷ୍ଠୀ ଜୀବନର ମୌଳିକ ଭାବଧାରା ଦ୍ୱାରା ଅନୁପ୍ରାଣିତ ହୋଇଥାଏ । ଯେଉଁ ଯୁଗରେ ଜନଗୋଷ୍ଠୀମାନଙ୍କ ମଧ୍ୟରେ ସାଂସ୍କୃତିକ ଆଦାନ-ପ୍ରଦାନର ସ୍ତର ଅତି ସୀମିତ ରହିଥିଲା, ସେହି ସ୍ଥିତିରେ ଗୋଟିଏ ଗୋଷ୍ଠୀର

ନୀତିବୋଧ, ଚିନ୍ତନ, ଜୀବନଶୈଳୀ, ବିଶ୍ୱାସ ଓ ଧାର୍ମିକ ଦୃଷ୍ଟିଭଙ୍ଗୀ ତାହାର ସାଂସ୍କୃତିକ ଅସ୍ମିତାର ଚିତ୍ର ଦେଇଥାଏ । ସାମାଜିକ ପରିବର୍ତ୍ତନ ପ୍ରକ୍ରିୟାରେ ରାଜନୈତିକ, ଅର୍ଥନୈତିକ, ଶୈକ୍ଷିକ ସ୍ଥିତି ବଦଳି ଗଲେ ସମାଜର ବୌଦ୍ଧିକ ଓ ନୈତିକ ଚେତନାରେ ମଧ୍ୟ ଉଲ୍ଲେଖନୀୟ ପରିବର୍ତ୍ତନ ଆସିଥାଏ । ସେହିପରି ପ୍ରାଯୁକ୍ତିକ ଜ୍ଞାନକୌଶଳରେ ପରିବର୍ତ୍ତନ ବା ମଣିଷର ବୌଦ୍ଧିକ ଅବବୋଧରେ କିଛି ନୂତନତ୍ୱ ପ୍ରକାଶ ପାଇବାରେ ସମାଜର ସାଂସ୍କୃତିକ ଢାଞ୍ଚାରେ ମଧ୍ୟ ପରିବର୍ତ୍ତନର ସୂତ୍ରପାତ ହୋଇଥାଏ । ମୋଟ ଉପରେ କହିବାକୁ ଗଲେ ସମାଜ ଯେପରି ପରିବର୍ତ୍ତନଶୀଳ, ସଂସ୍କୃତି ମଧ୍ୟ ଏକ ପରିବର୍ତ୍ତନଶୀଳ ଧାରା । ସଂସ୍କୃତି ଏକ ସ୍ଥିତିଶୀଳ ସ୍ଥିରାବସ୍ଥାର ସୂଚନା ଦିଏ ନାହିଁ ।

ପୁନଶ୍ଚ ସଂସ୍କୃତି ଏକ ପ୍ରବାହ ଓ ଏକ ସମନ୍ୱିତ ଭାବନା । ଏକ ନଦୀ ଯେପରି ଏକ ପ୍ରବାହ ଓ ବହୁ ଜଳଧାରାର ଏକ ସମନ୍ୱିତ ସ୍ରୋତ, ସଂସ୍କୃତି ମଧ୍ୟ ସେହିପରି ଏକ ପ୍ରବାହ ଓ ଏକ ସମନ୍ୱିତ ଅଭିବ୍ୟକ୍ତି । ଗତିଶୀଳତା, ପ୍ରବାହମାନତା ଓ ଏକ ସମନ୍ୱିତ ପରିପ୍ରକାଶ ସଂସ୍କୃତିର ବୈଶିଷ୍ଟ୍ୟ । ଏକ ସଂସ୍କୃତିର ପରିସର ଭିତରେ ବହୁ ଉପ-ସଂସ୍କୃତିର ଧାରା ମିଶିଥିବା ଦେଖାଯାଏ । 'ଭାରତୀୟ ସଂସ୍କୃତି' ବା 'ପାଶ୍ଚାତ୍ୟ ସଂସ୍କୃତି' ବିଷୟ କହିବା ବେଳେ ଗୋଟିଏ ଗୋଟିଏ ଭୌଗୋଳିକ ଭୂଖଣ୍ଡର ଜୀବନବୋଧର ସମନ୍ୱିତ ଅଭିବ୍ୟକ୍ତିର ଏକ ଅସ୍ପଷ୍ଟ ଚିତ୍ର ମନକୁ ଆସିଥାଏ । ପାଶ୍ଚାତ୍ୟ ସଂସ୍କୃତି କଥା କହିଲାବେଳେ ବହୁ ବୌଦ୍ଧିକ ଧାରା, କୀର୍ତ୍ତିରାଜି ଓ ଜୀବନବୋଧର ଏକ ଚିତ୍ର ମନକୁ ଆସେ । ବହୁ ଦେଶ, ବହୁ ଭାଷା, ବହୁ ପରମ୍ପରା, ନାନା ରାଜନୈତିକ ଆଦର୍ଶର ସମନ୍ୱିତ ଅଭିବ୍ୟକ୍ତି ଭିତରେ ପାଶ୍ଚାତ୍ୟ ସଂସ୍କୃତିର ରୂପରେଖଟି କ'ଣ ତାହା ବେଶ୍ ଅସ୍ପଷ୍ଟ ମନେହୁଏ । ସେହିପରି ଭାରତୀୟ ସଂସ୍କୃତିର ବିବିଧତା ଓ ଭିନ୍ନତା ପରିପ୍ରେକ୍ଷୀରେ ଭାରତୀୟ ସଂସ୍କୃତି କହିଲେ ଏକ ଅସ୍ପଷ୍ଟ ଚିତ୍ର ମନକୁ ଆସେ । ଭାରତୀୟ ସଂସ୍କୃତି ଭିତରେ ଉତ୍କଳୀୟ ସଂସ୍କୃତି, ତାମିଲ ସଂସ୍କୃତି, ମରହଟ୍ଟା ସଂସ୍କୃତି, ପଞ୍ଜାବୀ ସଂସ୍କୃତି ଇତ୍ୟାଦି ଅନ୍ତର୍ଭୁକ୍ତ ହେବା ଦେଖାଯାଏ । ତାମିଲ ସଂସ୍କୃତି ଓ ଉତ୍କଳୀୟ ସଂସ୍କୃତି ବା ଯେ କୌଣସି ଦୁଇଟି ସଂସ୍କୃତି ଭିତରେ ହୁଏତ ନାନା ପାର୍ଥକ୍ୟ ଦୃଷ୍ଟିଗୋଚର ହୋଇପାରେ, ତେବେ ସେସବୁ ଭାରତୀୟ ସଂସ୍କୃତିର ଅଙ୍ଗବିଶେଷ । ସେହିପରି ଓଡିଶାର ଆଦିବାସୀ ସଂସ୍କୃତି କଥା କହିଲା ବେଳେ ଓଡିଶାରେ ରହିଥିବା ଆଦିବାସୀ ଗୋଷ୍ଠୀମାନଙ୍କର ଜୀବନଧାରଣର ଏକ ଅଭିବ୍ୟକ୍ତି ମନ ଭିତରକୁ ଆସେ । ପୁନଶ୍ଚ ବିଭିନ୍ନ ଆଦିବାସୀ ଗୋଷ୍ଠୀର ଜୀବନଶୈଳୀ, ଖାଦ୍ୟ, ପୋଷାକ, ସୌନ୍ଦର୍ଯ୍ୟବୋଧ, ଧାର୍ମିକ ବିଶ୍ୱାସ ଇତ୍ୟାଦି ମଧ୍ୟ ପୃଥକ୍ ହୋଇପାରେ । ଏକ ବୃହତ୍ତର ଜନଗୋଷ୍ଠୀରୁ ଯେତିକି କ୍ଷୁଦ୍ର ଅସ୍ମିତାକୁ ନେଇ ଗୋଷ୍ଠୀମାନଙ୍କର ପରିକଳ୍ପନା କରିବା ଓ

ସେହି ପୃଷ୍ଠଭୂମିରେ ସେହି ଗୋଷ୍ଠୀମାନଙ୍କର ସଂସ୍କୃତି ବିଷୟ ବିଚାରକୁ ନେବା ତାହା ନାନା ସାଂସ୍କୃତିକ ଭିନ୍ନତାର ଚିତ୍ର ଦେବ । ଏକ ମୂଳ ସଂସ୍କୃତିରୁ ଏକ ଉପ-ସଂସ୍କୃତିକୁ ଆସିବା କ୍ଷେତ୍ରରେ କିଛି ଭିନ୍ନତା ବା ବୈଶିଷ୍ଟ୍ୟ ହୁଏତ ଦୃଷ୍ଟିଗୋଚର ହୁଏ । ଗୋଟିଏ ସାମାଜିକ ଗୋଷ୍ଠୀ ଯେତିକି ବଡ ହୁଏ, ତାହାର ସାଂସ୍କୃତିକ ପରିସର ଭିତରେ ସେତିକି ଭିନ୍ନତାର ଚିତ୍ର ଆସେ, ସାମାଜିକ ଗୋଷ୍ଠୀଟି ଯେତେ କ୍ଷୁଦ୍ର ହୁଏ ସାଂସ୍କୃତିକ ଭିନ୍ନତାର ପରିସରଟି ସେତେ ସଙ୍କୁଚିତ ହୋଇଆସେ । ବସ୍ତୁତଃ ସଂସ୍କୃତି ଏକ ପ୍ରବାହ ଓ ଏକ ସମନ୍ୱିତ ଅଭିବ୍ୟକ୍ତି ଯାହା ନାନା ଧାରା ଓ ଜୀବନବୋଧ ଦେଇ ପରିପୁଷ୍ଟ ହୋଇଥାଏ ।

ମାନବ ସମାଜର ଇତିହାସରେ କେତେ କେତେ ସଭ୍ୟତାର ବିକାଶ ହୋଇଛି ବା ଘଟଣାକ୍ରମେ କେଉଁ କେଉଁ ସଭ୍ୟତାର ବିଲୟ ବି ଘଟିଛି । ତେବେ ପ୍ରତ୍ୟେକ ସଭ୍ୟତା ମଧ୍ୟରେ ଏକ ସଂସ୍କୃତିର ଅଭ୍ୟୁଦୟ ହୋଇଛି । ପ୍ରତ୍ୟେକ ସଭ୍ୟତାରେ ଜନଜୀବନରେ କେତେକ ସୃଜନଶୀଳତାର ପରିପ୍ରକାଶ ଘଟିଥାଏ । ସେହି ସୃଜନଶୀଳ ଅଭିବ୍ୟକ୍ତି ହିଁ ଏକ ସଂସ୍କୃତିର ବିଭବ । ଏକ ସଂସ୍କୃତିର ସୃଜନଶୀଳ ପରିସରଟି ଯେତେ ଗଭୀର ଓ ଯେତେ ପ୍ରସାରିତ ସେହି ସଂସ୍କୃତି ସେତେ ଉନ୍ନତ । ବସ୍ତୁତଃ କୌଣସି ସଂସ୍କୃତିର ଅନ୍ତର୍ନିହିତ ଶକ୍ତି ଓ ସାମର୍ଥ୍ୟ ଜନଗୋଷ୍ଠୀର ବୌଦ୍ଧିକ, ନୈତିକ, ନାନ୍ଦନିକ ଓ ମାନବିକ ବିକାଶ ମଧ୍ୟ ଦେଇ ପରିପୁଷ୍ଟ ହୋଇଥାଏ । ଅନ୍ୟ ଭାବରେ କହିଲେ ସଂସ୍କୃତିର ବିଭବ ଜନସମୂହର ବୌଦ୍ଧିକ, ନୈତିକ, ନାନ୍ଦନିକ ଓ ମାନବିକ ଶ୍ରେୟ ସାଧନ ଉପରେ ହିଁ ନିର୍ଭର କରିଥାଏ । ଏକ ସଂସ୍କୃତିର ବୌଦ୍ଧିକ ଅବଦାନ ଭିତରେ ଯେଉଁ ସୃଜନଶୀଳତାର ପରିପ୍ରକାଶ ଘଟେ ତାହାର ମୁଖ୍ୟ ଆଧାର କ୍ଷେତ୍ର ହେଉଛି ସାହିତ୍ୟ, ଦର୍ଶନ ଓ ବିଜ୍ଞାନ । ଏ ପ୍ରତ୍ୟେକଟି କ୍ଷେତ୍ରରେ ମାନବୀୟ ଚେତନା ଓ ପ୍ରଜ୍ଞାର ଉତ୍କର୍ଷ ଦେଖିବାକୁ ମିଳେ । ସେହିପରି ସାମାଜିକ ବିକାଶଧାରାରେ ନୀତିବୋଧ, ସାମାଜିକ ନ୍ୟାୟ ପ୍ରତି ବୃହତ୍ତର ସ୍ୱୀକୃତି, ଭଲ-ମନ୍ଦ ନେଇ ସାମାଜିକ ସଚେତନତା ଓ ଉଚ୍ଚ କର୍ମସଂସ୍କୃତି ଏକ ସଂସ୍କୃତିର ନୈତିକ ଦିଗନ୍ତର ସୂଚନା ଦିଏ । ପୁନଶ୍ଚ ସଂସ୍କୃତିର ନାନ୍ଦନିକ ଦିଗଟି କଳା, ସ୍ଥାପତ୍ୟ, ସଙ୍ଗୀତ, ମନୋରଞ୍ଜନ ଇତ୍ୟାଦି ମଧ୍ୟ ଦେଇ ବିକଶିତ ହୋଇଥାଏ । ଏସବୁ ସାମାଜିକ ଶ୍ରେୟ ସାଧନ ପାଇଁ ଅଭିପ୍ରେତ । ଅର୍ଥାତ୍ ଏକ ସଂସ୍କୃତି କେତେ ମାନବଧର୍ମୀ ଓ ଏକ ମହତ୍ତର ଜୀବନବୋଧର ବାର୍ତ୍ତା ଦେଇଥାଏ ତାହା ସଂସ୍କୃତିର ବୈଶିଷ୍ଟ୍ୟ ପ୍ରତିପାଦନ କରେ । ଜୀବନର ଶ୍ରେୟ ସାଧନ କ୍ଷେତ୍ରରେ ଓ ମହତ୍ତର ଜୀବନବୋଧର ପ୍ରେରଣା ସୃଷ୍ଟି କରିବାରେ ଯେଉଁ ସଂସ୍କୃତି ଯେତେ ଅଧିକ ଅଭିନିବେଶ ଯୋଗାଏ ତାହା ସେତେ ଅଧିକ ମାନବିକ ହୋଇଥାଏ । ବସ୍ତୁତଃ ଏକ ସଂସ୍କୃତିର ମୂଲ୍ୟାୟନ ପୃଷ୍ଠଭୂମିରେ ଏହାର ବୌଦ୍ଧିକ, ନୈତିକ, ନାନ୍ଦନିକ ଓ ମାନବିକ ଦିଗନ୍ତର ଉତ୍କର୍ଷ ନିର୍ଣ୍ଣାୟକ ମନେହୁଏ ।

ସାମାଜିକ ବିକାଶ ଓ ବିବର୍ତ୍ତନ ଧାରାରେ ମହତ୍ତର ଜୀବନବୋଧର ଅଭ୍ୟୁଦୟ ସାଂସ୍କୃତିକ ଉତ୍ତରଣର ଚିତ୍ର ପ୍ରଦାନ କରିଥାଏ । ପ୍ରତ୍ୟେକ ସଂସ୍କୃତିରେ କେତେକ ଉନ୍ନତ ବିଚାରବୋଧର ଉପାଦାନ ଯେପରି ରହିପାରେ, ସେହିପରି କେତେକ ଅମାନବିକ ପରମ୍ପରା ଓ ବିଚାରବୋଧର ଚିତ୍ର ବି ରହିପାରେ । ଯେଉଁ ବିଚାରବୋଧ ଓ ଜୀବନଦୃଷ୍ଟି ଜ୍ଞାନ-ବିଜ୍ଞାନର ବିକାଶରେ ଓ ମାନବିକତାର ପ୍ରସାରରେ ସହାୟକ ତାହାକୁ ଆମେ ସଂସ୍କୃତି କହିବା ଓ ଯାହା ତାହାର ବିପରୀତ ତାହାକୁ ଅପସଂସ୍କୃତି କହିପାରିବା । ଏହି ପୃଷ୍ଠଭୂମିରେ ସଂସ୍କୃତି ଓ ଅପସଂସ୍କୃତି ଭିତରେ ପାର୍ଥକ୍ୟ କରିବାରେ ଏକ ମାନଦଣ୍ଡ ନିର୍ଣ୍ଣୟ କରିବା କଷ୍ଟକର ନୁହେଁ । ସାଧାରଣତଃ ଯେଉଁ ବିଚାରବୋଧ ଓ ଜୀବନଦୃଷ୍ଟି ବିଚାରଶୀଳ, ଯୁକ୍ତିସଙ୍ଗତ ଓ ମାନବିକ ତାହା ଉଚ୍ଚତର ସଂସ୍କୃତିର ଅନୁକୂଳ, ଅଥଚ ଯେଉଁ ଭାବଧାରା ଓ ଜୀବନଦୃଷ୍ଟି ଯୁକ୍ତିବିରୋଧୀ, ନୀତିବିରୋଧୀ ଓ ମାନବିକତା-ବିରୋଧୀ ତାହା ଅପସଂସ୍କୃତି । ଏହି ମାନଦଣ୍ଡକୁ ଗ୍ରହଣ କଲେ ଅତୀତର ବହୁ ବିଶ୍ୱାସ, ପରମ୍ପରା ଓ ସାମାଜିକ ବ୍ୟବସ୍ଥା ଯେ ଅପସଂସ୍କୃତି ଏହା କହିବା ଅସମୀଚୀନ ହେବ ନାହିଁ । ଗୋଟିଏ ସମୟରେ କେତେକ ସମାଜରେ ସାମାଜିକ ଭେଦଭାବକୁ ଏକ ଧାର୍ମିକ ସ୍ୱୀକୃତି ଦିଆଯାଉଥିଲା । ସମାଜରେ ଥିବା ଲିଙ୍ଗଭେଦ, ରଙ୍ଗଭେଦ ଓ ଜାତିଭେଦ ଯେ ଏକ ଈଶ୍ୱରୀୟ ବ୍ୟବସ୍ଥା ଏହି ବିଶ୍ୱାସ ରହିଥିଲା । ଭାରତୀୟ ହିନ୍ଦୁ ସମାଜରେ ବିଶ୍ୱାସ ଥିଲା ଯେ ବର୍ଣ୍ଣ-ବ୍ୟବସ୍ଥା ଏକ ଈଶ୍ୱରୀୟ ବ୍ୟବସ୍ଥା ଓ ଏହାର ଉଲ୍ଲଘନ ଏକ ଧର୍ମବିରୋଧୀ କାର୍ଯ୍ୟ । କେତେକ ଗୋରା ଲୋକ ବିଶ୍ୱାସ କରୁଥିଲେ ଯେ କଳା ଲୋକମାନଙ୍କୁ 'ଦାସ' (slave) ହେବାକୁ ଈଶ୍ୱର କଳା କରିଛନ୍ତି । ହିଟ୍‌ଲର୍ ଏହି ଭାବଧାରା ପ୍ରଚାର କରିଥିଲେ ଯେ ଜର୍ମାନମାନେ ପ୍ରକୃତ ଆର୍ଯ୍ୟ ଓ ସ୍ୱଭାବରେ ଉଚ୍ଚ ତେଣୁ ଅନ୍ୟମାନଙ୍କୁ ଶାସନ କରିବା ସେମାନଙ୍କର ନ୍ୟାୟୋଚିତ ଅଧିକାର । ଏହିପରି ବିଶ୍ୱାସମାନଙ୍କୁ ଆଧାର କରି ବିଭିନ୍ନ ଦେଶରେ ଯେଉଁ ସାମାଜିକ ଭେଦଭାବର ସଂସ୍କୃତି ଗଢି ଉଠିଥିଲା ସେସବୁ ଯେ ସଭ୍ୟ ଜୀବନଦୃଷ୍ଟିର ପ୍ରତିକୂଳ ଓ ଅପସଂସ୍କୃତି ତାହା କହିଲେ ଅତ୍ୟୁକ୍ତି ହେବ ନାହିଁ । ସେହିପରି ଏପରି କେତେକ ବିଚାରବୋଧ ରହିଛି ଯାହା କୌଣସି ମାନବିକ ଶ୍ରେୟକୁ ସ୍ୱୀକାର କରେ ନାହିଁ ଓ ସମାଜ ଓ ଜୀବନ ପ୍ରତି ଏକ ନକାରାତ୍ମକ ଆବେଗ ସୃଷ୍ଟି କରିଥାଏ । ଏ ଜଗତ ମିଥ୍ୟା, ଜୀବନ ଦୁଇ ଦିନର ଖେଳ, ସକଳ ସାମାଜିକ ସମ୍ବନ୍ଧ ଅଳୀକ ଓ ମାନବିକ ଶ୍ରେୟ ସାଧନର ମୂଲ୍ୟ ହିଁ ନାହିଁ, ଭାବନାମାନ ସାମାଜିକ ବିକାଶ କ୍ଷେତ୍ରରେ ଓ ଜୀବନର ଗୁଣାତ୍ମକ ମାନବୃଦ୍ଧିରେ ଅନ୍ତରାୟ । ସେହିପରି ପାରଲୌକିକ ଜୀବନଦୃଷ୍ଟି, ପୂର୍ବନିର୍ଦ୍ଦିଷ୍ଟବାଦ, ଭାଗ୍ୟବାଦ ପରି ଭାବନାମାନ ସାମାଜିକ ବିକାଶ କ୍ଷେତ୍ରରେ ଅନ୍ତରାୟ ମନେହୁଏ । ମାନବିକ ପ୍ରୟାସ, ବୌଦ୍ଧିକ ଅନୁସନ୍ଧିତ୍ସା, ଇହଲୌକିକ ଜୀବନଦୃଷ୍ଟି, ଗଭୀର ମାନବିକ ଅନୁଭବ ଓ ଭ୍ରାତୃତ୍ୱଭାବ ସଭ୍ୟତାର ବିକାଶ ଓ ସାଂସ୍କୃତିକ ଉତ୍ତରଣ

ପାଇଁ ପଥ-ପ୍ରଦର୍ଶକ ହୋଇଥିବା ଜଣାଯାଏ । ସାମ୍ପ୍ରଦାୟିକ ମନୋଭାବ ଓ ଅସହିଷ୍ଣୁ ମାନସିକତା ସଂସ୍କୃତି-ସଂପନ୍ନ ଜୀବନଦୃଷ୍ଟିର ପରିପନ୍ଥୀ । ସଭ୍ୟତାର ଇତିହାସରେ ଏହା ଏକ ବିଡମ୍ବନା ଯେ ଧାର୍ମିକ ଅସହିଷ୍ଣୁତା ଓ ସାମ୍ପ୍ରଦାୟିକ ହିଂସା ଆମ ସଂସାରକୁ ବହୁ ଭାବରେ ଅତୀତରେ ରକ୍ତରଞ୍ଜିତ କରିଛି । ମାନବ-ସମାଜ ଯେତେ ଅଧିକରୁ ଅଧିକ ହିଂସା, ସନ୍ତ୍ରାସବାଦ, ସାମ୍ପ୍ରଦାୟିକ ମନୋଭାବ ଓ ଅସହିଷ୍ଣୁତାରୁ ମୁକ୍ତ ହେବ ଆମର ସାଂସ୍କୃତିକ ଉତ୍ତରଣ ସେତେ ଅଧିକ ନୀତିପୂର୍ଣ୍ଣ ଓ ମାନବିକ ହୋଇପାରିବ । ସେହିପରି ରୁଚିହୀନ ଆବେଗ ଓ ଅନ୍ତହୀନ ଭୋଗବାଦ ଏକ ଅପସାଂସ୍କୃତିକ ଜୀବନଦୃଷ୍ଟିର ପ୍ରସାରରେ ସହାୟକ ହୋଇଥାଏ । ସାଂପ୍ରତିକ ସମୟରେ କର୍ପୋରେଟ ପୁଞ୍ଜିବାଦ ଓ ତାର ସହୋଦର ଭାଇ ଉପଭୋକ୍ତାବାଦର ଯେପରି ପ୍ରସାର ହେଉଛି ତାହା ବି ମହତ୍ତର ଜୀବନବୋଧର ପ୍ରତିକୂଳ ମନେହୁଏ । କଳାତ୍ମକ ଅଭିବ୍ୟକ୍ତି, ସୂକ୍ଷ୍ମ ସୌନ୍ଦର୍ଯ୍ୟବୋଧ ଓ ପ୍ରାକୃତିକ ଅନୁଭବ ମଧ୍ୟରେ ଯେଉଁ ନାନ୍ଦନିକ ମୂଲ୍ୟ ନିହିତ ତାହା ଅନ୍ତହୀନ ଭୋଗବାଦ, ଉପଭୋକ୍ତାବାଦ ଓ ଯୌନ-ଉଦ୍ଦୀପକ ବିଜ୍ଞାପନ ଭିତରେ ପାଇବା ସମ୍ଭବ ନୁହେଁ । ଆଧୁନିକ ଜୀବନ-ପ୍ରବାହ କ୍ଷେତ୍ରରେ ଯେଉଁ ନୀତିହୀନ ଭୋଗବାଦ, ଉପଭୋକ୍ତାବାଦ ଓ ଆତ୍ମକେନ୍ଦ୍ରିକ ସ୍ୱାର୍ଥବାଦର ପରିବେଶ ସୃଷ୍ଟି ହେଉଛି ତାହା ଯେ ଅପସଂସ୍କୃତି ଏହା କୁହାଯାଇପାରେ । ମୋଟଉପରେ କହିଲେ ଯାହା ଭେଦଭାବମୂଳକ, ବୈଷମ୍ୟ-ଆଧାରିତ, ଭୋଗବାଦ-ପ୍ରୋତ୍ସାହକ ତାହା କୁତ୍ସିତ ଓ ଅପସାଂସ୍କୃତିକ । ଏକ ଅପସାଂସ୍କୃତିକ ଅବସ୍ଥା ସାମାଜିକ କ୍ଷୟଶୀଳତାର ପରିବେଶ ଆଣିବା ବେଳେ ଏକ ସାଂସ୍କୃତିକ ବାୟୁମଣ୍ଡଳ ବ୍ୟଷ୍ଟି ଓ ଗୋଷ୍ଠୀ ଜୀବନର ଉତ୍କର୍ଷ ସାଧନରେ ସହାୟକ ହୋଇଥାଏ ।

ଯେଉଁ ବିଚାରବୋଧ ଓ ଜୀବନଦୃଷ୍ଟି ଜ୍ଞାନବିଜ୍ଞାନର ବିକାଶରେ ସର୍ବଦା ଅନ୍ତରାୟ ହୋଇଆସିଛି ତାହାକୁ ବି ଏକ ପ୍ରସାରିତ ଅର୍ଥରେ ଅପସଂସ୍କୃତି କୁହାଯାଇପାରେ । ମାନବ ସଭ୍ୟତାର ଇତିହାସ ସୁଦୀର୍ଘ ହେଲେ ବି ଆଧୁନିକ ବିଜ୍ଞାନର ଇତିହାସ ମାତ୍ର ତିନି ଶହ ଚାରି ଶହ ବର୍ଷ କହିଲେ ଅତ୍ୟୁକ୍ତି ହେବ ନାହିଁ । ବିଜ୍ଞାନର ଆଦି ପର୍ବଟି ଥିଲା ଏକ ସଂଘର୍ଷର ସମୟ । ୟୁରୋପର ନବଜାଗରଣ ବା ରିନାସାଁନ୍ସ ଓ ଜ୍ଞାନଦୀପ୍ତି ବା ଏନ୍‌ଲାଇଟେନ୍‌ମେଣ୍ଟ୍ ଯୁଗରେ ହିଁ ବିଜ୍ଞାନର ବିକାଶ ପର୍ବ ଆରମ୍ଭ ହେଲା । ତା ପୂର୍ବରୁ ଧର୍ମ ବା ରିଲିଜିଅନ୍ ସମସ୍ତ ଜ୍ଞାନର ଆଧାର ଥିଲା ଓ ସମସ୍ତ ସାମାଜିକ ନିୟନ୍ତ୍ରଣର ଭିତ୍ତି ହୋଇଥିଲା । ଧର୍ମଗ୍ରନ୍ଥର ବାଣୀ ପବିତ୍ର, ଚିରନ୍ତନ ଓ ଧ୍ରୁବ ସତ୍ୟ ବୋଲି ବିଶ୍ୱାସ ମାନବୀୟ ଚେତନାରେ ଦୃଢ଼ ହୋଇ ରହିଥିଲା । ପ୍ରତ୍ୟେକ ଧର୍ମ ପରମ୍ପରାରେ ନିଜ ଧର୍ମଗ୍ରନ୍ଥର ଭାବନାକୁ ଈଶ୍ୱର-ପ୍ରେରିତ ଶାଶ୍ୱତ ଜ୍ଞାନ ବୋଲି ବିଚାର କରାଯାଉଥିଲା । ବିଜ୍ଞାନ

ଯେତେବେଳେ ବସ୍ତୁନିଷ୍ଠ ଭାବେ ସୃଷ୍ଟି, ପ୍ରକୃତି, ଜୀବନ ବିଷୟରେ କେତେକ ସିଦ୍ଧାନ୍ତର ଅବତାରଣା କଲା ଯାହା ଧାର୍ମିକ ବିଶ୍ୱାସର ପରିପନ୍ଥୀ ସେତେବେଳେ ଧର୍ମ ଓ ବିଜ୍ଞାନ ଭିତରେ ସଂଘର୍ଷର ସୂତ୍ରପାତ ହେଲା । ମାନବ ସଭ୍ୟତାକୁ ଅମୂଲ୍ୟ ଅବଦାନ ଦେଇଥିବା ଅନେକ ପ୍ରତିଭାଧର ସତ୍ୟାନ୍ୱେଷୀ ବୈଜ୍ଞାନିକଙ୍କୁ କାଠଗଡାରେ ଛିଡ଼ା ହେବାକୁ ପଡିଲା, ବନ୍ଦୀ ଜୀବନ ବିତାଇବାକୁ ହେଲା ଓ ଏପରିକି ଶହୀଦ ହୋଇ ଜୀବନ ଦେବାକୁ ପଡିଲା । ଏହା ହିଁ ସଭ୍ୟତାର ଇତିହାସରେ ଥିଲା ଏକ ବଡ ବିଡମ୍ବିତ ଘଟଣା । ତେବେ ବୈଜ୍ଞାନିକ ଜ୍ଞାନ ତଥ୍ୟଭିତ୍ତିକ, ପରୀକ୍ଷିତ, ସାର୍ବଜନୀନ ଓ ପ୍ରଣାଳୀବଦ୍ଧ ହୋଇଥିବାରୁ ତାହାର ଅଗ୍ରଗତିକୁ ଧର୍ମ ପ୍ରତିରୋଧ କରିପାରିଲା ନାହିଁ । ବରଂ ବିଜ୍ଞାନର ବିକାଶ, ସାର୍ବଜନୀନ ଶିକ୍ଷାର ପ୍ରସାର, ବିଶ୍ୱବିଦ୍ୟାଳୟ ସ୍ତରରେ ଧର୍ମ, ସଭ୍ୟତା ଓ ସଂସ୍କୃତିର ତୁଳନାତ୍ମକ ଅନୁଶୀଳନରୁ ଏକ ନୂତନ ବୌଦ୍ଧିକ ପରିବେଶର ବିକାଶ ହେଲା । ବସ୍ତୁତଃ ମୁକ୍ତ ମନ, ବିଚାରଶୀଳ-ଦୃଷ୍ଟି, ବୈଜ୍ଞାନିକ ମନୋଭାବ ଓ ବୈଜ୍ଞାନିକ ପ୍ରଣାଳୀ ଆଧାରରେ ଏ ବିଶାଳ ବିଶ୍ୱକୁ ଜାଣିବାର ପ୍ରୟାସ ଏକ ବୌଦ୍ଧିକ କ୍ରାନ୍ତିର ପରିବେଶ ସୃଷ୍ଟି କଲା । ପରିଣାମ ସ୍ୱରୂପ ବିଜ୍ଞାନ ଏକ ସଂସ୍କୃତିର ବାର୍ତ୍ତାବହ ହେଲା । ବିଜ୍ଞାନ ଯେଉଁ ବୌଦ୍ଧିକ ସିଦ୍ଧାନ୍ତକୁ ଆଧାର କରି ତାର ଦିଗନ୍ତକୁ ସୁବିସ୍ତାର କରିପାରିଲା ତାହାର ନିଷ୍କର୍ଷ ହେଲା-ପ୍ରକୃତିରେ ଯାହା କିଛି ଅଛି ବା ଯେଉଁ ସବୁ ଘଟଣା ଘଟେ ତାହା ପଶ୍ଚାତରେ କୌଣସି ଅତିପ୍ରାକୃତିକ କାରଣ ନାହିଁ । ପ୍ରତ୍ୟେକ ଘଟଣା ପଶ୍ଚାତରେ କେବଳ ପ୍ରାକୃତିକ କାରଣ ବା ନିୟମ ରହିଛି । ପ୍ରକୃତିର ବିଶାଳତା ଓ ଜଟିଳତା ଯୋଗୁଁ ପ୍ରକୃତିର ସକଳ ରହସ୍ୟକୁ ଜାଣିବା ସମ୍ଭବତଃ ସମ୍ଭବ ନୁହେଁ । ତେବେ ସଭ୍ୟତା ଯେତିକି ଅଗ୍ରସର ହେଉଥିବ ମଣିଷ ତାର ବୌଦ୍ଧିକ ପ୍ରୟାସ ଆଧାରରେ ପ୍ରକୃତିର ରହସ୍ୟକୁ ସେତିକି ଜାଣିବାକୁ ସମର୍ଥ ହେଉଥିବ । ଏହି ଜାଣିବାର ସାଧନଟି ହେଲା ବୈଜ୍ଞାନିକ ପ୍ରଣାଳୀ ଓ ମୁକ୍ତ ମନ । ଏହି ପୃଷ୍ଠଭୂମିରେ ଏହା କୁହାଯାଇପାରେ ଯେ ଯାହା ବିଚାରଶୀଳ ଦୃଷ୍ଟି ଓ ଜ୍ଞାନ ବିଜ୍ଞାନର ବିକାଶରେ ଅନୁକୂଳ ତାହା ସଂସ୍କୃତି ଓ ଯାହା ଏ କ୍ଷେତ୍ରରେ ପ୍ରତିବନ୍ଧକ ତାହା ଅପସଂସ୍କୃତି । ବସ୍ତୁତଃ ସକଳ କୁସଂସ୍କାର, ଆଧାରହୀନ ବିଶ୍ୱାସ ଓ ଅହେତୁକ ଆବେଗ ଅପସଂସ୍କୃତି ।

ସଂସ୍କୃତିର କେତେକ ଲକ୍ଷଣ ଓ ସଂସ୍କୃତି ଅପସଂସ୍କୃତି ଭିତରର ପାର୍ଥକ୍ୟ ବିଷୟରେ ଏହି ସାଧାରଣ ସୂଚନା ପରେ ତୃତୀୟ ପ୍ରସଙ୍ଗଟି ବିଚାରକୁ ନେବା, ଯାହା ହେଲା ଏକ ଉନ୍ନତ ସଂସ୍କୃତିର ପୁନର୍ନିର୍ମାଣ । ବିଭିନ୍ନ ସଭ୍ୟତାର କେତେକ ମାନବହିତୈଷୀ ବ୍ୟକ୍ତି ନିଜ ସମସାମୟିକ ଯୁଗରେ ଏକ ଉନ୍ନତ ସମାଜ ଓ ମହତ୍ତର ଜୀବନବୋଧର ବାର୍ତ୍ତା ଦେଇଛନ୍ତି । ବିଭିନ୍ନ ଆଦର୍ଶ ଜନରାଜ୍ୟ ବା ୟୁଟୋପିଆର ସ୍ୱପ୍ନ ମାନବ ସଭ୍ୟତାର ଇତିହାସରେ ସମାଜ

ପାଇଁ ଗୋଟିଏ ସମୟରେ ପ୍ରେରଣାର ଉତ୍ସ ହୋଇଛି, ହେଲେ ସାମଗ୍ରିକ ଭାବରେ ମଣିଷ ସମାଜ ଅନ୍ୟାୟମୁକ୍ତ, ଶୋଷଣମୁକ୍ତ ଓ ସଙ୍କଟମୁକ୍ତ ହୋଇ ନାହିଁ । ଅତୀତ ଅପେକ୍ଷା ଆଜିର ସ୍ଥିତିରେ କହିବାକୁ ଗଲେ ଜ୍ଞାନବିଜ୍ଞାନର ଅନେକ ବିକାଶ ହୋଇଛି, ସ୍ୱାସ୍ଥ୍ୟ ସେବା, ଗମନାଗମନ କ୍ଷେତ୍ରରେ ବହୁ ସୁବିଧା ଉପଲବ୍ଧ ହୋଇପାରିଛି ଓ ସମଗ୍ର ବିଶ୍ୱରେ ଏକ ଆନ୍ତର୍ଜାତିକ ଚେତନା ବିକଶିତ ହେବାରେ ଲାଗିଛି । ଏକ ଆଦିମ ସ୍ଥିତିରୁ ନାନା ସ୍ତର ଦେଇ ସଭ୍ୟତା-ସଂସ୍କୃତି ଆଜିର ସ୍ତରକୁ ଆସିଛି । ଏକ ଏକ ବୌଦ୍ଧିକ ଆଲୋଡନ ଜନଜୀବନର ସାଂସ୍କୃତିକ ଜୀବନଧାରାରେ ନୂତନ ଆଲୋଡନ ଆଣିଛି । ଅର୍ଥାତ୍ କହିବାକୁ ଗଲେ ମାନବଜାତି ନିରବଚ୍ଛିନ୍ନ ଭାବେ ସର୍ବଦା ଅଗ୍ରଗତି କରିଚାଲିଛି । ତେବେ ସଭ୍ୟତାରେ ଯାହା କିଛି ବିକଶିତ ହୋଇଛି ତାହା ଯେ ସବୁ ସମାଜରେ ପ୍ରତିଫଳିତ ହୋଇଛି ବା ସମସ୍ତ ରାଷ୍ଟ୍ର ବା ସମାଜ ତାର ଜନଗଣଙ୍କର ଜୀବନଧାରାକୁ ଉନ୍ନତ କରିପାରିଛନ୍ତି ଏହା କୁହାଯାଇପାରିବ ନାହିଁ । ସବୁ ରାଷ୍ଟ୍ରରେ ବା ସବୁ ସମାଜରେ ଭୌତିକ ବିକାଶ ସମାନ ଭାବରେ ହୋଇ ନାହିଁ । ଏବେ ବି କେତେକ ସମାଜରେ ଉତ୍କଟ ଦାରିଦ୍ର୍ୟ ରହିଛି, ଆମ ଦେଶ ପରି ତୃତୀୟ ବିଶ୍ୱର ରାଷ୍ଟ୍ରମାନଙ୍କରେ ନିରକ୍ଷରତା, ଭିକ୍ଷାବୃତ୍ତି, ଅପପୁଷ୍ଟି, ଶିଶୁ-ଶ୍ରମିକ ସମସ୍ୟାମାନ ରହିଛି । ସେହିପରି ସାମାଜିକ ଭେଦଭାବ ଏବେ ବି ଆମ ଦେଶର ଜନଜୀବନରେ ଏକ ନିଛକ ବାସ୍ତବତା । ଭୌତିକ ବିକାଶ ପରିପ୍ରେକ୍ଷୀରେ ଯେପରି ମାନବ ସମାଜରେ ବହୁ ବୈଷମ୍ୟ ରହିଛି ସେହିପରି ସାଂସ୍କୃତିକ ଚେତନାର ବିକାଶ କ୍ଷେତ୍ରରେ ମଧ୍ୟ ବହୁ ପାର୍ଥକ୍ୟ ରହିଛି । କେତେକ ସମାଜରେ ଜୀବନର ଗୁଣାତ୍ମକ ମୂଲ୍ୟ ବହୁ ଉନ୍ନତ ହୋଇଛି ଅଥଚ ଅନ୍ୟ କେତେକ ସମାଜରେ ଜୀବନର ଗୁଣାତ୍ମକ ମାନ ନ୍ୟୂନ ହୋଇ ରହିଛି । ଯେଉଁ ସମାଜରେ ଜୀବନର ଭୌତିକ ଆବଶ୍ୟକତା ନେଇ ଅଭାବ ନାହିଁ ବା ଜୀବନର ଗୁଣାତ୍ମକ ମାନ ଉନ୍ନତ ସ୍ଥିତିକୁ ଯାଇଛି ତାହା ପଶ୍ଚାତରେ ମାନବିକ ପ୍ରୟାସ ରହିଛି । କୌଣସି ବିକାଶ ଆକାଶରୁ ଖସି ନାହିଁ ବା କୌଣସି ଦିଅଁ ଦେବତାର ଆଶୀର୍ବାଦରୁ ସମ୍ଭବ ହୋଇ ନାହିଁ । ମାନବିକ ପ୍ରୟାସ, ରାଷ୍ଟ୍ରୀୟ ଯୋଜନା, ଉଚ୍ଚ କର୍ମ-ସଂସ୍କୃତି ଆଧାରରେ ହିଁ ସମାଜର ବିକାଶ ସମ୍ଭବ ହୁଏ ଓ ପ୍ରଗତିର ଚକ ଆଗକୁ ଯାଏ । ଯେଉଁ ସାଂସ୍କୃତିକ ଜୀବନବୋଧରେ ପାରଲୌକିକ ମାନସିକତାର ପ୍ରାବଲ୍ୟ ଯେତେ ଅଧିକ ସେହି ସମାଜ ସାଧାରଣ ଅନୁଭବରେ ସେତେ ଅନଗ୍ରସର । "ମଣିଷର ସାମୂହିକ ପ୍ରୟାସରେ ସଭ୍ୟତା-ସଂସ୍କୃତିର ନିର୍ମାଣ ହୁଏ ଓ ଗୁଣାତ୍ମକ ଜୀବନର ପରିବେଶ ଆସେ" ଏକ ନୂତନ ସଂସ୍କୃତିର ବାର୍ତ୍ତା ଦେଇଥାଏ ।

ସେହିପରି ମାନବିକତାବୋଧ ଏକ ଉଚ୍ଚ ସାଂସ୍କୃତିକ ଚେତନାର ସ୍ୱାକ୍ଷର ବହନ କରେ । ପ୍ରତ୍ୟେକ ବ୍ୟକ୍ତିର ମୂଲ୍ୟ ଓ ମହତ୍ତ୍ୱ ରହିଛି । ପ୍ରତ୍ୟେକ ବ୍ୟକ୍ତି ମର୍ଯ୍ୟାଦାର ସହିତ ଜୀବନ ବଞ୍ଚିବା ତାହାର ଏକ ପ୍ରାକୃତିକ ଅଧିକାର, ଏକ ସାର୍ବଜନୀନ ମୂଲ୍ୟବୋଧ । ଏହି ମୂଲ୍ୟବୋଧର ପ୍ରତିଫଳନ ସାମାଜିକ ଜୀବନ ପ୍ରବାହରେ ଯେତେ ଅଧିକ ସମାଜର ସାଂସ୍କୃତିକ ପରିବେଶ ସେତେ ଉନ୍ନତ । ଏହି ଭାବନାର ବିସ୍ତାରିତ ଆଦର୍ଶଟି ହେଉଛି ସାମାଜିକ ସମତା ଓ ସାମାଜିକ ନ୍ୟାୟ । ଏହି ଆଦର୍ଶର ବିପରୀତ ହେଉଛି ସାମନ୍ତବାଦୀ ମନୋଭାବ । ସାମନ୍ତବାଦ ମାନବିକ ମର୍ଯ୍ୟାଦାର ପରିପନ୍ଥୀ, ସାମାଜିକ ନ୍ୟାୟ ଓ ଗଣତାନ୍ତ୍ରିକ ଜୀବନଧାରାର ପ୍ରତିକୂଳ । ଯେଉଁ ଦେଶର ସାମାଜିକ ଜୀବନପ୍ରବାହରେ ଭେଦଭାବ, ସାମନ୍ତବାଦ ଓ ମାନବିକ ଅଧିକାରର ଉଲ୍ଲଘଂନ ବ୍ୟାପକ ଭାବେ ରହିଛି ତାହା ମାନବିକତାବୋଧର ପ୍ରସାର କ୍ଷେତ୍ରରେ ଅନ୍ତରାୟ ହୋଇ ରହିଛି । ଏହି ମାନସିକତାରେ ପରିବର୍ତ୍ତନ ଆଣି ଏକ ମାନବବାଦୀ ସଂସ୍କୃତିର ବିକାଶ କରାଇବା ଏ ଯୁଗର ଏକ ବଡ ଆଦର୍ଶ ମନେହୁଏ । ମାନବବାଦୀ ସଂସ୍କୃତି ଉଦାରବାଦୀ ମନୋଭାବ ଓ ସମ୍ବେଦନଶୀଳ ଜୀବନଦୃଷ୍ଟିକୁ ଯଥେଷ୍ଟ ପ୍ରାଧାନ୍ୟ ଦେଇଥାଏ । ବୃହତ୍ତର ସମାଜ ପ୍ରତି ଉତ୍ତରଦାୟିତ୍ୱବୋଧ, ଉଚ୍ଚ ନାଗରିକ କର୍ତ୍ତବ୍ୟବୋଧ ନେଇ ସଚେତନ ପରିବେଶ ଓ ସମ୍ବେଦନଶୀଳ ଜୀବନଦୃଷ୍ଟିର ମନୋଭାବ ସାଂସ୍କୃତିକ ଜାଗରଣର ଆଧାର ହୋଇପାରିବ । ପୂଜା, ପ୍ରାର୍ଥନା, ଧାର୍ମିକ ବିଶ୍ୱାସ, ଧର୍ମ ପରମ୍ପରା ପ୍ରତି ଅହେତୁକ ଶ୍ରଦ୍ଧା ବ୍ୟକ୍ତିଗତ ରୁଚିର ପ୍ରଶ୍ନ; ଏସବୁ କୌଣସି ମହତ୍ତର ଜୀବନବୋଧର ସୂଚନା ଦିଏ ନାହିଁ । ବରଂ ବ୍ୟକ୍ତି ଓ ଗୋଷ୍ଠୀ ଜୀବନରେ ନୈତିକ ଶୃଙ୍ଖଳାକୁ ଗୁରୁତ୍ୱ ଦେବା ଓ ମାନବବାଦୀ ଜୀବନଦୃଷ୍ଟିର ପ୍ରସାର ଘଟାଇବା ଏକ ସଂସ୍କୃତିସମ୍ପନ୍ନ ଜୀବନର ସ୍ୱାକ୍ଷର ବହନ କରେ ।

ବୈଜ୍ଞାନିକ ମାନସିକତା ଓ ବିଚାରଶୀଳ ଦୃଷ୍ଟି ସଭ୍ୟତାର ବିକାଶଧାରାରେ ଏକ ସାଂସ୍କୃତିକ ଉତ୍ତରଣର ସ୍ୱାକ୍ଷର ବହନ କରେ । ବୈଜ୍ଞାନିକ ଦୃଷ୍ଟି ଏକ ଜୀବନବୋଧ ଓ ଏକ ସଂସ୍କୃତି । ତେବେ ବିଜ୍ଞାନ ଓ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ମଧ୍ୟରେ ପାର୍ଥକ୍ୟ ରହିପାରେ । ବିଜ୍ଞାନ ଅଧ୍ୟୟନ କରିଥିବା ବା ଏହାକୁ ବୃତ୍ତି ଭାବରେ ନେଉଥିବା ପ୍ରତ୍ୟେକ ବ୍ୟକ୍ତି ଭିତରେ ବୈଜ୍ଞାନିକ ମନୋଭାବ ନଥାଇ ପାରେ । ସେହିପରି ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ପୋଷଣ କରୁଥିବା ପ୍ରତ୍ୟେକ ବ୍ୟକ୍ତି ଯେ ବିଜ୍ଞାନର ଛାତ୍ର ଏହା କୁହାଯାଇ ନପାରେ । ବୈଜ୍ଞାନିକ ମନୋଭାବ ଓ ତାର ଆନୁଷଙ୍ଗିକ ମୂଲ୍ୟଚୟ ସାମାଜିକ ଜୀବନଧାରାରେ ଯେତେ ଅଧିକ ପ୍ରତିଫଳିତ ହେବ ତାହା ସୁସ୍ଥ ସାମାଜିକ ପରିବେଶର ସ୍ୱାକ୍ଷର ବହନ କରିବ । ଆଜିର ସଭ୍ୟତାରେ ଜୀବନର ଗୁଣାତ୍ମକ ମାନରେ ଯେଉଁ ପରିବର୍ତ୍ତନ ଆସିଛି ତାହା ପଶ୍ଚାତରେ

ମାନବିକ ପ୍ରୟାସଜନିତ ବୈଜ୍ଞାନିକ ଉଦ୍ଭାବନ ଓ ଆବିଷ୍କାର ଓ ତଦ୍‌ଜନିତ ପ୍ରଯୁକ୍ତିର ସର୍ବାଧିକ ଅବଦାନ ରହିଛି । ବିଜ୍ଞାନର ଅବଦାନ ଯୋଗୁ ପୃଥିବୀ କ୍ଷୁଦ୍ର ଗ୍ରାମରେ ପରିଣତ ହୋଇଛି । ଆଧୁନିକ ପ୍ରଯୁକ୍ତି ସକଳ ଦୂରତ୍ୱକୁ ଅତିକ୍ରମ କରିବା ପାଇଁ ସାଧନ ବାହାର କରିପାରିଛି । ବିଜ୍ଞାନ ବାହ୍ୟିକ ସ୍ତରରେ ସବୁ ମଣିଷଙ୍କ ଭିତରେ ଏକତ୍ୱର ପରିବେଶ ସୃଷ୍ଟି କରିଛି, ଏକ ମାନବିକ ସଂସ୍କୃତିର ପ୍ରସାର ଫଳରେ ଏକ ଭାବଗତ ଏକତ୍ୱ ସମ୍ଭବ ହୋଇପାରିବ ।

ଏହା ଏକ ଅବିବାଦୀୟ ସତ୍ୟ ଯେ ସବୁ ଯୁଗରେ ମାନବ ସମାଜ କିଛି ନା କିଛି ସଙ୍କଟର ସମ୍ମୁଖୀନ ହୋଇଛି । ଏକ ସମସ୍ୟାରହିତ ଉନ୍ନତ ସ୍ଥିତିକୁ ମଣିଷ ସମାଜର ଉତ୍ତରଣ ସମ୍ଭବ ହୋଇନାହିଁ । ବିଜ୍ଞାନର ଯୁଗ ଆସିବା ପୂର୍ବରୁ ମହାମାରୀ, ପ୍ରାକୃତିକ ଦୁର୍ବିପାକ ଇତ୍ୟାଦିରେ ମଣିଷ ଅସହାୟ ହୋଇ ମୃତ୍ୟୁବରଣ କରୁଥିଲା । ବିଜ୍ଞାନର ଯୁଗ ଆସିବା ପରେ ଶିଳ୍ପ ସଭ୍ୟତା ଉଦ୍ଭବ ହେଲା ଓ ସାମ୍ରାଜ୍ୟବାଦର ଯୁଗ ଆସିଲା । ସଭ୍ୟତାର ଇତିହାସରୁ ଯୁଦ୍ଧ, ବିଭୀଷିକା ଓ ମାନବିକ କ୍ରୂରତାର ନାନା ଅମାନବିକ କାହାଣୀ ଜାଣିବାକୁ ମିଳେ । ଏପରିକି ବିଂଶ ଶତାବ୍ଦୀର ପ୍ରଥମ ଭାଗରେ ଦୁଇ ଦୁଇଟି ବିଶ୍ୱଯୁଦ୍ଧର ଲୋମହର୍ଷଣକାରୀ କାହାଣୀ ଓ ବର୍ବରତା ବିଶ୍ୱ-ବିବେକକୁ ଦଂଶନ କରିଥାଏ । ତେବେ ଅତୀତର ଏହିସବୁ ଭୟଙ୍କର ସ୍ଥିତି ଠାରୁ ସାଂପ୍ରତିକ ପରିବେଶ କେତେକାଂଶରେ ଉନ୍ନତ ମନେହୁଏ । ସଭ୍ୟତାର ବିକାଶଧାରାରେ ଜ୍ଞାନ ବିଜ୍ଞାନର ବିକାଶ ଯୋଗୁ ବହୁ ସମସ୍ୟାର ସମାଧାନ ମଣିଷ କରିପାରିଥିବା ମନେହୁଏ । ତେବେ ଜନସଂଖ୍ୟାର ଚାପ, ପରିବେଶ ପ୍ରଦୂଷଣ, ସୀମାପାର ସନ୍ତ୍ରାସବାଦ, ତୃତୀୟ ବିଶ୍ୱର ଦାରିଦ୍ର୍ୟ, ଆଣବିକ ମାରଣାସ୍ତ୍ର ନିର୍ମାଣର ଅହେତୁକ ପ୍ରତିଯୋଗିତା ପରି ନାନା ସଙ୍କଟ ମାନବ ସମୁଦାୟକୁ ପ୍ରଭାବିତ କରୁଛି । ମାନବୀୟ ସଙ୍କଟ କ୍ଷେତ୍ରରେ ପ୍ରାକୃତିକ କାରଣ ଜନିତ ଭୟାବହତା ତ ରହିଛି, ତେବେ ମାନବକୃତ କାରଣ ଯୋଗୁଁ ଆମ ସଂସାରରେ ବହୁ ଦୁଃଖ ଯନ୍ତ୍ରଣାର ପରିବେଶ ଆସିଛି । ହିଂସା-ପ୍ରତିହିଂସା, କ୍ରୂରତା, ବର୍ବରତା, ଶୋଷଣ, ନାନା ଭେଦଭାବ ଜନିତ ମାନସିକତା ମାନବିକ ଦୁଃଖଦୁର୍ଦ୍ଦଶା ପାଇଁ ଅଧିକ ଭୟଙ୍କର ସ୍ଥିତି ସୃଷ୍ଟି କରିଆସିଛି । ଏହି ସ୍ଥିତିରେ ସମଗ୍ର ବିଶ୍ୱ ପରିପ୍ରେକ୍ଷୀରେ ଏକ ମାନବବାଦୀ ଚେତନାର ସାର୍ବଜନୀନ ବିକାଶ କରାଯାଇପାରିଲେ ଏକ ନୂଆ ସଂସ୍କୃତିର ଉଦ୍ଭବ ହୋଇପାରିବ । ଯୁଦ୍ଧ, ବିଭୀଷିକା, ସନ୍ତ୍ରାସବାଦର ଭାବନାକୁ ମଣିଷ ମନରୁ ଦୂର କରାଯାଇପାରିଲେ ସମ୍ଭବତଃ ଏକ ନୂତନ ଯୁଗର ଶୁଭାରମ୍ଭ ହୋଇପାରିବ । ସେହିପରି ଯେଉଁ ଅସ୍ମିତା ଓ ଆବେଗ ମଣିଷ ମଣିଷ ଭିତରେ ବିଦ୍ୱେଷର ପ୍ରାଚୀର ଛିଡା କରାଉଛି ତାହା ଏକ ମାନବବାଦୀ ସଂସ୍କୃତିର ବିସ୍ତାର ଦ୍ୱାରା ଦୂର କରାଯାଇପାରିବ ।

ସାମାଜିକ ଜୀବନପ୍ରବାହରେ ଉଦାରବାଦୀ ଜୀବନଦୃଷ୍ଟି, ଉଚ୍ଚ କର୍ମସଂସ୍କୃତି, ନାଗରିକ ଶୃଙ୍ଖଳାବୋଧ, ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ, ବ୍ୟକ୍ତି ମର୍ଯ୍ୟାଦାବୋଧର ମନୋଭାବକୁ ବ୍ୟାପକ କରିବା ଦ୍ୱାରା ସମାଜର ବୌଦ୍ଧିକ ଓ ନୈତିକ ଉତ୍ତରଣ ସମ୍ଭବ ହୋଇପାରିବ । ଏସବୁ ଏକ ଉନ୍ନତ ସଂସ୍କୃତିର ବିକାଶ ଦିଗରେ ଓ ସମାଜରୁ ସକଳ ଭେଦଭାବ, ବୈଷମ୍ୟକୁ ଦୂର କରିବାରେ ସହାୟକ ହେବ । ମଣିଷ ନିଜର ବୁଦ୍ଧି ଓ ବିଚାରଶୀଳତାର ସାହାଯ୍ୟରେ ସଭ୍ୟତାକୁ ନିର୍ମାଣ କରିଛି । ସେହିପରି ଏକ ନିଷ୍ଠାପର ପ୍ରୟାସଦ୍ୱାରା ସକଳ ସାମାଜିକ ସମ୍ବନ୍ଧକୁ ନୀତିପୂର୍ଣ୍ଣ ଓ ପ୍ରୀତିପୂର୍ଣ୍ଣ କରିବା ସମ୍ଭବ ହେବ । ଆମେ ଆଜି ଯେଉଁ ସୁଖପ୍ରଦ ଜୀବନ ଅତିବାହିତ କରିବାର ପରିବେଶ ପାଇଛେ ତାହା ଆମ ପିଢ଼ିର ଚେଷ୍ଟାରେ ସମ୍ଭବ ହୋଇନାହିଁ । ଆମର ସକଳ ଆବଶ୍ୟକତା ପୂରଣ ହେବାରେ ଓ ଆମେ ଏକ ସୁଖପ୍ରଦ ଓ ନିରାପଦ ଜୀବନ ଅତିବାହିତ କରିବାରେ ଆମ ପିତାମହ, ପ୍ରପିତାମହମାନଙ୍କର ଯଥେଷ୍ଟ ଅବଦାନ ରହିଛି । ସେହିପରି ଆମ ପ୍ରୟାସରେ ଆମେ ଏପରି ଏକ ସାଂସ୍କୃତିକ ପରିବେଶ ଉଦ୍‌ଭବ କରାଇପାରିବା ଯାହା ଆଗାମୀ ବଂଶଧରମାନଙ୍କୁ ଏକ ପ୍ରୀତିଭରା ଭ୍ରାତୃତ୍ୱପୂର୍ଣ୍ଣ ପରିବେଶରେ ବଞ୍ଚିବାର ଅବକାଶ ଯୋଗାଇ ପାରିବ ।

ସୁଖର କଥା ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ଏକ ଆନ୍ତର୍ଜାତିକ ମନୋଭାବ ସାରା ବିଶ୍ୱରେ ବିକାଶଲାଭ କରିବାରେ ଲାଗିଛି । ଯେକୌଣସି ଭୂଖଣ୍ଡର ଏକ ମାନବିକ ସମସ୍ୟା କିମ୍ବା କୌଣସି ମାନବୀୟ ସଙ୍କଟ ଆନ୍ତର୍ଜାତିକ ସ୍ତରରେ ଆଲୋଚିତ ହୋଇ ସମସ୍ୟାର ସମାଧାନ ପାଇଁ ସଂପୃକ୍ତି ପ୍ରକାଶ ପାଉଛି । ପୃଥିବୀର କୌଣସି ଅଞ୍ଚଳରେ କିଛି ଦୁର୍ବିପାକ ଘଟିଲେ ସାରା ପୃଥିବୀରୁ ସହାନୁଭୂତିର ହାତ ପ୍ରସାରିତ ହୋଇପାରୁଛି । ମଣିଷ ସମାଜକୁ ସୁଖ ଶାନ୍ତିରେ ବଞ୍ଚିବାକୁ ବିଭିନ୍ନ ରୋଗମାନଙ୍କ ନିଦାନ ବାହାର କରିବାକୁ ଆନ୍ତର୍ଜାତିକ ସ୍ତରରେ ଉଚ୍ଚମାନର ଗବେଷଣା କରାଯାଉଛି । ସକଳ ଜ୍ଞାନବିଜ୍ଞାନ ସାର୍ବଜନୀନ ହେବାରେ ଲାଗିଛି । ପୃଥିବୀର କେତେକ ମନୀଷୀ ବିଶ୍ୱ ସରକାର ପାଇଁ ଚେତନା ସୃଷ୍ଟି କରିବାରେ ପ୍ରୟାସ କରୁଛନ୍ତି । ବିଶ୍ୱ-ସଂଘ ବା ଆର୍ଥ ଫେଡେରେସନ ପରି ଆନ୍ତର୍ଜାତିକ ସଙ୍ଗଠନ ପୃଥିବୀର ପ୍ରତିରକ୍ଷା ଖର୍ଚ୍ଚକୁ ବନ୍ଦ କରାଗଲେ ତୃତୀୟ ବିଶ୍ୱର ସକଳ ଦାରିଦ୍ର୍ୟ ଯେ ଦୂର ହୋଇପାରିବ ଏହାକୁ ପ୍ରସାର କରୁଛନ୍ତି । ଏକ ବିଶ୍ୱ-ସଂଘ ମାଧ୍ୟମରେ ବିଶ୍ୱ ସରକାର ଗଠିତ ହେଲେ ପୃଥିବୀର ଯେ ନବଜନ୍ମ ହେବ ଏହି ଭାବନା ବ୍ୟକ୍ତ ହେବାରେ ଲାଗିଛି । ଧର୍ମଗତ ଅସ୍ମିତାର ଊର୍ଦ୍ଧ୍ୱକୁ ଯାଇ ଏକ ଧର୍ମୋତ୍ତର ସମାଜ(Post-religious Society)ର ଭାବନା ପ୍ରକାଶ ପାଉଛି । ବିଜ୍ଞାନର ସକଳ ଅପପ୍ରୟୋଗକୁ ବନ୍ଦ କରିବାକୁ ଆନ୍ତର୍ଜାତିକ ସଂପୃକ୍ତି ବ୍ୟକ୍ତ ହେଉଛି । ମାନବିକ ଅଧିକାରର ବିଶ୍ୱଘୋଷଣା ଯାହା ଆନ୍ତର୍ଜାତିକ

ସ୍ତରରେ ସ୍ୱୀକୃତ ହୋଇଛି ତାହା ମାନବବାଦର ପ୍ରସାର କ୍ଷେତ୍ରରେ ଏକ ଆଲୋକ-ବର୍ତ୍ତିକା ହୋଇଛି । ସେହିପରି ଇଣ୍ଟରନେସନାଲ ହ୍ୟୁମାନିଷ୍ଟ ଏଣ୍ଡ ଏଥିକାଲ ୟୁନିୟନ୍ ଆନ୍ତର୍ଜାତିକ ସଙ୍ଗଠନ ଯେଉଁ ମାନବବାଦୀ ଘୋଷଣାପତ୍ର (ହିଉମାନିଷ୍ଟ ମାନିଫେଷ୍ଟୋ) ପ୍ରକାଶ କରିଛି ସେଥିରେ ଏକ ଭ୍ରାତୃତ୍ୱପୂର୍ଣ୍ଣ ବିଶ୍ୱର ସୁନ୍ଦର ପରିକଳ୍ପନା ରହିଛି । ଏସବୁ ଏକ ମହତ୍ତର ଜୀବନବୋଧର ବାର୍ତ୍ତା ପ୍ରସାର କରୁଛି । ଏକ ପ୍ରୀତିପୂର୍ଣ୍ଣ ବିଶ୍ୱ ରୂପାୟନ କ୍ଷେତ୍ରରେ ଏସବୁ ଆଦର୍ଶ ପଥପ୍ରଦର୍ଶକ ହୋଇପାରିବ ।

ଉପସଂହାରରେ ଆମ ସମାଜରେ ବା ବିଶ୍ୱ ସ୍ତରରେ ଯେଉଁସବୁ ମନ୍ଦ ପରିବେଶ ବା ଇଭିଲ ଓ ମାନବକୃତ ଅନ୍ୟାୟ ରହିଛି ସେ ସବୁକୁ ମାନବିକ ପ୍ରୟାସରେ ଦୂର କରାଯାଇପାରିବ । ଏପରି ଏକ ସାଂସ୍କୃତିକ ବାତାବରଣର ନିର୍ମାଣ କରାଯାଇପାରିବ ଯାହା ମାନବ ସମାଜରେ ଭ୍ରାତୃତ୍ୱଭାବ, ନ୍ୟାୟବୋଧ ଓ ଏକ ସମ୍ବେଦନଶୀଳ ଜୀବନଦୃଷ୍ଟିକୁ ଆଦର୍ଶ ଭାବେ ପ୍ରସାର କରିବ । ସଭ୍ୟତାର ସକଳ କୀର୍ତ୍ତିକରଣୀ ଓ ବିଜ୍ଞାନର ଚମତ୍କାରିତା ମଣିଷ ନିଜର ହାତ ଓ ମସ୍ତିଷ୍କ ଖଟାଇ ନିର୍ମାଣ କରିଛି । ସେହିପରି ମାନବିକ ପ୍ରୟାସରେ ଏକ ମହତ୍ତର ସଂସ୍କୃତି ନିର୍ମାଣ କରାଯାଇପାରିବ । ଆଜିର ଗଣମାଧ୍ୟମରେ ଯେଉଁ ଉନ୍ନତି ସାଧିତ ହୋଇଛି ଓ ସାର୍ବଜନୀନ ଶିକ୍ଷାର ଯେଉଁ ପରିବେଶ ଆସିଛି ସେଥିରେ ଏକ ମାନବବାଦୀ ସଂସ୍କୃତିର ନିର୍ମାଣ ଅସମ୍ଭବ ହେବ ନାହିଁ । ଚିନ୍ତାରାଜ୍ୟରେ 'ଗ୍ରହମଣ୍ଡଳୀୟ ମାନବବାଦ' ବା ପ୍ଲାନେଟାରି ହିଉମାନିଜମ୍ ଏକ କ୍ରାନ୍ତିକାରୀ ଭାବନା ଭାବେ ଏବେ ଆଲୋଚିତ ହେଉଛି । ଆମ ସୌରମଣ୍ଡଳର ପୃଥିବୀ ଗ୍ରହଟିରେ କେବଳ 'ମାନବ ସଭ୍ୟତା' ସୃଷ୍ଟି ହୋଇଛି । ଆମ ପୃଥିବୀରେ ମାନବ ସଭ୍ୟତା କିପରି ଚିରସ୍ଥାୟୀ ହୋଇ ରହିବ ଓ ପୃଥିବୀର ସମଗ୍ର ଜନଗଣ ଏକ ପ୍ରୀତିଭରା ଭ୍ରାତୃତ୍ୱପୂର୍ଣ୍ଣ ପରିବେଶରେ ଜୀବନ ବଞ୍ଚିବେ ସେଥିପାଇଁ ଗମ୍ଭୀର ଚିନ୍ତା ଦାର୍ଶନିକମାନେ ବ୍ୟକ୍ତ କରୁଛନ୍ତି । ଏକ ବିଚାରଶୀଳ, ମାନବବାଦୀ ସଂସ୍କୃତିର ସଂରଚନା ସଭ୍ୟତାର ସ୍ଥାୟିତ୍ୱ ପାଇଁ ଯେ ଏକ ବଡ ଆହ୍ୱାନ ଏହା କହିଲେ ଅତ୍ୟୁକ୍ତି ହେବ ନାହିଁ । ବିଜ୍ଞାନ ଏକ ସୁଖପ୍ରଦ ଜୀବନ ପାଇଁ ସାଧନ ହୋଇପାରିଛି । ବିଜ୍ଞାନର ବିକାଶ ଯୋଗୁ ପ୍ରାକୃତିକ ବିପର୍ଯ୍ୟୟକୁ ମୁକାବିଲା କରିବା ଅନେକଟା ସମ୍ଭବ ହୋଇପାରିଛି । ତେବେ ଏକ ଉଦାରବାଦୀ ଓ ମାନବବାଦୀ ଜୀବନବୋଧର ପ୍ରସାର ସାର୍ବଜନୀନ ଭାବେ କରାଯାଇପାରିଲେ ଏକ ଉନ୍ନତ ସଂସ୍କୃତିର ବିକାଶ ସମ୍ଭବ ହୋଇପାରିବ ।



# ଦର୍ଶନ ଓ ଦାର୍ଶନିକ

ମାନବ ସଭ୍ୟତା ସଂପ୍ରତି ଯେଉଁ ସ୍ଥିତିରେ ପହଞ୍ଚିଛି ତାହା ପଶ୍ଚାତରେ ଏକ ସୁଦୀର୍ଘ ଇତିହାସ ରହିଛି । ଏକ ଆଦିମ ଅବସ୍ଥାରୁ ନାନା ପରିବର୍ତ୍ତନ ଓ ବିବର୍ତ୍ତନ ମଧ ଦେଇ ମନୁଷ୍ୟ ଜାତି ଅଗ୍ରସର ହୋଇଛି । ଇତର ପ୍ରାଣୀମାନେ ଲକ୍ଷ ଲକ୍ଷ ବର୍ଷ ତଳେ ଯେଉଁ ସ୍ଥିତିରେ ଥିଲେ ଏବେବି ମଧ ସେହି ସ୍ଥିତିରେ ରହିଛନ୍ତି, ସେମାନଙ୍କ ଜୀବନଧାରାରେ ସେପରି କିଛି ଗୁଣାତ୍ମକ ପରିବର୍ତ୍ତନ ହୋଇ ନାହିଁ । କିନ୍ତୁ ମଣିଷର ସମାଜ, ସଂସ୍କୃତି, କଳା, ସାହିତ୍ୟ, ଜ୍ଞାନ, ବିଜ୍ଞାନ, ଦାର୍ଶନିକ ଅବବୋଧ ଇତ୍ୟାଦି କ୍ଷେତ୍ରରେ ସର୍ବଦା କ୍ରମବିକାଶ ହୋଇଚାଲିଛି । ଏହା ସମ୍ଭବ ହୋଇଛି ଏହି କାରଣରୁ ଯେ ମଣିଷର ଚିନ୍ତା କରିବାର ସାମର୍ଥ୍ୟ ରହିଛି । ଚିନ୍ତା କରିବା ସହ ମନୁଷ୍ୟର ଏପରି କେତେକ ଶକ୍ତି ଓ ସାମର୍ଥ୍ୟ ରହିଛି ଯାହାଦ୍ୱାରା ସେ ସଭ୍ୟତା, ସଂସ୍କୃତିର ନିର୍ମାଣ କରିବା ସହ ଜ୍ଞାନ, ବିଜ୍ଞାନ, ନୀତିବୋଧ ଇତ୍ୟାଦିର ବିକାଶ କରାଇଛି । ମଣିଷ ଭାଷା କହିପାରେ, ପ୍ରକୃତି ମନୁଷ୍ୟ ପାଖରେ ସ୍ୱରପେଟିକା ଦେଇଛି । ଫଳରେ ଭାଷା କହିବାର ସାମର୍ଥ୍ୟରୁ ଜ୍ଞାନ ବିଜ୍ଞାନର ବିକାଶ ସମ୍ଭବ ହୋଇଛି । ସେହିପରି ପ୍ରକୃତିରେ ଉପଲବ୍ଧ ବିଭିନ୍ନ ଉପାଦାନକୁ ନେଇ ମନୁଷ୍ୟ ନାନା ବସ୍ତୁ ନିର୍ମାଣ କରିବାର ଶକ୍ତି ଓ ସାମର୍ଥ୍ୟ ଅର୍ଜନ କରିପାରିଛି । ପୁନଶ୍ଚ ମନୁଷ୍ୟ ଏକ ସାମାଜିକ ପ୍ରାଣୀ ହୋଇଥିବାରୁ ସେ ଗୋଷ୍ଠୀ ଜୀବନରୁ ଦେଶ, ରାଷ୍ଟ୍ର ଓ ଏପରିକି ଆନ୍ତର୍ଜାତିକ ସଙ୍ଗଠନମାନ ସୃଷ୍ଟି କରିଛି । ଏସବୁ ବ୍ୟତୀତ ମଣିଷ ପାଖରେ ବୁଦ୍ଧି, ବିଚାରଶୀଳତାର ବିକାଶ ହୋଇଛି ଯାହା ଦ୍ୱାରା ସେ ଜୀବନର ଭୌତିକ ଓ ଗୁଣାତ୍ମକ ମାନରେ ଉନ୍ନତି ଆଣିବାକୁ ପ୍ରୟାସ କରିଛି । ଭାଷା କହିବା, ବସ୍ତୁନିର୍ମାଣ କରିବା, ସାମାଜିକ ଜୀବନ ବଞ୍ଚିବା ଓ ବିଚାରଶୀଳ ହେବା ସାମର୍ଥ୍ୟର ସମ୍ମିଳିତ ପ୍ରଭାବରୁ ମଣିଷ ହିଁ କ୍ରମୋନ୍ନତ ଭାବେ ଅଗ୍ରସର ହୋଇପାରିଛି ।

ସକଳ ବିକାଶ ପଶ୍ଚାତରେ ମଣିଷର ଚିନ୍ତା, ଚେତନା ଓ ବୌଦ୍ଧିକତା ଏକ ମୁଖ୍ୟ ଭୂମିକା ନେଇଥାଏ । ବୌଦ୍ଧିକ ବିକାଶ ସଭ୍ୟତାର ଅଗ୍ରଗତି ସହ ନାନା ଦିଗରେ ବିସ୍ତାରିତ

ହୋଇଥିବା ଏକ ସାଧାରଣ ଉପଲବ୍ଧି । ସାହିତ୍ୟ, କଳା, ଧର୍ମ, ଦର୍ଶନ, ବିଜ୍ଞାନ ଇତ୍ୟାଦି କ୍ଷେତ୍ରଗୁଡ଼ିକ ବୌଦ୍ଧିକ ଉତ୍କର୍ଷର ସ୍ୱାକ୍ଷର ବହନ କରେ । ମାନବିକ ସୃଜନଶୀଳତା ନାନା ସ୍ତରରେ ଅଭିବ୍ୟକ୍ତ ହୋଇପାରେ । ତେବେ ବୌଦ୍ଧିକ ସୃଜନଶୀଳତାର ଏକ ଉତ୍କର୍ଷ ଅଭିବ୍ୟକ୍ତି ହେଉଛି ଦର୍ଶନ ଓ ଦାର୍ଶନିକ ଜିଜ୍ଞାସା । ସଂଶିତ ପ୍ରବନ୍ଧଟି ଦର୍ଶନର ସଂଜ୍ଞା ଓ ସ୍ୱରୂପ ବିଷୟରେ ଆଲୋଚନା କରିବାକୁ ଉଦ୍ଦିଷ୍ଟ । ତେବେ ଦର୍ଶନର ପରିସରଟି ଏତେ ବ୍ୟାପକ ଓ ଦର୍ଶନର ବିଷୟ ଏତେ ଜଟିଳ ଯେ ତାହାର ଏକ ସାମଗ୍ରିକ ଚିତ୍ର ଦେବା ସମ୍ଭବ ନୁହେଁ; ପରନ୍ତୁ ଦର୍ଶନ ବିଷୟରେ କେତେକ ସାଧାରଣ ସୂଚନା ଦେବା ଏହି ଲେଖାଟିର ଲକ୍ଷ୍ୟ ।

ଏହା ଅନସ୍ୱୀକାର୍ଯ୍ୟ ଯେ ବୌଦ୍ଧିକ କୌତୂହଳତାରୁ ଜ୍ଞାନ, ବିଜ୍ଞାନର ବିକାଶ ହୋଇଛି । ସମାଜର ସାଧାରଣ ମଣିଷ ନିଜର ଜୀବନ ସଂଗ୍ରାମ ଭିତରେ ବ୍ୟସ୍ତ ରହିବା ବେଳେ କେହି କେହି ବ୍ୟକ୍ତି ଏକ ଅନୁସନ୍ଧିତ୍ସୁ ମନୋଭାବ ପୋଷଣ କରନ୍ତି । ବିଭିନ୍ନ ସଭ୍ୟତାରେ ଓ ବିଭିନ୍ନ କାଳଖଣ୍ଡରେ ପ୍ରକୃତିର ରହସ୍ୟ ବା ଜୀବନର ମହତ୍ତ୍ୱ ବିଷୟ ଜାଣିବାକୁ କେତେକ ବ୍ୟକ୍ତି ପ୍ରଶ୍ନ କରିଥାନ୍ତି, ବିଶାଳ ବିଶ୍ୱର କାରଣ ଜାଣିବାକୁ ପ୍ରୟାସ କରିଆସିଛନ୍ତି ଓ ଜୀବନର ଅର୍ଥପୂର୍ଣ୍ଣ ବ୍ୟାଖ୍ୟା ଦେବାକୁ ପ୍ରଯତ୍ନ କରିଛନ୍ତି । ଯେଉଁମାନେ ବିଭିନ୍ନ ପ୍ରସଙ୍ଗ ଉପରେ ମୌଳିକ ପ୍ରଶ୍ନର ଅବତାରଣା କରନ୍ତି ସାଧାରଣତଃ ସେମାନଙ୍କୁ ଦାର୍ଶନିକ କୁହାଯାଏ । ଏହା ପ୍ରାୟତଃ ସ୍ୱୀକୃତ ଯେ ଦାର୍ଶନିକମାନେ ଜ୍ଞାନଦୀପ୍ତ ବ୍ୟକ୍ତି ଓ ଚିନ୍ତା, ଚେତନାର ବିକାଶରେ ସେମାନେ ମୌଳିକ ଅବଦାନ ଦେଇଛନ୍ତି । ବିଜ୍ଞାନ ହେଉ ବା ଦର୍ଶନ ହେଉ ଏହାର ଉଦ୍ଭବ ହୁଏ ଅନୁସନ୍ଧିତ୍ସାରୁ । ଜିଜ୍ଞାସାବୋଧ, ଅନୁସନ୍ଧିତ୍ସୁ ମନୋଭାବ ଓ କୌତୂହଳତାରୁ ଯେଉଁ ଅନୁଭବ ଆସିଥାଏ ତାହାର ପରିଣାମ ହୁଏ ଏକ ବୌଦ୍ଧିକ ପ୍ରୟାସ । ଏହି ବୌଦ୍ଧିକ ପ୍ରୟାସ ଦେଇ ନୂତନ ବିଚାର ଓ ଭାବନାର ସୂତ୍ରପାତ ହୁଏ । ବୌଦ୍ଧିକ ସୃଷ୍ଟିଶୀଳତାରୁ ଦର୍ଶନ ଓ ବିଜ୍ଞାନର ବିଚାରମାନ ଚିନ୍ତାରାଜ୍ୟକୁ ଆସିଥିବା ମନେହୁଏ ।

ସାଧାରଣତଃ ଆମେ ଯେତେବେଳେ କୌଣସି ଏକ ବିଷୟରେ ଅଧ୍ୟୟନ କରୁ, ସେହି ବିଷୟଟି କେଉଁ ପ୍ରସଙ୍ଗକୁ ଅନୁଶୀଳନ କରିଥାଏ ତାହା ଜାଣିବାକୁ ପାଉ । ଜ୍ଞାନବିଜ୍ଞାନ କ୍ଷେତ୍ରରେ ଯେତେଯେତେ ବିଭାଗମାନ ରହିଛି, ପ୍ରତ୍ୟେକ ବିଭାଗର ବିଷୟବସ୍ତୁ ସୁନିର୍ଦ୍ଦିଷ୍ଟ । ଯିଏ ପଦାର୍ଥ ବିଜ୍ଞାନ ବିଷୟରେ ଅଧ୍ୟୟନ କରନ୍ତି ସିଏ ପଦାର୍ଥ ଓ ଶକ୍ତି ମଧ୍ୟରେ ଥିବା ମୌଳିକ ସମ୍ପର୍କକୁ ଅନୁଶୀଳନ କରନ୍ତି, ଜଣେ ପ୍ରାଣୀବିଜ୍ଞାନୀ ଜୀବିତ ପ୍ରାଣୀମାନଙ୍କର ଜନ୍ମ

ଓ ଜୀବନ-ପ୍ରକ୍ରିୟାକୁ ଅନୁଧ୍ୟାନ କରିଥାନ୍ତି, ଜଣେ ଜ୍ୟୋତିର୍ବିଜ୍ଞାନୀ ନଭମଣ୍ଡଳର ତାରକା, ଗ୍ରହ ସମ୍ପର୍କରେ ଅଧ୍ୟୟନ କରନ୍ତି ବା ଜଣେ ଐତିହାସିକ ମାନବ ସମାଜର ଅତୀତର ଘଟଣାବଳୀକୁ ବ୍ୟାଖ୍ୟା କରିଥାନ୍ତି । ସେହିପରି ରସାୟନ ବିଜ୍ଞାନ, ଚିକିତ୍ସା ବିଜ୍ଞାନ, ରାଜନୀତି ବିଜ୍ଞାନ, ନୃବିଜ୍ଞାନ ଇତ୍ୟାଦି ଅଧ୍ୟୟନ କ୍ଷେତ୍ରରେ ଏ ପ୍ରତ୍ୟେକ ବିଭାଗର ଆଲୋଚନାର ପରିସର ସୁନିର୍ଦ୍ଦିଷ୍ଟ । ଜଣେ ବିଶେଷ ବିଜ୍ଞାନୀଙ୍କୁ ତାଙ୍କ ଅଧ୍ୟୟନର ପରିସରଟି ବିଷୟରେ ପ୍ରଶ୍ନ କଲେ ସେ ଏହାର ଏକ ସୁବ୍ୟବସ୍ଥିତ କ୍ଷେତ୍ର ଓ ପରିସରର ସ୍ପଷ୍ଟ ଚିତ୍ର ଦିଅନ୍ତି । ତେବେ ଏହି ପ୍ରଶ୍ନ ଦର୍ଶନ ସ୍ତରରେ ଉଠିବା ବେଳେ ଏହାର ଏକ ନିର୍ଦ୍ଦିଷ୍ଟ ଉତ୍ତର ଦେବା ପ୍ରାୟତଃ ସମ୍ଭବପର ହୋଇ ନଥାଏ । ସୁତରାଂ ଦର୍ଶନ ପରିସରରେ ଏହି ପ୍ରସଙ୍ଗ ଆସେ-ଦର୍ଶନ କ'ଣ, ଏହା କେଉଁ ବିଷୟରେ ଅନୁଶୀଳନ କରିଥାଏ, ଜଣେ ଦାର୍ଶନିକ ଜ୍ଞାନର କେଉଁ କ୍ଷେତ୍ରକୁ ବ୍ୟାଖ୍ୟା କରନ୍ତି ? ଦର୍ଶନ ଇତିହାସରେ "ଦର୍ଶନ" ଶବ୍ଦଟି ଏକ ନିର୍ଦ୍ଦିଷ୍ଟ ଅର୍ଥ ବହନ କରେ ନାହିଁ । ବୌଦ୍ଧିକ ଅନୁଶୀଳନ କ୍ଷେତ୍ରରେ ଦର୍ଶନ ଏକ ପ୍ରାଚୀନ ବିଷୟ ହୋଇଥିବାରୁ ଏହାର ସଂଜ୍ଞା ଓ ସ୍ୱରୂପ ସମୟକୁ ସମୟ ପରିବର୍ତ୍ତିତ ହେବା ଦେଖାଯାଏ । ଏହି ପରିପ୍ରେକ୍ଷୀରେ ଦର୍ଶନର ସ୍ୱରୂପ ସମୟକୁ ସମୟ ବଦଳିବା ଯୋଗୁ ଏହାର ଏକ ସାର୍ବଜନୀନ ସଂଜ୍ଞା ଦେବା ସମ୍ଭବ ହୁଏ ନାହିଁ । ତେବେ କେଉଁ ପ୍ରସଙ୍ଗମାନ ଦର୍ଶନ ବିଷୟକ ଅନୁଶୀଳନ ନୁହେଁ ତାହାର ସାମାନ୍ୟ ସୂଚନା ଦେବା ପ୍ରାସଙ୍ଗିକ ମନେହୁଏ, ଯେଉଁଥିରୁ ଦର୍ଶନ ବିଷୟରେ ଅନୁମାନ କରାଯାଇପାରିବ ।

ଯେଉଁ ପ୍ରଶ୍ନମାନଙ୍କର ଉତ୍ତର ବୈଜ୍ଞାନିକ ପଦ୍ଧତି ଯଥା ପର୍ଯ୍ୟବେକ୍ଷଣ, ପରୀକ୍ଷଣଜନିତ ବସ୍ତୁନିଷ୍ଠ ପ୍ରକ୍ରିୟାରେ ଦେବା ସମ୍ଭବ, ସେଗୁଡ଼ିକ ଦାର୍ଶନିକ ପ୍ରଶ୍ନ ନୁହେଁ । ଶରୀରରେ ରକ୍ତ ସଂଚାଳନ କିପରି ହୁଏ, ଋତୁ ପରିବର୍ତ୍ତନର କାରଣ କ'ଣ, ପୃଥିବୀରେ କେତୋଟି ଭାଷା ରହିଛି, ମୌଳିକ ବସ୍ତୁମାନଙ୍କର ସଂଖ୍ୟା କେତେ, ପୃଥିବୀଠାରୁ ସୂର୍ଯ୍ୟର ଦୂରତ୍ୱ କେତେ ଇତ୍ୟାଦି ପ୍ରଶ୍ନମାନଙ୍କର ଉତ୍ତର ବୈଜ୍ଞାନିକ ପଦ୍ଧତି ଆଧାରରେ ପାଇବା ସମ୍ଭବ । ପ୍ରାକୃତିକ ବିଜ୍ଞାନ ବା ସମାଜ ବିଜ୍ଞାନ ବସ୍ତୁନିଷ୍ଠ ପ୍ରଣାଳୀ ପ୍ରୟୋଗ କରି ତାହାର ସିଦ୍ଧାନ୍ତ, ବ୍ୟାଖ୍ୟାନମାନ ଦେଇଥାଏ । ଯାହା ପର୍ଯ୍ୟବେକ୍ଷଣ, ପ୍ରତ୍ୟକ୍ଷ, ପରୀକ୍ଷଣ ଆଧାରରେ ନିରୂପିତ ହୁଏ ତାହା ବିଜ୍ଞାନର ପରିସରଭୁକ୍ତ । ବୈଜ୍ଞାନିକ ଜ୍ଞାନ ତଥ୍ୟଭିତ୍ତିକ, ସୁତରାଂ ତଥ୍ୟଭିତ୍ତିକ ଅନୁଶୀଳନ ଦର୍ଶନ ପରିସରରେ ଆସିନଥାଏ । ଯେଉଁସବୁ ଘଟଣା ଅତୀତରେ ଘଟିଯାଇଛି, ସେସବୁ ବି ଦାର୍ଶନିକ ପ୍ରସଙ୍ଗ ନୁହେଁ । ପାଞ୍ଚ ଲକ୍ଷ ବର୍ଷ ତଳେ ପୃଥିବୀରେ କେଉଁମାନେ ବାସ କରୁଥିଲେ, ଖ୍ରୀଷ୍ଟାବ୍ଦ ଆରମ୍ଭ ସମୟକୁ ପୃଥିବୀରେ କେତେ ରାଜ୍ୟ ଓ

ରାଜା ଥିଲେ, ନାଳନ୍ଦା ବିଶ୍ୱବିଦ୍ୟାଳୟର ପତନ କିପରି ଓ କାହିଁକି ହେଲା ଇତ୍ୟାଦି ପ୍ରଶ୍ନମାନ ଐତିହାସିକ ପ୍ରଶ୍ନ । ଅତୀତର ଘଟଣାମାନଙ୍କର ଅନୁଶୀଳନ ପାଇଁ ସେ ସମୟର ଐତିହାସିକ ଦଲିଲ, ଶିଳାଲେଖ, ଫସିଲ୍ ଇତ୍ୟାଦିକୁ ଅନୁଧାନ କରି ସେସବୁର ବ୍ୟାଖ୍ୟା କରାଯାଏ । ଏଠାରେ ବି କିଛି ବସ୍ତୁନିଷ୍ଠ ପ୍ରଣାଳୀ ପ୍ରୟୋଗ କରାଯାଏ ଓ ଏହା ଦାର୍ଶନିକ ପ୍ରସଙ୍ଗ ନୁହେଁ । ଗଣିତ ସମ୍ବନ୍ଧୀୟ ଅନୁଶୀଳନ ବି ଦର୍ଶନ ପରିସରରେ ଚର୍ଚ୍ଚା ହୁଏ ନାହିଁ । ସାଧାରଣତଃ ବୀଜଗଣିତ, କଳନଗଣିତ, ଜ୍ୟାମିତି, ତ୍ରିକୋଣମିତି ଇତ୍ୟାଦି କ୍ଷେତ୍ରରେ ଯେଉଁସବୁ ସିଦ୍ଧାନ୍ତ, ଉପପାଦ୍ୟ ଓ ପ୍ରଶ୍ନମାନଙ୍କର ଚର୍ଚ୍ଚା ହୁଏ ତାହା ବିଜ୍ଞାନ ନୁହେଁ କିମ୍ବା ଦର୍ଶନ ନୁହେଁ । ଗଣିତ ସମ୍ବନ୍ଧୀୟ ଜ୍ଞାନ ଅବରୋହ (deductive) ପ୍ରଣାଳୀ ପ୍ରୟୋଗ କରି କେତେକ ସ୍ୱୟଂସିଦ୍ଧ ସିଦ୍ଧାନ୍ତରୁ ନାନା ଉପପାଦ୍ୟ ନିଷ୍ପନ୍ନ କରିଥାଏ । ଗାଣିତିକ ଜ୍ଞାନ ତଥ୍ୟଭିତ୍ତିକ ପ୍ରସଙ୍ଗ ନୁହେଁ ତାହା ଆକାରଗତ ଓ ଅନୁଶୀଳନାତ୍ମକ (analytical) । ଯେଉଁ ଜ୍ଞାନ ତଥ୍ୟାଧାରିତ(ଯେପରି ବୈଜ୍ଞାନିକ ଜ୍ଞାନ) ତାହା ସତ୍ୟ ବା ମିଥ୍ୟା ହୋଇପାରେ, ଗାଣିତିକ ସିଦ୍ଧାନ୍ତ ମିଥ୍ୟା ହୋଇନପାରେ କାରଣ ଏହା କୌଣସି ତଥ୍ୟଭିତ୍ତିକ ଜ୍ଞାନ ଦିଏନାହିଁ, ବରଂ ଉଚ୍ଚତର ସିଦ୍ଧାନ୍ତରୁ ନିଷ୍ପନ୍ନ ହୋଇଥାଏ । ମୂଳ ସିଦ୍ଧାନ୍ତଟି ସତ୍ୟ ଥିଲେ ଏହା ନିଶ୍ଚିତ ଭାବେ ସତ୍ୟ ହୋଇଥାଏ । ଏହି ପରିପ୍ରେକ୍ଷୀରେ ଏହା କୁହାଯାଇପାରେ ଯେ ବିଜ୍ଞାନ, ଇତିହାସ, ଗଣିତର ପରିସରଠାରୁ ଦର୍ଶନର ପରିସର ପୃଥକ୍ । ଦର୍ଶନର ଇତିହାସ ପ୍ରାଚୀନ ଓ ପ୍ରସଙ୍ଗମାନ ମୌଳିକ ପ୍ରତ୍ୟୟମାନଙ୍କର ଅନୁଶୀଳନ ମାତ୍ର (analysis of fundamental concepts) ।

ବିଜ୍ଞାନର ଯୁଗ ଆସିବା ପୂର୍ବରୁ ଜାଗତିକ ବିଶ୍ୱ ସଂପର୍କରେ କେତେକ ପ୍ରଶ୍ନ କିଛି ବୁଦ୍ଧିମାନ୍ ବ୍ୟକ୍ତି ଆଲୋଚନାର ପରିସରକୁ ଆଣିଥିଲେ । ପୃଥିବୀର କିପରି ଉତ୍ପତ୍ତି ହୋଇଛି ଓ ଏହି ଉତ୍ପତ୍ତିର କ'ଣ ଉଦ୍ଦେଶ୍ୟ ରହିପାରେ ? ଯଦି କିଛି ମୂଳ ସତ୍ତା ଥାଏ, ତାହାର ସ୍ୱରୂପ କ'ଣ ? ମଣିଷ ଜନ୍ମ ହୁଏ କାହିଁକି ଓ ଜୀବନର ଅନ୍ତିମ ଲକ୍ଷ୍ୟ କ'ଣ ହୋଇପାରେ ? ଆମ ଚତୁଃପାର୍ଶ୍ୱ ପୃଥିବୀରେ ଆମେ ବିଭିନ୍ନ ପରିବର୍ତ୍ତନକୁ ଲକ୍ଷ୍ୟ କରୁ । ଏହି ପରିବର୍ତ୍ତନ ସ୍ୱୟଂ ସଂଘଟିତ ହେଉଛି ନା ଏହି ପରିବର୍ତ୍ତନ ପଶ୍ଚାତରେ କାହାର ନିର୍ଦ୍ଦେଶ ରହିଛି ? ପ୍ରକୃତିରେ ରହିଥିବା ଶୃଙ୍ଖଳା, ଏକରୂପତା ଏପରି ବ୍ୟବସ୍ଥିତ ଭାବେ କିପରି ସଂଘଟିତ ହେଉଛି ? ଆମ ଦୃଷ୍ଟିର ଅନ୍ତରାଳରେ କିଛି ଅଦୃଶ୍ୟମାନ ସତ୍ତା ରହିଛି କି ? ଯଦି ରହିଛି ସେହି ସତ୍ତାର ଆମ ଜୀବନ ସହ କ'ଣ ସମ୍ବନ୍ଧ ରହିଛି ? ଯଥାର୍ଥ ଜ୍ଞାନ କାହାକୁ କୁହାଯିବ ? ସତ୍ୟର ସ୍ୱରୂପ କ'ଣ ? ନୀତି, ନୈତିକତାର ଆଧାର କ'ଣ ? ନୀତିପୂର୍ଣ୍ଣ ଜୀବନ କାହାକୁ କୁହାଯିବ ?

ନୈତିକ ଆଦର୍ଶମାନ ସାର୍ବଜନୀନ କି ନୁହେଁ? ସୌନ୍ଦର୍ଯ୍ୟର ସ୍ୱରୂପ କିପରି ନିର୍ଣ୍ଣୟ କରାଯିବ? ସୌନ୍ଦର୍ଯ୍ୟ ବ୍ୟକ୍ତିକୈନ୍ଦ୍ରିକ ନା ବସ୍ତୁକୈନ୍ଦ୍ରିକ? ଏହିପରି ବହୁ ପ୍ରଶ୍ନ ଚିନ୍ତାଶୀଳ ବ୍ୟକ୍ତିମାନେ ବିଭିନ୍ନ ସମୟରେ ଆଲୋଚନାର ପରିସରକୁ ଆଣିଛନ୍ତି । ଏହିପରି ପ୍ରଶ୍ନମାନଙ୍କର ଅନୁଶୀଳନ୍ ବସ୍ତୁନିଷ୍ଠ ଭାବରେ ଦେବା ସମ୍ଭବ ନୁହେଁ । କୌଣସି ଘଟଣାର କାରଣକୁ ଅନୁଶୀଳନ କରିବା ଯେଉଁ ସ୍ତରର ପ୍ରଶ୍ନ, ସେହି ଘଟଣା ପଛାତରେ ରହିଥିବା କୌଣସି ଉଦ୍ଦେଶ୍ୟର ପରିକଳ୍ପନା କରିବା ସେହି ସ୍ତରର ପ୍ରଶ୍ନ ନୁହେଁ । ଜଣେ ଯୁବକ ଅବସ୍ଥାରେ ମୃତ୍ୟୁବରଣ କରିବା ଏକ ଘଟଣା । ଯେତେବେଳେ ଏହାର କାରଣ ଅନୁସନ୍ଧାନ କରାଗଲା, ସେତେବେଳେ ଦେଖାଗଲା ଯେ, ସେ ମୃତ୍ୟୁବରଣ କରିବାର କାରଣ ହେଉଛି ଏକ ସଡକ ଦୁର୍ଘଟଣା । ସେ ବାଇକ୍‌ରେ ଯିବାବେଳେ ଏକ ଟ୍ରକ୍ ତାଙ୍କୁ ଧକ୍କା ଦେଲା ଓ ସେହି ଦୁର୍ଘଟଣା ଯୋଗୁଁ ସେ ମୃତ୍ୟୁବରଣ କଲେ । ତେବେ ଜଣେ ଯଦି ପଚାରିବେ ସେ କିପରି ମଲେ ତାହା ତ ଜଣାଅଛି, କିନ୍ତୁ ପ୍ରଶ୍ନ ହେଉଛି ତାଙ୍କ ମୃତ୍ୟୁ ପଛାତରେ କ'ଣ ଉଦ୍ଦେଶ୍ୟ ରହିଛି? ଏହି ପ୍ରଶ୍ନଟିର କ'ଣ ଉତ୍ତର ଦିଆଯିବ? ଦାର୍ଶନିକମାନେ ଅନେକ ସମୟରେ ଏହିପରି ବିଭିନ୍ନ ତାତ୍ତ୍ୱିକ ପ୍ରଶ୍ନମାନଙ୍କର ଅବତାରଣା କରିଥାନ୍ତି । ଯେହେତୁ ତାତ୍ତ୍ୱିକ ପ୍ରଶ୍ନମାନଙ୍କର ଉତ୍ତର କୌଣସି ବସ୍ତୁନିଷ୍ଠ ତଥ୍ୟ ଉପରେ ନିର୍ଭର କରେ ନାହିଁ, ସେ କ୍ଷେତ୍ରରେ ନାନା କାଳ୍ପନିକ ବ୍ୟାଖ୍ୟାର ଆଶ୍ରୟ ନିଆଯାଏ । ସେହିପରି ପରିବର୍ତ୍ତନଶୀଳ ଜଗତ ପଛାତରେ ନିଶ୍ଚୟ କିଛି ସତ୍ତା ରହିଛି ଓ ସେହି ମୌଳିକ ସତ୍ତା ହେଉଛି ଅପରିବର୍ତ୍ତନୀୟ ଓ ଶାଶ୍ୱତ । ସେହି ସତ୍ତାର (Reality) ସ୍ୱରୂପ ବିଷୟରେ କଳ୍ପନା ପ୍ରକାଶ ପାଇଲା ଯେ ସେହି ସତ୍ତା ଏକକ ନୁହେଁ ତାହା ବହୁବିଧ । ପ୍ରତ୍ୟେକ ସତ୍ତା ବିଶାଳ ପ୍ରକୃତିର ଏକ କ୍ଷେତ୍ରକୁ ନିୟନ୍ତ୍ରଣ କରେ । ଏକ ସମୟରେ ବହୁଈଶ୍ୱରବାଦ (Polytheism) ଭାବନାକୁ ଗ୍ରହଣ କରାଯାଉଥିଲା । ସଭ୍ୟତାର ଗୋଟିଏ କାଳଖଣ୍ଡରେ ସୂର୍ଯ୍ୟ, ଚନ୍ଦ୍ର, ଆକାଶ, ବାୟୁ, ଅଗ୍ନି, ଜଳ, ବର୍ଷା ଇତ୍ୟାଦି ପ୍ରାକୃତିକ ସତ୍ତାମାନଙ୍କୁ ଦେବତା ମନେକରାଯାଇ ସେମାନଙ୍କୁ ଆରାଧନା କରାଯାଉଥିଲା । ଅନ୍ୟ କେହି ଦାର୍ଶନିକ ବହୁସତ୍ତାବାଦ ତତ୍ତ୍ୱକୁ ବିରୋଧ କରି ଦ୍ୱିସତ୍ତାବାଦ ସିଦ୍ଧାନ୍ତର ଅବତାରଣା କଲେ । ପ୍ରକୃତିକୁ ଗୋଟିଏ ପରମସତ୍ତା ଓ ଚେତନାକୁ ଅନ୍ୟ ଏକ ପରମସତ୍ତା ବୋଲି ସ୍ୱୀକାର କରାଗଲା । ଚିନ୍ତା ଚେତନାର ଅଭିବୃଦ୍ଧି ସହ ଏକସତ୍ତାବାଦ ତତ୍ତ୍ୱର ଭାବନା ସୃଷ୍ଟି ହେଲା । ଏହିପରି ବହୁ ପରସ୍ପରବିରୋଧୀ ତାତ୍ତ୍ୱିକ ସିଦ୍ଧାନ୍ତମାନ ଚିନ୍ତାରାଜ୍ୟରେ ବେଶ୍ ପ୍ରଭାବ ବିସ୍ତାର କରିଥିଲା । ପ୍ରତ୍ୟେକଟି ତାତ୍ତ୍ୱିକ ମତ କେତେକ ଯୁକ୍ତି ଆଧାରରେ ବିକଶିତ ହୋଇଥିଲା । ତତ୍ତ୍ୱମୀମାଂସା ଦର୍ଶନ ପରିସରରେ ଏକ ଗମ୍ଭୀର ବିଷୟ ଭାବେ ଦାର୍ଶନିକ ଚିନ୍ତନର ଅବିଚ୍ଛେଦ୍ୟ ଅଂଶ ଥିଲା ।

ସଭ୍ୟତାର କ୍ରମବିକାଶ ଧାରାରେ ବିଭିନ୍ନ ଭୂଖଣ୍ଡରେ କେତେକ ସାଂସ୍କୃତିକ ଆଲୋଡନ କେତେକ କ୍ରାନ୍ତିକାରୀ ବ୍ୟକ୍ତି ଅବତାରଣା କଲେ । ସେସବୁ ପରେ ବୃହତ୍ତର ଭୂଖଣ୍ଡକୁ ପ୍ରସାର ଲାଭ କରି "ଆନୁଷ୍ଠାନିକ ଧର୍ମ"ର ରୂପ ନେଲେ । ପ୍ରତ୍ୟେକ ଧର୍ମ ଏକ ଭୌଗୋଳିକ ଭୂଖଣ୍ଡର ଜନସମୂହ ଭିତରେ ଏକ ସାଂସ୍କୃତିକ ସଂହତି ସ୍ଥାପନ କରିବା ସହ ଜୀବନବୋଧର ଏକ ତାତ୍ତ୍ୱିକ ଓ ପାରଲୌକିକ ବ୍ୟାଖ୍ୟାନ ଦେଲା । ଅଧିକାଂଶ ଧର୍ମ ଏକେଶ୍ୱରବାଦର ବିଚାର ଦେବା ସହ ଏକ ଅବିନାଶୀ ଆତ୍ମାର ପରିକଳ୍ପନା ଦେଲେ । ଈଶ୍ୱର ଏକ, ସେ ପରମ ସ୍ରଷ୍ଟା, ସର୍ବଜ୍ଞ, ସର୍ବଶକ୍ତିମାନ ଓ ପରମ କାରୁଣିକ ବୋଲି ବିଚାର ଧାର୍ମିକ ବିଶ୍ୱାସ ସ୍ତରରେ ପ୍ରକାଶ ପାଇଲା । ଈଶ୍ୱର ଏକ ବ୍ୟକ୍ତି ଓ ତାଙ୍କର ବ୍ୟକ୍ତିସତ୍ତା ରହିଛି ବୋଲି କେତେକ ବିଶ୍ୱାସ କଲେ । ଯାହା ଏକ ଭୂଖଣ୍ଡରେ ଏକ ସାଂସ୍କୃତିକ ଜାଗରଣ ଭାବେ ଉଦ୍‌ଭବ ହୋଇଥିଲା ତାହା କାଳକ୍ରମେ ସେହି ଭୂଖଣ୍ଡର ସଭ୍ୟତା, ସଂସ୍କୃତି, ଜୀବନବୋଧ, ନୈତିକ ଦୃଷ୍ଟି, ତାତ୍ତ୍ୱିକ ଭାବନା, ଦାର୍ଶନିକ ବିଚାରବୋଧ ଓ ପରମ୍ପରାର ଅଭିନ୍ନ ଅଙ୍ଗ ହୋଇଗଲା ।

ମଧ୍ୟଯୁଗରେ ଧର୍ମର ଗଭୀର ପ୍ରଭାବ ରହିଥିଲା ଓ ରାଜନୈତିକ ବ୍ୟବସ୍ଥା ରାଜତନ୍ତ୍ରଦ୍ୱାରା ପରିଚାଳିତ ହେଉଥିଲା । ସେହି ପରିବେଶରେ ଧର୍ମର ତାତ୍ତ୍ୱିକ ବିଶ୍ୱାସମାନଙ୍କୁ ଯୁକ୍ତିଶୀଳ ଆଧାର ଦେବାକୁ ଦାର୍ଶନିକମାନେ ପ୍ରୟାସ କଲେ । ଈଶ୍ୱରଙ୍କ ଅସ୍ତିତ୍ୱ, ଆତ୍ମାର ଅମରତ୍ୱ, ମୃତ୍ୟୁପରେ ପାରଲୌକିକ ଅସ୍ତିତ୍ୱ, ନୀତି ନୈତିକତା ଯେ ଈଶ୍ୱରୀୟ ଅନୁଜ୍ଞା, ସବୁ କିଛି ପୂର୍ବନିର୍ଦ୍ଦିଷ୍ଟ ଓ ଈଶ୍ୱରୀୟ ବ୍ୟବସ୍ଥା ଏହିସବୁ ଭାବନା ହିଁ ଦାର୍ଶନିକ ଅନୁଶୀଳନର ମୁଖ୍ୟ ପ୍ରସଙ୍ଗ ହେଲା । ଦାର୍ଶନିକ ଜିଜ୍ଞାସା ଏହି ସବୁ ବିଶ୍ୱାସ ସକଳକୁ କିଛି ଯୁକ୍ତିଶୀଳ ଆଧାର ଦେବାକୁ ପ୍ରୟାସ କଲା । ଦାର୍ଶନିକ ଅବବୋଧ ଓ ଧାର୍ମିକ ବିଶ୍ୱାସ ପରସ୍ପରର ପରିପୂରକ ହେଲେ । ଧର୍ମର ପ୍ରଭାବ ଓ ନିୟନ୍ତ୍ରଣ ପୂର୍ବରୁ ଯାହାସବୁ ଦାର୍ଶନିକ ଅନୁଶୀଳନ ଯେଉଁ ବୌଦ୍ଧିକ ପରିମଣ୍ଡଳ ସୃଷ୍ଟି କରିଥିଲା ମଧ୍ୟଯୁଗୀୟ ଧର୍ମକୈନ୍ଦ୍ରିକ ବିଶ୍ୱାସରେ ସେସବୁ ସଙ୍କୁଚିତ ହୋଇଗଲା । ତେବେ ଧର୍ମର ପ୍ରଭାବରେ ବିଭିନ୍ନ ଭୂଖଣ୍ଡରେ ସାମାଜିକ ଜୀବନ କିଛି ବ୍ୟବସ୍ଥିତ ହେବା ସହ ଜଗତ ଓ ଜୀବନର ନାନା ଗୂଢ଼ ଘଟଣାବଳୀକୁ ଏକ କାଳ୍ପନିକ ଅବବୋଧରେ ଅର୍ଥପୂର୍ଣ୍ଣ କରାଗଲା ।

ତେବେ ୟୁରୋପରେ ଯେଉଁ ନବଜାଗରଣ ବା ରିନାସାଁର ଯୁଗ ଆସିଲା ତାହା ସଭ୍ୟତାର ଇତିହାସରେ ଥିଲା ସବୁଠାରୁ କ୍ରାନ୍ତିକାରୀ ଘଟଣା । ସପ୍ତଦଶ ଶତାବ୍ଦୀରୁ ଆଧୁନିକ ବିଜ୍ଞାନ ଓ ବୈଜ୍ଞାନିକ ଅନୁଶୀଳନ ବୌଦ୍ଧିକ ଜଗତରେ ଏକ ବୈପ୍ଲବିକ ପରିବର୍ତ୍ତନର

ସୂତ୍ରପାତ କଲା । ଧର୍ମର ବହୁ ବିଶ୍ୱାସ ଅସତ୍ୟ, ନିରାଧାର ଓ କେବଳ କଳ୍ପନା ବୋଲି ବିଜ୍ଞାନଦ୍ୱାରା ପ୍ରମାଣିତ ହେଲା । ଆମ ପୃଥିବୀକୁ କେଉଁ ଈଶ୍ୱର କେତୋଟି ଦିନରେ ସୃଷ୍ଟି କରିନାହାନ୍ତି, ଶହ ଶହ କୋଟି ବର୍ଷ ହେଲା ପୃଥିବୀର ଉତ୍ପତ୍ତି ହୋଇଛି । ସେହିପରି କୋଟି କୋଟି ବର୍ଷର ଜୈବିକ ବିବର୍ତ୍ତନ ମଧ୍ୟ ଦେଇ ପ୍ରାଣୀଜଗତ ଓ ମନୁଷ୍ୟ ସୃଷ୍ଟି ହୋଇଛି । ସ୍ୱର୍ଗ, ନରକ, ବିଚାରଦିବସ, ମୁକ୍ତି, ମୋକ୍ଷ ବିଶ୍ୱାସମାନ କେବଳ କାହାଣୀ । ବିଜ୍ଞାନର ଯୁଗ ଆସିବା ପରେ ଧର୍ମମାନଙ୍କର ଯେଉଁ ତୁଳନାତ୍ମକ ଅନୁଶୀଳନ ବିଶ୍ୱବିଦ୍ୟାଳୟ ସ୍ତରରେ କରାଗଲା, ସେଥିରୁ ଧର୍ମମାନଙ୍କର ତାତ୍ତ୍ୱିକ ଭାବନାମାନ କିପରି ପରସ୍ପର ସହ ଅମେଳ ଓ ପରସ୍ପରବିରୋଧୀ ତାହା ଜଣାପଡ଼ିଲା । ଧର୍ମଗ୍ରନ୍ଥର ବାଣୀ ଯେ ଶାଶ୍ୱତ, ଈଶ୍ୱରଦତ୍ତ ଚିରନ୍ତନ ଜ୍ଞାନ ଏହା ବିରୋଧରେ ଚେତନା ସୃଷ୍ଟି ହେଲା ।

ନବଜାଗରଣ ଯୁଗରେ ଦାର୍ଶନିକ ଜିଜ୍ଞାସା କ୍ଷେତ୍ରରେ ମଧ୍ୟ ଏକ ବୈଚାରିକ କ୍ରାନ୍ତିର ସୂତ୍ରପାତ ହେଲା । ଧର୍ମର ପ୍ରଭାବରୁ ଦର୍ଶନ ମୁକ୍ତ ହୋଇ ସକଳ ଅଯୌକ୍ତିକ, ଅପ୍ରାମାଣିକ ଓ ଅପରୀକ୍ଷିତ ମତମାନଙ୍କର ଦୂରୀକରଣ ପାଇଁ ଦର୍ଶନରେ ପ୍ରୟାସ ହେଲା । ବହୁ କପୋଳକଳ୍ପିତ ଓ ଗାଲୁଗଳ୍ପକୁ ସ୍ୱୀକାର ନକରି ଯୁକ୍ତିର କଷଟିରେ ସେସବୁକୁ ବିଶ୍ଳେଷଣ କରିବା ଦର୍ଶନର ଆଭିମୁଖ୍ୟ ହେଲା । ଏହି ସମୟରେ ଦୁଇଟି ଦାର୍ଶନିକ ଧାରା ଯଥା ଅନୁଭବବାଦ ଓ ତର୍କବୁଦ୍ଧିବାଦ ଚିନ୍ତା ରାଜ୍ୟରେ ଗଭୀର ଆଲୋଡ଼ନ ସୃଷ୍ଟି କଲେ । ମାନବ ଜ୍ଞାନର ଆଧାର କ'ଣ, ଜ୍ଞାନର ସଂଜ୍ଞା, ସ୍ୱରୂପ ଓ ସୀମା ନେଇ ବହୁ ଚର୍ଚ୍ଚା ଏହି ଦାର୍ଶନିକମାନେ କରିବାକୁ ଲାଗିଲେ । ଅନୁଭବବାଦ ସକଳ ଜ୍ଞାନ, ଭାବନା ଓ ପ୍ରତ୍ୟୟମାନ ଯେ ଆମର ଅନୁଭୂତିରୁ ଲବ୍ଧ ଏହା ପ୍ରତିଷ୍ଠା କରିବାକୁ ଲାଗିଲା । ଯେଉଁ ଜ୍ଞାନର ମୂଳଭିତ୍ତି ଅନୁଭବଜନ୍ୟ ନୁହଁ ତାହା କେବଳ କଳ୍ପନା । ମାନବୀୟ ବୋଧଶକ୍ତିର ସୀମା ଓ ସାମର୍ଥ୍ୟକୁ ବିଶ୍ଳେଷଣ କରି ଅନୁଭବବାଦ (empiricism) ଜ୍ଞାନମୀମାଂସାର ଯେଉଁ ଦିଗନ୍ତର ସୂତ୍ରପାତ କଲା, ତାହା ଦର୍ଶନ ଇତିହାସରେ ଓ ବୌଦ୍ଧିକ ଚିନ୍ତାରାଜ୍ୟରେ ଏକ ବୈପ୍ଲବିକ ଆଲୋଡନ ଥିଲା । ତର୍କବୁଦ୍ଧିବାଦ (rationalism) କେଉଁ ପଦ୍ଧତିକୁ ଆଶ୍ରୟ କଲେ ଆମେ ନିର୍ଭୁଲ, ନିଶ୍ଚିତ ଓ ଅସଂଦିଗ୍ଧ ଜ୍ଞାନ ଲାଭ କରିପାରିବା ତାହାର ବିଶ୍ଳେଷଣ ଏକ ଭିନ୍ନ ମାନଦଣ୍ଡରୁ କରିବାକୁ ଲାଗିଲା । ଆମର ସକଳ ଭାବନା, ଚିନ୍ତା ଓ ପ୍ରତ୍ୟୟମାନଙ୍କୁ ଯୁକ୍ତିର କଷଟିରେ ପରୀକ୍ଷାକରି ଯୁକ୍ତିର ସାର୍ବଭୌମିକତା ପ୍ରତିଷ୍ଠା କରିବା ତର୍କବୁଦ୍ଧିବାଦୀ ପରମ୍ପରାର ଆଭିମୁଖ୍ୟ ହେଲା । ତେବେ ତର୍କବୁଦ୍ଧିବାଦୀ ଦାର୍ଶନିକମାନେ ଭିନ୍ନ ଭାବରେ ତାତ୍ତ୍ୱିକ ସିଦ୍ଧାନ୍ତମାନ ଅବତାରଣା କଲେ । ଅନୁଭବବାଦ ଓ ତର୍କବୁଦ୍ଧିବାଦ ଗୋଟିଏ ଗୋଟିଏ ବଳିଷ୍ଠ ଦାର୍ଶନିକ

ଆଲୋଡନ ଥିଲେ ମଧ୍ୟ ସେଥିରୁ ସମୀକ୍ଷଣାତ୍ମକ ଦାର୍ଶନିକ ଧାରାଟିଏ ସୃଷ୍ଟି ହୋଇ ତାହା ଉଭୟର ଯୁକ୍ତିଶୀଳ ଆଧାର ଭିତରେ ଏକ ସମନ୍ୱୟ ସୃଷ୍ଟି କଲା ।

ଦର୍ଶନ ପରିସରରେ ଯେଉଁସବୁ ପ୍ରଶ୍ନ, ପ୍ରସଙ୍ଗ ଓ ବିଷୟର ଆଲୋଚନା ହୋଇଥାଏ ସେସବୁକୁ କାଳକ୍ରମେ ଚାରୋଟି ମୁଖ୍ୟ ପର୍ଯ୍ୟାୟରେ ବିଭାଜିତ କରାଗଲା । ସେହି ଚାରୋଟି କ୍ଷେତ୍ର ହେଲା-ତତ୍ତ୍ୱମୀମାଂସା, ଜ୍ଞାନମୀମାଂସା, ମୂଲ୍ୟମୀମାଂସା ଓ ତର୍କଶାସ୍ତ୍ର । ତତ୍ତ୍ୱମୀମାଂସା କ୍ଷେତ୍ରରେ ସତ୍ତାର ସ୍ୱରୂପ ବିଷୟରେ ବିଭିନ୍ନ ଦାର୍ଶନିକ ନାନା ସିଦ୍ଧାନ୍ତର ଅବତାରଣା କରିଥିବା ଦେଖାଯାଏ । ବସ୍ତୁବାଦ, ପ୍ରତ୍ୟୟବାଦ, ଦ୍ୱୈତବାଦ, ଅଦ୍ୱୈତବାଦ, ବାସ୍ତବବାଦୀ ପ୍ରତ୍ୟୟବାଦ, ଶୁଦ୍ଧ ପ୍ରତ୍ୟୟସତ୍ତାବାଦ, ସଂବୃତ୍ତିବାଦ ପରି ସିଦ୍ଧାନ୍ତମାନ ସତ୍ତାର ସ୍ଥିତି ଓ ସ୍ୱରୂପ ନେଇ ବିଭିନ୍ନ ସିଦ୍ଧାନ୍ତର ପରିକଳ୍ପନା କରିଛନ୍ତି । ଜ୍ଞାନମୀମାଂସା କ୍ଷେତ୍ରରେ ଜ୍ଞାନର ସ୍ୱରୂପ, ଉତ୍ସ, ସୀମା, ବୈଧତା ଇତ୍ୟାଦି ପ୍ରସଙ୍ଗକୁ ନେଇ ବହୁଳ ଚର୍ଚ୍ଚା କରାଯାଇଛି । ଜ୍ଞାନମୀମାଂସା କ୍ଷେତ୍ରରେ ସେହିପରି ନାନା ସିଦ୍ଧାନ୍ତର ଅବତାରଣା ହୋଇଛି । ମୂଲ୍ୟମୀମାଂସା କ୍ଷେତ୍ରରେ ସୌନ୍ଦର୍ଯ୍ୟଶାସ୍ତ୍ର (aesthetics) ଓ ନୀତିଶାସ୍ତ୍ର (ethics) ବିଷୟରେ ବିସ୍ତୃତ ଚର୍ଚ୍ଚା ହେବା ଦେଖାଯାଏ । ମୂଲ୍ୟର ଅବଧାରଣା କ'ଣ, କେଉଁ ବସ୍ତୁର ମୂଲ୍ୟ ରହିଛି, ମୂଲ୍ୟ ବସ୍ତୁନିଷ୍ଠ ନା ବ୍ୟକ୍ତିନିଷ୍ଠ ପ୍ରସଙ୍ଗ ଉପରେ ବିଭିନ୍ନ ଚର୍ଚ୍ଚା ମଧ୍ୟ ଦର୍ଶନ ପରିସରରେ ହୋଇଛି । ସେହିପରି ନୈତିକ ମୂଲ୍ୟର ସଂଜ୍ଞା, ସ୍ୱରୂପ, ମାନକ (standard), ସାର୍ବିକତା ଓ ବ୍ୟତିକ୍ରମ ଉପରେ ବହୁ ଆଲୋଚନା ଓ ବିଶ୍ଳେଷଣ ଦର୍ଶନ କ୍ଷେତ୍ରରେ ହୋଇଛି । ଏହା ସହିତ ଜ୍ଞାନର ଯେକୌଣସି ବିଭାଗରେ ପ୍ରୟୋଗ ହେଉଥିବା ପ୍ରଣାଳୀ ଓ ତାହାର ସ୍ୱରୂପ ବିଷୟରେ ଦାର୍ଶନିକମାନେ ବିସ୍ତୃତ ଆଲୋଚନା କରିଛନ୍ତି । ଚିନ୍ତା କରିବାର ମୌଳିକ ନିୟମ, ଅନୁମାନର ପ୍ରକାରଭେଦ, ବୈଧ ଯୁକ୍ତିର ଲକ୍ଷଣ ଓ ନିୟମ ଇତ୍ୟାଦି ତର୍କଶାସ୍ତ୍ରର ପରିସରରେ ବିଶ୍ଳେଷଣ କରାଯାଇଥାଏ । ବୈଜ୍ଞାନିକ ଜ୍ଞାନ ଓ ବିଶ୍ଳେଷଣ କ୍ଷେତ୍ରରେ ପ୍ରୟୋଗ ହେଉଥିବା ଆରୋହ ପଦ୍ଧତି ଓ ଏହାର ସୈଦ୍ଧାନ୍ତିକ ଭିତ୍ତି ତର୍କୀୟ ମାନଦଣ୍ଡରେ ହିଁ ନିରୂପିତ ହୋଇଥାଏ । ସେହିପରି ଯେତେସବୁ ଗାଣିତିକ ଜ୍ଞାନ ରହିଛି, ସେଥିରେ ପ୍ରୟୋଗ ହେଉଥିବା ଅବରୋହ ପଦ୍ଧତିର ସ୍ୱରୂପ ଓ ଲକ୍ଷଣ ପ୍ରସଙ୍ଗରେ ତର୍କଶାସ୍ତ୍ରରେ ଚର୍ଚ୍ଚା ହୋଇଥାଏ । ଜ୍ଞାନବିଜ୍ଞାନର ଯେତେସବୁ ବିଭାଗ ରହିଛି(ଯେପରି ଗଣିତ, ସମାଜ ବିଜ୍ଞାନ, ପ୍ରାକୃତିକ ବିଜ୍ଞାନ) ପ୍ରତ୍ୟେକ ବିଭାଗରେ ଏକ ପ୍ରଣାଳୀର ପ୍ରୟୋଗ କରାଯାଏ, ମୌଳିକ ପ୍ରତ୍ୟୟ (concept)ମାନଙ୍କର ସଂଜ୍ଞା ଦିଆଯାଏ, ତଥ୍ୟକୁ ଆଧାରକରି ଅନୁମାନ ଆଧାରରେ ସିଦ୍ଧାନ୍ତ ନିର୍ମାଣ କରାଯାଏ ଓ ସ୍ଥଳବିଶେଷରେ ପ୍ରକଳ୍ପ ଗ୍ରହଣ କରାଯାଏ ବା ସିଦ୍ଧାନ୍ତମାନଙ୍କର

ବ୍ୟାଖ୍ୟାନ ଦିଆଯାଏ । ଦର୍ଶନରେ ବିଭିନ୍ନ ପ୍ରଣାଳୀର ସ୍ୱରୂପ ଓ ଲକ୍ଷଣକୁ ବିଶ୍ଳେଷଣ କରାଯାଏ, ସଂଜ୍ଞାର ସଂଜ୍ଞା କ'ଣ ନିରୂପଣ କରାଯାଏ, ବୈଧ ଅନୁମାନର ସ୍ୱରୂପ ଏବଂ ନିୟମର ବିଶ୍ଳେଷଣ କରାଯାଏ ଓ ପ୍ରକଳ୍ପ (hypothesis) ବିଷୟରେ ସ୍ପଷ୍ଟ ଧାରଣା ଦିଆଯାଏ । ଦର୍ଶନ ସାଂପ୍ରତିକ ବିଚାରବୋଧରେ ବସ୍ତୁନିଷ୍ଠ ଜ୍ଞାନର ଅବତାରଣା କରେ ନାହିଁ, ତେବେ ଜ୍ଞାନର ଭିତ୍ତିଭୂମିଟି ନିର୍ମାଣ କରେ ଯାହାକୁ ଆଧାରକରି ଜ୍ଞାନର ଦିଗନ୍ତ ବିସ୍ତାରିତ ହୋଇପାରିବ ।

ବିଂଶ ଶତାବ୍ଦୀ ଆରମ୍ଭରୁ ଦର୍ଶନ ଇତିହାସରେ ଏକ ନୂଆ ଯୁଗର ଆରମ୍ଭ ହେଲା, ଯାହାକୁ କୁହାଯାଉଛି ବିଶ୍ଳେଷଣାତ୍ମକ ଦର୍ଶନ । ଦାର୍ଶନିକ ସମସ୍ୟାମାନଙ୍କର ସ୍ୱରୂପ ବିଷୟରେ ଯେଉଁ ଅନୁଶୀଳନ ହେଲା, ସେଥିରୁ ତାତ୍ତ୍ୱିକ ସିଦ୍ଧାନ୍ତମାନ କିପରି ଭାଷାଗତ ଜଟିଳତା ଓ ପ୍ରତ୍ୟୟଗତ ଅସ୍ପଷ୍ଟତାରୁ ଉଦ୍ଭବ ହେଉଛି ତାହାର ଏକ ସ୍ପଷ୍ଟ ଚିତ୍ର ପ୍ରକାଶ ପାଇଲା । ପରସ୍ପର ବିରୋଧୀ ତାତ୍ତ୍ୱିକ ସିଦ୍ଧାନ୍ତମାନଙ୍କର ତୁଳନାତ୍ମକ ବ୍ୟାଖ୍ୟାନଦ୍ୱାରା ସେସବୁ କିପରି ତାର୍କିକ ଜଟିଳତା ଓ ଭ୍ରମାତ୍ମକ ବିଶ୍ଳେଷଣର ପରିଣାମ ତାହା ଧୀରେ ଧୀରେ ସ୍ପଷ୍ଟ ହେବାକୁ ଲାଗିଲା । ତତ୍ତ୍ୱମୀମାଂସୀୟ ଜ୍ଞାନ ଯେ ଅପାଂକ୍ତେୟ ଓ ଅବୈଧ ଯୁକ୍ତିଶୀଳତା ଉପରେ ଆଧାରିତ ତାହା ଚିନ୍ତାରାଜ୍ୟରେ ଏକ ଆଲୋଡନ ଥିଲା । ତାତ୍ତ୍ୱିକ ସିଦ୍ଧାନ୍ତମାନ ଜଗତ ବିଷୟରେ କୌଣସି ଜ୍ଞାନ ପ୍ରଦାନ କରନ୍ତି ନାହିଁ, ବରଂ ଜଗତକୁ ଗୋଟିଏ ଢାଞ୍ଚାରେ ଅବବୋଧ କରିବାକୁ କେତେକ ଯୁକ୍ତିର ଆଶ୍ରୟ ନିଅନ୍ତି । ପ୍ରତ୍ୟେକ ଧର୍ମ ଯେପରି ସ୍ୱର୍ଗ, ମୁକ୍ତି, ଆତ୍ମା, ଅମରତ୍ୱ, ଜୀବନର ଅନ୍ତିମ ଲକ୍ଷ୍ୟ ଇତ୍ୟାଦି ବିଷୟରେ ନିଜର କାଳ୍ପନିକ ବିଚାର-ମଣ୍ଡଳ ସୃଷ୍ଟି କରିଛି, କେତେକ ଦାର୍ଶନିକ ସେମାନଙ୍କ ତାତ୍ତ୍ୱିକ ବିଶ୍ଳେଷଣ ଜରିଆରେ ସତ୍ତାକୁ ତଥା ଜଗତକୁ ଏକ ଏକ ନିର୍ଦ୍ଦିଷ୍ଟ ପ୍ରତ୍ୟୟାତ୍ମକ ଢାଞ୍ଚାରେ ବୁଝିବାକୁ ଭାବନାର ଅବତାରଣା କରିଛନ୍ତି । ତତ୍ତ୍ୱମୀମାଂସୀୟ ସିଦ୍ଧାନ୍ତମାନ କିପରି ଭ୍ରମାତ୍ମକ, ଦୁର୍ବୋଧ୍ୟ ଓ ପ୍ରତ୍ୟୟଗତ ଅସ୍ପଷ୍ଟତାରୁ ଉଦ୍ଭବ ତାହା ବିଶ୍ଳେଷଣାତ୍ମକ ଦର୍ଶନ ସୂଚାଇଲା । ତତ୍ତ୍ୱମୀମାଂସା ଯାହା ଦର୍ଶନର ପ୍ରଧାନ ବିଷୟ ଥିଲା ତାହା ବିଂଶଶତାବ୍ଦୀୟ ଦାର୍ଶନିକ ଅନୁଶୀଳନରେ ନିଜସ୍ୱ ସକଳ ମହତ୍ତ୍ୱ ହରାଇଲା । ଦାର୍ଶନିକମାନେ ବୌଦ୍ଧିକ ଜଟିଳତା ପରିବର୍ତ୍ତେ ପ୍ରତ୍ୟୟଗତ ସ୍ପଷ୍ଟତା ଓ ତର୍କଶୀଳ ବିଚାରଦୃଷ୍ଟି ପ୍ରଦାନ କରିବାକୁ ନିଜର ଆଭିମୁଖ୍ୟ କଲେ । ଅତୀତରେ ଦାର୍ଶନିକମାନେ ଏକ ଜଗତଦୃଷ୍ଟିର ଅବତାରଣା କରି ତାହାରି ଆଧାରରେ ଜୀବନକୁ ଓ ମନୁଷ୍ୟ ସମାଜକୁ ଅବବୋଧ କରୁଥିଲେ । ଆଧୁନିକ ଯୁଗରେ ବୌଦ୍ଧିକ ସ୍ପଷ୍ଟତା ଓ ନୈତିକ ଉତ୍ତରଣକୁ ଅଧିକ ପ୍ରାଧାନ୍ୟ ଦେଇ ଦାର୍ଶନିକମାନେ ଜୀବନବୋଧର ଏକ ନୂତନ ପରିଭାଷା ସୃଷ୍ଟି

କରିଛନ୍ତି । ସତ୍ୟ-ଜ୍ଞାନ ପ୍ରତି ଅନୁରାଗ ଓ ସମ୍ବେଦନଶୀଳ ଅନୁଭବକୁ ଜୀବନର ଶ୍ରେୟ ଭାବରେ ଗ୍ରହଣ କରୁଛନ୍ତି । ଜୀବନର ଅର୍ଥପୂର୍ଣ୍ଣ ବ୍ୟାଖ୍ୟାନ କ୍ଷେତ୍ରରେ ଦାର୍ଶନିକମାନେ ସାଧାରଣତଃ ପଥପ୍ରଦର୍ଶକ । ସାଂପ୍ରତିକ ଜୀବନଧାରାରେ ବିଚାରଶୀଳ ଦୃଷ୍ଟି (rational vision) ଓ ମାନବବାଦୀ ଆଭିମୁଖ୍ୟକୁ (humanistic ideal) ଦର୍ଶନ କ୍ଷେତ୍ରରେ ଅଧିକ ପ୍ରାଧାନ୍ୟ ଦିଆଯାଉଛି ।

ଇତିହାସରୁ ଏହା ଏକ ଉପଲବ୍ଧି ଯେ ଯେଉଁ ସମାଜରେ ବୌଦ୍ଧିକ ସ୍ୱାଧୀନତା ରହିଥାଏ ଓ ଭିନ୍ନ ମତ ପ୍ରତି ସମ୍ମାନବୋଧ ଓ ସହନଶୀଳତା ପ୍ରକାଶ ପାଏ, ସେଠାରେ ଦାର୍ଶନିକ ସୃଜନଶୀଳତାର ବିକାଶ ହୋଇଥାଏ । ପରନ୍ତୁ ଧାର୍ମିକ ମତାନ୍ଧତା ଓ ବୌଦ୍ଧିକ ଅସହିଷ୍ଣୁତାର ବାୟୁମଣ୍ଡଳରେ ସାହିତ୍ୟ, ଦର୍ଶନ ଓ କଳାତ୍ମକ ସୃଜନଶୀଳତା ବାଧାପ୍ରାପ୍ତ ହୋଇଥାଏ । ପୁନଶ୍ଚ ଇତିହାସରୁ ଏହା ମଧ୍ୟ ଜଣାଯାଏ ଯେ ଏକ ଭ୍ରମାତ୍ମକ ଜୀବନଦର୍ଶନ ଓ ଭେଦଭାବମୂଳକ ସାମାଜିକ ବ୍ୟବସ୍ଥା ସମାଜକୁ ରୁଗ୍ଣ କରିଥାଏ । ଜୀବନ, ସମାଜ ଓ ବୃହତ୍ତର ମାନବଜାତି ପ୍ରତି ଏକ ନକାରାତ୍ମକ ମନୋଭାବ ସାମାଜିକ କ୍ଷୟଶୀଳତା ପାଇଁ ପଥ ପରିଷ୍କାର କରିଥାଏ । ଯେଉଁ ସାଂସ୍କୃତିକ ଦୃଶ୍ୟପଟରେ ଅହେତୁକ ଭାବନା, ଅବୈଜ୍ଞାନିକ ଦୃଷ୍ଟିଭଙ୍ଗୀ, ପାରଲୌକିକ ଜୀବନଦୃଷ୍ଟି ଓ ଭେଦଭାବମୂଳକ ସାମାଜିକ ପରିବେଶର ପ୍ରାବଲ୍ୟ ରୁହେ, ସେଠାରେ ଜୀବନର ସାମୂହିକ ମୂଲ୍ୟ ନ୍ୟୂନ ହୋଇଥାଏ । ସମାଜର ବୌଦ୍ଧିକ ଅବକ୍ଷୟ ଓ ନୈତିକ ସଙ୍କଟ ଦୂର କରିବାରେ ପ୍ରଜ୍ଞାଶୀଳ ଦାର୍ଶନିକମାନେ ହିଁ ବୈଚାରିକ କ୍ରାନ୍ତି ଜରିଆରେ ପରିବର୍ତ୍ତନ ଆଣିଥାନ୍ତି । ତେବେ ଗୋଟିଏ ବିଡମ୍ବନାର ବିଷୟ ହେଉଛି କେତେକ ଦାର୍ଶନିକ ନିଜ ସମସାମୟିକ ସମାଜରେ ଗୃହୀତ ହୋଇପାରନ୍ତି ନାହିଁ ଓ ଏପରିକି ନିନ୍ଦିତ ହୁଅନ୍ତି । କିନ୍ତୁ ସେମାନେ ହିଁ ଭବିଷ୍ୟତ ପାଇଁ ଆଲୋକବର୍ତ୍ତିକା ହୁଅନ୍ତି ଓ ସାମାଜିକ ପରିବର୍ତ୍ତନ କ୍ଷେତ୍ରରେ ଏକ ଐତିହାସିକ ଭୂମିକା ନିର୍ବାହ କରନ୍ତି । ନିଜ ସମସାମୟିକ ସମାଜରେ ଗୃହୀତ ନହେବାର କାରଣ ହେଉଛି ଦାର୍ଶନିକମାନେ ନିଜ ସମୟର ଆଦର୍ଶ ଓ ଭାବନାଠାରୁ ବହୁ ଆଗରେ ଥାଆନ୍ତି । ବହୁ ସମାଜ ସଂସ୍କାରକ, ହେତୁବାଦୀ ଚିନ୍ତକ ଓ ଦାର୍ଶନିକ ସାଧାରଣତଃ ନିଜ ସମୟଠାରୁ ବହୁ ଆଗକୁ ଚିନ୍ତା କରିଥାନ୍ତି ।

ସଭ୍ୟତାର ଅଗ୍ରଗତି ଯେପରି ଏକ ପ୍ରବାହ, ମଣିଷର ଚିନ୍ତାଚେତନା, ଜୀବନବୋଧ ମଧ୍ୟ ସେହିପରି ଏକ ପ୍ରଗତିଶୀଳ ଧାରା । ସେହି ଧାରାକୁ ଯେଉଁ ସୃଜନଶୀଳ ବ୍ୟକ୍ତିମାନେ ଗତିଶୀଳ କରାଇଛନ୍ତି ସେମାନଙ୍କ ମଧ୍ୟରେ ଦାର୍ଶନିକମାନେ ଏକ ସ୍ୱତନ୍ତ୍ର ସ୍ଥାନର ଅଧିକାରୀ । ସମାଜରେ ବା ବୃହତ୍ତର ପରିବେଶରେ କୌଣସି କ୍ରାନ୍ତିକାରୀ ପରିବର୍ତ୍ତନ

ଆସିବା ପଶ୍ଚାତରେ କେତେକ ବୈଚାରିକ ଭାବନାର ପ୍ରଭାବ ରହିଥାଏ । ସେହି ନୂତନ ଭାବନା ସାଧାରଣତଃ ଦାର୍ଶନିକମାନେ ହିଁ ନିଜର ବିଚାର ମାଧ୍ୟମରେ ଦେଇଥାନ୍ତି । ସାମାଜିକ/ ରାଜନୈତିକ ବ୍ୟବସ୍ଥାରେ କିଛି କ୍ରାନ୍ତିକାରୀ ପରିବର୍ତ୍ତନ, ଜୀବନର ଉତ୍କର୍ଷ ସାଧନ; ବୌଦ୍ଧିକ ସ୍ୱଚ୍ଛତା ଓ ଜୀବନ ପ୍ରବାହରେ ଥିବା ସଙ୍କଟର ଦୂରୀକରଣ ପାଇଁ ଦାର୍ଶନିକମାନେ ଗମ୍ଭୀର ଚିନ୍ତା ପ୍ରକଟ କରିଆସିଛନ୍ତି । ଜ୍ଞାନବିଜ୍ଞାନର ବିଶ୍ଳେଷଣଜନିତ ବୌଦ୍ଧିକ ସ୍ୱଚ୍ଛତା ଓ ମାନବିକ ଉତ୍କର୍ଷ ସାଧନକୁ ପ୍ରାୟତଃ ଦର୍ଶନରେ ସବୁଠାରୁ ଅଧିକ ପ୍ରାଧାନ୍ୟ ଦିଆଯାଉଛି । ମାନବଜାତିର ବୌଦ୍ଧିକ ଉତ୍ତରଣ ଓ ନୈତିକ ଉତ୍କର୍ଷ ସାଧନକୁ ଦାର୍ଶନିକ ଅନୁଶୀଳନ ସ୍ତରରେ ଲକ୍ଷ୍ୟ ଭାବରେ ନିଆଯାଉଛି । ବୌଦ୍ଧିକ ଅନୁଶୀଳନ ସହ ନୈତିକ ଓ ମାନବିକ ଜୀବନବୋଧର ବାର୍ତ୍ତାକୁ ବ୍ୟାପକ କରିବା ପାଇଁ ସାଂପ୍ରତିକ ସମୟର ଦାର୍ଶନିକମାନେ ପ୍ରୟାସ କରୁଛନ୍ତି ।



# ଶିକ୍ଷା, ଲୋକଶିକ୍ଷା ଓ ନାଗରିକ ସମାଜ

ଶିକ୍ଷା ସମାଜର ପ୍ରତିବିମ୍ବ । ଗୁଣାତ୍ମକ ଶିକ୍ଷା ହିଁ ସାମାଜିକ ବିକାଶର ମାନଦଣ୍ଡ । ଏହି ମାନଦଣ୍ଡରେ ଶିକ୍ଷା ସଂପର୍କରେ ଏକ ମତ ରହିଛି ଯେ ଯେଉଁ ଦେଶ ବା ସମାଜର ଲୋକମାନେ ଯେତେ ଶିକ୍ଷିତ, ସେହି ଦେଶ ସେତିକି ଉନ୍ନତ ଓ ପ୍ରଗତିଶୀଳ । ଏହି ମତରୁ ଏକ ସିଦ୍ଧାନ୍ତ ନିଷ୍ପନ୍ନ ହୁଏ ଯେ ଯେଉଁ ଦେଶର ଜନଗଣଙ୍କ ମଧ୍ୟରେ ଅଶିକ୍ଷା ଓ ନିରକ୍ଷରତା ଯେତେ ଅଧିକ ସେହି ଦେଶ ସେତିକି ଅନୁନ୍ନତ ଓ ଅନଗ୍ରସର । ଅବଶ୍ୟ ଶିକ୍ଷା ଓ ସାକ୍ଷରତା ଭିତରେ ଯେପରି ପାର୍ଥକ୍ୟ ରହିଛି ସେହିପରି ଅଶିକ୍ଷା ଏବଂ ନିରକ୍ଷରତା ମଧ୍ୟରେ ମଧ୍ୟ ତଫାତ୍ ରହିଛି । ସାଧାରଣ ଭାବେ କହିଲେ ଜଣେ ବ୍ୟକ୍ତି ବା ନାଗରିକ ଯଦି କୌଣସି ଲେଖାପଢା ଜାଣନ୍ତି ନାହିଁ, ଏପରିକି ନିଜର ନାମଟି ମଧ୍ୟ ଲେଖିବାକୁ ସମର୍ଥ ନୁହନ୍ତି, ତେବେ ସେ ଜଣେ ନିରକ୍ଷର ବ୍ୟକ୍ତି । ପ୍ରତ୍ୟେକ ନିରକ୍ଷର ବ୍ୟକ୍ତି ଅଶିକ୍ଷିତ, କିନ୍ତୁ ପ୍ରତ୍ୟେକ ସାକ୍ଷର ବ୍ୟକ୍ତି ଯେ ଶିକ୍ଷିତ ଏହା କୁହାଯାଇପାରିବ ନାହିଁ । ଜଣେ ଅଶିକ୍ଷିତ ବ୍ୟକ୍ତି ସାକ୍ଷର ହୋଇପାରନ୍ତି କିମ୍ବା ନିରକ୍ଷର ହୋଇପାରନ୍ତି । ସାକ୍ଷର ହେବା ବା ନିରକ୍ଷର ରହିବା ଏକ ଆକସ୍ମିକ ଘଟଣା । ସମାଜରେ କିଛି ବ୍ୟକ୍ତି ସାକ୍ଷର ହେବା କିମ୍ବା ଶିକ୍ଷିତ ହେବା ଓ ଅନ୍ୟ କେତେକ ବ୍ୟକ୍ତି ନିରକ୍ଷର ରହିବା ଏକ ଆକସ୍ମିକ ଘଟଣା ଏହି ଦୃଷ୍ଟିରୁ ଯେ ଏହା ପଛରେ ବିଭିନ୍ନ ପାରିବାରିକ, ଅର୍ଥନୈତିକ, ସାମାଜିକ ଓ ଭୌଗୋଳିକ କାରଣ ରହିଛି । ନାନା ପାରିବାରିକ ତଥା ଅର୍ଥନୈତିକ କାରଣରୁ କେତେ ପିଲା ପଢିବାର ସୁଯୋଗ ପାଉନାହାନ୍ତି, କିମ୍ବା ବିଦ୍ୟାଳୟ ଜୀବନରୁ ପାଠ ଛାଡିବାକୁ ବାଧ୍ୟ ହେଉଛନ୍ତି । ତେବେ ସାମାଜିକ ଓ ସାଂସ୍କୃତିକ କାରଣରୁ ଅନେକ ପିଲା କଲେଜ ସ୍ତରକୁ ଯାଇପାରୁ ନାହାନ୍ତି । ସରକାରୀ ପରିସଂଖ୍ୟାନରୁ ଜଣାଯାଏ ଯେ ଓଡିଶାରେ ତଥା ଭାରତରେ ଜନସଂଖ୍ୟାର ପ୍ରାୟ ଏକତୃତୀୟାଂଶ ଲୋକ ନିରକ୍ଷର ରହିଛନ୍ତି । ଓଡିଶାର କେତେକ ଆଦିବାସୀବହୁଳ ଜିଲ୍ଲାମାନଙ୍କରେ ନିରକ୍ଷର ଲୋକଙ୍କ ସଂଖ୍ୟା ପ୍ରାୟ ଅଧାଅଧି । ସେହିପରି ପନ୍ଦର ବର୍ଷ ପୂର୍ବରୁ ବିଦ୍ୟାଳୟ ଛାଡି ପାଠରେ ଡୋରି ବାନ୍ଧୁଥିବା ବା ଡ୍ରପ୍ ଆଉଟ୍ ସଂଖ୍ୟା ମଧ୍ୟ କିଛି କମ୍ ନୁହେଁ । ଅବଶ୍ୟ ଅଣସାକ୍ଷର ବା ଅଶିକ୍ଷିତ ବ୍ୟକ୍ତିମାନେ କୌଣସି ପାରିବାରିକ ବୃତ୍ତି

ବା କାରିଗରୀ କାର୍ଯ୍ୟରେ କିଛିଟା ପଟୁତା ହାସଲ କରିବାର ଅନେକ ଦୃଷ୍ଟାନ୍ତ ଦେଖିବାକୁ ମିଳେ । ଏପରିକି ବିଭିନ୍ନ ବୃତ୍ତିରେ ସ୍ୱାବଲମ୍ବୀ ହୋଇଥିବା ବହୁ ଅଶିକ୍ଷିତ ମଣିଷ ଉଚ୍ଚ ନୈତିକ ଗୁଣର ଅଧିକାରୀ ହେବା ସମ୍ଭବ । ସାଧୁତା, ସତ୍ୟବାଦିତା, ନିଷ୍ପାପରତା, ସାମାଜିକ ଶୃଙ୍ଖଳାବୋଧ ଇତ୍ୟାଦି କ୍ଷେତ୍ରରେ ବହୁ ସାଧାରଣ ଅଶିକ୍ଷିତ ବ୍ୟକ୍ତି ବେଶ୍ ସଚେତନତା ପ୍ରକାଶ କରନ୍ତି । ସୁତରାଂ ମାନବିକ ମୂଲ୍ୟବୋଧ କହିଲେ ସାଧାରଣତଃ ଯାହା ବୁଝାଯାଏ ତାହା ସାକ୍ଷରତା, ନିରକ୍ଷରତା ନିର୍ବିଶେଷରେ ବ୍ୟକ୍ତି ସ୍ୱଭାବରେ ରହିପାରେ । ସମାଜରେ ବହୁ ଉଚ୍ଚଶିକ୍ଷିତ ବ୍ୟକ୍ତି ଯେଉଁମାନେ ବିଶ୍ୱବିଦ୍ୟାଳୟରୁ ଡିଗ୍ରୀ ଲାଭ କରିଛନ୍ତି, ସେମାନେ ଯେ ନୀତିମାନ୍ ଏହା କୁହାଯାଇପାରିବ ନାହିଁ । ସରକାରୀ ଉଚ୍ଚ ପଦପଦବୀରେ ଥିବା, ରାଜନୀତି କରୁଥିବା, ବଡ ବଡ ବ୍ୟବସାୟରେ ସଂପୃକ୍ତ ରହିଥିବା ବା ଆର୍ଥିକ ଦୃଷ୍ଟିରୁ ଅତ୍ୟନ୍ତ ସ୍ୱଚ୍ଛଳ ଥିବା ବ୍ୟକ୍ତିମାନେ ଯେ ନୀତିମାନ୍, ସାଧୁ ଏହା ମଧ୍ୟ ନୁହେଁ । ଶିକ୍ଷିତ ହେବା ଓ ନୀତିମାନ୍ ହେବା ଦୁଇଟି ପୃଥକ୍ ପ୍ରଶ୍ନ । ନୀତିମାନ୍ ହେବା, ଅସାଧୁ ପନ୍ଥା ପରିହାର କରିବା, ସମାଜ ପ୍ରତି ଉତ୍ତରଦାୟୀ ରହିବା, ମାନବିକ ମୂଲ୍ୟବୋଧକୁ ସମ୍ମାନ କରିବା ମହତ୍ତର ଜୀବନବୋଧର ପରିଚାୟକ । ସାକ୍ଷରତା-ନିରକ୍ଷରତା ନିର୍ବିଶେଷରେ ଏହା କେତେକ ବ୍ୟକ୍ତିଙ୍କ ଆଚରଣରେ ଦେଖାଯାଏ । ଜଣେ ସୁଯୋଗ ପାଇ ସାକ୍ଷର ବା ଶିକ୍ଷିତ ହୋଇପାରିଛନ୍ତି, ଅନ୍ୟ ଜଣେ ସେହି ସୁଯୋଗ ଅଭାବରୁ ଶିକ୍ଷା ଲାଭରୁ ବଞ୍ଚିତ ରହିଛନ୍ତି, ତେବେ ମଣିଷ ଭାବରେ ସେ ବେଶ୍ ଭଲ ହୋଇପାରନ୍ତି । ଅନେକ ଅପାଠୁଆ ବ୍ୟକ୍ତି ବେଶ୍ ଭଲ ମଣିଷ ହୋଇଥିବା ବେଳେ କିଛି ଉଚ୍ଚଶିକ୍ଷିତ ବ୍ୟକ୍ତି ଧୂର୍ତ୍ତ ହୋଇଥିବା ଏକ ସାଧାରଣ ଅନୁଭବ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ତେବେ ନିରକ୍ଷରତା ସାଂପ୍ରତିକ ଜୀବନପ୍ରବାହରେ ଏକ କଳଙ୍କ ବୋଲି ଗୃହୀତ ହେବାରେ ଲାଗିଛି । ସୁତରାଂ ପ୍ରତ୍ୟେକ ରାଷ୍ଟ୍ର ତାର ଜନମଙ୍ଗଳକାରୀ ଆଭିମୁଖ୍ୟରେ ନିରକ୍ଷରତା ଦୂର କରିବା ପାଇଁ ପ୍ରୟାସ କରିଆସୁଛି । ଯେଉଁ ରାଷ୍ଟ୍ରସମୂହ ବିକଶିତ ସେ ଦେଶମାନଙ୍କରେ କୌଣସି ନାଗରିକ ନିରକ୍ଷର ରହିବା କଳ୍ପନାତୀତ । ପିଲାମାନଙ୍କୁ ଶିକ୍ଷା ଦେବା ପିତାମାତାଙ୍କର ଯେପରି ଏକ ନୈତିକ କର୍ତ୍ତବ୍ୟ, ରାଷ୍ଟ୍ରର ମଧ୍ୟ ସେପରି ଏକ ଦାୟିତ୍ୱ । କେବଳ ଆମ ଦେଶ ପରି ବିକାଶଶୀଳ ଦେଶମାନଙ୍କରେ ନିରକ୍ଷରତା ଏକ ଗମ୍ଭୀର ପ୍ରଶ୍ନ । ନିରକ୍ଷରତା ଦୂରୀକରଣ ପାଇଁ ତଥା ବିଦ୍ୟାଳୟ ଡ୍ରପ୍-ଆଉଟ୍‌କୁ ରୋକିବା ପାଇଁ ବହୁ ଜନହିତକାରୀ ଯୋଜନା ଦେଶରେ କାର୍ଯ୍ୟକାରୀ ହେଉଛି । ତଥାପି ସମସ୍ୟାଟିର ସମାଧାନ ହୋଇପାରୁ ନାହିଁ । ଆମ ଦେଶର ସମ୍ବିଧାନ ପ୍ରଣୟନ ବେଳେ ଏହି ଜାତୀୟ

ସମସ୍ୟାଟି ଉପରେ ବେଶ୍ ଚର୍ଚ୍ଚା ହୋଇଥିବା ମନେହୁଏ । ରାଷ୍ଟ୍ର ସବୁ ପିଲାଙ୍କୁ ଚଉଦ ବର୍ଷ ପର୍ଯ୍ୟନ୍ତ ଅବୈତନିକ ଶିକ୍ଷା ଦେବାର ଏକ ପବିତ୍ର ପ୍ରତିଶ୍ରୁତି ସମ୍ବିଧାନରେ ମଧ୍ୟ ଦିଆଯାଇଛି । ଏପରି କିଛି ସକାରାତ୍ମକ ପଦକ୍ଷେପ ସତ୍ତ୍ୱେ ସବୁ ନାଗରିକ ସାକ୍ଷର ହୋଇନପାରିବା ଆମ ଅନୁନ୍ନତ ସ୍ଥିତିର ପ୍ରମାଣ ଦିଏ ।

ପ୍ରତ୍ୟେକ ନାଗରିକଙ୍କୁ ଶିକ୍ଷିତ କରିବା ପଶ୍ଚାତରେ ଏକ ଜାତୀୟ ଲକ୍ଷ୍ୟ ନିହିତ ଥାଏ । ରାଷ୍ଟ୍ରର ବିକାଶ ଓ ଜୀବନର ଗୁଣାତ୍ମକ ମାନ ଉନ୍ନତ କରିବାକୁ ନାଗରିକମାନଙ୍କର ସଚେତନତା ଅବଶ୍ୟମ୍ଭାବୀ ମନେହୁଏ । ରାଷ୍ଟ୍ରର ବିକାଶ ଓ ସାମାଜିକ ଉନ୍ନତି ବିଧାନରେ ପ୍ରତ୍ୟେକ ନାଗରିକ କିପରି ଏକ ସକ୍ରିୟ ଭୂମିକା ନେଇପାରିବ ସେହି ବିଚାର ପୃଷ୍ଠଭୂମିରେ ଶିକ୍ଷାକୁ ଏତେ ପ୍ରାଧାନ୍ୟ ଦିଆଯାଏ । ଜଣେ ବ୍ୟକ୍ତି ନିଜ ଜୀବନର ସକଳ ଆବଶ୍ୟକତା ପୂରଣ ପାଇଁ ଓ ସାମାଜିକ ବିକାଶ ପ୍ରକ୍ରିୟାରେ ନିଜକୁ ଭାଗୀଦାରୀ କରିବାପାଇଁ ତାର ଶିକ୍ଷା ଆବଶ୍ୟକ । ଅନ୍ୟ ଭାବରେ କହିଲେ ବ୍ୟକ୍ତି ଭିତରେ ସୃଜନଶୀଳ ସାମର୍ଥ୍ୟର ଉପଯୁକ୍ତ ବିକାଶ ଓ ସାମାଜିକ କର୍ତ୍ତବ୍ୟବୋଧ ପାଇଁ ସଚେତନତା ଶିକ୍ଷାର ଏକ ମୌଳିକ ଆଭିମୁଖ୍ୟ । ଏକ ସୁସ୍ଥ ସମାଜ ପାଇଁ ସମାଜ-ଶିକ୍ଷା ଓ ନାଗରିକ ସଚେତନତା ଯେ ଏକ ବଡ ଆବଶ୍ୟକତା ଏହା ମନେହୁଏ । ଏଠାରେ ଶିକ୍ଷା ଏକ ବୃହତ୍ତର ଓ ବ୍ୟାପକତର ଅର୍ଥରେ ବ୍ୟବହୃତ ହୁଏ ଯାହା ଆନୁଷ୍ଠାନିକ ଶିକ୍ଷାଠାରୁ ପୃଥକ୍ । ବ୍ୟକ୍ତି ଭିତରେ ସୃଜନାତ୍ମକ ସାମର୍ଥ୍ୟର ବିକାଶ, ମାନବୀୟ ମୂଲ୍ୟବୋଧ ନେଇ ସଚେତନତା ଓ ନାଗରିକ କର୍ତ୍ତବ୍ୟବୋଧ ନେଇ ସକାରାତ୍ମକ ଜୀବନଦୃଷ୍ଟି ଶିକ୍ଷାର ବ୍ୟାପକତର ଆଭିମୁଖ୍ୟ ଅଟେ । ଏହି ଦୃଷ୍ଟିରୁ ଶିକ୍ଷା କେବଳ ଆନୁଷ୍ଠାନିକ ଶିକ୍ଷାର ପରିସରରେ ସୀମିତ ନୁହେଁ ।

ଶିକ୍ଷା-ଦର୍ଶନରେ ବ୍ୟକ୍ତିର ଶିକ୍ଷା ସଂକ୍ରାନ୍ତରେ ଏକ ସିଦ୍ଧାନ୍ତ ରହିଛି । ଗୋଟିଏ ମତ ହେଉଛି ପିଲାର ମନ ହେଉଛି ଏକ ଧଳା କାଗଜ ସଦୃଶ । ପିଲାଟିଏ ନିଜ ପରିବାରରୁ, ସାମାଜିକ ପରିବେଷ୍ଟନୀରୁ ଓ ଶିକ୍ଷାନୁଷ୍ଠାନରୁ ଯାହା ସେହି ଆଦ୍ୟ ଅବସ୍ଥାରେ ଜାଣିବାକୁ ପାଏ ତାହା ତାର ମାନସପଟରେ ଲିପିବଦ୍ଧ ହୋଇଯାଏ । ତାର ବ୍ୟକ୍ତିତ୍ୱର ବିକାଶରେ ତାର ଅନୁଭବ ଓ ସଂପର୍କର ପ୍ରତିକ୍ରିୟା ମୁଖ୍ୟ ଭୂମିକା ନେଇଥାଏ । ସୁତରାଂ ସାମାଜିକ ଜୀବନର ଘଟଣାପ୍ରବାହ ପିଲାଟି ମନରେ ଯେଉଁ ଅଲିଭା ଦାଗ ସୃଷ୍ଟି କରେ ତାହା ତା'ର ଜୀବନପ୍ରବାହକୁ ଗଭୀର ଭାବେ ପ୍ରଭାବିତ କରିଥାଏ । ଏଣୁ କେତେକ ମନସ୍ତତ୍ତ୍ୱବିତ୍‌ଙ୍କ ମତରେ ସାମାଜିକ ଜୀବନର ସୃଜନଶୀଳ ମୂଲ୍ୟବୋଧଗୁଡିକୁ ପ୍ରାଥମିକ ସ୍ତରରୁ ଯଦି ପିଲାଙ୍କୁ ଶିକ୍ଷା ଦିଆଯାଇପାରିବ, ତେବେ ଏକ ସୁସଂହତ ସମାଜ ଉଦ୍‌ଭବ ହୋଇପାରିବ । ଏହି

ବିଚାର ପଶ୍ଚାତରେ ଏହି ଭାବନା ନିହିତ ରହିଛି ଯେ ଏକ ଉପଯୁକ୍ତ ଶୈକ୍ଷିକ ବାତାବରଣ ଏକ ଉନ୍ନତ ଓ ସୁସ୍ଥ ସମାଜର ବିକାଶ ପାଇଁ ଅବଶ୍ୟମ୍ଭାବୀ ।

ଏହି ପରିପ୍ରେକ୍ଷୀରେ ଆନୁଷ୍ଠାନିକ ଶିକ୍ଷା, ଶିକ୍ଷାର ସବୁକିଛି ନୁହେଁ । ବରଂ ଏପରି ମଧ୍ୟ ସମ୍ଭବ ଯେ ଉଚ୍ଚ ଡିଗ୍ରୀ ପ୍ରାପ୍ତ ସାକ୍ଷର ବ୍ୟକ୍ତିମାନେ ମାନବିକ ମୂଲ୍ୟବୋଧ, ସାଧୁତା ପାଳନ କ୍ଷେତ୍ରରେ କୌଣସି ବିଶେଷ ସଂପୃକ୍ତି ବ୍ୟକ୍ତ କରନ୍ତି ନାହିଁ । ଯେକୌଣସି ପନ୍ଥାରେ ସ୍ୱାର୍ଥ ସାଧନ କରିବା, ଅନ୍ୟ ପ୍ରତି ବିଦ୍ୱେଷପୂର୍ଣ୍ଣ ମନୋଭାବ ପୋଷଣ କରିବା ଓ ବିଚାରଶୀଳତାକୁ କୌଣସି ମହତ୍ତ୍ୱ ନଦେବା କେତେକ ଅତି ଉଚ୍ଚଶିକ୍ଷିତ ବ୍ୟକ୍ତିମାନଙ୍କ ପାଖରେ ଦେଖାଯାଏ । ଆନୁଷ୍ଠାନିକ ଶିକ୍ଷା ହୁଏତ ଗୋଟିଏ କର୍ମସଂସ୍ଥାନ ପାଇବାରେ ବ୍ୟକ୍ତିକୁ ସାହାଯ୍ୟ କରିପାରେ କିନ୍ତୁ ବ୍ୟକ୍ତିର ଚରିତ୍ର, ଜୀବନଦୃଷ୍ଟିକୁ ଯେପରି ଗଢିବା କଥା ତାହା କରିପାରୁନାହିଁ । ବିଚାରସଂପନ୍ନ ହେବା, ମାନବିକ ମୂଲ୍ୟବୋଧକୁ ପ୍ରାଧାନ୍ୟ ଦେବା ଓ ସମାଜର ସୁସ୍ଥ ବିକାଶ ପ୍ରକ୍ରିୟାରେ ନିଜକୁ ସାମିଲ କରିବା କ୍ଷେତ୍ରରେ ଯଦି ଆନୁଷ୍ଠାନିକ ଶିକ୍ଷା ବ୍ୟକ୍ତିକୁ ପ୍ରଭାବିତ କରିପାରୁ ନାହିଁ ତେବେ ଶିକ୍ଷା ବ୍ୟବସ୍ଥାରେ ଯେ ବଡ ସଂସ୍କାର ଆବଶ୍ୟକ ଏହା ମନେହୁଏ ।

ଆମ ଦେଶର ଜୀବନପ୍ରବାହରେ ପ୍ରଚଳିତ ଶିକ୍ଷା ବ୍ୟବସ୍ଥା ଯେ କୌଣସି ମହତ୍ତର ମୂଲ୍ୟବୋଧର ପ୍ରସାରରେ ବିଶେଷ ବଡ ଭୂମିକା ନେଇପାରୁ ନାହିଁ ଏହା ଏକ ବଡ ଅନୁଭବ ଅଟେ । ଶିକ୍ଷାନୁଷ୍ଠାନମାନ ଯେତିକି ବେସରକାରୀ ଉଦ୍ୟମରେ ଚାଲୁଛି ସେଠାରେ ଏହା ଏକ ବ୍ୟାବସାୟିକ ଆଭିମୁଖ୍ୟ ନେଉଛି । ଶିକ୍ଷା ଓ ବିଶେଷକରି ଆନୁଷ୍ଠାନିକ ବୈଷୟିକ ଉଚ୍ଚଶିକ୍ଷା କ୍ରମବର୍ଦ୍ଧିଷ୍ଣୁ ଭାବେ ଘରୋଇ ପରିଚାଳନା କ୍ଷେତ୍ରକୁ ଚାଲିଯାଉଛି । ହୁଏତ କେହି କେହି ମହତ୍ତ୍ୱାକାଂକ୍ଷୀ ବ୍ୟକ୍ତି ଘରୋଇ ଉଦ୍ୟମରେ ଶିକ୍ଷାନୁଷ୍ଠାନମାନ ପ୍ରତିଷ୍ଠାକରି ଉଚ୍ଚମାନର ବୈଷୟିକ ଶିକ୍ଷା ଦେବାକୁ ପ୍ରୟାସ କରୁଛନ୍ତି, ତେବେ କାଳକ୍ରମେ ଶିକ୍ଷା ସହ ଚାକିରି ଓ ଉଚ୍ଚ ବେତନ ହିଁ ଆଭିମୁଖ୍ୟ ହୋଇଯାଉଛି । ଅପରପକ୍ଷରେ ବିଭିନ୍ନ ସ୍ତରରେ ସରକାରୀ ବିଦ୍ୟାଳୟ, ମହାବିଦ୍ୟାଳୟମାନ ସମାଜର ତଳେ ପଡିଥିବା ପିଲାମାନଙ୍କ ପାଇଁ ଶେଷ ଆଶ୍ରୟସ୍ଥଳ ହେଉଛି । ସରକାରୀ ଶିକ୍ଷାନୁଷ୍ଠାନମାନଙ୍କ ପ୍ରତି ସମାଜର ଶିକ୍ଷିତ, ସଚେତନ ବର୍ଗର ଆଗ୍ରହ କମିବାରେ ଲାଗିଛି । ଆମ ଦେଶର ପ୍ରଚଳିତ ଶିକ୍ଷାବ୍ୟବସ୍ଥାରୁ ସାମାଜିକ ବିଭାଜନ ଓ ଆର୍ଥିକ ବୈଷମ୍ୟ ଯେ ପରିଲକ୍ଷିତ ହେଉଛି ତାହା ନୁହେଁ, ଏହା ଭବିଷ୍ୟତ ପାଇଁ ଏକ ଭେଦଭାବମୂଳକ ପରିସ୍ଥିତି ସୃଷ୍ଟି କରିବାକୁ ଯାଉଛି । ଏହା ସହିତ ବୈଜ୍ଞାନିକ ମନୋଭବ, ନୀତିବୋଧ, ବୃହତ୍ତର ସମାଜ ପ୍ରତି ଅଙ୍ଗୀକାରବଦ୍ଧତା ଶିକ୍ଷାର ମୌଳିକ

ଲକ୍ଷ୍ୟ ଭିତରେ ପ୍ରତିଫଳିତ ହେଉନାହିଁ । ଶିକ୍ଷା ବ୍ୟବସ୍ଥାଟି କଳୁଷିତ ହେଉଥିବା ମନେହେଉଛି । ଏହିଦୃଷ୍ଟିରୁ ଏହାର ସୁଦୂରପ୍ରସାରୀ ପରିଣାମ ସମାଜ ପାଇଁ ଯେ ମଙ୍ଗଳକର ନୁହେଁ ଏହା ମନେହୁଏ ।

ସାଂପ୍ରତିକ ବିଶ୍ୱରେ ପ୍ରତ୍ୟେକ ସଭ୍ୟ ରାଷ୍ଟ୍ର ଶିକ୍ଷା ଉପରେ ପ୍ରାଧାନ୍ୟ ଦେଉଛନ୍ତି । ଏହା ଏକ ଅବିବାଦୀୟ ଘଟଣା ଯେ ସଭ୍ୟତା ଯେତିକି ଅଗ୍ରସର ହେଉଛି, ଶିକ୍ଷା ଉପରେ ଗୁରୁତ୍ୱ ସେତିକି ବୃଦ୍ଧି ପାଉଛି । କାରଣ ସଭ୍ୟ ହେବାର ଏକ ତାତ୍ପର୍ଯ୍ୟ ହେଉଛି ଶିକ୍ଷିତ ହେବା । ଶିକ୍ଷା ଓ ସଭ୍ୟତା ଭିତରେ ଏକ ନିବିଡ ସଂପର୍କ ରହିବା ମନେହୁଏ । ସଂପ୍ରତି ଶିକ୍ଷା ସମାଜର ସଂଭ୍ରାନ୍ତବର୍ଗର ଏକାଧିପତ୍ୟ ଅଧିକାରର ବିଷୟ ନୁହେଁ । ଅତୀତରେ ନାନା କାରଣରୁ ଏହା ସମାଜର କେବଳ ସଂଭ୍ରାନ୍ତବର୍ଗର ଅଧିକାରର ବିଷୟ ଥିଲା । ଧୀରେ ଧୀରେ ଦୃଷ୍ଟିଭଙ୍ଗୀରେ ପରିବର୍ତ୍ତନ ସହ ଶିକ୍ଷା ପ୍ରତ୍ୟେକ ବ୍ୟକ୍ତିର ଅଧିକାରର ବିଷୟ ହେଲା । ବିଶେଷକରି ଜନମଙ୍ଗଳକାରୀ ରାଷ୍ଟ୍ରୀୟ ଚେତନାର ବିକାଶ ଓ ପ୍ରତ୍ୟେକ ବ୍ୟକ୍ତି ମର୍ଯ୍ୟାଦାର ସହ ଜୀବନ ବଞ୍ଚିବାର ଅଧିକାରରୁ ଏହି ଭାବନା ଆସିଲା ଯେ ପ୍ରତ୍ୟେକ ବ୍ୟକ୍ତି ଶିକ୍ଷାଲାଭ କରିବା ଆବଶ୍ୟକ । ଶିକ୍ଷା ଧୀରେ ଧୀରେ ସାର୍ବଜନୀନ ହେବାକୁ ଲାଗିଲା । ବିଶ୍ୱର ପ୍ରତ୍ୟେକ ଜନମଙ୍ଗଳକାରୀ ରାଷ୍ଟ୍ର ଏକ ଶିକ୍ଷଣ ସମାଜର ବିକାଶ ଦିଗରେ ସହାୟକ ହେଲା । ଫଳତଃ ଶିକ୍ଷାର ସଂଜ୍ଞା, ପ୍ରୟୋଗ, ମାନବୃଦ୍ଧି ନେଇ ବିଭିନ୍ନ ସ୍ତରରେ ଆଲୋଚନା ଚାଲିଲା । ଆନୁଷ୍ଠାନିକ ଶିକ୍ଷା ବାହାରେ ଶିକ୍ଷାର ବ୍ୟାପକ କ୍ଷେତ୍ର ଓ ନିରନ୍ତର ବିକାଶଧାରାକୁ ସ୍ୱୀକାର କରାଗଲା ।

ସମାଜ ଯେହେତୁ ଏକ ଚିରସ୍ଥାୟୀ ସଙ୍ଗଠନ ଓ କ୍ରମପରିବର୍ତ୍ତନଶୀଳ, ଶିକ୍ଷା କ୍ଷେତ୍ରରେ ଗୁଣାତ୍ମକ ଅଭିବୃଦ୍ଧିକୁ ଅଧିକାଂଶ ରାଷ୍ଟ୍ର ପ୍ରାଧାନ୍ୟ ଦେଲେ । ପ୍ରତ୍ୟେକ ରାଷ୍ଟ୍ର ଦେଶର ଶିକ୍ଷାବ୍ୟବସ୍ଥାକୁ ଅଧିକ ଉନ୍ନତ ଓ ସମୟ ଉପଯୋଗୀ କରିବାକୁ ପ୍ରୟାସ କଲା । ଗୋଟିଏ ସମୟରେ ସମାଜରୁ ନିରକ୍ଷରତା ଦୂର କରିବାକୁ ଅନଗ୍ରସର ରାଷ୍ଟ୍ରମାନଙ୍କରେ ବିଶେଷ ଉଦ୍ୟମମାନ ଆରମ୍ଭ ହୋଇଥିଲା । ସମାଜର ଯେଉଁ ଲୋକମାନେ ସୁବିଧା, ସୁଯୋଗ ଓ ପରିବେଶ ଅଭାବରୁ ସାକ୍ଷର ହେବାର ଅବକାଶ ପାଇନାହାନ୍ତି, ସେମାନେ କିପରି ସାକ୍ଷର ହୋଇପାରିବେ ଏଥିପାଇଁ ପ୍ରୌଢଶିକ୍ଷାର ଭାବନା ଆସିଥିଲା । ସଂପ୍ରତି ପ୍ରୌଢଶିକ୍ଷା ପରିବର୍ତ୍ତେ ଜନଶିକ୍ଷା ଲୋକଶିକ୍ଷାର ଭାବନାମାନ ବିଭିନ୍ନ ଦେଶରେ ବିକଶିତ ହୋଇଛି । ଏହାର ଏକ ବୃହତ୍ତର ଓ ମହତ୍ତର ଲକ୍ଷ୍ୟ ମଧ୍ୟ ରହିଛି । ପ୍ରତ୍ୟେକ ନାଗରିକ ସାମାଜିକ ବିକାଶ ପ୍ରକ୍ରିୟାରେ କିପରି ସକ୍ରିୟ ଭୂମିକା ନେଇପାରିବ ସେଥିପାଇଁ ଆନୁଷ୍ଠାନିକ ବା

ଅଣଆନୁଷ୍ଠାନିକ ଶିକ୍ଷା ମାଧ୍ୟମରେ ତାକୁ ପ୍ରଶିକ୍ଷିତ କରିବାକୁ ଲୋକଶିକ୍ଷା ବା ଜନଶିକ୍ଷା କୁହାଯାଉଛି । ତେବେ ଯେଉଁମାନେ ବିଶ୍ୱବିଦ୍ୟାଳୟ ଶିକ୍ଷାଠାରୁ ଦୂରରେ ରହି ମଧ୍ୟ ସାମାଜିକ ବିକାଶଧାରାରେ ନିଜର ଭୂମିକା ନିର୍ବାହ କରୁଛନ୍ତି ସେହିମାନେ ହିଁ ଅଣଆନୁଷ୍ଠାନିକ ଶିକ୍ଷା ପ୍ରାପ୍ତ ହେଉଛନ୍ତି, ଯାହାକୁ ଲୋକଶିକ୍ଷା ଭାବେ ନାମିତ କରାଯାଉଛି ।

କେତେକ ବିକାଶଶୀଳ ଦେଶରେ ନିରକ୍ଷରତାଜନିତ ସମସ୍ୟା ଏକବିଂଶ ଶତାବ୍ଦୀରେ ବି ରହିଛି । ତେବେ ବିକଶିତ ରାଷ୍ଟ୍ରମାନଙ୍କରେ ଏ ସମସ୍ୟା ନାହିଁ । ସବୁ ଲୋକ ସେଠାରେ କିଛି ପଢିଛନ୍ତି, ଲେଖାପଢା ଜାଣନ୍ତି । ଦେଶ ଦୁନିଆରେ କ'ଣ ଘଟୁଛି ସେ ବିଷୟରେ ଖବର ରଖନ୍ତି । ଖବରକାଗଜ ପଢନ୍ତି, ରେଡିଓ ଓ ଦୂରଦର୍ଶନରୁ ସମ୍ବାଦ ଶୁଣନ୍ତି ଓ ଦେଶ ଦୁନିଆ ବାହାରର ବିଷୟରେ ଜାଣିବାକୁ ଆଗ୍ରହ ପ୍ରକାଶ କରନ୍ତି । ତେବେ ସବୁ ଦେଶରେ ଅଗଣିତ ମଣିଷ ବିଭିନ୍ନ ବୃତ୍ତି କରି ଜୀବିକା ନିର୍ବାହ କରନ୍ତି । ସମାଜରେ ବହୁ ବୃତ୍ତି ରହିଛି, ଜଣେ ବୟସ୍କ ନାଗରିକ ଯେକୌଣସି କର୍ମସଂସ୍ଥାନ ଭିତରେ ରହି ନିଜକୁ ସ୍ୱାବଲମ୍ବୀ କରିପାରିବ । ଲୋକଶିକ୍ଷା ସମାଜର ସବୁ ଶ୍ରେଣୀର ଲୋକମାନଙ୍କ ପାଇଁ ବିଭିନ୍ନ ଯୋଜନା ଓ ପରିକଳ୍ପନାମାନ ସୃଷ୍ଟି କରିଛି । କୃଷକ, କୃଷିଶ୍ରମିକ, କଳକାରଖାନାର ଶ୍ରମିକ, ବିଭିନ୍ନ କୁଟୀରଶିଳ୍ପ କରି ଜୀବିକା ନିର୍ବାହ କରୁଥିବା ବ୍ୟକ୍ତିବିଶେଷ, ସମାଜର କାରିଗର ଶ୍ରେଣୀ, ପରିବହନରେ କାର୍ଯ୍ୟ କରୁଥିବା ଲୋକମାନେ, ଏ ସମସ୍ତଙ୍କ ପାଇଁ ଲୋକଶିକ୍ଷାର ପ୍ରୟୋଜନୀୟତା ରହିଛି । ଏପରିକି ଯେଉଁମାନେ ବୈଷୟିକ ଶିକ୍ଷାପ୍ରାପ୍ତ ବ୍ୟକ୍ତି, ସେମାନେ ମଧ୍ୟ ନିଜ ବୃତ୍ତି ବାହାରେ ଅନ୍ୟ କିଛି ନିଜର ରୁଚି ଅନୁଯାୟୀ ଶିକ୍ଷା କରିପାରିବେ । ବିଭିନ୍ନ ବିଷୟରେ ଲୋକମାନଙ୍କୁ ତାଲିମ୍ ଦେବା, ସର୍ବନିମ୍ନ ବିଷୟ ଜଣାଇବା, ବୈଜ୍ଞାନିକ ପଦ୍ଧତି ବିଷୟରେ ସଚେତନ କରାଇ ସେମାନଙ୍କର କାର୍ଯ୍ୟଦକ୍ଷତା ବୃଦ୍ଧି କରିବାପାଇଁ ଚେଷ୍ଟା କରିବା, ଏସବୁ ଲୋକଶିକ୍ଷାର ପରିସରଭୁକ୍ତ । ସୁତରାଂ ଲୋକଶିକ୍ଷା କେବଳ ନିରକ୍ଷରତା ଦୂରୀକରଣଜନିତ ଏକ କାର୍ଯ୍ୟକ୍ରମ ନୁହେଁ, ବରଂ ଏହାର ଏକ ବ୍ୟାପକ ପରିସର ଥିବା ମନେହୁଏ । ସେଥିପାଇଁ ବିଭିନ୍ନ ଦେଶରେ ଗୋଟିଏ ବିସ୍ତୃତ ପରିସରରେ ଲୋକଶିକ୍ଷା କାର୍ଯ୍ୟକ୍ରମମାନ ଗ୍ରହଣ କରାଯାଉଛି । ରାଷ୍ଟ୍ର ନିର୍ମାଣ ଓ ସମାଜର ବିକାଶ ପ୍ରକ୍ରିୟାରେ ସମାଜର ବୃହତ୍ତର ଜନଗୋଷ୍ଠୀର ସକ୍ରିୟ ଓ ପ୍ରତ୍ୟକ୍ଷ ସହଯୋଗ କିପରି ନେଇହେବ ଓ ସେଥିପାଇଁ ଜନଗଣଙ୍କୁ ପ୍ରଶିକ୍ଷିତ କରାଯିବ ଏହା ହିଁ ଲୋକଶିକ୍ଷାର ମୁଖ୍ୟ ଉଦ୍ଦେଶ୍ୟ ।

ଧନ୍ଦାମୂଳକ ଶିକ୍ଷା ଦେବା ବା ଲୋକମାନଙ୍କୁ ସ୍ୱାବଲମ୍ବନଶୀଳ ହୋଇ ଜୀବନ ନିର୍ବାହ କରିବା ବାହାରେ ଆହୁରି ଅନେକ କିଛି ବିଷୟରେ ଜନମାନସକୁ ଶିକ୍ଷା

ଦିଆଯାଇପାରିବ । ସୁତରାଂ ଲୋକଶିକ୍ଷା ବିଭିନ୍ନ କ୍ଷେତ୍ରରେ ସାମାଜିକ ଚେତନାର ସ୍ତରକୁ କିପରି ବୃଦ୍ଧି କରିହେବ ସେଥିପାଇଁ ପ୍ରୟାସ କରିଥାଏ । ସ୍ୱାସ୍ଥ୍ୟ ଓ ପରିବାରକଲ୍ୟାଣଜନିତ ସର୍ବନିମ୍ନ ଶିକ୍ଷା ପ୍ରତ୍ୟେକ ସଚେତନ ବ୍ୟକ୍ତି ରଖିବା ଆବଶ୍ୟକ । ରୋଗ ପ୍ରତିଷେଧକ ବ୍ୟବସ୍ଥା କ'ଣ, କଣ ପ୍ରତିଷେଧକ ବ୍ୟବସ୍ଥା ନେଲେ ରୋଗରୁ ମୁକ୍ତ ରହିପାରିବା, ପରିବେଶ ନେଇ ସଚେତନତା କାହିଁକି ରଖିବା ଦରକାର, ପରିବେଶ ପ୍ରଦୂଷଣକୁ କିପରି ପ୍ରତିହତ କରାଯାଇପାରିବ ଏସବୁ ବିଷୟ ଉପରେ ସାମାଜିକ ଚେତନାର ସ୍ତର ବଢ଼ିବା ଆବଶ୍ୟକ । ନାଗରିକ ଶୃଙ୍ଖଳାବୋଧ ଓ କର୍ତ୍ତବ୍ୟ କାହିଁକି ଜଣେ ମାନିବ ବା କରିବ, ନାଗରିକ ଅଧିକାର ନେଇ ସଚେତନତା, ଏକ ଜନମଙ୍ଗଳକାରୀ ରାଷ୍ଟ୍ରରେ ବ୍ୟକ୍ତିର ରାଜନୈତିକ ସଚେତନତା କାହିଁକି ଦରକାର ଏ ବିଷୟରେ ପ୍ରତ୍ୟେକ ନାଗରିକ ଜାଣିବା ଉଚିତ୍ । ସମାଜରେ ବିଭିନ୍ନ ଲୋକଙ୍କର ବିଭିନ୍ନ ପ୍ରକାରର ରୁଚି ରହିପାରେ । ସଙ୍ଗୀତ, ନାଟକ, କଳା, ଖେଳ, ବାଦ୍ୟ, ନୃତ୍ୟ, ମୂର୍ତ୍ତିନିର୍ମାଣ ଇତ୍ୟାଦି ବହୁ ବିଷୟ ରହିଛି ଓ କାହାର କେଉଁଥିରେ ଆଗ୍ରହ ବା ପାରଦର୍ଶିତା ରହିଥାଇପାରେ । ବ୍ୟକ୍ତି ଭିତରର ସୃଜନ ପ୍ରତିଭାକୁ କିପରି ବିକଶିତ କରିହେବ, ସେଥିପାଇଁ କଣ ସୁବିଧା ସୁଯୋଗ ରହିଛି ଏ ବିଷୟରେ ସାଧାରଣ ଲୋକ ଭିତରେ ବୌଦ୍ଧିକ ଅନୁସନ୍ଧିତ୍ସା ରହୁଛି ଓ ଯେଉଁମାନେ କୌଣସି କ୍ଷେତ୍ରରେ ଅଭାବବୋଧର ଅନୁଭବ କରୁଛନ୍ତି ସେମାନଙ୍କ ପାଇଁ ନିଜର ଜ୍ଞାନର ପରିସରକୁ ବୃଦ୍ଧି କରିବାପାଇଁ ସୁଯୋଗ ସୃଷ୍ଟି କରାଯିବା ଆବଶ୍ୟକ । ସୁତରାଂ ସମାଜର ବିଭିନ୍ନ ବର୍ଗର ଜନଗଣଙ୍କର ବୌଦ୍ଧିକ, ସାଂସ୍କୃତିକ ଓ ଶୈକ୍ଷିକ ଅଭାବବୋଧ ଦୂର କରିବାପାଇଁ ଜନଶିକ୍ଷା ମାଧ୍ୟମରେ ବିଭିନ୍ନ ଦେଶରେ ପ୍ରୟାସ କରାଯାଉଛି ।

ଏହି ଲକ୍ଷ୍ୟ ହାସଲ ପାଇଁ ସଂପ୍ରତି ଆଧୁନିକ ପ୍ରଯୁକ୍ତି ଯଥେଷ୍ଟ ସହାୟକ ହୋଇପାରୁଛି । ରେଡିଓ, ଟେଲିଭିଜନ, ବିଭିନ୍ନ ଗଣମାଧ୍ୟମ ଲୋକମାନଙ୍କୁ ଏ ବିଷୟରେ ସଚେତନ କରାଇ ପାରୁଛନ୍ତି । ତା ସହିତ ବିଭିନ୍ନ ପ୍ରସଙ୍ଗରେ ବିଭିନ୍ନ ସୁଖପାଠ୍ୟ ପୁସ୍ତକମାନ କେତେକାଂଶରେ ଉପଲବ୍ଧ ହୋଇପାରୁଛି । ଏହା ସହିତ ବିଭିନ୍ନ ବିଷୟରେ ଲୋକମାନଙ୍କୁ ଆବଶ୍ୟକୀୟ ସୂଚନା ଦେବାପାଇଁ ବିଭିନ୍ନ ଦେଶର ସରକାରମାନେ ବିଭିନ୍ନ ବ୍ୟବସ୍ଥା ପ୍ରଚଳନ କରୁଛନ୍ତି । ଏକବିଂଶ ଶତାବ୍ଦୀରେ ସାମାଜିକ ପରିବର୍ତ୍ତନ ଯେପରି ଦ୍ରୁତତର ହୋଇଚାଲିଛି ସେହି ପରିବର୍ତ୍ତନ ସହ ଲୋକମାନେ କିପରି ଅଭ୍ୟସ୍ତ ହୋଇ ଜୀବନ ନିର୍ବାହ କରିବେ ଏଥିପାଇଁ ବିଭିନ୍ନ ସ୍ତରରେ ପ୍ରୟାସ ହେଉଛି । ପରିବର୍ତ୍ତନରେ ସାମିଲ ହେବା ଓ ନିଜର ସୃଜନଶୀଳ ଅବଦାନଦ୍ୱାରା ସାମାଜିକ ବିକାଶ ପ୍ରକ୍ରିୟାକୁ ଆଗକୁ ନେବା ଲୋକଶିକ୍ଷାର ଏକ ମୁଖ୍ୟ ଉଦ୍ଦେଶ୍ୟ ।

ଆମ ଦେଶ ପରି ବିକାଶଶୀଳ ରାଷ୍ଟ୍ରମାନଙ୍କରେ ଲୋକଶିକ୍ଷାର ଯଥେଷ୍ଟ ଉପଯୋଗିତା ରହିଛି । ସ୍ୱାଧୀନତା ପରଠାରୁ ପଞ୍ଚବାର୍ଷିକ ଯୋଜନା ମାଧ୍ୟମରେ ଲୋକଶିକ୍ଷାକୁ ସରକାର ମଧ୍ୟ ପ୍ରାଧାନ୍ୟ ଦେଇଆସିଛନ୍ତି । ପ୍ରାୟ ପ୍ରତ୍ୟେକ ରାଜ୍ୟରେ ଜନଶିକ୍ଷାସାଧନ କେନ୍ଦ୍ରମାନ ପ୍ରତିଷ୍ଠା କରାଯାଇ କିଛି କିଛି ଉଦ୍ୟମ ଏ ଦିଗରେ ହେଉଛି । ତଥାପି ରାଷ୍ଟ୍ରୀୟ ସ୍ତରରେ ଏହା ଯଥେଷ୍ଟ ସଫଳତା ହାସଲ କରିପାରି ନାହିଁ । "ସାକ୍ଷର ଭାରତ" ଯୋଜନା ମାଧ୍ୟମରେ ସମାଜରୁ ନିରକ୍ଷରତା ଦୂରୀକରଣ ପାଇଁ ପ୍ରୟାସ ସତ୍ତ୍ୱେ ଏବେ ବି ସମାଜର ଏକତୃତୀୟାଂଶ ବ୍ୟକ୍ତି ନିରକ୍ଷର ରହିଛନ୍ତି । ଏହାଠାରୁ ଆହୁରି ଦୁର୍ଭାଗ୍ୟର ବିଷୟ ହେଉଛି ସମାଜରେ ନାନା କୁସଂସ୍କାର, ଅହେତୁକ ବିଶ୍ୱାସ, ଧାର୍ମିକ ବିଶ୍ୱାସଜନିତ ସାଂପ୍ରଦାୟିକ ତିକ୍ତତା ରହିଛି ଓ ତାହା ହ୍ରାସ ହେଉନାହିଁ । ନାନା ଅହେତୁକ କର୍ମକାଣ୍ଡ, ଅବୈଜ୍ଞାନିକ ମାନସିକତା, ପରିବେଶ ଧ୍ୱଂସକାରୀ ନାନା ପରମ୍ପରା ସମାଜରେ ବ୍ୟାପକ ଭାବେ ରହିଛି । ଏପରିକି କେତେକ କୁସଂସ୍କାର ଯାହା ଏକଦା ଆଞ୍ଚଳିକ ହୋଇ ରହିଥିଲା ତାହା ସକ୍ରିୟ ଗଣମାଧ୍ୟମ ଯୋଗୁ ଜନମାନସରେ ବିସ୍ତାରିତ ହୋଇଚାଲିଛି । ପାରଲୌକିକ ବିଶ୍ୱାସ, ନାନା ପୂଜାପାର୍ବଣ ଓ କର୍ମକାଣ୍ଡ ଅହେତୁକ ଭାବେ ବୃଦ୍ଧି ପାଉଛି । ବିଚାରସଂପନ୍ନ ଦୃଷ୍ଟିକୋଣ, ସମ୍ବେଦନଶୀଳ ମାନବବାଦୀ ଜୀବନଦୃଷ୍ଟି ସମାଜରେ ବ୍ୟାପକ ହୋଇପାରୁନାହିଁ । ଯେତେ ମହିଳା ସଶକ୍ତିକରଣ କଥା କୁହାଗଲେ ମଧ୍ୟ ନାରୀ ନିର୍ଯ୍ୟାତନା ସମାଜରେ ବୃଦ୍ଧି ପାଇବାରେ ଲାଗିଛି । ସ୍ୱାଧୀନତା ଆନ୍ଦୋଳନ କାଳରେ ଏକ ଜାତିମୁକ୍ତ ସମାଜର ଯେଉଁ ସ୍ୱପ୍ନ ରହିଥିଲା ତାହା ଏବେ ବି ସୁଦୂରପ୍ରସାରୀ ହୋଇରହିଛି । ବରଂ ଜାତିଗତ ବୈଷମ୍ୟ, ଭେଦଭାବ ସମାଜରେ ଅତୁଟ ରହିଛି । ସାଂପ୍ରଦାୟିକ ବିଷଜ୍ୱାଳା ବେଳେ ବେଳେ ଉଗ୍ର ରୂପ ନେଇ ଦଙ୍ଗାର ପରିବେଶ ସୃଷ୍ଟି କରୁଛି । ଏହିପରି ନାନା ସାମାଜିକ ମନ୍ଦ ସ୍ଥିତି ଜନଜୀବନରେ ବ୍ୟାପକ ହୋଇରହିଛି । ଶିକ୍ଷିତ, ଅଶିକ୍ଷିତ ନିର୍ବିଶେଷରେ ସମାଜର ଅଗଣିତ ବ୍ୟକ୍ତି ନାଗରିକ କର୍ତ୍ତବ୍ୟବୋଧ ନେଇ ଯଥେଷ୍ଟ ସଚେତନତା ପ୍ରକାଶ କରୁନାହାନ୍ତି । ଆଇନକୁ ହାତକୁ ନେବା, ଜନଜୀବନକୁ ଅସ୍ତବ୍ୟସ୍ତ କରିବା, ନିଜର କର୍ତ୍ତବ୍ୟ କ୍ଷେତ୍ରରେ ସାମାଜିକ ଦାୟିତ୍ୱବୋଧ ନ ରଖିବା ଆମ ଜନଜୀବନର ସାଧାରଣ ଘଟଣା । ଏହି ପୃଷ୍ଠଭୂମିରେ ଜନଜୀବନକୁ ଉନ୍ନତ କରିବାକୁ ହେଲେ "ଲୋକଶିକ୍ଷା" କାର୍ଯ୍ୟକ୍ରମରେ ଅନେକ କିଛି କରିବାର ରହିଛି । ବିଶେଷକରି ଜନଗଣଙ୍କୁ ବିଚାରବୁଦ୍ଧିସମ୍ପନ୍ନ କରାଇବା, ଜନମାନସରେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ପ୍ରସାର କରାଇବା, ମାନବବାଦୀ ମୂଲ୍ୟବୋଧର ପ୍ରସାର ଘଟାଇବା, ସାମାଜିକ ସମତା ଭାବନାର ପ୍ରସାର କରି ସାମାଜିକ ଭେଦଭାବର ମୂଳୋତ୍ପାଟନ କରିବା, ଧାର୍ମିକ ବିଶ୍ୱାସ ନିର୍ବିଶେଷରେ ଶାନ୍ତିପୂର୍ଣ୍ଣ ଓ ଭ୍ରାତୃତ୍ୱଭାବର ପରିବେଶ ଆଣିବା ଓ

ସହନଶୀଳତାର ମାନସିକତା ସୃଷ୍ଟି କରିବା ଲୋକଶିକ୍ଷାର ଆଭିମୁଖ୍ୟ ହେବା ଦରକାର। ଏହା ସଫଳ ହେଲେ ଏକ ଉନ୍ନତ ସମାଜର ଭିତ୍ତି ସୁଦୃଢ ହୋଇପାରିବ।

ବସ୍ତୁତଃ ଲୋକଶିକ୍ଷାର ଯେ ଏକ ବ୍ୟାପକ ପରିସର ରହିଛି ଏହା ନିଃସନ୍ଦେହ ମନେହୁଏ। ଲୋକଶିକ୍ଷା ମାଧ୍ୟମରେ ସାମାଜିକ ଚେତନାର ସ୍ତରକୁ ଉନ୍ନତ କରିବାପାଇଁ ପ୍ରୟାସ ହେଉଛି। ଆନୁଷ୍ଠାନିକ ଶିକ୍ଷା ବାହାରେ ଲୋକଶିକ୍ଷା ସାମାଜିକ ଲକ୍ଷ୍ୟ ହାସଲ କ୍ଷେତ୍ରରେ ଏକ ପ୍ରମୁଖ ଭୂମିକା ନେଇପାରିବ। ସୁତରାଂ ଏକ ଶିକ୍ଷଣ ସମାଜ ପ୍ରତିଷ୍ଠା ଦିଗରେ ପ୍ରତ୍ୟେକ ଜନମଙ୍ଗଳକାରୀ ରାଷ୍ଟ୍ରରେ କିଛି ପ୍ରୟାସ ହୋଇଆସୁଛି। ଶିକ୍ଷଣ ସମାଜ କହିଲେ ସମାଜର ସମସ୍ତ ନାଗରିକ ଓ ବିଶେଷତଃ ବୟସ୍କ ନାଗରିକ ଯେଉଁମାନେ ରାଷ୍ଟ୍ରୀୟ ବିକାଶରେ ନିଜର ସଂପୃକ୍ତି ରଖିପାରିବେ। ଆନୁଷ୍ଠାନିକ ଶିକ୍ଷାପରେ ଜଣେ ନାଗରିକ ସ୍ୱାବଲମ୍ବୀ ହେବା ଏକ ଆବଶ୍ୟକତା। ନିଜର ସାମର୍ଥ୍ୟ ଓ ସୁଯୋଗର ଉପଯୋଗ କରି ପ୍ରତ୍ୟେକ ନାଗରିକ କୌଣସି ପ୍ରକାରର ବୃତ୍ତିଗତ କାର୍ଯ୍ୟରେ ସଂପୃକ୍ତ ହୋଇ ସ୍ୱାବଲମ୍ବୀ ହୋଇ ଜୀବନ ନିର୍ବାହ କରିବା ଦରକାର। ଜଣେ ବିଶ୍ୱବିଦ୍ୟାଳୟ ଶିକ୍ଷା ପାଇଁ ସୁଯୋଗ ପାଇଥାନ୍ତୁ କିମ୍ବା ସେଥିରୁ ବଞ୍ଚିତ ହୋଇଥାନ୍ତୁ ପ୍ରତ୍ୟେକ ନାଗରିକ ଦେଶର ବିକାଶରେ ନିଜର ଅବଦାନ ଦେଇପାରିବେ। ସମାଜରେ ବିଭିନ୍ନ ବୃତ୍ତିର ପରିବେଶ ଥାଏ। ବିଭିନ୍ନ ବୃତ୍ତିର ବ୍ୟକ୍ତି ନଥିଲେ ସାମାଜିକ ଜୀବନ ସୁଚାରୁରୂପେ ପରିଚାଳିତ ହୋଇପାରିବ ନାହିଁ। କୃଷକ ଶ୍ରେଣୀ, କାରିଗର ଶ୍ରେଣୀ, ଶିକ୍ଷକ, ଚିକିତ୍ସକ, ପ୍ରଶାସକ ବିଭିନ୍ନ ବୃତ୍ତିର ଲୋକ ରହିବା ଏକ ସାଧାରଣ ଘଟଣା। ସମସ୍ତେ ବି ଜାତୀୟ ଜୀବନର ବିକାଶ କ୍ଷେତ୍ରରେ ନିଜର କିଛି ଭୂମିକା ନିର୍ବାହ କରୁଛନ୍ତି। ଯେଉଁମାନେ ବିଶ୍ୱବିଦ୍ୟାଳୟରୁ ଶିକ୍ଷା ପାଇବାର ସୁଯୋଗ ପାଇନାହାନ୍ତି, ସେମାନେ ଯେ ରାଷ୍ଟ୍ରୀୟ ବିକାଶ ପ୍ରକ୍ରିୟାରେ ସଂପୃକ୍ତ ନୁହନ୍ତି ତାହା ଭାବିବା ଠିକ୍ ନୁହେଁ। ବିଶ୍ୱବିଦ୍ୟାଳୟ ଶିକ୍ଷା ଲାଭ କରିଥିବା ବା ସେହି ସୁଯୋଗ ପାଇନଥିବା ନିର୍ବିଶେଷରେ ସମାଜର ସବୁ ବ୍ୟକ୍ତି ସାମାଜିକ ସ୍ତରରେ ସଚେତନ ହେବା, ମାନବିକ ମୂଲ୍ୟବୋଧ ପ୍ରତି ସମ୍ମାନ ରଖିବା, ନିଜ ସୃଜନସାମର୍ଥ୍ୟର ବିକାଶ ଘଟାଇବା, ଜୀବନ ଓ ବୃହତ୍ତର ସମାଜପାଇଁ ଏକ ସକାରାତ୍ମକ ଦୃଷ୍ଟିଭଙ୍ଗୀ ପୋଷଣ କରିବା, ଜୀବନରେ ଅଧିକରୁ ଅଧିକ ବିଚାରବୁଦ୍ଧିସମ୍ପନ୍ନ ହେବା ଯେ ଶିକ୍ଷଣ ସମାଜର ଆଭିମୁଖ୍ୟ ଏହା କୁହାଯାଇପାରେ।

ଏହି ଦୃଷ୍ଟିରୁ ଦେଖିଲେ ଏକ ନାଗରିକ ସମାଜ ଓ ଏକ ଶିକ୍ଷଣ ସମାଜ ସମାନ ଭାବନାକୁ ବ୍ୟକ୍ତ କରେ। ଏକ ନାଗରିକ ସମାଜ କହିଲେ ସାଧାରଣତଃ ସମାଜର ଏକ ଶିକ୍ଷିତ ଓ ସଚେତନ ଗୋଷ୍ଠୀକୁ ହିଁ ବୁଝାଯାଇଥାଏ। ସମାଜର ଗୁଣାତ୍ମକ ବିକାଶ କ୍ଷେତ୍ରରେ

ନିଜର ସଂପୃକ୍ତି ରଖୁଥିବା ଓ କୌଣସି ସାମାଜିକ ଅନ୍ୟାୟ, ଅଶୋଭନୀୟତା, ଭ୍ରଷ୍ଟାଚାର, ଭେଦଭାବ ଇତ୍ୟାଦି ବିରୁଦ୍ଧରେ ସ୍ୱର ଉଠାଉଥିବା ତଥା ଜନମତକୁ ଉତ୍ତମ ଲକ୍ଷ୍ୟ ଦିଗରେ ପ୍ରଭାବିତ କରୁଥିବା ବ୍ୟକ୍ତିବିଶେଷ ନାଗରିକ ସମାଜର ଅନ୍ତର୍ଭୁକ୍ତ । ନାଗରିକ ସମାଜର ପରିସର ବ୍ୟାପକ ହେଲେ ବି ସମାଜର ସୁସ୍ଥ ବିକାଶ ପ୍ରତି ଗଭୀର ସଂପୃକ୍ତି ବ୍ୟକ୍ତ କରୁଥିବା ବ୍ୟକ୍ତିମାନେ ହିଁ ନାଗରିକ ସମାଜର ପରିସରଭୁକ୍ତ । ଏହି ଦୃଷ୍ଟିରୁ ଦେଖିଲେ ନାଗରିକ ସମାଜ ହିଁ ସମାଜର ଶିକ୍ଷଣ ଓ ସଚେତନ ଗୋଷ୍ଠୀ ।

ନାଗରିକ ସମାଜର ଭାବନା ବିଂଶ ଶତାବ୍ଦୀର ଦ୍ୱିତୀୟ ଭାଗରୁ ବିଭିନ୍ନ ଦେଶରେ ଦୃଢ଼ ଭିତ୍ତି ନେବାରେ ଲାଗିଛି । ସାଧାରଣ ମଣିଷର ଉନ୍ନତି ପାଇଁ ନାନା ଭାବରେ ଆନ୍ତରିକତା ପ୍ରକାଶ ପାଉଛି । ସମାଜବାଦୀ ଅର୍ଥନୈତିକ ବ୍ୟବସ୍ଥା କେତେକ ରାଷ୍ଟ୍ରର ମୂଳ ଆଭିମୁଖ୍ୟ ହୋଇଛି । ଗଣତାନ୍ତ୍ରିକ ବିଚାରବୋଧ କେତେକ ରାଷ୍ଟ୍ରର ରାଜନୈତିକ ଆଦର୍ଶରୁ ସାମାଜିକ ଆଦର୍ଶ ହୋଇଛି । ପ୍ରତ୍ୟେକ ବ୍ୟକ୍ତିର ମର୍ଯ୍ୟାଦାପୂର୍ଣ୍ଣ ଜୀବନ ନେଇ ଆନ୍ତର୍ଜାତିକ ସଚେତନତା ସୃଷ୍ଟି ହୋଇଛି । ସାମ୍ରାଜ୍ୟବାଦ, ଏକଛତ୍ରବାଦ ବିରୁଦ୍ଧରେ ସାରା ବିଶ୍ୱରେ ଆଲୋଡନ ଆସିଛି । ସାର୍ବଜନୀନ ଶିକ୍ଷାର ପରିବେଶ ସୃଷ୍ଟି ହୋଇଛି । ଅତୀତରେ ମୁଷ୍ଟିମେୟ ଲୋକ ଅଗଣିତ ଲୋକଙ୍କୁ ଶୋଷଣ କରୁଥିଲେ, ନାଲି ଆଖି ଦେଖାଉଥିଲେ, ମହିଳାମାନେ ପୁରୁଷମାନଙ୍କ ସହ ସମାନ ସୁବିଧା ସୁଯୋଗରୁ ବଞ୍ଚିତ ଥିଲେ । ବହୁ ସମାଜରେ ନାନା ସ୍ତରରେ ଭେଦଭାବ ରହିଥିଲା । ତେବେ ଏହିସବୁ ସ୍ଥିତିରେ ଅନେକଟା ପରିବର୍ତ୍ତନ ଆସିପାରିଛି । ସମାଜବାଦୀ ବିଚାରବୋଧ, ଗଣତାନ୍ତ୍ରିକ ଆଦର୍ଶ, ମାନବିକ ଅଧିକାରର ବିଶ୍ୱଘୋଷଣା, ଧର୍ମନିରପେକ୍ଷ ଜୀବନଧାରା ପ୍ରତ୍ୟେକଟି କ୍ଷେତ୍ରରେ କିଛି ମହତ୍ତର ଆଦର୍ଶ ଓ କିଛି ପବିତ୍ର ଆକାଂକ୍ଷା ଅନ୍ତର୍ନିହିତ ରହିଛି ।

ଆଧୁନିକ ବିଜ୍ଞାନ ଓ ପ୍ରଯୁକ୍ତି ଜୀବନର ସୁଖ, ସ୍ୱାଚ୍ଛନ୍ଦ୍ୟ ବୃଦ୍ଧି କରିବାରେ ଯଥେଷ୍ଟ ସହାୟକ ହୋଇଛି । ବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ଯେପରି ଦୁର୍ଭିକ୍ଷ, ଅନାଟନ, ଅପପୁଷ୍ଟି, ମହାମାରୀର ଆତଙ୍କ ପୃଥିବୀର କେତେକ ଦେଶରେ ବ୍ୟାପକ ଭାବେ ରହିଥିଲା ସେ ପ୍ରକାରର ସ୍ଥିତିରେ ଅନେକ ପରିବର୍ତ୍ତନ ଆସିଛି । ପୃଥିବୀର ଯେକୌଣସି ରାଷ୍ଟ୍ରରେ କିଛି ବିପତ୍ତି ପଡିଲେ, ସମଗ୍ର ମାନବ ସମାଜରୁ ସହାନୁଭୂତି ଓ ସାହାଯ୍ୟର ହାତ ପ୍ରସାରିତ ହୋଇପାରୁଛି । ପୃଥିବୀରୁ ଦୁଃଖ, ଦାରିଦ୍ର୍ୟ, ରୋଗ, ନିରକ୍ଷରତା ଇତ୍ୟାଦି କିପରି ହ୍ରାସ ପାଇବ ବା ଲୋପ ପାଇବ ସେ ପାଇଁ ବିଶ୍ୱ ସ୍ତରରେ ଦରଦୀ ମନୋଭାବ ସୃଷ୍ଟି ହେବାରେ ଲାଗିଛି । ଏକ ଉନ୍ନତ ସମାଜ ଓ ପ୍ରୀତିପୂର୍ଣ୍ଣ ବିଶ୍ୱ ପାଇଁ ସବୁ ସଂସ୍କୃତିର ମାନବହିତୈଷୀ

ବ୍ୟକ୍ତିମାନେ ସଂପୃକ୍ତି ବ୍ୟକ୍ତି କରିଆସୁଛନ୍ତି । ସମଗ୍ର ମାନବ ସମାଜର ଶାନ୍ତିପୂର୍ଣ୍ଣ ସ୍ଥିତି ଓ ସୁଖପ୍ରଦ ପରିବେଶ ପାଇଁ ବହୁ ଆନ୍ତର୍ଜାତିକ ସଙ୍ଗଠନ ପୃଥିବୀରେ କାର୍ଯ୍ୟ କରୁଛି । ଆଧୁନିକ ପ୍ରଯୁକ୍ତି ସମଗ୍ର ମାନବ ସମାଜକୁ ଏକ କ୍ଷୁଦ୍ର ଗ୍ରାମରେ ପରିଣତ କରିବାର ପରିବେଶ ସୃଷ୍ଟି କରିପାରିଛି । ଏହିସବୁ ଘଟଣାର ପରିଣାମରୁ ଶିକ୍ଷଣ ନାଗରିକ ସମାଜର ଭାବନା ଦୃଢ ହେବାରେ ଲାଗିଛି । ଯେଉଁଠି ସାମାଜିକ ଚେତନାର ସ୍ତର ଉନ୍ନତ ହେବାର ପରିବେଶ ଆସିଛି, ସେଠାରେ ନାଗରିକ ସମାଜ ଏକ ଦୃଢ ଭିତ୍ତି ନେଇପାରିଛି । ଯେଉଁଠି ସାମାଜିକ ପରିବେଶ ଉନ୍ନତ ହୋଇନାହିଁ, ଯେଉଁଠି ଦୁର୍ନୀତି, ଭେଦଭାବମୂଳକ ମନୋଭାବ ଉତ୍କଟ ରହିଛି ସେଠିକାର ଜୀବନର ଗୁଣାତ୍ମକ ମାନ ନ୍ୟୂନ ହୋଇରହିଛି । ନାଗରିକ ସଚେତନତାର ଭିତ୍ତି ସୁଦୃଢ ହୋଇପାରି ନାହିଁ ।

ନାଗରିକ ସଚେତନତା, ଉଚ୍ଚ କର୍ମସଂସ୍କୃତି, ସାମାଜିକ ଶୃଙ୍ଖଳାବୋଧ ମୂଲ୍ୟବୋଧମାନଙ୍କର ପ୍ରସାର ପାଇଁ ଉଦାର ମାନବବାଦ ଓ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ବିକାଶ ଅବଶ୍ୟମ୍ଭାବୀ ମନେହୁଏ । ବୈଜ୍ଞାନିକ ଦୃଷ୍ଟିଭଙ୍ଗୀରୁ ଏକ ସିଦ୍ଧାନ୍ତ ନିଷ୍ପନ୍ନ ହୁଏ ଯେ ସଭ୍ୟତାର ସକଳ ବିକାଶ ମଣିଷର ପ୍ରୟାସରେ ସମ୍ଭବ ହୋଇଛି । ସଭ୍ୟତାରେ ଯାହା କିଛି ବିକଶିତ ହୋଇଛି, ଜୀବନର ଭୌତିକ ମାନରେ ଯେଉଁ ଉନ୍ନତି ଆସିଛି, ବିଂଶ ଶତାବ୍ଦୀଠାରୁ ଜୀବନର ସୁଖ, ସ୍ୱାଚ୍ଛନ୍ଦ୍ୟ ଯେପରି ବୃଦ୍ଧି ପାଇବାରେ ଲାଗିଛି, ଗମନାଗମନ, ଚିକିତ୍ସା, ସାମାଜିକ ନିରାପତ୍ତା ଯେପରି ଉପଲବ୍‌ଧ ହେଉଛି ଏସବୁ ମଣିଷର ବୌଦ୍ଧିକ ଅନୁସନ୍ଧିତ୍ସା ଓ ପ୍ରୟାସରୁ ସମ୍ଭବପର ହୋଇଛି । ସଭ୍ୟତାର ବିକାଶ ସହିତ ବିଜ୍ଞାନ ଗଭୀର ଭାବେ ସଂପୃକ୍ତ ହୋଇଛି, ବିଜ୍ଞାନକୁ ଛାଡି ସଭ୍ୟତାର ବିକାଶକୁ ସଂପ୍ରତି କଳ୍ପନା କରାଯାଇପାରିବ ନାହିଁ । ସେହିପରି ବିଜ୍ଞାନର ବିକାଶ ସହ ବୈଜ୍ଞାନିକ ମନୋଭାବ ପ୍ରଶ୍ନଟି ଅଙ୍ଗାଙ୍ଗୀ ଭାବେ ଜଡିତ । ବୈଜ୍ଞାନିକ ମନୋଭାବର ବିକାଶ ନ ହେଲେ ସାମାଜିକ ବିକାଶର ଧାରାଟି ଲକ୍ଷ୍ୟହୀନ ହୋଇ ଉଠିବ । ମଧ୍ୟଯୁଗୀୟ ମାନସିକତାରୁ ଏକ ଉନ୍ନତ ସାମାଜିକ ପରିବେଶର ପରିକଳ୍ପନା କରାଯାଇନପାରେ । ପ୍ରାଚୀନ ପରମ୍ପରା ଓ ଅହେତୁକ ପୂଜାପାର୍ବଣରେ ମସ୍‌ଗୁଲ୍ ହେଲେ, ପାରଲୌକିକ ଜୀବନଦୃଷ୍ଟି ବ୍ୟକ୍ତି ଓ ଗୋଷ୍ଠୀ ଜୀବନର ଆଦର୍ଶ ହେଲେ, ନିଜର ପ୍ରାଚୀନ ସଂସ୍କାର ଓ ବିଶ୍ୱାସକୁ ପବିତ୍ର ମନେ କରି ପରିବର୍ତ୍ତନବିରୋଧୀ ହେଲେ ସମାଜର ସାମୂହିକ ଜୀବନପ୍ରବାହରେ ଉନ୍ନତି ଆସିପାରିବ ନାହିଁ । ସେହିପରି ବିଜ୍ଞାନ ଓ ଆଧୁନିକ ପ୍ରଯୁକ୍ତିକୁ ମହତ୍ତର ଓ ଜନହିତକର ଲକ୍ଷ୍ୟରେ ବିନିଯୋଗ ନ କଲେ ସଭ୍ୟତାର ଯଥୋଚିତ ବିକାଶ ହେବ ନାହିଁ । ବିଜ୍ଞାନ ଓ ପ୍ରଯୁକ୍ତି ଏକ ସାଧନ ମାତ୍ର । ଏକ ସାଧନ ହିତକର ବା ଅହିତକର ଲକ୍ଷ୍ୟରେ ବିନିଯୋଗ ହୋଇପାରେ ।

ସଭ୍ୟତାର ଯେଉଁ ସୋପାନଟିରେ ଆମେ ଆଜି ଦଣ୍ଡାୟମାନ ହୋଇଛେ ତାହା ପଶ୍ଚାତରେ ବହୁ ସୃଜନଶୀଳ ବ୍ୟକ୍ତିଙ୍କର ଅବଦାନ ରହିଛି । ମଣିଷ ଜନ୍ମ ହେବାପରେ ସାମାଜିକ ଜୀବନପ୍ରବାହରେ ସମୃଦ୍ଧି ଓ ସଂସ୍କୃତିର ଉତ୍ତରଦାୟିତ୍ୱ ସେ ଛାଏଁ ପାଇଥାଏ । ସେହିଭଳି ସେ କେତେକ ସଂସ୍କାର ବି ପାଇଥାଏ । ଯେଉଁ ସଂସ୍କାରମାନ ବ୍ୟକ୍ତି ଭିତରେ ମହତ୍ତର ଜୀବନବୋଧ ଓ ବୈଜ୍ଞାନିକ ସଚେତନତା ଆଣିଥାଏ ତାହା ବ୍ୟକ୍ତି ଜୀବନକୁ ଉତ୍କର୍ଷ ଦିଗରେ ପ୍ରଭାବିତ କରେ । ପରନ୍ତୁ ଯେଉଁ ଭାବନା ଓ ପରିବେଶ ବ୍ୟକ୍ତି ଭିତରେ ସାଂପ୍ରଦାୟିକ, ଜାତିଗତ ବିଦ୍ୱେଷ ଓ କୁସଂସ୍କାରଜନିତ ବିଶ୍ୱାସକୁ ଜାବୁଡ଼ି ଧରିବାର ମନୋଭାବ ଆଣେ ତାହା ଜୀବନ ପାଇଁ ଅହିତକର ମନେହୁଏ ।

ଏହି ପୃଷ୍ଠଭୂମିରେ ଏକ ଶିକ୍ଷଣ ବା ଉନ୍ନତ ନାଗରିକ ସମାଜ ସମାଜକୁ ନୂତନ ଦିଗ୍‌ଦର୍ଶନ ଦେବାରେ ସହାୟକ ହୋଇଥାଏ । କିନ୍ତୁ ସମାଜ ଭିତରେ ଯଦି କୁସଂସ୍କାର, ଅହେତୁକ ଭାବନା, ଅବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଓ ପାରଲୌକିକ ଜୀବନଦୃଷ୍ଟି ବ୍ୟାପକ ଭାବେ ରହେ ଓ ଗଣମାଧ୍ୟମ ସେହି ଧାରାରେ ପ୍ରଭାବିତ ହୁଏ ତେବେ ସମାଜ ଉନ୍ନତ ହୋଇପାରେନାହିଁ । ହୁଏତ ସମାଜରେ ବିଜ୍ଞାନ ଓ ପ୍ରଯୁକ୍ତିର ସାଧନମାନ ଉପଲବ୍ଧ ହେଉଥାଏ, କିନ୍ତୁ ଜୀବନର ମାନ ନିମ୍ନ ସ୍ତରରେ ରହିଥାଏ । ସେହିଭଳି ସାମାଜିକ ପରିବେଶରେ ଦାରିଦ୍ର୍ୟ, ଦୁର୍ନୀତି, ଭେଦଭାବ, ସାଂପ୍ରଦାୟିକ ମନୋଭାବ, ବୈଷମ୍ୟ, ନିରକ୍ଷରତା, ପାରଲୌକିକ ଜୀବନଦୃଷ୍ଟି ବ୍ୟାପକ ହୋଇରହିବା ଦେଖାଯାଏ । ଏହି ସ୍ଥିତିରେ ଲୋକଶିକ୍ଷାକୁ ବ୍ୟାପକ କରିବାପାଇଁ ପ୍ରୟାସ ଆବଶ୍ୟକ ମନେହୁଏ । ଲୋକଶିକ୍ଷା ଅଭାବରେ ନାଗରିକ ସମାଜ ଉନ୍ନତ ହୋଇପାରେ ନାହିଁ । ବସ୍ତୁତଃ ଆନୁଷ୍ଠାନିକ ଶିକ୍ଷା ବାହାରେ ଶିକ୍ଷାର ଏକ ବ୍ୟାପକ ପରିସର ରହିଛି । ସମାଜର ସଚେତନ ବ୍ୟକ୍ତିବିଶେଷ, ଶିକ୍ଷଣ ସମାଜ ଓ ସମାଜ ପ୍ରତି ଉତ୍ତରଦାୟିତ୍ୱ କ୍ଷେତ୍ରରେ ସଂପୃକ୍ତି ବ୍ୟକ୍ତ କରୁଥିବା ଜନଗଣ ସମାଜର ବୌଦ୍ଧିକ ଓ ସାଂସ୍କୃତିକ ଉତ୍ତରଣ କ୍ଷେତ୍ରରେ ଏକ ମୁଖ୍ୟ ଭୂମିକା ନେଇପାରିବେ ।



# ମାନସିକ ଦାସତ୍ୱ : ଏକ ବିହଙ୍ଗାବଲୋକନ

କୌତୂହଳ ପ୍ରବଣତା ଓ ସ୍ୱାଧୀନତାର ଅନୁଭବ ଦୁଇଟି ମାନବିକ ଶ୍ରେୟ । କୌତୂହଳଜନିତ ଉଦ୍ଦୀପନାରୁ ମଣିଷ ତାର ପରିବେଶକୁ ଧୀରେ ଧୀରେ ବୁଝିବାକୁ ପ୍ରୟାସ କରିଛି । ମଣିଷ ସମାଜରେ ଜ୍ଞାନ ବିଜ୍ଞାନର ବିକାଶ ପଛରେ ରହିଛି ବୌଦ୍ଧିକ ଅନୁସନ୍ଧିତ୍ସା । ଏହି ଅନୁସନ୍ଧିତ୍ସୁ ମନ ଯୋଗୁ ଏକ ଆଦିମ ସ୍ଥିତିରୁ ମଣିଷ କ୍ରମୋନ୍ନତି ଧାରାରେ ଆଗକୁ ଯାଇଛି । ସଭ୍ୟତାର ସକଳ ଭୌତିକ ବିକାଶ ମଣିଷର ଅନୁସନ୍ଧିତ୍ସା, କୌତୂହଳତା, ଗବେଷଣା ଓ ବୌଦ୍ଧିକ ପ୍ରୟାସ ଯୋଗୁ ସମ୍ଭବ ହୋଇଛି । ସବୁ ସଭ୍ୟତାରେ କିଛି ବ୍ୟକ୍ତି ଜୀବନର ଗୁଣାତ୍ମକ ମାନରେ ଉନ୍ନତି ଆଣିବା ପାଇଁ ଜୀବନବ୍ୟାପୀ ପ୍ରୟାସ କରିଛନ୍ତି । ଜ୍ଞାନର ବିକାଶ ସାଧନ କରିବାକୁ, ନୂଆ ନୂଆ ପ୍ରଯୁକ୍ତିର ଉଦ୍ଭାବନ ପାଇଁ ଓ ଜୀବନର ପ୍ରତିକୂଳ ସ୍ଥିତିରେ ପରିବର୍ତ୍ତନ ପାଇଁ କିଛି ବ୍ୟକ୍ତି ସର୍ବଦା ସଂପୃକ୍ତି ବ୍ୟକ୍ତ କରିଛନ୍ତି । ମୁଷ୍ଟିମେୟ ବ୍ୟକ୍ତିଙ୍କର ଅନୁସନ୍ଧିତ୍ସା, ଗବେଷଣା ଓ ପ୍ରୟାସ ଯୋଗୁ ସଭ୍ୟତା ଆଜି ଏହି ସ୍ଥିତିକୁ ଆସିଛି । ସେହିପରି ସଭ୍ୟତାର ବିକାଶଧାରାରେ ସ୍ୱାଧୀନତାର ଅନୁଭବ ଏକ ମହତ୍ତର ଜୀବନବୋଧର ପରିଚୟ ଦେଇଥାଏ । ମଣିଷ ଦାସତ୍ୱ ଚାହେଁ ନାହିଁ, ସ୍ୱାଧୀନତା ଚାହେଁ । ଏପରିକି ଆକାଶର ପକ୍ଷୀଟିଏ ବା ପ୍ରାଣୀଟିଏ ସ୍ୱାଧୀନ ଭାବେ ବଞ୍ଚିବାକୁ ନିଶ୍ଚୟ ଭଲ ପାଉଥିବ । ତେବେ ସଭ୍ୟତାର ଇତିହାସରେ ଅନ୍ୟ ଉପରେ ପ୍ରଭୁତ୍ୱ ବିସ୍ତାର କରିବାର ବହୁ ଅମାନବିକ କାହାଣୀ ରହିଛି । ରାଜନୈତିକ, ସାମାଜିକ ଓ ସାଂସ୍କୃତିକ ଦାସତ୍ୱରୁ ମୁକ୍ତ ହେବା ପାଇଁ ଇତିହାସରେ କେତେ ସଂଗ୍ରାମ ହୋଇଛି । ମଣିଷ ଉପରେ ମଣିଷର ପ୍ରଭୁତ୍ୱର ବହୁ ଅମାନବିକ କାହାଣୀ ଇତିହାସରେ ଦେଖିବାକୁ ମିଳେ । ରାଜତନ୍ତ୍ରରେ, ସାମ୍ରାଜ୍ୟବାଦ ବିସ୍ତାର ଯୁଗରେ, ବର୍ଣ୍ଣଗତ ବା ଜାତିଗତ ବୈଷମ୍ୟ କ୍ଷେତ୍ରରେ ଏକ କ୍ଷମତାଶାଳୀ ଗୋଷ୍ଠୀ ଏକ ଦୁର୍ବଳ ଗୋଷ୍ଠୀ ଉପରେ ଅତ୍ୟାଚାର କରିଛି ଓ ଅନ୍ୟକୁ ଦାସତ୍ୱର ବେଡି ପିନ୍ଧାଇଛି । ଦାସତ୍ୱରୁ ମୁକ୍ତ ହେବାକୁ ଇତିହାସରେ କେତେ ସଂଗ୍ରାମ, ବିପ୍ଳବ ହୋଇଛି ତାହାର କାହାଣୀ ବେଶ୍ ମର୍ମାନ୍ତିକ ମନେହୁଏ । ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ଚିନ୍ତାରାଜ୍ୟରେ ଏକ ବିପ୍ଳବ ଆସିଛି । ସକଳ ପ୍ରକାରର

ଦାସତ୍ୱ, ସାମାଜିକ ଭେଦଭାବ, ଜାତିଗତ, ଲିଙ୍ଗଗତ ବା ବର୍ଣ୍ଣଗତ ବୈଷମ୍ୟକୁ ଆନ୍ତର୍ଜାତିକ ସ୍ତରରେ ବାରଣ କରାଯାଇଛି । ପ୍ରତ୍ୟେକ ବ୍ୟକ୍ତିର ମର୍ଯ୍ୟାଦାପୂର୍ଣ୍ଣ ଜୀବନ ଓ ସମତାଭାବ ନେଇ ଏକ ଆନ୍ତର୍ଜାତିକ ଚେତନା ସୃଷ୍ଟି ହୋଇଛି । ହୁଏତ ବିଭିନ୍ନ ସମାଜରେ କିଛି ବ୍ୟତିକ୍ରମ ରହିଛି, ତେବେ ମୋଟାମୋଟି ଭାବରେ ସଭ୍ୟତାର ବିକାଶଧାରାରେ ସ୍ୱାଧୀନତାର ପରିବେଶ ସଂପ୍ରତି ଜୀବନପ୍ରବାହରେ ଅଧିକ ଉପଲବ୍ଧ ହୋଇପାରୁଛି ।

ବ୍ୟକ୍ତି-ସ୍ୱାଧୀନତା ପୃଷ୍ଠଭୂମିରେ ଏକ ମୁକ୍ତ ସମାଜର ପରିକଳ୍ପନା ଆସିଥାଏ । ଏକ ମୁକ୍ତ ସାମାଜିକ ପରିବେଶରେ ବୌଦ୍ଧିକ ଓ ସୃଜନଶୀଳ ବିକାଶର ସମ୍ଭାବନା ଅଧିକ ଥାଏ । ଅଥଚ ସାମାଜିକ ସ୍ତରରେ ସ୍ୱାଧୀନତା ନଥିଲେ ଓ ବ୍ୟକ୍ତି ନାନା କଟକଣା ଓ ବାରଣକୁ ସାମ୍ନା କରୁଥିଲେ ତାର ଯଥାର୍ଥ ବୌଦ୍ଧିକ ବିକାଶ ସମ୍ଭବପର ହୋଇନଥାଏ । ତେବେ ଏକ ମୁକ୍ତ ସମାଜର ଅର୍ଥ ଏକ ବିଶୃଙ୍ଖଳ ସମାଜ ନୁହେଁ । ଏକ ମୁକ୍ତ ସମାଜର ଭାବନାକୁ କେତେକ ରକ୍ଷଣଶୀଳ ରୂଢ଼ିବାଦୀ ନାନା ବିରୋଧ କରିଥାନ୍ତି । ମୁକ୍ତ ସମାଜ କହିଲେ ରକ୍ଷଣଶୀଳମାନେ ଭାବିଥାନ୍ତି ଯେ ଏହି ସମାଜରେ ଯୌନ ଉଚ୍ଛୃଙ୍ଖଳତା, ନିଶା ସେବନର ମନୋଭାବ, ହିପିବାଦୀ ଜୀବନଧାରା ଇତ୍ୟାଦି ବହୁ ମନ୍ଦ ସ୍ଥିତି ରହିବ । ନାଗରିକ ବିଶୃଙ୍ଖଳା ଏହି ସମାଜର ସାଧାରଣ ଜୀବନଧାରା ହେବ ବୋଲି ରକ୍ଷଣଶୀଳମାନେ କଳ୍ପନା କରନ୍ତି । ଏକ ବିଚାରଶୀଳ ବ୍ୟକ୍ତି ଏକ ବିଶୃଙ୍ଖଳ ସମାଜକୁ ଏକ ମୁକ୍ତ ସମାଜ ବୋଲି ଗ୍ରହଣ କରିବେ ନାହିଁ । ସାମାଜିକ ଶୃଙ୍ଖଳା, ଉଚ୍ଚ ନାଗରିକ ସଚେତନତା, ଉନ୍ନତ କର୍ମସଂସ୍କୃତି, ଆଇନ୍ ପ୍ରତି ସମ୍ମାନ ଇତ୍ୟାଦି ଯେକୌଣସି ସାମାଜିକ ଜୀବନଧାରା ପାଇଁ ଅବଶ୍ୟମ୍ଭାବୀ ମନେହୁଏ । ସ୍ୱାଧୀନତାର ଅର୍ଥ ନୁହେଁ କୌଣସି ଅସାମାଜିକ ବା ଅନୈତିକ କାର୍ଯ୍ୟରେ ସଂପୃକ୍ତ ହେବା । ମୁକ୍ତ ସମାଜ କହିଲେ ବରଂ ଶୋଷଣ, ଭେଦଭାବ, ଅଜ୍ଞତା, ଅସମତା ଇତ୍ୟାଦିରୁ ମୁକ୍ତ ହେବାକୁ ବୁଝାଏ ।

ଦାସତ୍ୱ ସ୍ୱାଧୀନତାର ପରିପନ୍ଥୀ । ଯେଉଁ ପରିବେଶରେ ମାନସିକ ଦାସତ୍ୱର ପ୍ରଭାବ ଅଧିକ ରହେ, ସେଠାରେ ଜଣେ ସାଧାରଣ ନାଗରିକର ବୌଦ୍ଧିକ ଓ ସୃଜନଶୀଳ ବିକାଶ ବାଧାପ୍ରାପ୍ତ ହୋଇଥାଏ । ପିଲାଟି ସମୟରୁ ଜଣେ ଯଦି ମୁକ୍ତ ଭାବରେ କିଛି ଚିନ୍ତା କରିବାର ଅବକାଶ ପାଏ ନାହିଁ ଓ ସମାଜର ନାନା ବିଶ୍ୱାସ, ଅହେତୁକ ଭାବନା, କୁସଂସ୍କାର ତାର ଜୀବନବୋଧକୁ ନିୟନ୍ତ୍ରଣ କରେ ତେବେ ସମାଜର ସୁସ୍ଥ ବିକାଶ ବାଧାପ୍ରାପ୍ତ ହୋଇଥାଏ । ଏହି ମାନସିକ ଦାସତ୍ୱରୁ ସମାଜ ମୁକ୍ତ ନହେଲେ ସମାଜର ସାଂସ୍କୃତିକ ପ୍ରଗତି ବିପଥଗାମୀ ହୋଇଥାଏ । ସମାଜର ବୃହତ୍ତର ପରିବେଶରେ ଯଦି ଅହେତୁକ, ଅବୈଜ୍ଞାନିକ ଓ

ଅମାନବିକ ବିଚାରର ପ୍ରାବଲ୍ୟ ରହେ, ତେବେ ପରିଣାମ ସ୍ୱରୂପ ତାହାର କୁପ୍ରଭାବ ଜନଜୀବନକୁ କବଳିତ କରିଥାଏ ।

ପାରଲୌକିକ ଜୀବନଦୃଷ୍ଟି ଆମ ସମାଜରେ ବ୍ୟାପକ ଭାବେ ରହିବା ପରିଲକ୍ଷିତ ହୁଏ । ବୃହତ୍ତର ସମାଜ ଉପରେ ଆସ୍ଥା ସ୍ଥାପନ କରିପାରୁ ନଥିବା ଓ ନାନା ପ୍ରତିକୂଳ ପରିବେଶକୁ ସାମ୍ନା କରୁଥିବା ଲୋକମାନେ ସାଧାରଣତଃ କଳ୍ପିତ ଦୈବୀ କୃପା ଉପରେ ଆସ୍ଥା ସ୍ଥାପନ କରିଥାନ୍ତି । ସେମାନଙ୍କ ମାନସିକତା ଭିତରେ ଏହି ଭାବନା ଉଦ୍ରେକ ହୋଇଥାଏ ଯେ ଦିଅଁ ଦେବତାର ଆଶୀର୍ବାଦ ଦ୍ୱାରା ଜୀବନର ପ୍ରତିକୂଳ ସ୍ଥିତିର ସାମ୍ନା କରିହେବ । ସୁତରାଂ ମାନସିକ କରି କେଉଁ ଦିଅଁ ଉପରେ ପାଣି ଢାଳିବାକୁ ସେ ଅନେକ କଷ୍ଟ ସହି ବାଟ ଚାଲିଥାଏ । କେଉଁ ଶୁଭ ମୁହୂର୍ତ୍ତରେ କେଉଁ ଘାଟରେ ବୁଡ ପକାଇଲେ ତା ଜୀବନର ସମସ୍ତ ପାପ ତାପ ଧୋଇଯିବ ବୋଲି ସେ ବିଶ୍ୱାସ କରେ । କେଉଁ ଦେବତାଙ୍କ ପାଖକୁ ନଡିଆ ପଠାଇଲେ ତାର ମନସ୍କାମନା ପୂରଣ ହେବ ବୋଲି ସେ ବିଶ୍ୱାସ କରିଥାଏ । କେଉଁ ପୀଠରେ ଚାଦର ଚଢାଇଲେ, କେଉଁ ପବିତ୍ର ପୀଠକୁ ତୀର୍ଥ କରିଗଲେ, କେଉଁଠି ଦେବତାର ପାଦ ଦର୍ଶନ କଲେ ବା କେଉଁଠି ଅଧିଆ ପଡିଲେ ଜୀବନର ପ୍ରତିକୂଳ ପରିସ୍ଥିତି ଦୂର ହୋଇପାରିବ ବୋଲି ସେ ମନେକରେ । ବିଶେଷକରି ବାସ୍ତବ ଜୀବନଯାତ୍ରାରେ ଯେତେବେଳେ ବ୍ୟକ୍ତି ପ୍ରତିକୂଳ ସ୍ଥିତିର ସାମ୍ନା କରୁଛି ଓ ସାମାଜିକ ବ୍ୟବସ୍ଥା ଉପରେ ସେ ନିର୍ଭର କରିପାରୁ ନାହିଁ, ସେତେବେଳେ ସମାଜର ପ୍ରଚଳିତ ବିଶ୍ୱାସ, ପରମ୍ପରା ଓ ଅହେତୁକ ଭାବାବେଗ ଉପରେ ସେ ଆସ୍ଥା ସ୍ଥାପନ କରିଥାଏ । ନିଜର ସାମର୍ଥ୍ୟ ଭିତରେ ସେ ଅଭାବ ଅନାଟନକୁ ସାମ୍ନା କରିପାରୁ ନାହିଁ, ଜୀବନରେ ସ୍ୱାବଲମ୍ବୀ ହେବା ତା ପାଇଁ ସମ୍ଭବ ହେଉ ନାହିଁ, ପରିବାରରେ ଶାନ୍ତିଶୃଙ୍ଖଳା ରହିପାରୁ ନାହିଁ, ପିଲାଙ୍କର ସର୍ବନିମ୍ନ ଆବଶ୍ୟକତା ପୂରଣ କରିବାକୁ ସେ ସମର୍ଥ ହୋଇପାରୁ ନାହିଁ ସେ କ୍ଷେତ୍ରରେ ବିଚାରଶୀଳ ଦୃଷ୍ଟି ଅଭାବରେ କାଳ୍ପନିକ ପାରଲୌକିକ ଶକ୍ତି ଉପରେ ଆସ୍ଥା ସ୍ଥାପନ କରିବା ତା ପାଖରେ ସାଧାରଣ ମନସ୍ତତ୍ତ୍ୱ ହୋଇଥାଏ ।

ସମାଜର ସାଧାରଣ ମନସ୍ତତ୍ତ୍ୱରେ ଏହା ଦେଖାଯାଏ ଯେ ଯେତେବେଳେ କୌଣସି ବ୍ୟକ୍ତି କିଛି ଚମତ୍କାରିତା ଦେଖାଉଛନ୍ତି ସେ ନିଶ୍ଚୟ ଜଣେ ଐଶ୍ୱରିକ ଶକ୍ତିସମ୍ପନ୍ନ ବ୍ୟକ୍ତି । ଏହି ଐଶ୍ୱରିକ ଶକ୍ତିସମ୍ପନ୍ନ ବ୍ୟକ୍ତିଙ୍କର ଭକ୍ତ ହେଲେ ସେ ତାଙ୍କର ଦୈବୀଶକ୍ତି ବଳରେ ଜୀବନର ପ୍ରତିକୂଳ ପରିବେଶକୁ ବଦଳାଇ ପାରିବେ । ଏହି ମାନସିକତାରୁ ବହୁ ବ୍ୟକ୍ତି ସ୍ୱଘୋଷିତ ଦେବପୁରୁଷ ବା ଦେବମହିଳା(ଗଡ୍‌ମେନ୍ କିମ୍ବା ଗଡ୍‌ୱିମେନ୍)ମାନଙ୍କର

ଭକ୍ତ ପାଲଟନ୍ତି । ଦେବପୁରୁଷମାନେ ସାଧାରଣ ଲୋକଙ୍କର ମନସ୍ତତ୍ତ୍ୱକୁ ବେଶ୍ ଭଲ ବୁଝିପାରିଛନ୍ତି ଓ ଲୋକଙ୍କର ଆସ୍ଥାଭାଜନ ହେବାକୁ ସେମାନେ କିଛି ଚମତ୍କାରିତା ଦେଖାନ୍ତି । ଏହି ଚମତ୍କାରିତାଦ୍ୱାରା ସେମାନେ ଅଗଣିତ ଭକ୍ତମଣ୍ଡଳୀ ସୃଷ୍ଟି କରନ୍ତି ଓ ଧୀରେ ଧୀରେ ସେମାନଙ୍କର ନିଜସ୍ୱ ସାମ୍ରାଜ୍ୟ ସୃଷ୍ଟି ହୁଏ । ସେମାନେ କେତେ ପ୍ରବଚନ ଦିଅନ୍ତି, ନୀତି ନୈତିକତାର ବାଣୀ ଶୁଣାନ୍ତି, ଶିକ୍ଷାନୁଷ୍ଠାନ ସ୍ଥାପନକରି ତାଙ୍କ ବିଚାରର ପ୍ରସାର ପାଇଁ ଭିତ୍ତିସ୍ଥାପନ କରନ୍ତି । ସମାଜର ଅସାଧୁ ବ୍ୟବସାୟୀ, ଦୁର୍ନୀତିଗ୍ରସ୍ତ କର୍ମଚାରୀ ଓ କଳାଧନର ଅଧିକାରୀମାନେ ନିଜର ଧର୍ମପ୍ରାଣତା ଦେଖାଇବାକୁ ଦେବପୁରୁଷମାନଙ୍କର ଭକ୍ତ ପାଲଟନ୍ତି ଓ ସେମାନଙ୍କୁ ଅର୍ଥ ବି ଦିଅନ୍ତି । ଏହି ଧାରାରେ ଦେବପୁରୁଷଗଣ ଅମାପ ଅର୍ଥର ଅଧିକାରୀ ହୁଅନ୍ତି ଓ ନିଜର ମହାନୁଭବତାର ପ୍ରମାଣ ସ୍ୱରୂପ ଚିକିତ୍ସାଳୟ ସ୍ଥାପନ କରନ୍ତି ବା କେତେକ ସେବାମୂଳକ କାର୍ଯ୍ୟରେ ଅର୍ଥ ବ୍ୟୟ କରନ୍ତି । ସମାଜର ପ୍ରତିଷ୍ଠିତ ବ୍ୟକ୍ତି, ପ୍ରଭାବଶାଳୀ ରାଜନେତା ଓ ଏପରିକି କେତେକ ବୁଦ୍ଧିଜୀବୀ ବି ସେମାନଙ୍କର ଭକ୍ତ ପାଲଟନ୍ତି । ସେମାନଙ୍କ ଚମତ୍କାରିତା ଯେ କେବଳ ହାତସଫେଇ ଯାଦୁ ଏହା ଭକ୍ତମାନେ ବିଶ୍ୱାସ କରନ୍ତି ନାହିଁ ।

ସାମାଜିକ ଜୀବନପ୍ରବାହରେ ଯଦି କୁସଂସ୍କାର, ଅହେତୁକ ମାନସିକତା, ଭାଗ୍ୟବାଦୀ ଜୀବନଦୃଷ୍ଟି ବ୍ୟାପକ ଭାବେ ରହିଥାଏ ତେବେ ସମାଜର ବିଚାରଶୀଳ ଓ ସମ୍ବେଦନଶୀଳ ଲୋକମାନେ ଅସ୍ୱସ୍ତିକର ଅନୁଭବ ଭିତରେ ମୁକ୍ତ-ଚିନ୍ତନର ପ୍ରସାର ବାଧାପ୍ରାପ୍ତ ହୋଇଥାଏ । ସାମାଜିକ ଜୀବନର ପ୍ରଭାବକୁ ପ୍ରତିହତ କରିବା ସାଧାରଣ ମଣିଷ ପାଖରେ ଜଟିଳ ମନେହୁଏ । ଏକ ଏକଛତ୍ରବାଦୀ ବ୍ୟବସ୍ଥାରେ ବା ସାମରିକ ସରକାରରେ ଜଣେ ଗଣତନ୍ତ୍ରପ୍ରେମୀ ନାଗରିକ ଯେପରି ଅସ୍ୱସ୍ତିକର ଅନୁଭବ ପାଏ ସେହିପରି ଏକ ସମାଜ ବ୍ୟବସ୍ଥାରେ ଯଦି କୁସଂସ୍କାର, ଧାର୍ମିକ ମୌଳବାଦ, ଜାତିଗତ ଓ ସାଂପ୍ରଦାୟିକ ବିଦ୍ୱେଷର ପ୍ରାବଲ୍ୟ ରହିଥାଏ ସେ କ୍ଷେତ୍ରରେ ଜଣେ ବିଚାରଶୀଳ ମାନବବାଦୀ, ମୁକ୍ତଚିନ୍ତକ ହେତୁବାଦୀ ଓ ବିଜ୍ଞାନମନସ୍କ ପ୍ରଗତିଶୀଳ ବ୍ୟକ୍ତି ଅସ୍ୱସ୍ତିକର ଭାବେ ଜୀବନ ନିର୍ବାହ କରୁଥାଏ । ସାମାଜିକ ଜୀବନପ୍ରବାହରେ ଯଦି ନାଗରିକ ବିଶୃଙ୍ଖଳା, ପାରଲୌକିକ ମାନସିକତାର ପ୍ରାଧାନ୍ୟ ରହେ, ସେ କ୍ଷେତ୍ରରେ ସମାଜର ବୌଦ୍ଧିକ, ମାନବିକ ଓ ନୈତିକ ବିକାଶ ନାନା ଭାବରେ ବାଧାପ୍ରାପ୍ତ ହେଉଥାଏ । ସାମାଜିକ ଜୀବନଧାରାରେ ମାନସିକ ଦାସତ୍ୱ ଯେତେ ଅଧିକ ରହେ ତାହା ବ୍ୟକ୍ତିମାନଙ୍କର କୌତୂହଳ ପ୍ରବଣତା ଓ ସ୍ୱାଧୀନତାର ମନୋଭାବ କ୍ଷେତ୍ରରେ ପ୍ରତିବନ୍ଧକ ସାଜିଥାଏ । ତାହାର ପ୍ରଭାବରେ ସୃଜନଶୀଳତା, ବିଚାରଶୀଳତାର ଯଥୋଚିତ ବିକାଶ ହୋଇପାରେ ନାହିଁ । ଏହି ପରିବେଶରେ ଜୀବନର

ଗୁଣାତ୍ମକ ମାନ ନ୍ୟୂନ ହୋଇ ରହିଥାଏ । ଏକ ଅନୁକୂଳ ସାମାଜିକ ବାତାବରଣରେ ଶିକ୍ଷା, ସ୍ୱାସ୍ଥ୍ୟସେବା, ସାମାଜିକ ନିରାପତ୍ତା, ଗୁଣାତ୍ମକ ଜୀବନ ଯେଉଁପରି ଉପଲବ୍ଧ ହୋଇପାରେ, ଏକ କୁସଂସ୍କାରପୂର୍ଣ୍ଣ ଓ ଧାର୍ମିକ ଆବେଗରେ ପରିଚାଳିତ ସମାଜରେ ଏହା ନାଗରିକଙ୍କ ପାଇଁ ସେପରି ଉପଲବ୍ଧ ହୋଇପାରେ ନାହିଁ । ସୁଖବୋଧ, ସ୍ୱାଧୀନ ମନୋଭାବ ଓ ସୃଜନଶୀଳତାର ବିକାଶ କ୍ଷେତ୍ରରେ ମାନସିକ ଦାସତ୍ୱ ପ୍ରତିବନ୍ଧକ ହୋଇଥାଏ ।

ଏହା ଏକ ବୌଦ୍ଧିକ ଉପଲବ୍ଧି ଓ ଐତିହାସିକ ସତ୍ୟ ଯେ ସଭ୍ୟତାରେ ଯାହା କିଛି ବିକାଶ ହୋଇଛି ସେସବୁ ମଣିଷର ପ୍ରୟାସରେ ହୋଇଛି । ପ୍ରକୃତିରେ ଉପଲବ୍ଧ ବସ୍ତୁମାନଙ୍କ ସାହାଯ୍ୟରେ ମଣିଷ ତାର ବୁଦ୍ଧି, ଜ୍ଞାନ ଓ କୌଶଳ ଖଟାଇ ନାନା ଆବଶ୍ୟକୀୟ ପଦାର୍ଥ ନିର୍ମାଣ କରିଛି । ସକଳ ଉପକରଣ, ଯାନବାହାନ, ରାସ୍ତାଘାଟ ମଣିଷ ହିଁ ନିଜ ଉଦ୍ୟମରେ ପ୍ରସ୍ତୁତ କରିଛି, ଏହା କେଉଁ ଆକାଶରୁ ଖସି ନାହିଁ ବା ଦିଅଁ ଦେବତାଙ୍କର ଆଶୀର୍ବାଦରୁ ହୋଇ ନାହିଁ । ବସ୍ତୁତଃ କୌଣସି ଅତୀନ୍ଦ୍ରିୟ ସତ୍ତା ମଣିଷକୁ ପ୍ରାକୃତିକ ବିପର୍ଯ୍ୟୟରୁ ରକ୍ଷା କରି ନାହିଁ କିମ୍ବା ସଭ୍ୟତାର ବିକାଶ କ୍ଷେତ୍ରରେ ସାହାଯ୍ୟ ଦେଇନାହିଁ । ଏସବୁ ସତ୍ତ୍ୱେ ଅତୀନ୍ଦ୍ରିୟ ସତ୍ତାରେ ବିଶ୍ୱାସ ମଣିଷ ମନରେ ଦୃଢ ହୋଇ ରହିଛି । କୌଣସି ବସ୍ତୁନିଷ୍ଠ ଆଧାର ବା ଯୁକ୍ତିସଙ୍ଗତ ଭିତ୍ତି ନଥାଇ ମଧ୍ୟ ଆଧିଦୈବିକ ଶକ୍ତି ଓ ଅତୀନ୍ଦ୍ରିୟ ସତ୍ତାରେ ବିଶ୍ୱାସ ଅନେକ ବ୍ୟକ୍ତିଙ୍କ ମାନସିକତାରେ ରହିଛି । ସମ୍ଭବତଃ ନାନା ମନୋବୈଜ୍ଞାନିକ କାରଣ ଯୋଗୁ ଦେବୀ, ଦେବତା, ଈଶ୍ୱର ପରି କାଳ୍ପନିକ ଶକ୍ତିରେ ମଣିଷ ବିଶ୍ୱାସ କରିଆସିଛି । ମନୋବିଜ୍ଞାନୀମାନେ ମତ ଦେଇଥାନ୍ତି ଯେ 'ମୃତ୍ୟୁ ଭୟ' ପ୍ରତ୍ୟେକ ବ୍ୟକ୍ତି ଭିତରେ ରହିଛି । ପ୍ରତ୍ୟେକ ବ୍ୟକ୍ତି ସଚେତନ ଯେ ଜୀବନର ଅନ୍ତିମ ପରିଣତି ମୃତ୍ୟୁ । ପୁନଶ୍ଚ ବିଭିନ୍ନ ଧର୍ମ ସଂସ୍କୃତିରେ ମୃତ୍ୟୁ ପର ସ୍ଥିତି ନେଇ ନାନା କଳ୍ପନା ରହିଛି । କେତେକ ଧର୍ମର ବିଶ୍ୱାସ ଅନୁଯାୟୀ ମଣିଷର ଏକ ଅବିନାଶୀ ଆତ୍ମା ରହିଛି ଯାହା ମୃତ୍ୟୁ ପରେ ଅବସ୍ଥାନ କରେ । ତେବେ ଏକ ବିଚାର ଦିବସ ଆସିବ, ଯେଉଁଦିନ ଈଶ୍ୱର ପ୍ରତ୍ୟେକ ବ୍ୟକ୍ତିର ଭଲ ମନ୍ଦ ବିଚାର କରି ତାକୁ ଅନନ୍ତ କାଳ ପାଇଁ ସ୍ୱର୍ଗଗାମୀ ବା ନରକଗାମୀ କରାଇବେ । ଅନ୍ୟ କେତେକ ଧର୍ମର ବିଶ୍ୱାସ ଅନୁଯାୟୀ ଆତ୍ମା ଜନ୍ମ-ମୃତ୍ୟୁର ଚକ୍ରରେ ମୋକ୍ଷ ପାଇବା ପର୍ଯ୍ୟନ୍ତ ଘୂରି ବୁଲୁଥାଏ । ଏସବୁ ହିଁ କେବଳ ପ୍ରାଚୀନ ଯୁଗର ବିଶ୍ୱାସ ଓ ବିଭିନ୍ନ ସଭ୍ୟତା ଓ ଧର୍ମର କାଳ୍ପନିକ କାହାଣୀ । ମୃତ୍ୟୁ-ଭୟ ଓ ମରଣୋତ୍ତର ସ୍ଥିତି ଜନିତ ଆବେଗରୁ ଅତୀନ୍ଦ୍ରିୟ ସତ୍ତାରେ ବିଶ୍ୱାସ ମଣିଷ ଭିତରେ ବ୍ୟାପକ ହୋଇରହିଛି । ଭୟ ଯେହେତୁ ଏକ ସହଜାତ ଆବେଗ, ଭୟାତୁର ବ୍ୟକ୍ତି ଏକ ସୁରକ୍ଷାକାରୀର ଆଶ୍ରୟ ଲୋଡିବା ମଧ୍ୟ ସାଧାରଣ ମନସ୍ତତ୍ତ୍ୱ । ସୁତରାଂ

ବହୁ ଅତୀତରୁ ଦେବୀ, ଦେବତା, ଈଶ୍ୱର ଯେ ଏକ ସୁରକ୍ଷାକାରୀ ଅତୀନ୍ଦ୍ରିୟ ସତ୍ତା ଏହି ବିଶ୍ୱାସ ସମାଜରେ ସୃଷ୍ଟି ହୋଇଛି ଓ ମଣିଷର ଅବଚେତନ ସତ୍ତାରେ ଦୃଢ ହୋଇରହିଛି । ଯେଉଁସବୁ ମନସ୍ତାତ୍ତ୍ୱିକ କାରଣରୁ ଏକ ଅତୀନ୍ଦ୍ରିୟ ସୁରକ୍ଷାକାରୀ ଶକ୍ତିରେ ମଣିଷ ବହୁ ଅତୀତରୁ ଆସ୍ଥା ସ୍ଥାପନ କରିଆସିଛି, ସେହି କାରଣ ଭିତରେ ମୃତ୍ୟୁ-ଭୟ ଓ ଏକ ଉନ୍ନତ ମରଣୋତ୍ତର ସ୍ଥିତି-ଜନିତ କାରଣ ମଣିଷର ଆଧିଦୈବିକ ସ୍ଥିତିରେ ବିଶ୍ୱାସ କ୍ଷେତ୍ରରେ ମୁଖ୍ୟ ଭୂମିକା ନେଇଛି ।

ଅତୀନ୍ଦ୍ରିୟ ସତ୍ତାରେ ବିଶ୍ୱାସ ପଶ୍ଚାତରେ କେତେକ ରାଜନୈତିକ ଓ ସାମାଜିକ କାରଣ ମଧ୍ୟ ନିହିତ ଥିବା ମନେହୁଏ । ସଭ୍ୟତାର କ୍ରମବିକାଶ ଧାରାରେ ଗୋଟିଏ ସମୟରେ ରାଜତନ୍ତ୍ରର ଯୁଗ ଆସିଛି । ରାଜତନ୍ତ୍ରର ଅଭ୍ୟୁଦୟ ସହ ସମାଜରେ ଏକ ସାମନ୍ତବର୍ଗ ସୃଷ୍ଟି ହୋଇଛନ୍ତି ଓ ସମାଜ ଶ୍ରେଣୀ ବିଭକ୍ତ ହୋଇଯାଇଛି । ସମାଜର ମୁଷ୍ଟିମେୟ, ସଂଭ୍ରାନ୍ତ ଓ ବୁଦ୍ଧିମାନ ବ୍ୟକ୍ତିମାନେ ସଂଖ୍ୟାଗରିଷ୍ଠ ଲୋକମାନଙ୍କ ଭିତରେ ରାଜାଙ୍କୁ ଈଶ୍ୱରଙ୍କ ପ୍ରତିନିଧିର ଭୂମିକା ଦେଇଛନ୍ତି । ଈଶ୍ୱରୀୟ ବିଧାନ ଭିତରେ ଶାସକ ରହିବେ ଓ ଶାସିତ ବି ରହିବେ । ଜନଗଣଙ୍କୁ ନିୟନ୍ତ୍ରଣରେ ରଖିବା ପାଇଁ ରାଜତନ୍ତ୍ର ଯୁଗରେ ସଂଭ୍ରାନ୍ତ ଶାସକ ଓ ପୂଜକ ଗୋଷ୍ଠୀ କେତେ କେତେ ଈଶ୍ୱରୀୟ ବିଧାନ, ବିଶ୍ୱାସ, କର୍ମକାଣ୍ଡ ସୃଷ୍ଟି କରିଛନ୍ତି । ଏହା ସହିତ ଆନୁଷ୍ଠାନିକ ଧର୍ମମାନଙ୍କର ବିକାଶ ଓ ପ୍ରସାରଦ୍ୱାରା ସମାଜରେ ସାଂସ୍କୃତିକ ସଂହତି ଆସିଛି । ଧର୍ମ, ଈଶ୍ୱର, କର୍ମକାଣ୍ଡ, ନାନା ପାରଲୌକିକ ବିଶ୍ୱାସ ସମାଜରେ ଦୃଢ ଭିତ୍ତି ନେଇଛି ଓ ନାନା ମିଥ୍ ସବୁ ସୃଷ୍ଟି ହୋଇଛି । କ୍ଷମତା, ଅର୍ଥ, ରାଜ୍ୟବିସ୍ତାର, ଚାଷଜମି ଉପରେ ନିୟନ୍ତ୍ରଣ ପାଇଁ ସମାଜର ମୁଷ୍ଟିମେୟ ପ୍ରଭାବଶାଳୀ ଗୋଷ୍ଠୀ ଧର୍ମ, ଈଶ୍ୱରକୁ ସାଧନ ଭାବେ ନେଇଛନ୍ତି । ଆମ ଦେଶ ପୃଷ୍ଠଭୂମିରେ ଭେଦଭାବମୂଳକ ବର୍ଣ୍ଣବ୍ୟବସ୍ଥାକୁ ଓ ଜାତିପ୍ରଥାକୁ ଏକ ଅଲଘଂନୀୟ ଦୈବୀବିଧାନ ବୋଲି ବିଚାର ସୃଷ୍ଟି କରାଯାଇଛି । କେତେ କେତେ ଭାକ୍ତିକ ମିଥ୍ୟାର ଆଶ୍ରୟ ନିଆଯାଇ ସମାଜର ପ୍ରଭାବଶାଳୀ ସଚେତନ ଗୋଷ୍ଠୀଟି ଏକ ବୃହତ୍ତର ଗୋଷ୍ଠୀକୁ ନ୍ୟୂନ ଓ ନିୟନ୍ତ୍ରଣ ଭିତରେ ରଖିବାକୁ ଉଦ୍ୟମ କରିଛି । ଏପରିକି ରାଜାମାନେ ଯୁଦ୍ଧରେ ସଂପୃକ୍ତ ହୋଇ ଅନ୍ୟ ରାଜ୍ୟ ଉପରେ ଆକ୍ରମଣ କରିବାକୁ ଗଲାବେଳେ ତାଙ୍କ କଳ୍ପିତ ଠାକୁର ତାଙ୍କୁ ସହଯୋଗ ଦେଇଥିବା ମନଗଢା କାହାଣୀକୁ ପ୍ରଚାର କରାଯାଇଛି । କେତେକ ସଭ୍ୟତାରେ 'ଧର୍ମଯୁଦ୍ଧ'ର ଭାବନା ମଧ୍ୟ ସୃଷ୍ଟି ହୋଇଛି । ନିଜ ବିଶ୍ୱାସରେ ଧର୍ମ, ଈଶ୍ୱର, ପୂଜାସ୍ଥଳକୁ ପବିତ୍ର ମନେ କରାଯାଇ ଅନ୍ୟ ବିଶ୍ୱାସର ପୂଜାସ୍ଥଳକୁ ଧ୍ୱଂସ କରାଯାଇଛି । ଧର୍ମ, ଈଶ୍ୱରଙ୍କୁ ଆଧାର କରି ଧରିତ୍ରୀ ଅତୀତରେ ବହୁବାର ରକ୍ତରଞ୍ଜିତ

ହୋଇଛି । ଏବେ ବି ଧର୍ମକୁ ନେଇ ସାମ୍ପ୍ରଦାୟିକ ବିଦ୍ୱେଷ ଓ ସନ୍ତ୍ରାସବାଦର ପରିବେଶ କେତେକ ଦେଶରେ ରହିଛି । ସଭ୍ୟତା ଯେତେ ଆଗକୁ ଗଲେ ମଧ୍ୟ ଧର୍ମଭିତ୍ତିକ ଭେଦଭାବ, ଅସହିଷ୍ଣୁତା ଧର୍ମଗୋଷ୍ଠୀମାନଙ୍କ ଭିତରେ ରହିଛି ।

ପୁନଶ୍ଚ କେତେକ ସଭ୍ୟତାରେ କିଛି ରହସ୍ୟବାଦୀ ବ୍ୟକ୍ତି ଈଶ୍ୱରାନୁଭୂତି ସମ୍ପର୍କରେ ବିଭିନ୍ନ କଥା ପ୍ରଚାର କରିଛନ୍ତି । କେତେକ ବ୍ୟକ୍ତିଙ୍କର ବ୍ୟକ୍ତିଗତ ଅନୁଭୂତି ଏକ ସର୍ତ୍ତବନ୍ଧ ମନର ପରିଣାମ । ଯେପରି କେତେକ ବ୍ୟକ୍ତି ଭାଂଗ ବା ନିଶା ସେବନ କଲେ ସେମାନଙ୍କର କେତେକ ଅସ୍ୱାଭାବିକ ଅନୁଭୂତି ହୋଇଥାଏ ସେହିପରି ମନୋବିଜ୍ଞାନ ପରିଭାଷାରେ ସର୍ତ୍ତବନ୍ଧ ମନର କେତେକ ବ୍ୟକ୍ତିନିଷ୍ଠ ଅନୁଭୂତି ହେବା ସମ୍ଭବ । ଏଠାରେ ଜଣେ ବ୍ୟକ୍ତିଙ୍କର ଅନୁଭୂତିକୁ ଅସ୍ୱୀକାର କରାଯାଉ ନାହିଁ, କିନ୍ତୁ ସେହି ଅନୁଭୂତି ଯେ ନିଜ ବିଶ୍ୱାସର ପ୍ରତିଫଳନ ଏହା ହିଁ ଦର୍ଶାଯାଉଛି । ଯେଉଁ ସମୟରେ ମନୋବିଜ୍ଞାନ, ସ୍ନାୟୁବିଜ୍ଞାନର ବିକାଶ ହୋଇନଥିଲା, ସେହି ସମୟରେ ତଥାକଥିତ ରହସ୍ୟମୟ ଅନୁଭୂତିକୁ ଈଶ୍ୱରାନୁଭୂତି ଭାବେ ଗ୍ରହଣ କରାଯାଉଥିଲା । ସଂପ୍ରତି ଜ୍ଞାନବିଜ୍ଞାନର ବିକାଶଦ୍ୱାରା ବ୍ୟକ୍ତିନିଷ୍ଠ ଅନୁଭୂତି, ସ୍ୱପ୍ନାନୁଭୂତି ଇତ୍ୟାଦିକୁ ବୈଜ୍ଞାନିକ ଧାରାରେ ବ୍ୟାଖ୍ୟା କରାଯାଇପାରୁଛି । ସୁତରାଂ କୌଣସି ରହସ୍ୟବାଦୀ ବ୍ୟକ୍ତିଙ୍କର ସ୍ୱଅନୁଭୂତି ଆଧାରରେ ଈଶ୍ୱରଙ୍କ ଅସ୍ତିତ୍ୱକୁ ଗ୍ରହଣ କରାଯାଇପାରିବ ନାହିଁ । ପୁନଶ୍ଚ ରହସ୍ୟବାଦୀମାନଙ୍କର ଅନୁଭୂତି ସମାନ ନୁହେଁ ଓ ସେଗୁଡିକ ବିଭିନ୍ନ ବ୍ୟକ୍ତିମାନଙ୍କର ଧାର୍ମିକ ବିଶ୍ୱାସ, ସାଂସ୍କୃତିକ ପ୍ରଭାବ ଓ ସର୍ତ୍ତବନ୍ଧ ମନର ଅଭିବ୍ୟକ୍ତି ମାତ୍ର ।

ଏବେ ସୁଦ୍ଧା ସମାଜରେ ଏକ ସାଧାରଣ ବିଶ୍ୱାସ ରହିଛି ଯେ ଏକ ଉତ୍ତମ ଜୀବନ ପାଇଁ ବା ନୀତିପୂର୍ଣ୍ଣ ଆଚରଣ ପାଇଁ ଈଶ୍ୱର-ବିଶ୍ୱାସ ଅବଶ୍ୟମ୍ଭାବୀ । ଯେଉଁମାନେ ଧର୍ମ ଓ ଈଶ୍ୱର ବିଶ୍ୱାସୀ ସେମାନେ ଭଲ ମଣିଷ, ଅଥଚ ଈଶ୍ୱରଙ୍କୁ ବିଶ୍ୱାସ କରୁନଥିବା ବ୍ୟକ୍ତିମାନେ ସ୍ୱଭାବରେ ମନ୍ଦ ଓ ଦୁଷ୍ଟ । ଧର୍ମ, ଈଶ୍ୱର ଓ ନୈତିକତା ପ୍ରସଙ୍ଗ ଉପରେ ଦର୍ଶନ ପରିସରରେ ବହୁ ଆଲୋଚନା ହେବା ଦେଖାଯାଏ । ଦର୍ଶନଶାସ୍ତ୍ର ପରିସରରେ ଏହା ଏକ ପ୍ରତିପାଦ୍ୟ ସିଦ୍ଧାନ୍ତ ଯେ ନୈତିକତା ଓ ଈଶ୍ୱର ଦୁଇଟି ପୃଥକ୍ ଭାବନା । ଈଶ୍ୱର ଭାବନା ଜଣେ ବ୍ୟକ୍ତି ରଖିପାରନ୍ତି ବା ଈଶ୍ୱରଙ୍କ ଅସ୍ତିତ୍ୱ ଉପରେ ସନ୍ଦେହ ପୋଷଣ କରିପାରନ୍ତି । ସଭ୍ୟତାର ବିବର୍ତ୍ତନ ଧାରାରେ ଓ ବୌଦ୍ଧିକ ବିକାଶ ପୃଷ୍ଠଭୂମିରେ ଈଶ୍ୱର ଭାବନାର ବିନାନା ପରିବର୍ତ୍ତନ ହୋଇଚାଲିଛି । ଏହା ଧର୍ମର ପରିସରରେ ଏକ ଆଲୋଚ୍ୟ ପ୍ରସଙ୍ଗ । ନୀତି, ନୈତିକତା, ଉତ୍ତମ ଆଚରଣ ସାମାଜିକ ଜୀବନ ପୃଷ୍ଠଭୂମିରେ ହିଁ ବିଚାର୍ଯ୍ୟ । ନୈତିକତା ଏକ ସାମାଜିକ କର୍ତ୍ତବ୍ୟ ଓ ନୈତିକ ଆଦର୍ଶମାନ ସାମାଜିକ ପରିବର୍ତ୍ତନ ଓ

ଯୁଗର ଆହ୍ୱାନ ପରିପ୍ରେକ୍ଷୀରେ ପରିବର୍ତ୍ତନଶୀଳ । ପ୍ରତ୍ୟେକ ଈଶ୍ୱର ବିଶ୍ୱାସୀ ବ୍ୟକ୍ତି ନୀତିମାନ୍ ନୁହନ୍ତି । ଅନେକ ଅପରାଧୀ, ଦୁର୍ନୀତିଖୋର ବ୍ୟକ୍ତି, ଯୁଦ୍ଧଖୋର ଶାସକ, ସନ୍ତ୍ରାସବାଦୀ ବ୍ୟକ୍ତି ଈଶ୍ୱର ବିଶ୍ୱାସୀ । ସେହିପରି ବହୁ ହେତୁବାଦୀ, ସଂଶୟବାଦୀ, ନିରୀଶ୍ୱରବାଦୀ, ବସ୍ତୁବାଦୀ, ମାର୍କସ୍‌ବାଦୀ, ଅସ୍ତିତ୍ୱବାଦୀ ଇତ୍ୟାଦି ବ୍ୟକ୍ତି ଈଶ୍ୱର ବା ଅତୀନ୍ଦ୍ରିୟ ସତ୍ତାରେ ବିଶ୍ୱାସ ସ୍ଥାପନ କରନ୍ତି ନାହିଁ ଅଥଚ ଉଚ୍ଚ ମୂଲ୍ୟବୋଧରେ ଓ ମାନବବାଦରେ ଗଭୀର ଆସ୍ଥା ସ୍ଥାପନ କରନ୍ତି । ଇତିହାସରେ ଅନେକ ଏକଚ୍ଛତ୍ରବାଦୀ ଶାସକ ବେଶ୍ ଈଶ୍ୱର ବିଶ୍ୱାସୀ ଅଥଚ ମାନବିକତା ବିରୁଦ୍ଧରେ ଅପରାଧ କରିବାରେ ସେମାନଙ୍କର କାର୍ଯ୍ୟ ବେଶ୍ କୁଖ୍ୟାତ । ବସ୍ତୁତଃ ଈଶ୍ୱର-ବିଶ୍ୱାସ ଓ ନୈତିକ ଆଚରଣ ପୃଥକ୍ ଅବଧାରଣା । ଈଶ୍ୱର ବିଶ୍ୱାସରୁ ନୈତିକ ଆଚରଣ ପାଇଁ ପ୍ରେରଣା ଲାଭକରିବା ଏକ ମନସ୍ତାତ୍ତ୍ୱିକ ପ୍ରକ୍ରିୟା ମାତ୍ର, କାରଣ ନୈତିକତା ପାଇଁ ଅନ୍ୟ ବହୁ ସ୍ତରରୁ ପ୍ରେରଣା ଆସିବା ସମ୍ଭବ ।

ସଭ୍ୟତାର ଆରମ୍ଭ ପର୍ବରେ ଯେତେବେଳେ ମଣିଷର ବୌଦ୍ଧିକ ସ୍ତର ଅତି ସୀମିତ ଥିଲା, ଚିନ୍ତା-ଚେତନାରେ ବିଶେଷ ବିକାଶ ହୋଇନଥିଲା, ସବୁଠି ଭୟ ଓ ଅଜ୍ଞତାର ପରିବେଶ ରହିଥିଲା ସେହି ସ୍ଥିତିରେ ନାନା ମନସ୍ତାତ୍ତ୍ୱିକ କାରଣରୁ ମଣିଷ ବିଭିନ୍ନ ଭାବରେ କେତେ କେତେ କାଳ୍ପନିକ ଦିଅଁ ଦେବତାରେ ଆସ୍ଥା ସ୍ଥାପନ କରିଥିଲା । ସେହି ଯୁଗର ପରିବେଶରେ ଏହା ଅତ୍ୟନ୍ତ ସ୍ୱାଭାବିକ ଥିଲା । ଈଶ୍ୱର ଓ ଈଶ୍ୱରଙ୍କୁ ଆଧାର କରି ସ୍ୱର୍ଗ, ଅବତାରବାଦ, ଈଶ୍ୱରଙ୍କ ସ୍ୱର୍ଗରାଜ୍ୟ, ନରକ, ଈଶ୍ୱରଙ୍କର ପୁତ୍ର, ଦୂତ ଇତ୍ୟାଦି କେତେ କେତେ କଳ୍ପନା ମଣିଷର ସୃଜନଶୀଳ ମନରୁ ଉଦ୍ଭବ ହୋଇଥିଲା । ଜ୍ଞାନ ବିଜ୍ଞାନର ବିକାଶ, ଅନୁଶୀଳନାତ୍ମକ ତର୍କବୁଦ୍ଧି ଓ ସଭ୍ୟତାର ଅଗ୍ରଗତି ସହ ସେହି ଯୁଗର ବିଶ୍ୱାସମାନଙ୍କୁ ଆମେ ଆମ ପୂର୍ବସୂରୀଙ୍କର କଳ୍ପନା ବୋଲି କହିପାରିବା । ଗୋଟିଏ ଶିଶୁର ଶୈଶବକାଳୀନ ଅନୁଭବ, ବିଚାର, କଳ୍ପନା ବୟସର ବୃଦ୍ଧି ସହିତ ଜୀବନର ଅନୁଭୂତି, ଅଧ୍ୟୟନ ଓ ଅନୁଶୀଳନ ଦେଇ ପରିପକ୍ୱ ହୋଇଥାଏ । ପରିପକ୍ୱ ବୟସରେ ଶିଶୁ ପରି କହିବା, ଚିନ୍ତା କରିବା ବା ବ୍ୟବହାର ଦେଖାଇବା ଅସଙ୍ଗତ ମନେ ହୋଇଥାଏ । ଠିକ୍ ସେହିପରି ସଭ୍ୟତାର ଆଦିମ କାଳର ଚିନ୍ତା ଚେତନା, ବିଶ୍ୱାସ ଓ ବିଚାରବୋଧକୁ ଆଜିର ଯୁଗରେ ନିଷ୍ଠାର ସହ ପାଳନ କରିବା, ସେଥିରେ ଆସ୍ଥା ସ୍ଥାପନ କରିବା କେବଳ ଅପ୍ରାସଙ୍ଗିକ ମନେହୁଏ ନାହିଁ ବରଂ ଦୁର୍ବୋଧ ମନେହୁଏ । ପ୍ରାଚୀନ ଯୁଗର ଦେବୀ, ଦେବତା କେବଳ ଗୁଡ଼ିଏ ମିଥ୍, ସେମାନଙ୍କୁ ନେଇ ରଚିତ ଗ୍ରନ୍ଥ, ପୁରାଣର କାହାଣୀ କାଳ୍ପନିକ ଉପକଥା ଓ ଈଶ୍ୱର ସଂପର୍କିତ ବର୍ଣ୍ଣନାମାନ ଆଧୁନିକ ପରିଭାଷାରେ ମନଗଢ଼ା କାହାଣୀ ବା ଫିକ୍‌ସନ୍ । ହୁଏତ

ସ୍ଥଳବିଶେଷରେ ସେଥିରୁ କିଛି ମହତ୍ତର ସନ୍ଦେଶ ଆସିଥାଏ । ଏକ କାହାଣୀ ଭିତରେ ଜୀବନବୋଧର କିଛି ବାର୍ତ୍ତା ଥାଇପାରେ, ତେବେ କାଳ୍ପନିକ କାହାଣୀକୁ ସତ୍ୟର ମୁକୁଟ ପିନ୍ଧାଇବା ଏକ ଅହେତୁକ ବିଚାର ମନେହୁଏ ।

ବ୍ୟକ୍ତିମାନଙ୍କୁ ମାନସିକ ଦାସତ୍ୱରୁ ମୁକ୍ତ କରିବାପାଇଁ ବିଭିନ୍ନ ସଭ୍ୟତାରେ ବିଚାରଶୀଳ ହେତୁବାଦୀ ଓ ମାନବଦରଦୀ ମୁକ୍ତଚିନ୍ତକମାନେ ପ୍ରୟାସ କରିଆସିଛନ୍ତି । ସୃଜନଶୀଳ ହେତୁବାଦୀ ଓ ମୁକ୍ତଚିନ୍ତକମାନଙ୍କର ଅବଦାନରୁ ସଭ୍ୟତାର ବିକାଶ ହୋଇଛି, ଜ୍ଞାନ ବିଜ୍ଞାନ ସ୍ତରରେ କେତେ କେତେ ନୂଆ ଦିଗନ୍ତ ସୃଷ୍ଟି ହୋଇଛି ଓ ମହତ୍ତର ଜୀବନବୋଧର ବାର୍ତ୍ତା ପ୍ରଚାରିତ ହୋଇଛି । ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଓ ମାନବବାଦ ହିଁ ହେତୁବାଦର ମୂଳମନ୍ତ୍ର । ବୈଜ୍ଞାନିକ ମନୋଭାବ ଓ ସମ୍ବେଦନଶୀଳ ଜୀବନଦୃଷ୍ଟିର ଭୂମି ଉପରେ ହେତୁବାଦ ଦଣ୍ଡାୟମାନ । ହେତୁବାଦ ହିଁ ସୃଜନଶୀଳତାର ଆଧାର କହିଲେ ଅତ୍ୟୁକ୍ତି ହେବ ନାହିଁ । ବିଚାରଶୀଳତା, ସୃଜନଶୀଳତା ଓ ମାନବବାଦ ସଭ୍ୟତାର ବିକାଶରେ ନିର୍ଣ୍ଣାୟକ ମନେହୁଅନ୍ତି ।

ମଣିଷର ବୌଦ୍ଧିକ ଦିଗନ୍ତ ଯେତେ ବିସ୍ତାରିତ ହୋଇଚାଲିଛି, ଧର୍ମ, ଈଶ୍ୱର ଓ କାଳ୍ପନିକ ଦେବୀ-ଦେବତା ଉପରେ ବିଶ୍ୱାସ ହ୍ରାସ ପାଇବାରେ ଲାଗିଛି । ସେହିପରି ବ୍ୟକ୍ତି ସ୍ତରରେ ବା ଗୋଷ୍ଠୀ ଜୀବନରେ ବିଚାରଶୀଳ ଦୃଷ୍ଟି ଓ ବୈଜ୍ଞାନିକ ମାନସିକତା ଯେତେ ଅଧିକ ପ୍ରସାର ହେବ, ମଣିଷ ମନରୁ ମାନସିକ ଦାସତ୍ୱ ସେତେ କମିବାରେ ଲାଗିବ । କୌଣସି ଦିଅଁ ଦେବତା ଆମ ଜୀବନର ମାନକୁ ଉନ୍ନତ କରିବେ ନାହିଁ, କାରଣ ସେମାନଙ୍କର ଅସ୍ତିତ୍ୱ ହିଁ ନାହିଁ । ଈଶ୍ୱର ମଣିଷ ମନର କଳ୍ପନା ମାତ୍ର । ବ୍ୟକ୍ତି ଯେତେ ଅଧିକ ବାସ୍ତବବାଦୀ ହେବ ଓ ନିଜସ୍ୱ ପ୍ରୟାସରେ ସାମାଜିକ ଜୀବନଧାରାକୁ ଉନ୍ନତ କରିଚାଲିବ ତାହା ସଭ୍ୟତାର ସାଂସ୍କୃତିକ ଉତ୍ତରଣ ଦିଗରେ ସହାୟକ ହେବ । ଅପରପକ୍ଷରେ ଯେଉଁଠି ମାନସିକ ଦାସତ୍ୱର ପ୍ରାବଲ୍ୟ ରହିବ ଓ ଦିଅଁ ଦେବତାର ଆରାଧନା ପାଇଁ ଲୋକମାନେ ମତୁଆଲା ହେବେ ସେମାନେ ଅନଗ୍ରସର ହୋଇ ରହିବେ । ମାନସିକ ଦାସତ୍ୱ ଓ ଅନଗ୍ରସରତା ପରସ୍ପରର ଯେ ସହୋଦର ଭାଇ ଏହା କହିଲେ ଅତ୍ୟୁକ୍ତି ହେବ ନାହିଁ । ଧର୍ମ, ଈଶ୍ୱରଜନିତ ବିଶ୍ୱାସ ସମାଜରୁ ହ୍ରାସ ପାଇଲେ ନୈତିକସ୍ଖଳନ ହେବ ନାହିଁ । ବରଂ ନୈତିକତାକୁ ତାର ଯଥାର୍ଥ ଅର୍ଥରେ ଗ୍ରହଣ କଲେ ସମାଜରେ ମାନବ-କୈନ୍ଦ୍ରିକ ଜୀବନଦୃଷ୍ଟିର ବିକାଶ ହେବା ସହ ଏହାଦ୍ୱାରା ବୌଦ୍ଧିକ ସାଧୁତା ପ୍ରକାଶ ପାଇବ ।

ଏକ କାହାଣୀର ଅବତାରଣା କରି ଲେଖାଟିର ଉପସଂହାର କରିବାକୁ ଚାହୁଁଛି । ରାଜାଙ୍କ ପାଇଁ ସବୁଠାରୁ ସୁନ୍ଦର ପୋଷାକ ତିଆରି କରିବାପାଇଁ ତିନି ଜଣ ବୁଣାକାର ପହଞ୍ଚିଲେ । ସର୍ତ୍ତ ରଖିଲେ ଯେ ଏହା ହେବ ସୁନ୍ଦରତମ ପୋଷାକ, କିନ୍ତୁ ମନ୍ଦ ଲୋକଙ୍କ ଆଖିକୁ ଏହା ଦେଖାଯିବ ନାହିଁ । ସେମାନେ ଏକ କୋଠରୀରେ ପୋଷାକ ତିଆରି କରିବାର ଅଭିନୟ କରିଚାଲିଲେ । ରାଜା, ମନ୍ତ୍ରୀ, ସେନାପତି ପୋଷାକ ତିଆରି ହେବା ଆସି ଦେଖିଲେ ଓ ସମସ୍ତେ କହିଲେ ଯେ ପୋଷାକ ଅତି ସୁନ୍ଦର । ରାଜାଙ୍କୁ ତାଙ୍କର ପୋଷାକ ସେମାନେ ପିନ୍ଧାଇ ଚାଲିଗଲେ । ରାଜା ଏହି ସୁନ୍ଦରତମ ପୋଷାକ ପିନ୍ଧି ନଗରକୁ ବାହାରିଲେ । ସମସ୍ତେ କହିଲେ ରାଜାଙ୍କ ପୋଷାକ ଅତି ସୁନ୍ଦର ଓ ଚମତ୍କାର । ଛୋଟ ପିଲାଟିଏ ରାଜା ଲଙ୍ଗଳା ହୋଇଯାଉଛନ୍ତ କହି ପାଟି କରି ହସିଲା । ଏହାପରେ ଅନ୍ୟମାନଙ୍କର ଚେତା ପଶିଲା ଯେ ରାଜା ପ୍ରକୃତରେ କିଛି ପୋଷାକ ପିନ୍ଧି ନାହାନ୍ତି, ସେ ଉଲଗ୍ନ ରହିଛନ୍ତି । ସମସ୍ତେ କାଳେ ମନ୍ଦଲୋକ ବୋଲି ଧରାପଡିବେ ସେଥିପାଇଁ କହି ଚାଲିଥିଲେ ରାଜାଙ୍କର ପୋଷାକ ସୁନ୍ଦର । ସେହିଭଳି କଳ୍ପନାର ଈଶ୍ୱରଙ୍କୁ କେତେ କେତେ ବ୍ୟଂଜନା ଦେଇ ତାଙ୍କର ଗୁଣଗାନ କରିବାର ପ୍ରୟାସ ବିଭିନ୍ନ ସଭ୍ୟତାରେ ହୋଇଛି । ଏହି ବିଶ୍ୱାସ ଯେ ମଣିଷ ମନର କଳ୍ପନା ଓ ଅସତ୍ୟ ଏହା ସମାଜର ଅଗଣିତ ବ୍ୟକ୍ତି ସ୍ୱୀକାର କରିବାକୁ ପ୍ରସ୍ତୁତ ନୁହନ୍ତି । କାଳେ ସେମାନେ ସମାଜ ଆଖିରେ 'ନିରୀଶ୍ୱରବାଦୀ' ହୋଇଯିବେ ଏହି ଆଶଙ୍କାରେ ଅନ୍ୟମାନେ ଏକ କାଳ୍ପନିକ ଭାବନାକୁ ଚିରନ୍ତନ ସତ୍ୟ, ସର୍ବଜ୍ଞ, ସର୍ବଶକ୍ତିମାନ, ସର୍ବବିଦ୍ୟମାନ, ସବୁର ସ୍ରଷ୍ଟା ପ୍ରେମମୟ ଇତ୍ୟାଦି କେତେ ବିଶେଷଣ ଦେଇ ବ୍ୟକ୍ତ କରିଥାନ୍ତି । ତେବେ ଈଶ୍ୱର ଯେ ମଣିଷ ମନର ଏକ କଳ୍ପନା ଯାହା ହଜାର ହଜାର ବର୍ଷ ଧରି ମଣିଷର ବିଚାରବୁଦ୍ଧିକୁ ଆଚ୍ଛାଦିତ କରି ରଖିଛି ତାହା ମନେହୁଏ । ଏହି ଭ୍ରାନ୍ତିରୁ ମୁକ୍ତ ହେଲେ ମଣିଷ ଜୀବନର, ପ୍ରକୃତିର ଓ ସତ୍ୟର ପ୍ରକୃତ ମର୍ମକୁ ଉପଲବ୍ଧି କରିପାରିବ । ରାଜାଙ୍କର କୌଣସି ପୋଷାକ ନଦେଖି ମଧ୍ୟ ସମସ୍ତେ ରାଜାଙ୍କ ବସ୍ତ୍ର ଦିବ୍ୟ-ସୁନ୍ଦର ବୋଲି କହୁଥିଲେ । ଆମେ ସେହିପରି ଏକ କାଳ୍ପନିକ ଭାବନାକୁ ସତ୍ୟର ମୁକୁଟ ପିନ୍ଧାଇ ତାଙ୍କର ଗୁଣଗାନ ଦ୍ୱିଧାମୁକ୍ତ ଭାବେ କରିଚାଲିଛୁ । ଯେଉଁ ସାମାଜିକ ଦୃଶ୍ୟପଟରେ ବାସ୍ତବ ଜୀବନ ଓ ସମାଜର ଉପେକ୍ଷିତ ଜନଗୋଷ୍ଠୀର ମାନବିକ ସମସ୍ୟାକୁ ଉପେକ୍ଷା କରାଯାଇ କାଳ୍ପନିକ ଦେବୀ-ଦେବତାର ଆରାଧନାକୁ ପ୍ରାଧାନ୍ୟ ଦିଆଯାଇଛି, ସେହି ସମାଜ ବୌଦ୍ଧିକ ଓ ନୈତିକ ମାନଦଣ୍ଡରୁ ଯେ ବହୁ ଅନଗ୍ରସର ସ୍ଥିତିରେ ରହିଛି ଏହା କହିବା ଅପ୍ରାସଙ୍ଗିକ ନୁହେଁ ।

ଅପସାଂସ୍କୃତିକ ପରିବେଶ, ପରମ୍ପରାଗତ ଚଳଣି ଓ ଧାର୍ମିକ କୁସଂସ୍କାର ଜନମାନସକୁ ମୁକ୍ତ ଚିନ୍ତାଠାରୁ ଦୂରେଇ ନେଇଥାଏ । ପରିଣତି ସ୍ୱରୂପ ଭାଗ୍ୟବାଦ, ଅତୀନ୍ଦ୍ରିୟବାଦ, ଚମତ୍କାରିତାରେ ବିଶ୍ୱାସ, ବାବାବାଦ, ପୌତ୍ତଳିକ ପୂଜାବିଧାନର ନାନା ଧାରା ସମାଜରେ ବ୍ୟାପକ ଭାବେ ରହିଥାଏ । ଏପରିକି ବୈଜ୍ଞାନିକ ଉପକରଣ ଓ ଗଣମାଧ୍ୟମ କୁସଂସ୍କାର ପ୍ରସାର କ୍ଷେତ୍ରରେ ସାଧନ ପାଲଟେ । ଆହୁରି ବିଡମ୍ବନାର ବିଷୟ ଯେଉଁ ପରମ୍ପରାଗତ ବ୍ୟବସ୍ଥା ଓ ବିଚାରବୋଧ ସମାଜର ଅଗଣିତ ମଣିଷଙ୍କୁ ଭେଦଭାବର ଶିକାର କରାଇଛି, ଏକ ଭିନ୍ନ ପରିବେଶରେ ସେହି ଲୋକମାନେ ତାହାକୁ ଏବେ ଦୃଢ଼ କରିବାରେ ଲାଗିଛନ୍ତି । ବିଚାରଶୀଳ ଦୃଷ୍ଟି, ବୈଜ୍ଞାନିକ ମାନସିକତା, ମାନବବାଦ, ସମତାର ଆଭିମୁଖ୍ୟ ଓ ଐହିକ ଜୀବନର ଗୁଣାତ୍ମକ ମାନରେ ପରିବର୍ତ୍ତନ ପାଇଁ ସଂପୃକ୍ତି ପରିବର୍ତ୍ତେ ଏହାର ବିପରୀତ ଧାରା ପ୍ରତି ଆଗ୍ରହ ପ୍ରକାଶ ପାଉଛି । ମାନସିକ ଦାସତ୍ୱର ପରାଭବରୁ ମୁକ୍ତି ପାଇଁ ଦୃଢ଼ ସାମାଜିକ ସଂପୃକ୍ତି ପ୍ରକାଶ ପାଉନାହିଁ ।

ଏହି ସ୍ଥିତିରେ ସମାଜର ପ୍ରଗତିଶୀଳ ବ୍ୟକ୍ତିବିଶେଷ, ବୁଦ୍ଧିଜୀବୀ, ସଂସ୍କାର-ପ୍ରୟାସୀ ସଚେତନ ବ୍ୟକ୍ତିମାନେ ସାମାଜିକ ପରିବର୍ତ୍ତନ ପାଇଁ ନିଜର ସଂପୃକ୍ତି ବ୍ୟକ୍ତ କରିବା ଆବଶ୍ୟକ । ଏହା ସହିତ ଏକ ପ୍ରାଚୀନ ଦେଶ ଓ ଏତେ ସାଂସ୍କୃତିକ ବିଭବ ଥିବା ଏକ ରାଷ୍ଟ୍ରର ଜନଜୀବନରେ କାହିଁକି ଏତେ ଦାରିଦ୍ର୍ୟ, ଅଶିକ୍ଷା, କୁସଂସ୍କାର ଓ ସାମାଜିକ ଭେଦଭାବ ରହିଛି ତାହାର ଅନୁଶୀଳନ ହେବା ମଧ୍ୟ ଦରକାର । ଦେଶର ଜନଶକ୍ତିକୁ କିପରି ସୃଜନଶୀଳ କାର୍ଯ୍ୟ ଓ ରାଷ୍ଟ୍ର ନିର୍ମାଣରେ ବିନିଯୋଗ କରାଯିବ ଓ ବିଶେଷତଃ ପାରଲୌକିକ ଦୃଷ୍ଟିଭଙ୍ଗୀରେ ପରିବର୍ତ୍ତନ ଅଣାଯାଇପାରିବ ସେଥିପାଇଁ ସବୁ ସ୍ତରରେ ଉଦ୍ୟମ ହେବା ବିଧେୟ । କୁସଂସ୍କାର, ମାନସିକ ଦାସତ୍ୱ ଓ ପାରଲୌକିକ ଜୀବନଦୃଷ୍ଟିର ପରିବର୍ତ୍ତନ ଆମ ସମାଜ ପାଇଁ ସାଂପ୍ରତିକ ସ୍ଥିତିରେ ବଡ଼ ଆହ୍ୱାନ କହିଲେ ଅତ୍ୟୁକ୍ତି ହେବ ନାହିଁ ।



# ସାଂସ୍କୃତିକ ସଙ୍କଟ:ଏକ ଦୃଷ୍ଟିପାତ

ମାନବ ସଭ୍ୟତା ସର୍ବଦା କିଛି ନା କିଛି ସମସ୍ୟା ଓ ସଙ୍କଟର ସମ୍ମୁଖୀନ ହୋଇଆସିଛି । ସଭ୍ୟତାମାନ ଯେତେବେଳେ ଆଦିମ ସ୍ତରରେ ରହିଥିଲା ଓ ସଂପ୍ରତି ଏହା ଯେତେବେଳେ ବିକାଶର ଏକ ଉତ୍ତୁଙ୍ଗ ଶିଖରକୁ ଯାଇପାରିଛି ଏ ଉଭୟ ସ୍ଥିତି ଭିତରେ ବି କେତେକ ସାମଞ୍ଜସ୍ୟ ରହିଛି । ହୁଏତ ଇତିହାସର କ୍ରମବିକାଶ ଧାରାରେ କେତେକ ରାଷ୍ଟ୍ରର ଜନଗଣ ଅଧିକ ସଭ୍ୟ, ବିକଶିତ ଓ ଶିକ୍ଷିତ ହୋଇଛନ୍ତି ଓ ଅନ୍ୟ କେତେକ ରାଷ୍ଟ୍ରରେ ଦାରିଦ୍ର୍ୟ, ନିରକ୍ଷରତା, ଅପପୁଷ୍ଟି, ସାମାଜିକ ଭେଦଭାବ ଓ ଶିଶୁ ଶ୍ରମିକ ପ୍ରଥା ବ୍ୟାପକ ଭାବେ ରହିଛି । ଯେଉଁ ରାଷ୍ଟ୍ରର ଜନଗଣଙ୍କ ମଧ୍ୟରେ ଉକ୍ଟ ଦାରିଦ୍ର୍ୟ ଓ ଅନଗ୍ରସରତା ରହିଛି ତାହାର କାରଣ ସ୍ୱରୂପ କୁହାଯାଉଛି ଯେ ସୀମିତ ସମ୍ବଳ ଯୋଗୁ ଜନକଲ୍ୟାଣକାରୀ କାର୍ଯ୍ୟକ୍ରମକୁ ବ୍ୟାପକ କରାଯାଇପାରୁ ନାହିଁ । ସଭ୍ୟତା ଯେତେ ଅଗ୍ରସର ହେଲେ ମଧ୍ୟ ପ୍ରକୃତି ମଣିଷ ପାଇଁ ସର୍ବଦା ରହସ୍ୟମୟ ହୋଇ ରହିଛି । ପ୍ରକୃତିର ବିଶାଳତା ଓ ଜଟିଳତା ଯୋଗୁ ମଣିଷର ପ୍ରକୃତି ସଂପର୍କୀୟ ଜ୍ଞାନ ବି ସୀମିତ ବୋଲି କୁହାଯାଉଛି । ସେହିପରି ଜୀବନର ଅନେକ ଘନଘଟା ବି ମଣିଷକୁ ବେଳକେ ରହସ୍ୟମୟ ମନେହୋଇଥାଏ । ବହୁ ଅତୀତରୁ ଦାର୍ଶନିକମାନେ ମଣିଷର ସଂଜ୍ଞା ଦେବାକୁ ଯାଇ କହିଛନ୍ତି 'ମଣିଷ ଏକ ବିଚାରଶୀଳ ପ୍ରାଣୀ' । ତେବେ ବିଡମ୍ବନା ଯେ ସବୁ ସମୟରେ ସମାଜରେ ନାନା କୁସଂସ୍କାର, ଅହେତୁକ ବିଶ୍ୱାସ ଓ ବିଚାରହୀନତା ରହିଆସିଛି । ସବୁ ମଣିଷ ବିଚାରଶୀଳ ଓ ବିଜ୍ଞାନ-ମନସ୍କ ହୋଇପାରୁ ନାହାନ୍ତି । ବିଶେଷକରି ଯେଉଁ ସମାଜରେ ଧାର୍ମିକ ଆବେଗ ଓ ରକ୍ଷଣଶୀଳତାର ପ୍ରାବଲ୍ୟ ରହିଛି, ସେଠାରେ ବହୁ ପ୍ରକାରର ଅହେତୁକ ଭାବନା ଜନଜୀବନରେ ପରିବ୍ୟାପ୍ତ ହୋଇ ରହିବା ଦେଖାଯାଏ । ବିଚାରଶୀଳ ଦୃଷ୍ଟି ଯେ ସାର୍ବଜନୀନ ଭାବେ ସମାଜରେ ଦୃଢ ଭିତ୍ତି ନେଇ ନାହିଁ, ଏହା ଏକ ସାଧାରଣ ଅନୁଭବ ଅଟେ । ପୁନଶ୍ଚ ସଭ୍ୟତା ଯେତେ ଆଗକୁ ଗଲେ ମଧ୍ୟ ଅନ୍ୟାୟ, ଶୋଷଣ, ସ୍ୱାର୍ଥପରତା ପରି ଗୁଣମାନ ମଣିଷ ସ୍ୱଭାବରୁ ଲୋପ ପାଉନାହିଁ । ହିଂସା, କ୍ରୂରତା, ଦୁର୍ବଳ ଉପରେ ଅତ୍ୟାଚାର ନାନା ଭାବରେ ଜୀବନପ୍ରବାହର ଅଙ୍ଗ ହୋଇରହିଛି ଓ ସମ୍ବେଦନଶୀଳ ଜୀବନଦୃଷ୍ଟି ସମାଜରେ ସାର୍ବଜନୀନ ଭାବେ ପରିଲକ୍ଷିତ

ହୁଏ ନାହିଁ । ସୀମିତ ସମ୍ବେଦନଶୀଳତା ମାନବୀୟ ସ୍ୱଭାବ ସହ ସଂଶ୍ଳିଷ୍ଟ ହୋଇରହିଛି । ମୋଟ ଉପରେ କହିଲେ ସୀମିତ ସମ୍ବଳ, ସୀମିତ ଜ୍ଞାନ, ସୀମିତ ବିଚାରବୋଧ ଓ ସୀମିତ ସମ୍ବେଦନଶୀଳତା ସାମାଜିକ ଜୀବନପ୍ରବାହର ଅଙ୍ଗ ହୋଇ ରହିଛି । ତେବେ ଯେଉଁ ସାମାଜିକ ଜନଗୋଷ୍ଠୀରେ ଏହିସବୁ ମାନବିକ ସଙ୍କଟକୁ ଦୂର କରିବାକୁ ନିଷ୍ଠାପର ପ୍ରୟାସ ହୋଇଛି ଓ ସଭ୍ୟ ମୂଲ୍ୟବୋଧର ବିକାଶ ଓ ଜ୍ଞାନବିଜ୍ଞାନ ଅଗ୍ରଗତି ନେଇ ଯଥେଷ୍ଟ ସଚେତନତା ପ୍ରକାଶ ପାଇଛି ସେଠାରେ ଜୀବନର ଗୁଣାତ୍ମକ ମାନରେ ଅଗ୍ରଗତି ଘଟିଛି । ସାମାଜିକ ଜୀବନପ୍ରବାହକୁ ଅଧିକ ସୁସଂହତ, ଶୃଙ୍ଖଳିତ ଓ ସୁଖପ୍ରଦ କରିବାକୁ ଯେଉଁଠି ନିଷ୍ଠାପର ପ୍ରୟାସ ହୋଇଛି ସେଠାରେ ସଭ୍ୟତା ଓ ସଂସ୍କୃତି ଅଧିକ ମାନବିକ ହୋଇଛି । ଅପରପକ୍ଷରେ ଯେଉଁ ସାମାଜିକ ପରିବେଶରେ ବିଶୃଙ୍ଖଳା, ଭେଦଭାବ, ପାରଲୌକିକ ଜୀବନଦୃଷ୍ଟି ଓ କର୍ମସଂସ୍କୃତି ପ୍ରତି ବିମୁଖତା ପ୍ରକାଶ ପାଇଛି ସେଠିକାର ଜୀବନଧାରା ଅନଗ୍ରସର ସ୍ଥିତିରେ ରହିଆସିଛି ।

ଏହା ଏକ ସାଧାରଣ ଅନୁଭବ ଯେ ଯେଉଁ ସମାଜରେ ଧାର୍ମିକ ଆବେଗ ଓ ସାଂପ୍ରଦାୟିକ ମାନସିକତାର ପ୍ରାବଲ୍ୟ ରହେ ସେଠିକାର ଜନଜୀବନ ଉନ୍ନତ ହୋଇପାରେ ନାହିଁ । ସାମାଜିକ ଅନଗ୍ରସରତା ପାଇଁ ଧାର୍ମିକ ଓ ପାରଲୌକିକ ମାନସିକତା ଅଧିକାଂଶରେ ଦାୟୀ ହୋଇଥାଏ । ଆମ ସାମାଜିକ ମନସ୍ତତ୍ତ୍ୱରେ ବହୁ ଲୋକ ସେମାନଙ୍କର ଦାରିଦ୍ର୍ୟ ଓ ପ୍ରତିକୂଳ ସ୍ଥିତି ପାଇଁ ସେମାନେ ଭାଗ୍ୟ, କର୍ମଫଳ, ପ୍ରାରବ୍ଧ ଇତ୍ୟାଦି ଆଧାରହୀନ ବିଶ୍ୱାସକୁ ଦାୟୀ କରନ୍ତି । ସେମାନେ ଭାବିଥାନ୍ତି ଯେ ଜୀବନର ସମସ୍ତ ଘଟଣା ପୂର୍ବନିର୍ଦ୍ଧାରିତ । ଜୀବନ ଅଦୃଷ୍ଟ ଶକ୍ତିଦ୍ୱାରା ପରିଚାଳିତ ଓ ସବୁ ସମୟରେ ବ୍ୟକ୍ତି କେବଳ ନିମିତ୍ତ ମାତ୍ର । ଏହି ମାନସିକତାରୁ ଲୋକମାନେ ଜାତକ, ଜ୍ୟୋତିଷ, ବାସ୍ତୁ, ହସ୍ତରେଖା ଇତ୍ୟାଦି ଅବୈଜ୍ଞାନିକ ଭାବନାରେ ଆସ୍ଥା ସ୍ଥାପନ କରନ୍ତି । ସମାଜର ଅର୍ଥନୈତିକ ଢାଞ୍ଚା, ସରକାରୀ ବ୍ୟବସ୍ଥା, ସାମାଜିକ ପରମ୍ପରା, ରାଜନୈତିକ ଭ୍ରଷ୍ଟାଚାର ଇତ୍ୟାଦି କାରଣସମୂହକୁ ଅନଗ୍ରସରତା ପାଇଁ ବା ଦାରିଦ୍ର୍ୟ ପାଇଁ ଦାୟୀ କରାଯାଏ ନାହିଁ । ବରଂ ଏସବୁକୁ ଭାଗ୍ୟ, ପୂର୍ବଜନ୍ମର କର୍ମଫଳ ଇତ୍ୟାଦି ଭାବିବାଦ୍ୱାରା ବ୍ୟଷ୍ଟିଗତ ଓ ଗୋଷ୍ଠୀଗତ ପ୍ରୟାସ ଉପରେ ପ୍ରାଧାନ୍ୟ ଦିଆଯାଏ ନାହିଁ । ତେବେ ବାସ୍ତବ ଅନୁଭବ ହେଉଛି ଯେଉଁ ରାଷ୍ଟ୍ରମାନେ ବିକଶିତ ହୋଇଛନ୍ତି ଓ ଯେଉଁ ପରିବେଶରେ ଜୀବନର ଭୌତିକ ମାନ ଉନ୍ନତ ହୋଇଛି ସେମାନଙ୍କୁ ଦିଅଁ ଦେବତାର ଆଶୀର୍ବାଦ ମିଳି ନାହିଁ । ରାଜନୈତିକ ଘଟଣାପ୍ରବାହ ଓ ଆଧୁନିକ ପ୍ରଯୁକ୍ତି ଓ ବିଜ୍ଞାନ ସେମାନଙ୍କ ବିକାଶର ମୂଳମନ୍ତ୍ର ହୋଇଛି । ଅପରପକ୍ଷରେ ଆମ ଦେଶର

ଅନଗ୍ରସରତା ପଶ୍ଚାତରେ ରାଜନୈତିକ, ଅର୍ଥନୈତିକ ଓ ନାନା ସାଂସ୍କୃତିକ କାରଣମାନ ରହିଛି । ଆମର ଅନଗ୍ରସରତା ଓ ସାମାଜିକ ଜୀବନର ପ୍ରତିକୂଳ ପରିବେଶ ପାଇଁ ଦିଅଁ ଦେବତାର ଅଭିଶାପ ମିଳି ନାହିଁ ବା ଏସବୁ କୌଣସି ଭାଗ୍ୟ, କର୍ମଫଳ ଯୋଗୁ ଘଟି ନାହିଁ । ସାଧାରଣ ମନସ୍ତତ୍ତ୍ୱରୁ ଏହିସବୁ ପାରଲୌକିକ ଭାବନାର ବିଲୋପ ନହେଲେ ଆମର ସାମାଜିକ ପରିବେଶ ଓ ଭୌତିକ ବିକାଶ ଉନ୍ନତ ହୋଇପାରିବ ନାହିଁ । ସେହିପରି ସାଂପ୍ରଦାୟିକ ମନୋଭାବ ସଭ୍ୟ ଜୀବନଦୃଷ୍ଟିର ପରିପନ୍ଥୀ । ଜଣେ ଧର୍ମବିଶ୍ୱାସୀ ବ୍ୟକ୍ତି ଧର୍ମର କେତେକ ବିଶ୍ୱାସକୁ ସତ୍ୟ ଓ ଅଲଙ୍ଘନୀୟ ବୋଲି ଭାବିପାରନ୍ତି । ନିଜ ଧର୍ମର ବିଶ୍ୱାସ ପ୍ରତି ଅନୁରକ୍ତ ରହିବାକୁ କେହି ମନ୍ଦ କହିବେ ନାହିଁ, ଯଦି ତାଙ୍କର ଧର୍ମଚେତନା ସହିଷ୍ଣୁତା, ଉଦାରତା ଓ ମାନବିକତାକୁ ପ୍ରାଧାନ୍ୟ ଦେଉଥିବ । କିନ୍ତୁ ଯେତେବେଳେ କୌଣସି ବ୍ୟକ୍ତି ଅନ୍ୟ ଧର୍ମାବଲମ୍ବୀ ଲୋକମାନଙ୍କ ପ୍ରତି ଅସହିଷ୍ଣୁତା ପ୍ରକାଶ କରନ୍ତି ସେତେବେଳେ ସେ ସାଂପ୍ରଦାୟିକ ହୁଅନ୍ତି । ସାଂପ୍ରଦାୟିକତା ମାନବିକତା ବିରୋଧୀ ଏକ ରାଜନୈତିକ ଭାବଧାରା । ଏକ ବହୁଧର୍ମୀୟ ସମାଜରେ ଧାର୍ମିକ ସହନଶୀଳତା, ଧର୍ମନିରପେକ୍ଷତା ଓ ମାନବବାଦୀ ଜୀବନଦୃଷ୍ଟି ସଭ୍ୟ ମୂଲ୍ୟବୋଧର ପ୍ରତୀକ ହୋଇଥାଏ । ଅପରପକ୍ଷରେ ଧର୍ମଗତ ବିଦ୍ୱେଷ, ଅନ୍ୟର ଧାର୍ମିକ ବିଶ୍ୱାସ ଓ ପରମ୍ପରା ପ୍ରତି ଅସହିଷ୍ଣୁ ମନୋଭାବ ବା କୌଣସି ଆଳ ନେଇ ସାଂପ୍ରଦାୟିକ ଦଙ୍ଗା ସୃଷ୍ଟି କରିବା ଧର୍ମାନ୍ଧତାର ପରିଚାୟକ ପାଲଟିଥାଏ । ଧର୍ମାନ୍ଧତାର ପ୍ରସାରପୂର୍ବକ ସମାଜକୁ ଭାଗ ଭାଗ କରିବା ଓ ଏହାକୁ କ୍ଷମତା ହାସଲର ସହଜ ମାଧ୍ୟମ ବୋଲି ଭାବିବା ଏକ ଅହେତୁକ ଭାବଧାରାର ସ୍ୱାକ୍ଷର ବହନ କରେ । ଧର୍ମ ବ୍ୟକ୍ତିଗତ ବିଶ୍ୱାସର ପ୍ରସଙ୍ଗ ନହୋଇ ସମାଜର ସକଳ ସ୍ତରକୁ ଯଦି ପ୍ରଭାବିତ କରେ, ଧର୍ମଗତ ଅସ୍ମିତାକୁ ନେଇ ଗୋଷ୍ଠୀ ଗୋଷ୍ଠୀ ଭିତରେ ଅବିଶ୍ୱାସ ଓ ଅସହିଷ୍ଣୁତାର ମନୋଭାବ ଆସେ, ତେବେ ସମାଜ ସଙ୍କଟ ଭିତରକୁ ଯାଏ । ନାଗରିକ ସଚେତନତାର ସ୍ତର ଉନ୍ନତ ହେବା ପରିବର୍ତ୍ତେ ଏହା ସମାଜ ପାଇଁ ବିପର୍ଯ୍ୟୟର ପରିବେଶ ଆଣେ । ପାରଲୌକିକ ବିଶ୍ୱାସ ଓ ଧାର୍ମିକ ବିଭାଜନ ସମାଜ ପାଇଁ ଅହିତକର ହୋଇଥାଏ । ରାଷ୍ଟ୍ରୀୟ ଜୀବନଧାରାରେ ଏସବୁର ଅଧିକ ପ୍ରଭାବ ରହିଲେ ସାମାଜିକ କ୍ଷୟଶୀଳତା ବୃଦ୍ଧି ପାଇଥାଏ । ଏସବୁ ମାନବବାଦର ବିକାଶ ପାଇଁ ସଙ୍କଟଜନକ ପରିସ୍ଥିତି ସୃଷ୍ଟି କରିଥାଏ ଓ ସମାଜର ଭୌତିକ ବିକାଶ ପାଇଁ ପ୍ରତିବନ୍ଧକ ହୋଇଥାଏ ।

ସାଂପ୍ରତିକ ଜୀବନଧାରାରେ ଗଣମାଧ୍ୟମର ଏକ ବଡ ପ୍ରଭାବ ରହିବା ଦେଖାଯାଏ । ବିଶେଷକରି ଟେଲିଭିଜନର ବ୍ୟାପକ ବ୍ୟବହାର ଆଧୁନିକ ଜୀବନପ୍ରବାହର ଅବିଚ୍ଛେଦ୍ୟ

ଅଙ୍ଗ । ତେବେ ଗଣମାଧ୍ୟମର ପ୍ରଭାବ ପରିପ୍ରେକ୍ଷୀରେ ଏହା ଯଦି ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ପ୍ରସାରକୁ ପ୍ରାଧାନ୍ୟ ନଦେଇ ଧାର୍ମିକ ଭାବାବେଗର ପ୍ରସାରକୁ ପ୍ରାଧାନ୍ୟ ଦିଏ ତାହାର ଏକ ସୁଦୂରପ୍ରସାରୀ ପ୍ରଭାବ ସୃଷ୍ଟି ହୁଏ । ବିଭିନ୍ନ ଟେଲିଭିଜନ୍ ଚାନେଲ କେବଳ ବ୍ୟାବସାୟିକ ଲକ୍ଷ୍ୟ ନେଇ ନାନା ବିଜ୍ଞାନ-ବିରୋଧୀ ଭାବଧାରାର ପ୍ରକାଶ ଓ ପ୍ରଚାର କରିବା ଅହେତୁକ ମନେହୁଏ । ସେହିପରି ରାଶିଫଳ, ଜ୍ୟୋତିଷ ଗଣନା, ବାସ୍ତୁବିଦ୍ୟା ଇତ୍ୟାଦି ଅବାନ୍ତର ଭାବନାକୁ ପ୍ରସାର କରିବା କିମ୍ବା ଅନେକ ଅନାବଶ୍ୟକ ପଦାର୍ଥର ବିଜ୍ଞାପନ ଦେବା ଦେଖାଯାଏ । କେଉଁଦିନ କେଉଁ ରଙ୍ଗ ଶୁଭ ବା ଅଶୁଭ, କେଉଁ ମୁଦି ପିନ୍ଧିବାଦ୍ୱାରା କେଉଁ କାର୍ଯ୍ୟ ହାସଲ ସହଜ ହେବ, କେଉଁ ମାଳା ବେକରେ ପିନ୍ଧିଲେ କ'ଣ ଶୁଭ ହେବ ଇତ୍ୟାଦି ନାନା ଅହେତୁକ ବିଶ୍ୱାସର ପ୍ରଚାର ଜନମାନସକୁ ଅବୈଜ୍ଞାନିକ ହେବାରେ ସାହାଯ୍ୟ କରିଥାଏ ।

ଜନଜୀବନରେ କୁସଂସ୍କାର ଯେତେ ବ୍ୟାପକ ଭାବେ ରହେ, ସାମାଜିକ ବିକାଶ ସେତେ ବାଧାପ୍ରାପ୍ତ ହୋଇଥାଏ । ଏକ ସମୟରେ କୁସଂସ୍କାରମାନ ଆଞ୍ଚଳିକ ସ୍ତରରେ ସୀମିତ ହୋଇ ରହୁଥିଲା । ତେବେ ସଂପ୍ରତି ଗଣମାଧ୍ୟମର ପ୍ରସାର ଯୋଗୁ କୁସଂସ୍କାର ଆଞ୍ଚଳିକ ହୋଇ ରହୁନାହିଁ, ଏହା ବ୍ୟାପକ ହୋଇଯାଉଛି । ଟିଭି ପରି ବିଜ୍ଞାନର ଏତେ ବଡ ସାଧନକୁ କୁସଂସ୍କାର ପ୍ରସାର ପାଇଁ ବିନିଯୋଗ କରିବା ଅହେତୁକ ଦୃଷ୍ଟିଭଙ୍ଗୀର ପରିଚୟ ଦେଇଥାଏ । ସମାଜରେ ଅହେତୁକ ଭାବନା ବ୍ୟାପକ ଭାବେ ରହିଲେ ଓ କେତେକ ପାରଲୌକିକ ବିଶ୍ୱାସକୁ ସଂସ୍କୃତି ଓ ଐତିହ୍ୟର ରୂପ ଦିଆଗଲେ ଏହା ମାନବୀୟ ସଙ୍କଟକୁ ତୀବ୍ର କରିଥାଏ । ଲୋକମାନେ ଯେତେ ଅଧିକ ପାରଲୌକିକ ଜୀବନଦୃଷ୍ଟି ପ୍ରତି ଆଗ୍ରହୀ ହେବେ, କୁସଂସ୍କାର ସେତେ ସହଜରେ ମାନସିକତାକୁ ଗ୍ରାସ କରିପାରିବ । ଏହାର ପ୍ରଚାର ଓ ପ୍ରସାର ପାଇଁ ବିଜ୍ଞାନର ମହତ୍ତମ ସାଧନକୁ ବିନିଯୋଗ କରିବା ମାନବୀୟ ସଙ୍କଟ ପାଇଁ କ୍ଷେତ୍ର ଯୋଗାଇଥାଏ । ଏହି ପରିବେଶରେ ମୌଳବାଦ, ସାଂପ୍ରଦାୟିକତାବାଦର ପ୍ରସାର ସହଜସାଧ୍ୟ ହୋଇଥାଏ । ଧାର୍ମିକ ଆବେଗଦ୍ୱାରା ଜନମାନସକୁ ଅକ୍ଳେଶରେ ପ୍ରଭାବିତ କରାଯିବା ସମ୍ଭବ ହେଉଥିବାରୁ ରାଜନୈତିକ ଦଳମାନେ ଏହାରି ଆଧାରରେ କ୍ଷମତା ହାସଲ କରିବାର କୌଶଳ ଅବଲମ୍ବନ କରନ୍ତି । ଧର୍ମନିରପେକ୍ଷତା ଏକ ମାନବିକ ଓ ସାର୍ବଜନୀନ ମୂଲ୍ୟବୋଧ ହେଲେ ହେଁ ତାହାର ବିକୃତ ବ୍ୟାଖ୍ୟା କରାଯାଏ ଓ ଧର୍ମନିରପେକ୍ଷ ବ୍ୟକ୍ତିମାନଙ୍କୁ ଛଦ୍ମ-ନିରପେକ୍ଷବାଦୀ ବୋଲି ଚିତ୍ରଣ କରାଯାଏ । ଧର୍ମଗତ ଭାବନାମାନ ବ୍ୟକ୍ତିଗତ ବିଶ୍ୱାସ ସ୍ତରରୁ ସାମାଜିକ ଅସ୍ମିତା, ସାଂସ୍କୃତିକ ଐତିହ୍ୟ ଓ ରାଷ୍ଟ୍ରୀୟ ଦେଶାତ୍ମବୋଧର

ପ୍ରତୀକ ହୋଇ ଉଠେ । ଏହିସବୁର ପୃଷ୍ଠଭୂମି ଉପରେ ସମାଜ ଧର୍ମୀୟ ଅସ୍ମିତା ଆଧାରରେ ଭାଗ ହୋଇଯାଏ ଓ ସାମାଜିକ ସଂହତି ଧୀରେ ଧୀରେ ବିପନ୍ନ ହୋଇଚାଲେ । ପରସ୍ପର ପ୍ରତି ଘୃଣା, ଅବିଶ୍ୱାସ ଓ ସାଂପ୍ରଦାୟିକ ଭେଦଭାବ ସମାଜରେ ବ୍ୟାପକ ହେବାଦ୍ୱାରା ମାନବିକ ମୂଲ୍ୟବୋଧ ସଙ୍କଟର ସମ୍ମୁଖୀନ ହୁଏ । ଏହାରି ଭିତ୍ତିଭୂମି ଉପରେ ସମାଜରେ ସନ୍ତ୍ରାସବାଦ, ହିଂସାତ୍ମକ କାର୍ଯ୍ୟକଳାପ ବୃଦ୍ଧିପାଏ ଓ ସମାଜର ବାସ୍ତବ ସମସ୍ୟା ପ୍ରତି ଉଦାସୀନତା ପ୍ରକାଶ ପାଇଥାଏ । ସମାଜ ଧାର୍ମିକ ବିଶ୍ୱାସ ଓ ଅସ୍ମିତା ଆଧାରରେ ଯେତେ ଭାଗ ଭାଗ ହୋଇଚାଲେ, ବିକାଶର ଧାରା ସେତିକି ବାଧାପ୍ରାପ୍ତ ହେବା ସହ ମାନବବାଦ ପ୍ରତି ସଙ୍କଟ ସୃଷ୍ଟି ହୋଇଥାଏ ।

ଏହିପରି ଏକ ସାମାଜିକ ପରିବେଶରେ ସ୍ୱାଧୀନ ଚିନ୍ତକ, ମାନବଦରଦୀ ହେତୁବାଦୀ ଓ ବିଜ୍ଞାନ-ମନସ୍କ ବ୍ୟକ୍ତିମାନେ ନାନା ବିରୋଧର ସମ୍ମୁଖୀନ ହୁଅନ୍ତି । କୁସଂସ୍କାର, ଅପସଂସ୍କୃତି ଓ ଅହେତୁକ ପରମ୍ପରା ବିରୋଧରେ ସ୍ୱର ଉତ୍ତୋଳନ କରୁଥିବା ବ୍ୟକ୍ତିମାନଙ୍କୁ କୁସଂସ୍କାରୀ ଓ ସାଂପ୍ରଦାୟିକ ଶକ୍ତିମାନେ ସେମାନଙ୍କର ପଶୁବଳ ପ୍ରୟୋଗକରି ନିପାତ କରିବାକୁ ପ୍ରୟାସ କରିଥାନ୍ତି । ଗତ କିଛି ଦିନ ଭିତରେ ତିନି ଜଣ ବିଶିଷ୍ଟ ମାନବଦରଦୀ ମୁକ୍ତଚିନ୍ତକ କିପରି ହତ୍ୟାର ଶିକାର ହୋଇଛନ୍ତି ତାହା ମାନବବାଦ ପ୍ରତି ବଡ ସଙ୍କଟ ଓ ସଭ୍ୟତାର ଇତିହାସରେ କଳଙ୍କମୟ ଘଟଣା କହିଲେ ଅତ୍ୟୁକ୍ତି ହେବ ନାହିଁ । କନ୍ନଡ ସାହିତ୍ୟର ପ୍ରଥିତଯଶା ଲେଖକ, କନ୍ନଡ ବିଶ୍ୱବିଦ୍ୟାଳୟର ଭୂତପୂର୍ବ କୁଳପତି, କେନ୍ଦ୍ରସାହିତ୍ୟ ଏକାଡେମୀ ପୁରସ୍କାରପ୍ରାପ୍ତ ବିଶିଷ୍ଟ ସଂସ୍କାରବାଦୀ ବୁଦ୍ଧିଜୀବୀ ଏମ୍.ଏମ୍. କଲବର୍ଗିଙ୍କୁ ଧରୱାଡସ୍ଥିତ ତାଙ୍କ ବାସଭବନରେ ଆତତାୟୀମାନେ ଗୁଳିକରି ହତ୍ୟା କରିଛନ୍ତି । ତାଙ୍କର ସଂସ୍କାରବାଦୀ ଆଭିମୁଖ୍ୟ ପ୍ରତି ଅସହିଷ୍ଣୁ ଥିବା କେତେକ ଉଗ୍ରବାଦୀ ସାଂପ୍ରଦାୟିକ ସଙ୍ଗଠନ ତାଙ୍କୁ ଧମକ ଦେଇଥିବା ପ୍ରକାଶ ପାଇଛି । ତେବେ ଜଣଙ୍କର ବିଚାରଧାରା ସହିତ ଏକମତ ନ ହେଉଥିବା ବ୍ୟକ୍ତି ଏକ ସ୍ୱାଧୀନ ପରିବେଶରେ ନିଜର ମତ ରଖିପାରିଥାନ୍ତେ ବା କୁଲବର୍ଗିଙ୍କୁ ସମାଲୋଚନା କରିପାରିଥାନ୍ତେ । ଏହା ନକରି ସୁଯୋଗ ଉଣ୍ଡି ସୁପରିକଳ୍ପିତ ଭାବେ ତାଙ୍କ ଘରକୁ ଆସି ଗୁଳିକରି ତାଙ୍କୁ ହତ୍ୟା କରିବା ସମସ୍ତ ସଭ୍ୟ ବିବେକବୋଧର ପରିପନ୍ଥୀ ଅଟେ । ସେହିପରି ମହାରାଷ୍ଟ୍ରର କୋଲାରପୁରଠାରେ ଜଣେ ବାମପନ୍ଥୀ ବୁଦ୍ଧିଜୀବୀ, ସମାଜ ସଂସ୍କାରକ ଓ ହେତୁବାଦୀ ଲେଖକ ଗୋବିନ୍ଦ ପାନ୍‌ସାରେଙ୍କୁ ପ୍ରାତଃଭ୍ରମଣ ସମୟରେ ଫେବୃଆରୀ ୨୦ ତାରିଖ ୨୦୧୫ ଦିନ କେହି ଆତତାୟୀ ତାଙ୍କୁ ଗୁଳିକରି ହତ୍ୟା କରିଛି । ସମ୍ବାଦ ଅନୁଯାୟୀ ମଟର ସାଇକେଲ୍‌ରେ ଆସି ଦୁଇଜଣ ବ୍ୟକ୍ତି ତାଙ୍କୁ ଅତି

ନିକଟରୁ ଗୁଳିକରି ହତ୍ୟା କରିଛନ୍ତି । ତାଙ୍କ ସଂସ୍କାରବାଦୀ ଓ ମାନବବାଦୀ ବିଚାରବୋଧକୁ ବିରୋଧ କରୁଥିବା ବ୍ୟକ୍ତିମାନେ ଜଣେ ୮୨ ବର୍ଷର ବରିଷ୍ଠ ଲୋକଙ୍କୁ ହତ୍ୟା କରିବାରେ ବିବେକର ଦଂଶନ ନ ପାଇବା ଅମାନବିକ ମନେହୁଏ । ଏହିଭଳି ଆଉ ଏକ ଘଟଣା ଦୁଇ ବର୍ଷ ତଳେ ପୁନେଠାରେ ମଧ୍ୟ ଘଟିଯାଇଛି । ମହାରାଷ୍ଟ୍ର ଅନ୍ଧ ଶ୍ରଦ୍ଧା ନିର୍ମୂଳନ ସମିତିର ପ୍ରତିଷ୍ଠାତା ଓ ସମାଜ ସଂସ୍କାରର ଅଗ୍ରଗାମୀ ନେତା ଡାକ୍ତର ନରେନ୍ଦ୍ର ଦାଭୋଲକରଙ୍କୁ ପ୍ରାତଃଭ୍ରମଣ ସମୟରେ ଅଗଷ୍ଟ ୨୦୧୩ରେ ପୁନେଠାରେ ହତ୍ୟା କରାଯାଇଛି । କୁସଂସ୍କାର ଓ କଳାଯାଦୁକୁ ଆଧାରକରି ଗୁଣିଗାରେଡ଼ି, ମନ୍ତ୍ରତନ୍ତ୍ର ଦ୍ୱାରା ସାଧାରଣ ଲୋକମାନଙ୍କୁ ଶୋଷଣ କରୁଥିବା ବ୍ୟକ୍ତିମାନଙ୍କ ବିରୁଦ୍ଧରେ ଦାଭୋଲକର ସ୍ୱର ଉଠାଉଥିଲେ । ସରକାର କଳାଯାଦୁକୁ ଏକ ଧର୍ତ୍ତବ୍ୟ ଅପରାଧ କରିବାକୁ ସେ ଦାବି କରୁଥିଲେ । ସମାଜରେ ଯେଉଁମାନେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ, ମାନବବାଦ ଓ ସଂସ୍କାରର ବାର୍ତ୍ତା ପ୍ରସାର କ୍ଷେତ୍ରରେ ପଥପ୍ରଦର୍ଶକ ହୋଇଛନ୍ତି ସେମାନେ ନିଜ ସମୟର ରକ୍ଷଣଶୀଳ, କଟ୍ଟରପନ୍ଥୀ ଓ ହିଂସାରେ ବିଶ୍ୱାସ କରୁଥିବା ଲୋକମାନଙ୍କ ଅତ୍ୟାଚାରର ଶରବ୍ୟ ହୋଇଛନ୍ତି । ଭାରତବର୍ଷର ଅନ୍ୟ ଜଣେ ବିଶିଷ୍ଟ ହେତୁବାଦୀ ନାନା ଚମତ୍କାରିତାର ରହସ୍ୟକୁ ଖୋଲି ଦେଇଥିବାରୁ ସେ ବି ହତ୍ୟାର ଧମକ ପାଇବା ପରେ ନିଜକୁ ଅସୁରକ୍ଷିତ ମନେକରି ଭାରତ ଛାଡ଼ି ବିଦେଶରେ ରହୁଛନ୍ତି । ସାନାଲ ଏଡମାରୁକ କେତେକ ତଥାକଥିତ ଚମତ୍କାରିତାର ଅନାବରଣ କରିବା ପରେ ଯେଉଁ ଧମକ ପାଇଛନ୍ତି ସେଥିରେ ବ୍ୟସ୍ତ ହୋଇ ଭାରତ ବାହାରକୁ ଚାଲି ଯାଇଛନ୍ତି । ବିଡମ୍ବନାର ବିଷୟ ଯେଉଁମାନେ ସତ୍ୟସନ୍ଧାନୀ, ଜ୍ଞାନବିଜ୍ଞାନର ବିକାଶରେ ଓ ମାନବବାଦୀ ଜୀବନଦର୍ଶନର ପ୍ରସାରରେ ଗଭୀର ସଂପୃକ୍ତି ବ୍ୟକ୍ତ କରିଥାନ୍ତି ସେମାନେ ନିଜ ସମସାମୟିକ ସମାଜରେ ରକ୍ଷଣଶୀଳ, ପରିବର୍ତ୍ତନବିରୋଧୀ ଉଗ୍ର ବ୍ୟକ୍ତିମାନଙ୍କ ଆକ୍ରମଣର ଶିକାର ହୁଅନ୍ତି । ଇତିହାସରେ ଓ ବିଭିନ୍ନ ସଭ୍ୟତାରେ ଏହାର ବହୁ ଦୃଷ୍ଟାନ୍ତ ଦେଖିବାକୁ ମିଳେ । ସତ୍ୟସନ୍ଧାନୀ ଓ ନିଷ୍ପାପ ଜୀବନର ଅଧିକାରୀ ସକ୍ରେଟିସ୍ ଓ ସ୍ପିନୋଜାଙ୍କ ପରି ମହାନ୍ ଦାର୍ଶନିକମାନେ ରକ୍ଷଣଶୀଳ ଲୋକଙ୍କର ଭୟଙ୍କର ବିରୋଧର ସମ୍ମୁଖୀନ ହୋଇଛନ୍ତି । ବିଜ୍ଞାନର ଆଦିପର୍ବରେ କେତେ କେତେ ପ୍ରତିଭାବାନ ବୈଜ୍ଞାନିକ ଧର୍ମାନ୍ଧ ଲୋକଙ୍କଦ୍ୱାରା ନିର୍ଯାତିତ ହୋଇଛନ୍ତି ବା ମୃତ୍ୟୁଦଣ୍ଡରେ ପ୍ରାଣ ହରାଇଛନ୍ତି । ଭାରତବର୍ଷରେ ସମାଜ ସଂସ୍କାର, ଜାତିବିହୀନ ସମାଜ, ମାନବିକ ଅଧିକାର ଏବଂ ବ୍ୟକ୍ତି ମର୍ଯ୍ୟାଦାବୋଧର ବାର୍ତ୍ତା ପ୍ରଚାର କରିଥିବା ବ୍ୟକ୍ତିମାନଙ୍କୁ ସେହିପରି ନାନା ବିରୋଧର ସମ୍ମୁଖୀନ ହେବାକୁ ପଡିଛି । ସାଂପ୍ରଦାୟିକ ମାନସିକତାରୁ ମହାତ୍ମା ଗାନ୍ଧୀଙ୍କ ପରି ଅହିଂସାର ମହାନ୍ ପ୍ରବର୍ତ୍ତକଙ୍କୁ ହତ୍ୟା କରାଯାଇଛି ଓ ସେହି ମାନସିକତା ଏକବିଂଶ ଶତାବ୍ଦୀରେ ବି ଭାରତୀୟ ଜନଜୀବନରେ ପ୍ରାଧାନ୍ୟ ବିସ୍ତାରକରି ରହିଛି ।

ଧର୍ମାନ୍ଧତା, ବୌଦ୍ଧିକ ଅସହିଷ୍ଣୁତା ଓ ହିଂସାତ୍ମକ ପନ୍ଥା ମାନବବାଦର ଯେ ଶତ୍ରୁ ତାହା ନୁହେଁ, ତାହା ସଭ୍ୟ ଜୀବନଦୃଷ୍ଟିର ପ୍ରତିକୂଳ । ପରିତାପର ବିଷୟ ଏହି ଭାବଧାରା ଆମ ସମାଜରେ ଏବେ ବି କାୟା ବିସ୍ତାରକରି ରହିଛି ଓ ଆହୁରି ବିଡମ୍ବନାର ବିଷୟ ଏହା ଅଧିକ ଶକ୍ତିଶାଳୀ ହେବାରେ ଲାଗିଛି ।

ମନୋବୈଜ୍ଞାନିକ ଅନୁଶୀଳନରୁ ଜଣାଯାଏ ଯେ ବ୍ୟକ୍ତି ଭିତରେ ବିଚାରଶୀଳ ଦୃଷ୍ଟି ଯେପରି ରହିଛି ସେହିପରି ଭାଗ୍ୟ, ଅଦୃଷ୍ଟରେ ବିଶ୍ୱାସ ତଥା ନାନା ଅହେତୁକ ଆବେଗ ରହିଛି । ବ୍ୟକ୍ତିର ବିଚାରଶୀଳ ଦୃଷ୍ଟି ଓ ମାନବିକ ସଂପ୍ରୀତିକୁ ବୃଦ୍ଧି କରିବାରେ ପରିବାର, ସାମାଜିକ ପରିବେଶ, ଶିକ୍ଷାନୁଷ୍ଠାନ ଓ ଗଣମାଧ୍ୟମ ଏକ ମୁଖ୍ୟ ଭୂମିକା ନେଇଥାଏ । ଯଦି ପାରଲୌକିକ ବିଶ୍ୱାସ, କୁସଂସ୍କାର ସବୁ ସ୍ତରରେ ବ୍ୟାପକ ହୋଇ ରହେ ତାହାର ପ୍ରଭାବରୁ ବ୍ୟକ୍ତିବିଶେଷ ମୁକ୍ତ ହୋଇପାରନ୍ତି ନାହିଁ । ଯେଉଁ ସାମାଜିକ ପରିବେଶରେ ବିଜ୍ଞାନମନସ୍କ ମାନସିକତା ଓ ମାନବବାଦୀ ଜୀବନବୋଧର ପ୍ରଭାବ ଯେତେ ଅଧିକ ସେଠି ପ୍ରାୟତଃ ଜୀବନର ଗୁଣାତ୍ମକ ମାନ ଅଧିକ, ଅଥଚ ଯେଉଁ ପରିବେଶରେ ଏହାର ପ୍ରଭାବ ଯେତେ କମ୍ ସେଠାରେ ଧର୍ମାନ୍ଧତା, କୁସଂସ୍କାର ଓ ହିଂସାତ୍ମକ ମନୋଭାବ ସେତେ ଅଧିକ । ବୈଜ୍ଞାନିକ ମନୋଭାବ ଓ ମାନବିକ ଦୃଷ୍ଟି ସଭ୍ୟ ଜୀବନଦୃଷ୍ଟିର ଅପରିହାର୍ଯ୍ୟ ଅଙ୍ଗ । ସଭ୍ୟତାର ବିକାଶରେ ଏହାର ପ୍ରଭାବ ନିର୍ଣ୍ଣାୟକ ମନେହୁଏ । ବୈଜ୍ଞାନିକ ମନୋଭାବ ମୁକ୍ତମନ, ବିଚାରଶୀଳ ଦୃଷ୍ଟି, ଜ୍ଞାନଲାଭ କ୍ଷେତ୍ରରେ ସାର୍ବଜନୀନ ପ୍ରଣାଳୀ ଓ ତଥ୍ୟାଧାରିତ ଜ୍ଞାନକୁ ପ୍ରାଧାନ୍ୟ ଦେଇଥାଏ । କହିବା ନିଷ୍ପ୍ରୟୋଜନ ଯେ ସଭ୍ୟତାର ସକଳ ଭୌତିକ ବିକାଶ ଏହି ଚେତନାରୁ ଉଦ୍‌ଭବ ହୋଇଛି । ଆଧୁନିକ ଜ୍ଞାନବିଜ୍ଞାନ, ପ୍ରଯୁକ୍ତି ଓ ସୁଖମୟ ଜୀବନର ପରିବେଶ ବୈଜ୍ଞାନିକ ମନୋଭାବରୁ ସମ୍ଭବ ହୋଇଛି । ସେହିପରି ମାନବିକ ଦୃଷ୍ଟି ବା ମାନବବାଦୀ ଜୀବନ ଦର୍ଶନରୁ ମାନବିକ ଅଧିକାର, ସମତାର ଭାବ, ବ୍ୟକ୍ତିମର୍ଯ୍ୟାଦାବୋଧ, ସାମାଜିକ ନ୍ୟାୟ ଓ ବୌଦ୍ଧିକ ସହିଷ୍ଣୁତାର ପରିବେଶ ଆସିଛି । ଏହି ମୂଲ୍ୟବୋଧଗୁଡ଼ିକ ସଂପ୍ରତି ଆନ୍ତର୍ଜାତିକ ସ୍ୱୀକୃତି ଲାଭ କରିଛି । ଏହି ଜୀବନଦୃଷ୍ଟି ଯେଉଁ ସମାଜରେ ଯେତେ ଅଧିକ ପରିବ୍ୟାପ୍ତ ସେହି ସମାଜ ସେତେ ଉନ୍ନତ । ଅଥଚ ଯେଉଁ ସାମାଜିକ ଦୃଶ୍ୟପଟରେ ଏହାର ବିପରୀତ ଧାରାମାନ ପରିବ୍ୟାପ୍ତ ତାହା ଅନଗ୍ରସର । ବସ୍ତୁତଃ ଅନଗ୍ରସରତା କେବଳ ଏକ ଅର୍ଥନୈତିକ ଅବଧାରଣା ନୁହେଁ, ଏହା ସହିତ ମାନବିକ ଓ ସାଂସ୍କୃତିକ ପ୍ରଶ୍ନମାନ ବି ଜଡ଼ିତ । ଯେଉଁ ସାମାଜିକ ଜୀବନଧାରାରେ ଉଦାରତା, ବ୍ୟକ୍ତିମର୍ଯ୍ୟାଦା ପ୍ରତି ସମ୍ମାନବୋଧ, ଧାର୍ମିକ ସହିଷ୍ଣୁତା ଓ ବୈଜ୍ଞାନିକ ମାନସିକତାର ପ୍ରଭାବ ଅଧିକ ସେମାନେ ଅଧିକ ସଭ୍ୟ ଓ

ସଂସ୍କୃତିସଂପନ୍ନ । ଅପରପକ୍ଷରେ ଯେଉଁ ସାମାଜିକ ପରିବେଶରେ ସାଂପ୍ରଦାୟିକତା, ଧର୍ମାନ୍ଧତା, ଅସହିଷ୍ଣୁତା ଓ ଭେଦଭାବର ପ୍ରାଧାନ୍ୟ ଯେତେ ଅଧିକ ତାହା ସଭ୍ୟତାର ମାନଦଣ୍ଡରେ ସେତେ ପଛୁଆ ଓ ଅନଗ୍ରସର । ଏହା ଛଡା ଧର୍ମାନ୍ଧତା ଓ ଅନଗ୍ରସରତା ଯେ ପରସ୍ପର ସହ ଅଙ୍ଗାଙ୍ଗୀ ଭାବେ ସଂପୃକ୍ତ ଏହା ଏକ ଆନୁଭବିକ ସତ୍ୟ ।

ସଭ୍ୟତାର ଆରମ୍ଭ ପର୍ବରୁ କେତେକ ସଙ୍କଟ ଜୀବନଧାରା ସହିତ ସଂପୃକ୍ତ ହୋଇରହିଛି । ତେବେ ସଭ୍ୟତା ଯେତେ ଅଗ୍ରସର ହେଉଛି ମଣିଷ ନିଜର ବୁଦ୍ଧି, ବିଚାରବୋଧ ଓ ଅନୁସନ୍ଧିତ୍ସୁ ଉଦ୍ୟମ ଯୋଗୁ ସେସବୁକୁ ଅତିକ୍ରମ କରିବାକୁ ପ୍ରୟାସ କରିଛି । ଏ ସତ୍ତ୍ୱେ କେତେକ ସମାଜରେ କେତେକ ସାଂସ୍କୃତିକ ପରମ୍ପରା ଓ ଧାର୍ମିକ ଆବେଗ ଦୃଢ ହୋଇ ରହିଛି ଯାହା ମାନବିକ ସଙ୍କଟକୁ ଅଧିକ ତୀବ୍ର କରିବାରେ ଲାଗିଛି । ଏହି ସାଂସ୍କୃତିକ ସଙ୍କଟ ବିଚାରହୀନ ଦୃଷ୍ଟି ଓ ଅମାନବିକ ଚେତନାରୁ ଉଦ୍‌ଭବ ହେଉଛି । ପରିଣାମତଃ ସତ୍ୟସନ୍ଧାନୀ ଓ ପ୍ରଗତିଶୀଳ ବୁଦ୍ଧିଜୀବୀମାନଙ୍କୁ ହତ୍ୟା କରାଯାଉଛି । ଏହା ଏକ ଅସହିଷ୍ଣୁ ମାନସିକତା ଓ ବିକୃତ ଜୀବନବୋଧର ପରିଚାୟକ । ଏହି ବିକୃତି ଏକ ସାଂସ୍କୃତିକ ସଙ୍କଟ ଯାହା ମାନବବାଦୀ ଓ ସଭ୍ୟ ଦୃଷ୍ଟିଭଙ୍ଗୀର ପ୍ରତିକୂଳ । ଏହି ସଙ୍କଟର ବିଲୋପ ପାଇଁ ସଭ୍ୟ ଦୃଷ୍ଟିଭଙ୍ଗୀ, ବିଚାରଶୀଳତା ଓ ମାନବବାଦର ପ୍ରସାର ଅପରିହାର୍ଯ୍ୟ ମନେହୁଏ । ସାମାଜିକ ଚେତନାର ସ୍ତରକୁ ଉନ୍ନତ କରିବାପାଇଁ ସମାଜର ପ୍ରଗତିଶୀଳ ବୁଦ୍ଧିଜୀବୀ, ଗଣମାଧ୍ୟମ ଓ ମାନବ-ଦରଦୀ ବ୍ୟକ୍ତିଗଣ ସ୍ୱର ଉତ୍ତୋଳନ କରିବା ସହ ନିଜର ସଂପୃକ୍ତି ବ୍ୟକ୍ତ କରିବା ଦରକାର ।



# କୁସଂସ୍କାରର ମନସ୍ତତ୍ତ୍ୱ

ବିଭିନ୍ନ ସମାଜରେ ନାନା ପ୍ରକାରର କୁସଂସ୍କାର ରହିଛି । କୁସଂସ୍କାରର ବ୍ୟାପକତା ଓ ପରିସରର ଜଟିଳତା ନେଇ କୁସଂସ୍କାରର ସଂଜ୍ଞା ଦେବା ଜଟିଳ ମନେହୁଏ । ଯେଉଁ ବିଶ୍ୱାସ ଆଧାରହୀନ ଓ ଯୁକ୍ତିବିରୋଧୀ ତାହାକୁ ହୁଏତ କୁସଂସ୍କାର କୁହାଯାଇପାରେ । ତେବେ କୁସଂସ୍କାରର ଭିତ୍ତି, ପ୍ରକାରଭେଦ ଓ କାରଣ ବିଷୟରେ ସାଧାରଣ ଭାବରେ ଆଲୋଚନା କରାଯାଇପାରେ । ସମାଜରେ କେତେକ ବ୍ୟକ୍ତି ବିନା ଆଧାରରେ କେତେ କଥା ବିଶ୍ୱାସ କରନ୍ତି । ସେହି ବିଶ୍ୱାସର କୌଣସି ତଥ୍ୟଗତ ବା ଯୁକ୍ତିସଙ୍ଗତ କାରଣ ନଥାଏ, ତଥାପି ସେମାନେ ସେଥିରେ ଅସନ୍ଦିଗ୍ଧ ବିଶ୍ୱାସ ସ୍ଥାପନ କରନ୍ତି । ବିଶେଷକରି ଆଧିଦୈବିକ ଶକ୍ତିରେ ବିଶ୍ୱାସ ସମାଜରେ ବ୍ୟାପକ ଥିବା ଦୃଷ୍ଟିଗୋଚର ହୁଏ । ଦେଖାଯାଏ ଯେ କେତେକ ଅହେତୁକ ଭୟ କାରଣରୁ ଅଜ୍ଞେୟ ଶକ୍ତି ଉପରେ ଲୋକମାନେ ବିଶ୍ୱାସ କରନ୍ତି । ପ୍ରତ୍ୟେକ ବ୍ୟକ୍ତି ଜୀବନରେ କିଛି ପ୍ରତିକୂଳ ପରିବେଶର ସମ୍ମୁଖୀନ ହେବା ଏକ ସାଧାରଣ ଘଟଣା । ତେବେ ସେହି ପ୍ରତିକୂଳ ସ୍ଥିତିରେ କୌଣସି ଅତୀନ୍ଦ୍ରିୟ ଶକ୍ତିରେ ବିଶ୍ୱାସ ସ୍ଥାପନ କଲେ ଜୀବନର ଅସୁବିଧା ଦୂର ହୋଇଯିବ ବୋଲି ସାଧାରଣତଃ ଲୋକମାନେ ଭାବିଥାନ୍ତି । ବସ୍ତୁତଃ କିଛି ଅଜ୍ଞେୟ ଶକ୍ତି ଉପରେ ସେମାନେ ଆସ୍ଥା ସ୍ଥାପନ କରନ୍ତି । ଭୟଜନିତ କାରଣରୁ ଲୋକଙ୍କ ମାନସିକତାରେ ଭକ୍ତିଭାବ ସୃଷ୍ଟି ହୋଇଥାଏ । ଏହି ଭୟଜନିତ ଭକ୍ତିରୁ ବିଭିନ୍ନ କର୍ମକାଣ୍ଡର ଭାବନା ଆସିଥାଏ । କେଉଁ ଦିଅଁ କେଉଁ ସୁଫଳ ଆଣିଦେବ ବା ତାଙ୍କର ଆରାଧନାଦ୍ୱାରା କ'ଣ ମଙ୍ଗଳ ଘଟିବ ଓ କେଉଁ ଅମଙ୍ଗଳ ଦୂର ହେବ ଏହି ପ୍ରକାରର କେତେକ ମନୋବୈଜ୍ଞାନିକ କାରଣରୁ ସମାଜରେ ନାନା ପ୍ରକାରର କୁସଂସ୍କାର ରହିବା ଦେଖାଯାଏ । ମୋଟ ଉପରେ କହିଲେ ଆଧିଦୈବିକ ଶକ୍ତିରେ ଅସନ୍ଦିଗ୍ଧ ବିଶ୍ୱାସ, ଅହେତୁକ ଭୟ, ରହସ୍ୟମୟ ଭକ୍ତି, ନାନା କର୍ମକାଣ୍ଡଜନିତ ଆବେଗ ଇତ୍ୟାଦି ଯୋଗୁ ବିଭିନ୍ନ ପ୍ରକାରର କୁସଂସ୍କାର ସମାଜରେ ପରିବ୍ୟାପ୍ତ ଥିବା ଦେଖାଯାଏ ।

କୁସଂସ୍କାରର ମୁଖ୍ୟ କାରଣ ହେଉଛି ଅଜ୍ଞତା, ଭୟ ଓ ନିରାପଦବିହୀନ ମାନସିକତା । ମଣିଷ ଅନେକ ବିଷୟରେ ସାଧାରଣତଃ ଅଜ୍ଞ ରହିବା ଦେଖାଯାଏ । ବିଜ୍ଞାନର

ଯୁଗ ଆସିବାପରେ ଆମେ ଅନେକ ବିଷୟକୁ ବ୍ୟାଖ୍ୟା କରିପାରୁଛେ । କୌଣସି ଘଟଣାର ବୈଜ୍ଞାନିକ ବ୍ୟାଖ୍ୟା ଜଣାନଥିବା ବେଳେ ଲୋକମାନେ ପ୍ରାୟତଃ ବିଭିନ୍ନ ଘଟଣାର ରହସ୍ୟମୟ ବ୍ୟାଖ୍ୟା କରୁଥିଲେ । ବିଭିନ୍ନ ରୋଗ ବା ମହାମାରୀ ବିଂଶଶତାବ୍ଦୀ ଆରମ୍ଭ ପର୍ଯ୍ୟନ୍ତ ମୃତ୍ୟୁର ତାଣ୍ଡବ ସୃଷ୍ଟି କରୁଥିବା ବେଳେ ଲୋକମାନେ ଏହାକୁ ଦୈବୀଦଣ୍ଡ ବୋଲି ଭାବୁଥିଲେ । ଏହା ଦିଅଁ ଦେବତାଙ୍କ ପ୍ରକୋପରୁ ହୁଏ ବୋଲି ସାଧାରଣ ବିଶ୍ୱାସ ଥିଲା । ମହାମାରୀ ରୋଗର ଆକ୍ରମଣରୁ ଗାଁମାନଙ୍କୁ ରକ୍ଷା କରିବାପାଇଁ ଗାଁମାନଙ୍କରେ ହୋମଯଜ୍ଞ, ଅଷ୍ଟପ୍ରହରୀ, କୀର୍ତ୍ତନମାନ ହେଉଥିଲା । ଗ୍ରାମ, ସହର ସବୁ ଜାଗାରେ ପୂଜାସ୍ଥଳ ନିର୍ମିତ ହେଉଥିଲା ଓ ନିଜ ଧର୍ମର ବିଶ୍ୱାସ ଅନୁଯାୟୀ ଦୈବୀ କରୁଣା ପାଇଁ ଲୋକମାନେ ପ୍ରାର୍ଥନା କରୁଥିଲେ । ପ୍ରାକୃତିକ ଦୁର୍ବିପାକ ସାଧାରଣ ଘଟଣା ଥିଲା ଓ ସେପରି ପରସ୍ଥିତି ଆସିଲେ ଲୋକମାନେ ଅସହାୟ ହୋଇ ମୃତ୍ୟୁମୁଖରେ ପଡୁଥିଲେ । ଗାଡିମଟର ସଡକ ପଥରେ କେବଳ ବିଂଶଶତାବ୍ଦୀ ଦ୍ୱିତୀୟାର୍ଦ୍ଧରୁ ଚାଲିଲା, ତା ପୂର୍ବରୁ ଗମନାଗମନ ଦୁରୂହ ବ୍ୟାପାର ଥିଲା । ଜୀବନ ଅତ୍ୟନ୍ତ ନିରାପଦବିହୀନ ଥିଲା ଓ ସେହି ସ୍ଥିତିରେ ନାନା ପାରଲୌକିକ ବିଶ୍ୱାସ ସମାଜରେ ବ୍ୟାପକ ଭାବେ ରହିଥିଲା । ରାଷ୍ଟ୍ର ଓ ଜନମଙ୍ଗଳକାରୀ ଯୋଜନାମାନଙ୍କର କଳ୍ପନା ଆସିନଥିଲା । ଏହି ପରିବେଶରେ କିଛି ବୁଦ୍ଧିମାନ ଲୋକ ନିଜର ସ୍ୱାର୍ଥସାଧନ ପାଇଁ ଗୁଣିଗାରେଡ଼ି, ମନ୍ତ୍ରତନ୍ତ୍ର ଓ କଳାଯାଦୁର ଭାବନା ସୃଷ୍ଟି କରି ଲୋକମାନଙ୍କୁ ଅକ୍ଲେଶରେ ଶୋଷଣ କରିପାରୁଥିଲେ । ଭୂତ, ପ୍ରେତ, ଡାହାଣୀ ଇତ୍ୟାଦିରେ ବିଶ୍ୱାସ ସମାଜରେ ବ୍ୟାପକ ଭାବେ ରହିଥିଲା । ବହୁ ବିଷୟରେ ଲୋକମାନେ ଅଜ୍ଞ ରହିଥିଲେ ଓ ଜୀବନ ନିରାପଦବିହୀନ ଥିଲା । ଫଳରେ ଭୟ ସର୍ବତ୍ର ବିରାଜମାନ କରୁଥିଲା । ଏହିପରି ପରିବେଶରେ କୁସଂସ୍କାର ସମାଜରେ ବ୍ୟାପକ ଭାବେ ରହିବା ସାଧାରଣ ଘଟଣା ହୋଇ ରହିଥିଲା ।

ପ୍ରତ୍ୟେକ ବ୍ୟକ୍ତି ଏକ ସାମାଜିକ ପରିବେଶରେ ଜନ୍ମ ହୋଇ ବଡ ହୋଇଥାଏ । ସୁତରାଂ ପରିବାର ଓ ସାମାଜିକ ପରିବେଶର ପ୍ରଭାବ ବ୍ୟକ୍ତିର ଜୀବନଧାରାକୁ ବହୁଭାବରେ ପ୍ରଭାବିତ କରିଥାଏ । ପରିବାରରେ ଓ ବୃହତ୍ତର ସାମାଜିକ ପରିବେଶରେ ଯେଉଁସବୁ ବିଶ୍ୱାସ, ଚଳଣି, ପରମ୍ପରା ଓ ଭାବଧାରା ରହିଥାଏ ତାହା ବ୍ୟକ୍ତିର ବିଶ୍ୱାସ ଓ ଜୀବନଧାରାକୁ ରୂପ ଦେଇଥାଏ । ଜଣେ ଜଣେ ବ୍ୟକ୍ତି କୌତୂହଳୀ ହୋଇ ଘଟଣାର କାରଣ ଅନୁସନ୍ଧାନ କରିବାର ଦୃଷ୍ଟାନ୍ତ ଥାଇପାରେ, ତେବେ ତାହା ବ୍ୟତିକ୍ରମ ମାତ୍ର । ସମାଜର ସାଧାରଣ ଲୋକମାନେ ପିଲାଟି ସମୟରୁ ବୃହତ୍ତର ସାମାଜିକ ପରିବେଶରୁ ଯେଉଁ ଭାବନା, ବିଶ୍ୱାସ ପାଇଥାନ୍ତି ସେଥିରେ ଗଭୀର ଆସ୍ଥା ସ୍ଥାପନ କରିଥାନ୍ତି । ଯଦି ସାମାଜିକ ପରିବେଶରେ

ନାନା କୁସଂସ୍କାର ରହିଥାଏ ତେବେ ତାହାର ପ୍ରଭାବରୁ ସାଧାରଣ ଲୋକମାନେ ମୁକ୍ତ ହୋଇପାରନ୍ତି ନାହିଁ । ପୁନଶ୍ଚ ରକ୍ଷଣଶୀଳ ସମାଜରେ କେତେକ ପ୍ରଥା, ତାହା ଯେତେ ଅହେତୁକ ଓ ଅମାନବିକ ହେଉ ନା କାହିଁକି, ପିଢି ପିଢି ଦେଇ ଚାଲୁରହିବା ଯୋଗୁ ସେସବୁ ପରମ୍ପରାର ରୂପ ନେଇଥାଏ । ନିଜର ପରମ୍ପରାକୁ ରକ୍ଷାକରିବା ଓ ସେହି ପରମ୍ପରା ସହ ଏକ ଭାବଗତ ଅସ୍ମିତା ରଖିବା ଏକ ସାଧାରଣ ମନସ୍ତତ୍ତ୍ୱ ଅଟେ । ଏହି ଧାରାରେ ବହୁ କୁସଂସ୍କାର ପରମ୍ପରାର ରୂପ ନେଇ ସମାଜରେ ପ୍ରଚଳିତ ରହିବା ଦେଖାଯାଏ । ବିଶେଷକରି ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ଅଭାବରେ ନାନା ପରମ୍ପରାଗତ ଚଳଣି ସମାଜରେ ରହିବା ଦୃଷ୍ଟିଗୋଚର ହୁଏ । ଏହି ଧାରାରେ ବହୁ କୁସଂସ୍କାର ସ୍ଥାନ-କାଳ-ଭିତ୍ତିକ ହୋଇଥାଏ । ସାଧାରଣତଃ ଦେଖାଯାଏ ଯେ ବିଭିନ୍ନ ଅଞ୍ଚଳରେ ଭିନ୍ନ ଭିନ୍ନ ପ୍ରକାରର କୁସଂସ୍କାର ରହିଛି । ବିଶେଷକରି ଆଧୁନିକ ପ୍ରସାରଣ ବା ମିଡିଆର ଯୁଗ ଆସିବା ପୂର୍ବରୁ କୁସଂସ୍କାରମାନ ଆଞ୍ଚଳିକ ହୋଇରହିବା ଦେଖାଯାଏ । କେଉଁ ପଶୁ, ପକ୍ଷୀ ଶୁଭ, କେଉଁଟା ଅଶୁଭ, କେଉଁ ଦିନ ବାର ଶୁଭ ବା ଅଶୁଭ, କେଉଁ ଦିନ କେଉଁ ଖାଦ୍ୟ ଭଲ ବା ମନ୍ଦ, କେଉଁ ବାରରେ କେଉଁ ରଙ୍ଗର ଲୁଗା ଶୁଭ ବା ଅଶୁଭ, କେଉଁ ତିଥି ବାରରେ ଯାତ୍ରା ଶୁଭ, କେଉଁ ତିଥି ଲଗ୍ନରେ ଶୁଭ କାର୍ଯ୍ୟ କରାଯିବା ଦରକାର ପରି ନାନା ଅହେତୁକ ବିଶ୍ୱାସ ସ୍ଥାନ-କାଳ ଭିତ୍ତିକ ହେବା ଜଣାଯାଏ । ବିଭିନ୍ନ ସ୍ଥାନରେ ବିଭିନ୍ନ ପ୍ରକାରର ବିଶ୍ୱାସ ରହିବା ଦେଖାଯାଏ । ହୁଏତ କାକ-ତାଳୀୟ ନ୍ୟାୟରେ କେଉଁଠି କିଛି ଘଟଣା ଘଟିଥାଇପାରେ, ତେବେ ତାହା ଘଟିବା ପରଠାରୁ ତାହା ସେହି ଅଞ୍ଚଳରେ ଏକ ଲୋକ-ବିଶ୍ୱାସର ରୂପ ନିଏ ଓ ଧୀରେ ଧୀରେ ପରମ୍ପରା ହୋଇଉଠେ । ଏହି ଦୃଷ୍ଟିରୁ ଦେଖିଲେ ଅଧିକାଂଶ କୁସଂସ୍କାର ସ୍ଥାନିକ ବା ଆଞ୍ଚଳିକ ହୋଇଥାଏ ଓ କୁସଂସ୍କାର ସବୁ ଜାଗାରେ ଥିଲେ ବି ସେଗୁଡ଼ିକ ସାର୍ବଜନୀନ ନୁହେଁ । ମୋଟ ଉପରେ କହିଲେ ଅଜ୍ଞତା, ସାମାଜିକ ପରିବେଶର ପ୍ରଭାବ, ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ଅଭାବ, ନାନା ମନସ୍ତାତ୍ତ୍ୱିକ କାରଣ ଇତ୍ୟାଦିରୁ ବିଭିନ୍ନ ଅଞ୍ଚଳରେ ଭିନ୍ନ ଭିନ୍ନ କୁସଂସ୍କାର ପରିଲକ୍ଷିତ ହୁଏ ।

କୁସଂସ୍କାରମାନଙ୍କର ବ୍ୟାପକତା ଓ ବହୁଳତା ପୃଷ୍ଠଭୂମିରେ ସେମାନଙ୍କର ଏକ ଶ୍ରେଣୀକରଣ କରାଯାଇପାରେ । କୁସଂସ୍କାରମାନଙ୍କୁ ଧର୍ମଗତ, ପରମ୍ପରାଗତ, ଗୋଷ୍ଠୀଗତ ଓ ବ୍ୟକ୍ତିଗତ ଭାବରେ ଆମେ ବିଭାଜନ କରିପାରିବା । ହୁଏତ ଅନ୍ୟ ମାନଦଣ୍ଡ ପ୍ରୟୋଗକରି ସେମାନଙ୍କୁ ଅନ୍ୟ ଭାବରେ କେହି ବିଭାଜନ କରିପାରନ୍ତି । ପ୍ରତ୍ୟେକ ଧର୍ମରେ କେତେ କେତେ କୁସଂସ୍କାର ରହିବା ଦେଖାଯାଏ । ଧର୍ମମାନଙ୍କର ବିକାଶ ସମୟରେ ମଣିଷର

ଜୀବନ, ଜଗତଜନିତ ଅବବୋଧ ଅତ୍ୟନ୍ତ ସୀମିତ ଥିଲା । ପ୍ରତ୍ୟେକ ଧର୍ମ ଏକ ସାଂସ୍କୃତିକ ଆଲୋଡନ ଭାବେ ଏକ ନିର୍ଦ୍ଦିଷ୍ଟ ଭୌଗୋଳିକ ଭୂଖଣ୍ଡରେ କୌଣସି କ୍ରାନ୍ତିକାରୀ ଚିନ୍ତାନାୟକଙ୍କଦ୍ୱାରା ଉଦ୍ଭବ ହୋଇଥିବା ଏକ ଐତିହାସିକ ଘଟଣା ଅଟେ । କାଳକ୍ରମେ ଏହାର ବିସ୍ତାର ଓ ପ୍ରସାରଦ୍ୱାରା ଏକ ଜନଗୋଷ୍ଠୀ ଭିତରେ ଏକ ସାଂସ୍କୃତିକ ସଂହତି ସୃଷ୍ଟି କରିବାରେ ଏହା ମୁଖ୍ୟ ଭୂମିକା ନେଇଥିଲା । କାଳକ୍ରମେ ଧର୍ମ ସହ ନାନା ବିଶ୍ୱାସ ଓ ଏପରିକି ଭିତ୍ତିହୀନ ବିଶ୍ୱାସ ସଂଶ୍ଳିଷ୍ଟ ହେଲା । ନିଜ ପରିବେଶରେ ଘଟୁଥିବା ବିଭିନ୍ନ ଘଟଣାମାନଙ୍କୁ ମଣିଷ କଳ୍ପନାର ପୁଟ ଦେଇ ବୁଝିବାକୁ ପ୍ରୟାସ କଲା । ବୈଜ୍ଞାନିକ ଚିନ୍ତାର ଅଭାବରେ ପ୍ରକୃତିର ରହସ୍ୟ ଓ ଜୀବନର ଘନଘଟାକୁ ମଣିଷ ନାନା କଳ୍ପନା ଆଧାରରେ ବ୍ୟାଖ୍ୟା କରିବାକୁ ଲାଗିଲା । ଏହି ଧାରାରେ ସ୍ୱର୍ଗ, ନରକ, ଆତ୍ମା, ଆତ୍ମାର ଅମରତ୍ୱ, ପୂର୍ବଜନ୍ମ, ପରଜନ୍ମ, ବିଚାର ଦିବସ ଇତ୍ୟାଦି ବହୁ ଭାବନା ସୃଷ୍ଟି ହୋଇଥିଲା । ଜୀବନପ୍ରବାହ ସହ ନାନା ବିଶ୍ୱାସ, କର୍ମକାଣ୍ଡ ଓ ପାରଲୌକିକ ଭାବନାମାନଙ୍କୁ ପ୍ରତ୍ୟେକ ଧର୍ମ ପରମ୍ପରାରେ ବା ସଭ୍ୟତାରେ ପୁରାଣମାନଙ୍କରେ ଚିତ୍ରଣ କରାଗଲା । କେତେକ କୁସଂସ୍କାର ଏକ ଜନଗୋଷ୍ଠୀରେ ପିଢ଼ି ପିଢ଼ି ଦେଇ ପ୍ରଚଳିତ ରହିବା ଯୋଗୁ ସେସବୁ ପରମ୍ପରାର ରୂପ ନେଲା । ଭାରତୀୟ ସମାଜରେ ସତୀପ୍ରଥା, ବାଲ୍ୟବିବାହ, ଜାତିପ୍ରଥା, ବଳିପ୍ରଥା ଇତ୍ୟାଦି ବହୁ ଅହେତୁକ ପ୍ରଥା ଚଳି ଆସିଥିବା ଦେଖାଯାଏ । ସେହିପରି ଅନ୍ୟ ଧର୍ମଗୋଷ୍ଠୀରେ ବା ସମାଜରେ ପରମ୍ପରାଗତ କୁସଂସ୍କାର ରହିବା ଏକ ସାଧାରଣ ଘଟଣା । ସଭ୍ୟତାର ଅଗ୍ରଗତି ଓ ଜ୍ଞାନବିଜ୍ଞାନର ବିକାଶ ଯୋଗୁ ବିଭିନ୍ନ ପରମ୍ପରାଗତ ପ୍ରଥାର ବିଲୋପ ହୋଇଚାଲିଛି । କେତେକ କୁସଂସ୍କାର ଗୋଷ୍ଠୀଗତ ବା ଆଞ୍ଚଳିକ ହୋଇ ରହିବା ଦେଖାଯାଏ । ବହୁ ଅତୀତରେ ସଭ୍ୟତାମାନ ଗୋଷ୍ଠୀଜୀବନରୁ ଆରମ୍ଭ ହୋଇଥିଲା । ପୃଥିବୀ ନଦୀ, ସମୁଦ୍ର, ପର୍ବତ, ପାହାଡ ଇତ୍ୟାଦିଦ୍ୱାରା ପୃଥକ୍ ହୋଇ ରହିଥିବାରୁ ବିଭିନ୍ନ ଭୂଖଣ୍ଡରେ ଗୋଷ୍ଠୀଜୀବନ ଆରମ୍ଭ ହୋଇଥିଲା ଓ ଗୋଷ୍ଠୀ ଗୋଷ୍ଠୀ ଭିତରେ ଆଦାନପ୍ରଦାନର ସମ୍ଭାବନା ନଥିଲା । ଏହାର ବଳିଷ୍ଠ ପ୍ରମାଣ ହେଉଛି ଯେ ପୃଥିବୀରେ ପାଞ୍ଚ ହଜାରରୁ ଅଧିକ ଭାଷା ରହିବା । କାଳକ୍ରମେ ମଣିଷର ଗୋଷ୍ଠୀ ଜୀବନରୁ ରାଜ୍ୟ ଓ ପରେ ରାଷ୍ଟ୍ର ଭାବନାର ବିକାଶ ହେବା ଦେଖାଯାଏ । ତେବେ ଗୋଟିଏ ଦେଶରେ ବିଭିନ୍ନ ଗୋଷ୍ଠୀ ରହିବା ଓ ପ୍ରତ୍ୟେକ ଗୋଷ୍ଠୀର କେତେକ ନିଜସ୍ୱ ବିଶ୍ୱାସ ଓ ପରମ୍ପରା ଥିବା ଏକ ସାଧାରଣ ଘଟଣା । ସେହି ଧାରାରେ ପ୍ରତ୍ୟେକ ଗୋଷ୍ଠୀର କିଛି ବିଶ୍ୱାସ ବା ଆଧାରହୀନ ବିଶ୍ୱାସ ରହିବା ସାଧାରଣ ଅନୁଭବ । ଭାରତୀୟ ହିନ୍ଦୁ ସମାଜ ଦୀର୍ଘଦିନ ଧରି ଜାତିଭିତ୍ତିକ ହୋଇରହିବା ଫଳରେ ଜାତି-ଜାତି ଭିତରର ସଂପର୍କ ଅତ୍ୟନ୍ତ ସଙ୍କୁଚିତ ହୋଇ ରହିଥିଲା । ପ୍ରତ୍ୟେକ ଜାତି ଏକ ସାର୍ବଭୌମିକ

ଗୋଷ୍ଠୀ ଥିଲା ଓ ତାର ନିଜସ୍ୱ ପ୍ରଥା ଓ ବିଧାନ ରହିଥିଲା । ଏହି ଧାରାରେ ପ୍ରତ୍ୟେକ ଗୋଷ୍ଠୀର କୁସଂସ୍କାର ରହିଥିଲା । ସାମାଜିକ ସମ୍ବନ୍ଧ ଯେତେ ପ୍ରସାରିତ ହେବାକୁ ଲାଗିଲା ଓ ପାରସ୍ପରିକ ଆଦାନପ୍ରଦାନ ଯେତେ ବୃଦ୍ଧି ପାଇଲା ତାହାର ପ୍ରଭାବରେ ଗୋଷ୍ଠୀଗତ କୁସଂସ୍କାରମାନ ହୁଏତ ଅର୍ଥହୀନ ହେବାକୁ ଲାଗିଲା ବା ବୃହତ୍ତର ଗୋଷ୍ଠୀକୁ ପ୍ରସାରଲାଭ କଲା । ବ୍ୟକ୍ତିଗତ କୁସଂସ୍କାରମାନ ଧର୍ମଗତ, ପରମ୍ପରାଗତ ବା ଗୋଷ୍ଠୀଗତ ହୋଇପାରେ କିମ୍ବା ବ୍ୟକ୍ତିକୈନ୍ଦ୍ରିକ ହୋଇପାରେ । ଜଣେ ବ୍ୟକ୍ତିର କେତେକ ଆଧାରହୀନ ବିଶ୍ୱାସ ରହିବା ସମ୍ଭବ ଓ ଏହା ସାମଗ୍ରିକ ଦୃଷ୍ଟିରୁ ସୀମାହୀନ ମନେହୁଏ । ଜଣେ ବ୍ୟକ୍ତି କେଉଁ ପଶୁ, ପକ୍ଷୀ, ଫୁଲ, ରଙ୍ଗ, ଖାଦ୍ୟ ଇତ୍ୟାଦିକୁ ଶୁଭ ବା ଅଶୁଭ ମଣିବା, କେଉଁ ବାର, ଲଗ୍ନ, ମୁହୂର୍ତ୍ତକୁ ଶୁଭ ବା ଅଶୁଭ ବୋଲି ମନେ କରିବା ସମାଜରେ ଆମେ ଦେଖିବାକୁ ପାଇଥାଏ । ବ୍ୟକ୍ତିମାନଙ୍କର ବିଶ୍ୱାସ ପରସ୍ପରଠାରୁ ପୃଥକ୍ ଓ ସେହି ଦୃଷ୍ଟିରୁ ବ୍ୟକ୍ତିଗତ କୁସଂସ୍କାରର ସୀମା ନିର୍ଦ୍ଧାରଣ କରିବା ସମ୍ଭବ ନୁହେଁ ।

କୁସଂସ୍କାରମାନ ସାମାଜିକ ପରିବେଶରେ ହିଁ ରହିଥାଏ ବା ସୃଷ୍ଟି ହେଉଥାଏ । ସାମାଜିକ ପରିବେଶଟି ଯେତେ ରକ୍ଷଣଶୀଳ କୁସଂସ୍କାରର ଭିତ୍ତି ସେତେ ଦୃଢ ବା ତାହାର ପ୍ରସାର ସେତେ ସହଜସାଧ୍ୟ । ଯେଉଁ ସାମାଜିକ ପରିବେଶରେ ବିଜ୍ଞାନ-ମନସ୍କତା ଯେତେ ଅଧିକ ସେଠାରେ କୁସଂସ୍କାରର ପରିସର ସେତେ କମ୍ । ବିଶେଷତଃ ଶିକ୍ଷା, ଆଧୁନିକ ଜୀବନଶୈଳୀ ଓ ବୈଜ୍ଞାନିକ ସଚେତନତା ଅତ୍ୟନ୍ତ କମ୍ ଥିବା ସାମାଜିକ ପରିବେଶରେ କୁସଂସ୍କାର ବହୁ ବ୍ୟାପକ ଭାବେ ରହିବା ଦେଖାଯାଏ । ଏହା ସହିତ ଯେଉଁଠି ଅନଗ୍ରସରତା ଯେତେ ଅଧିକ ରହିଛି ସେଠାରେ କୁସଂସ୍କାରମାନ ଯେ ସେତେ ବ୍ୟାପକ ଭାବେ ରହିଛି ଏହା ଏକ ସାଧାରଣ ଅନୁଭବ ଅଟେ । ଓଡିଶା ପୃଷ୍ଠଭୂମିରେ ଆମେ ଦେଖେ ଯେ ଅନଗ୍ରସର ଅଞ୍ଚଳମାନଙ୍କରେ ଗୁଣିଗାରେଡିଜନିତ ବିଶ୍ୱାସ, ଡାହାଣୀ ସନ୍ଦେହରେ ନାନା ଅପରାଧମୂଳକ କାର୍ଯ୍ୟ ଅଧିକ ଘଟୁଛି । ସେହିପରି ଯେଉଁଠି ରୋଗ ବାଧକର ଚିକିତ୍ସା ପାଇଁ ଆଧୁନିକ ଚିକିତ୍ସା ଉପଲବ୍ଧ ନୁହେଁ ବା ତାହା ଲୋକମାନଙ୍କର ସାମର୍ଥ୍ୟର ବହିର୍ଭୂତ ସେଠାରେ ଲୋକମାନେ ମନ୍ତ୍ରତନ୍ତ୍ର, ଦିଅଁଦେବତା ପାଖରେ ମାନସିକ, ଗୁଣିଗାରେଡି, ଝଡାଫୁଙ୍କା ଇତ୍ୟାଦିର ଆଶ୍ରୟ ନେବା ସାଧାରଣ ଘଟଣା । ଶିକ୍ଷା, ଆଧୁନିକ ସଭ୍ୟତାର ଆଲୋକ ପହଞ୍ଚି ନଥିବା ଅଞ୍ଚଳରେ କୁସଂସ୍କାରର ଭିତ୍ତି ଦୃଢ ଥିବା ଦେଖାଯାଏ । ଅବଶ୍ୟ ଏଥିରୁ ଭାବିବା ଯଥାର୍ଥ ନୁହେଁ ଯେ ଶିକ୍ଷିତ ଲୋକମାନେ କୁସଂସ୍କାରରୁ ମୁକ୍ତ । ଜଣେ ଶିକ୍ଷିତ ହେବା ଓ ବିଜ୍ଞାନ-ମନସ୍କ ହେବା ଦୁଇଟି ପୃଥକ୍ ବିଷୟ । ପ୍ରତ୍ୟେକ ଶିକ୍ଷିତ ବ୍ୟକ୍ତି ବୈଜ୍ଞାନିକ

ମନୋଭାବ ପୋଷଣ କରନ୍ତି ନାହିଁ ଓ ଏପରିକି କେତେକ ବିଜ୍ଞାନରେ ଡିଗ୍ରୀପ୍ରାପ୍ତ ବ୍ୟକ୍ତି ଜୀବନଧାରାରେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ପୋଷଣ କରିବା ଦେଖାଯାଏ ନାହିଁ । ସାମାଜିକ ପ୍ରଭାବ ଓ କେତେକ ମନୋବୈଜ୍ଞାନିକ କାରଣରୁ ଅଧିକାଂଶ ଶିକ୍ଷିତ ବ୍ୟକ୍ତି ବି ନାନା କୁସଂସ୍କାରରେ ଆସ୍ଥା ସ୍ଥାପନ କରନ୍ତି । ତେବେ ଅଶିକ୍ଷା, ଦାରିଦ୍ର୍ୟ, ନିରାପତ୍ତାବିହୀନ ସାମାଜିକ ଜୀବନ, ଧାର୍ମିକ ପ୍ରାବଲ୍ୟ ଥିବା ସାମାଜିକ ପରିବେଶ ଓ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ଅଭାବ କୁସଂସ୍କାରର ପ୍ରସାର ପାଇଁ ଏକ ଅନୁକୂଳ ଭିତ୍ତି ଯୋଗାଇଥାଏ । ପୁନଶ୍ଚ ସାଂପ୍ରତିକ ପରିସ୍ଥିତିରେ ଗଣମାଧ୍ୟମର ବଳିଷ୍ଠ ପ୍ରଭାବ ଜନଜୀବନରେ ବ୍ୟାପକ ଅନୁଭୂତ ହେଉଥିବା ଦେଖାଯାଏ । ଏହି କାରଣରୁ ସଂପ୍ରତି ଆଞ୍ଚଳିକ କୁସଂସ୍କାରମାନ ଗଣମାଧ୍ୟମ ଜରିଆରେ ବ୍ୟାପକ ହେବା ଜଣାଯାଏ । ସାଧାରଣ ଅନୁଭବରେ ଗଣମାଧ୍ୟମ କୁସଂସ୍କାର ପ୍ରସାର କ୍ଷେତ୍ରରେ ବଳିଷ୍ଠ ଭୂମିକା ନେବା ପରିତାପର ବିଷୟ ଅଟେ । ବ୍ୟାବସାୟିକ ଲକ୍ଷ୍ୟ ଉଦ୍ଦେଶ୍ୟରେ ଟିଭି ଚାନେଲମାନ ରାଶିଫଳ, ଜାତକ ବିଚାର, ବାସ୍ତୁଶାସ୍ତ୍ର, ଶୁଭ-ଅଶୁଭ ବେଳା ଇତ୍ୟାଦି ଅବୈଜ୍ଞାନିକ ଭାବନାର କାର୍ଯ୍ୟକ୍ରମ ପ୍ରସାର କରିବା ସମାଜ ପାଇଁ କ୍ଷତିକାରକ ମନେହୁଏ ।

ଅନଗ୍ରସରତା କୁସଂସ୍କାରର ପ୍ରସାର କ୍ଷେତ୍ରରେ ଏକ ଅନୁକୂଳ ପରିବେଶ ଯୋଗାଇଥାଏ । ଅନଗ୍ରସରତା ଏକ ଜଟିଳ ଭାବନା ଓ ଏହାର ଏକ ସୁନିର୍ଦ୍ଦିଷ୍ଟ ମାନଦଣ୍ଡ ନିରୂପଣ କରିବା ଏତେ ସହଜସାଧ୍ୟ ନୁହେଁ । ତେବେ ଅନଗ୍ରସରତାକୁ ଅର୍ଥନୈତିକ, ସାମାଜିକ ଓ ସାଂସ୍କୃତିକ ପୃଷ୍ଠଭୂମିରୁ ସଂକ୍ଷିପ୍ତ ଆଲୋଚନା କରାଯାଇପାରେ । ଏହା ଏକ ସୁବିଦିତ ଘଟଣା ଯେ ଆମ ଦେଶ ଆନ୍ତର୍ଜାତିକ ଦୃଶ୍ୟପଟରେ ଏକ ଗରିବ ରାଷ୍ଟ୍ର । ଅର୍ଥନୈତିକ ମାନଦଣ୍ଡରୁ ଆମ ଦେଶ ତୃତୀୟ ବିଶ୍ୱର ରାଷ୍ଟ୍ରସମୂହ ଭିତରେ ଅନ୍ତର୍ଭୁକ୍ତ । ପ୍ରଥମ ବିଶ୍ୱର ରାଷ୍ଟ୍ରମାନେ ପ୍ରାୟତଃ ବିକଶିତ । ସେଠାରେ ଲୋକମାନଙ୍କର ଭୌତିକ ଓ ଗୁଣାତ୍ମକ ଜୀବନ-ମାନ ବେଶ୍ ଉନ୍ନତ । କମ୍ୟୁନିଷ୍ଟ ବା ସମାଜବାଦୀ ରାଷ୍ଟ୍ରମାନେ ଦ୍ୱିତୀୟ ବିଶ୍ୱର ଅନ୍ତର୍ଭୁକ୍ତ ଓ ସେଠାରେ ମଧ୍ୟ ଏତେ ଦାରିଦ୍ର୍ୟ ନାହିଁ । ତେବେ ତୃତୀୟ ବିଶ୍ୱର ରାଷ୍ଟ୍ରମାନେ ବିକାଶଶୀଳ ଓ ଆମ ଦେଶ ଏକ ବିକାଶଶୀଳ ରାଷ୍ଟ୍ର । ଆମ ଦେଶରେ ଯେ ଅନେକ ଦାରିଦ୍ର୍ୟ ରହିଛି ଏହା ନିଃସନ୍ଦେହ । ନିରକ୍ଷରତା, ଅପପୁଷ୍ଟି, ବାଳଶ୍ରମିକ ପ୍ରଥା, ଭିକ୍ଷାବୃତ୍ତି, ସ୍ଲମ୍‌ମାନଙ୍କରେ ଅତ୍ୟନ୍ତ ଅସ୍ୱାସ୍ଥ୍ୟକର ପରିବେଶରେ ରହୁଥିବା ଲୋକ ଆମ ଦେଶରେ ବ୍ୟାପକ ଭାବେ ଥିବା ଦେଖାଯାଏ । ଶିକ୍ଷା, ସ୍ୱାସ୍ଥ୍ୟସେବା, ସ୍ୱାବଲମ୍ବନଶୀଳତା ଆମ ସମାଜର ସବୁ ଲୋକଙ୍କ ପାଇଁ ଉପଲବ୍ଧ ହୋଇପାରିନାହିଁ । ବସ୍ତୁତଃ ଅର୍ଥନୈତିକ ମାନଦଣ୍ଡରୁ ଆମ ଦେଶ ଅନଗ୍ରସର, ଏହାର କାରଣ ଯାହା ହେଉ ନା କାହିଁକି । ଆମ ଦେଶର ସଭ୍ୟତା ପ୍ରାଚୀନ ହେଲେ ମଧ୍ୟ

ଭାରତୀୟ ସମାଜ ଏକ ବିଭାଜିତ ସମାଜ ହୋଇ ରହିଆସିଛି । ବିଶେଷକରି ଜାତିପ୍ରଥା ଭାରତୀୟ ସମାଜକୁ ସର୍ବଦା ଭାଗ ଭାଗ କରି ରଖିଛି । ସାମାଜିକ ସ୍ତରରେ ଏତେ ଭେଦଭାବ ସମ୍ଭବତଃ ଅନ୍ୟ କୌଣସି ରାଷ୍ଟ୍ରରେ ନାହିଁ । ଭାରତୀୟ ସମ୍ବିଧାନରେ ସମତା, ମାନବିକ ମର୍ଯ୍ୟାଦା ଓ ବ୍ୟକ୍ତି ସ୍ୱାଧୀନତାର ମହତ୍ତର ବାର୍ତ୍ତା ରହିଥିଲେ ମଧ୍ୟ ସମାଜ ସର୍ବଦା ଶ୍ରେଣୀଗତ ବୈଷମ୍ୟ ଉପରେ ଆଧାରିତ ହୋଇଆସିଛି । ସମାଜରେ ଥିବା କ୍ରମାନ୍ୱିତ ଅସମତାକୁ ଏକ ଦୈବୀବିଧାନ ବୋଲି ଚିତ୍ରଣ କରାଯାଇଛି । ଏକ ସାମାଜିକ ଭେଦଭାବକୁ ଧାର୍ମିକ ସ୍ୱୀକୃତି ଦେବାପାଇଁ ବିଭିନ୍ନ ଶାସ୍ତ୍ରରେ ଉଦ୍ୟମ ହୋଇଛି । ବିଶେଷକରି ଦଳିତ ଓ ଶୂଦ୍ରମାନେ ପିଢି ପିଢି ଦେଇ ଶୋଷଣ ଓ ଅତ୍ୟାଚାରର ଶିକାର ହୋଇଛନ୍ତି । ବସ୍ତୁତଃ ଏକ ସୁସଂହତ ସାମାଜିକ ଚେତନା ଭାରତୀୟ ଜନଜୀବନରେ ଦୃଢ ଭିତ୍ତି ନେଇପାରି ନାହିଁ । ସାଂସ୍କୃତିକ ପୃଷ୍ଠଭୂମିରେ ଏକ ପାରଲୌକିକ ଜୀବନଦୃଷ୍ଟି ସମାଜରେ ବେଶ୍ ପରିବ୍ୟାପ୍ତ ହୋଇରହିଛି । ନିଜର ବର୍ତ୍ତମାନର ସ୍ଥିତି ପାଇଁ ସାଧାରଣତଃ ଲୋକମାନେ ନିଜର ଭାଗ୍ୟ, କର୍ମଫଳ, ପ୍ରାରବ୍ଧ ଭଳି ବିଶ୍ୱାସରେ ଆସ୍ଥା ସ୍ଥାପନ କରିଥାନ୍ତି । କୌଣସି ପ୍ରତିକୂଳ ପରିସ୍ଥିତି ବା ଆର୍ଥିକ ଅସ୍ୱଚ୍ଛଳତା ପାଇଁ ସେମାନେ ବୃହତ୍ତର ସାମାଜିକ ପରିବେଶରେ ଆସ୍ଥା ସ୍ଥାପନ ନକରି ଦେବୀ ଦେବତାର ଆଶୀର୍ବାଦ ପାଇଁ ଆଶାପୋଷଣ କରନ୍ତି । ନାନା ଦିଅଁ, ଦେବତା, ଠାକୁର, ପୂଜାପାର୍ବଣ, ପୂଜାସ୍ଥଳ ଇତ୍ୟାଦି ପ୍ରତି ସମାଜର ସାଧାରଣ ଲୋକମାନେ ଗଭୀର ସଂପୃକ୍ତି ବ୍ୟକ୍ତ କରିଥାନ୍ତି ଅଥଚ ବାସ୍ତବ ଜୀବନରେ ଉଚ୍ଚ କର୍ମସଂସ୍କୃତିକୁ ପ୍ରାଧାନ୍ୟ ଦେଇନଥାନ୍ତି । ଏହି ମାନସିକତାରୁ କେଉଁ ଦିଅଁ ଦେବତା ଉପରେ ପାଣି ଢାଳିଲେ, କେଉଁଠିକୁ ନଡିଆ ପଠାଇଲେ, କାହାର ପାଦ ଦର୍ଶନ କଲେ, ଏକ ନିର୍ଦ୍ଦିଷ୍ଟ ବେଳାରେ କେଉଁଠି ବୁଡ ପକାଇଲେ, କାହାର ମୂର୍ତ୍ତିକୁ ଛୁଇଁଦେଲେ ଦେବତାର ଆଶୀର୍ବାଦ ମିଳିବ ଓ ଦେବତାର ଆଶୀର୍ବାଦ ପାଇଲେ ଜୀବନର ଲକ୍ଷ୍ୟ ପୂରଣ ହେବ, ଏହି ଭାବନା ଆମ ସମାଜରେ ବ୍ୟାପକ ରହିଥିବା ମନେହୁଏ । ଯେଉଁ ସାଂସ୍କୃତିକ ଭାବାବେଗ ଲୋକମାନଙ୍କୁ ସମାଜ ପ୍ରତି ଉତ୍ତରଦାୟୀ ନକରି ଏକ ପାରଲୌକିକ ଆବେଗ ଭିତରେ ଅଭିପ୍ରେରିତ କରୁଥାଏ ତାହା ସାଂପ୍ରତିକ ଅନ୍ୱେଷାରେ ଅର୍ଥହୀନ ମନେହୁଏ । କୌଣସି ମାନବିକ ସମସ୍ୟାକୁ କେଉଁ କଳ୍ପିତ ଦିଅଁ ଦେବତା ସମାଧାନ କରିଦେବେ ନାହିଁ । ମଣିଷର ଜ୍ଞାନ, ନିଷ୍ପାପର ପ୍ରୟାସ ଓ ସମାଜ ପ୍ରତି ଉତ୍ତରଦାୟିତ୍ୱବୋଧରୁ ହିଁ ସାମାଜିକ ପ୍ରଗତି ହାସଲ ହୋଇଛି ଓ ଗୁଣାତ୍ମକ ଜୀବନର ପରିବେଶ ସୃଷ୍ଟି ହୋଇଛି । କୌଣସି ବିକାଶ ଆକାଶରୁ ଖସି ନାହିଁ ବା କେଉଁ କଳ୍ପିତ ଦିଅଁ ଦେବତାଙ୍କ ଆଶୀର୍ବାଦରୁ ସମ୍ଭବ ହୋଇ ନାହିଁ । ଯେଉଁ ରାଷ୍ଟ୍ରମାନେ ବିକାଶର ଶିଢିରେ ଆଗକୁ ଯାଇଛନ୍ତି ସେମାନଙ୍କୁ ଦିଅଁ ଦେବତାର ଆଶୀର୍ବାଦ ମିଳିନାହିଁ ଓ ଯେଉଁ

ରାଷ୍ଟ୍ରମାନେ ଅନଗ୍ରସର ରହିଛନ୍ତି ସେମାନଙ୍କୁ ଦିଅଁ ଦେବତାର ଅଭିଶାପ ମିଳି ନାହିଁ । ତଥାକଥିତ ଦିଅଁ ଦେବତାଙ୍କର ଅସ୍ତିତ୍ୱ ହିଁ ନାହିଁ ଓ ଏସବୁ ମଣିଷ ମନର କେବଳ କଳ୍ପନା ମାତ୍ର ।

ସମାଜର ବୃହତ୍ତର ପରିବେଶରେ କୁସଂସ୍କାର ଓ ପାରଲୌକିକ ଜୀବନଦୃଷ୍ଟିର ପ୍ରାଧାନ୍ୟ ରହିଲେ ସେଥିରୁ କେତେକ କୁପରିଣତି ଆସିବାର ସମ୍ଭାବନା ରହିଥାଏ । ସେହି କୁପରିଣତିର ଏକ ଅଭିବ୍ୟକ୍ତି ହେଉଛି "ବାବାବାଦ" । ଭାରତୀୟ ସମାଜରେ କେତେକ ବ୍ୟକ୍ତି ନିଜକୁ ଦେବପୁରୁଷ, ଈଶ୍ୱରଙ୍କ ଅବତାର, ଆଧ୍ୟାତ୍ମିକ ଶକ୍ତିର ଅଧିକାରୀ ବୋଲି ଜନମାନସରେ ପ୍ରଚାର କରନ୍ତି । ସ୍ୱଘୋଷିତ ଏହି ଦେବପୁରୁଷ(ଗଡ୍‌ମେନ୍ ବା ଗଡ୍‌ୱିମେନ୍)ମାନେ ନିଜର ବିଶାଳ ଭକ୍ତମଣ୍ଡଳୀ ଓ ସାମ୍ରାଜ୍ୟ ସୃଷ୍ଟି କରିପାରିଛନ୍ତି । ସେମାନେ ସାଧାରଣ ଲୋକଙ୍କର ମନସ୍ତତ୍ତ୍ୱକୁ ଭଲଭାବେ ଜାଣନ୍ତି । ପ୍ରତ୍ୟେକ ବ୍ୟକ୍ତିର କିଛି ସମସ୍ୟା ରହିଛି ଓ କେତେକ ବ୍ୟକ୍ତି ଅତ୍ୟନ୍ତ ପ୍ରତିକୂଳ ସ୍ଥିତିରେ ରହିଛନ୍ତି । ଦେବପୁରୁଷମାନେ କୌଶଳକ୍ରମେ କିଛି ଚମତ୍କାରିତା ଦେଖାନ୍ତି । କିଛି କୌଶଳ ପ୍ରୟୋଗ କରି ସେମାନେ କିଛି ଚମତ୍କାରିତା ପ୍ରଦର୍ଶନ କରି ଏହି ବାର୍ତ୍ତା ଦିଅନ୍ତି ଯେ ସେମାନେ ଅଲୌକିକ ଶକ୍ତିର ଅଧିକାରୀ । ଲୋକମାନେ ବିଶ୍ୱାସ କରନ୍ତି ଯେ, ଅଲୌକିକ ଶକ୍ତିର ଅଧିକାରୀ ହୋଇଥିବା ଦେବପୁରୁଷଙ୍କର ଆଶ୍ରିତ ହେଲେ ତାଙ୍କର ଆଶୀର୍ବାଦରୁ ସେମାନେ ଜୀବନରେ ସଫଳ ହୋଇପାରିବେ । ଦେବପୁରୁଷଙ୍କର ଚମତ୍କାରିତାକୁ ସେମାନେ ବାସ୍ତବ, ଅତୀନ୍ଦ୍ରିୟ ଶକ୍ତିର କାର୍ଯ୍ୟ ବୋଲି ସହଜରେ ବିଶ୍ୱାସ କରିଥାନ୍ତି । କାହା ହାତରୁ ବିଭୂତି ବାହାରେ, କାହା ପାଦରୁ ମହୁ ଝରେ, କାହା ପାଟିରୁ କ୍ଷୁଦ୍ର ଶିବଲିଙ୍ଗ ବାହାରେ, କିଏ ଆଗତ ଭବିଷ୍ୟତ ପୋଥି ଦେଖି କହିଦେଇପାରେ, କିଏ ହାତରେ କର୍ପୁର ରଖି ଦିଅଁକୁ ବିନା ଫୋଟକାରେ ଆଳତି କରେ, କିଏ ପାଣିରେ ଦୀପ ଜଳାଏ ଇତ୍ୟାଦି ଇତ୍ୟାଦି । ଏହିପରି କିଛି ଚମତ୍କାରିତା ଦେଖାଇ ଦେବପୁରୁଷମାନେ ଭକ୍ତମାନଙ୍କ ଭିତରେ ଆସ୍ଥାସ୍ଥାପନ କରିଥାନ୍ତି । ଏହା ସହିତ ନାନା କୌଶଳ ପ୍ରୟୋଗକରି ଓ କିଛି ସ୍ତାବକଙ୍କ ମାଧ୍ୟମରେ ସେମାନଙ୍କ ଅଲୌକିକ ସାମର୍ଥ୍ୟର ପ୍ରଚାର କରାଯାଏ । ଏହି ଧାରାରେ ଅନ୍ଧ-ଶ୍ରଦ୍ଧାଳୁମାନେ ବାବାମାନଙ୍କର ଭକ୍ତ ହୁଅନ୍ତି । ଦେବପୁରୁଷମାନେ ସୁନ୍ଦର ପ୍ରବଚନ ଦେଇପାରନ୍ତି । ଏ ସଂସାର ମାୟା, ଜୀବନ ଦୁଇଦିନର ଖେଳ, ଜୀବନର ପରମ ଲକ୍ଷ୍ୟ ଈଶ୍ୱରପ୍ରାପ୍ତି, ମୋକ୍ଷ; ମୋକ୍ଷ ପାଇବାର ଉପାୟ ହେଉଛି ସତ୍‌ସଙ୍ଗ ଓ ବାବାଙ୍କର ସାନ୍ନିଧ୍ୟ । ଦେବପୁରୁଷ ହିଁ ଭକ୍ତଙ୍କୁ ପଙ୍କିଳ ଜଗତରୁ ଉଦ୍ଧାର କରିପାରିବେ । ଏହି ଧାରାରେ ଦେବପୁରୁଷମାନଙ୍କର ଭକ୍ତମଣ୍ଡଳୀରେ ପ୍ରସାର ଘଟେ ।

ଦେବପୁରୁଷମାନଙ୍କର ଫଟୋ, ଲକେଟ୍, ବିଭୂତି ଇତ୍ୟାଦି ବିକ୍ରିର ବ୍ୟବସାୟ ଆରମ୍ଭ ହୁଏ । ଏହି ଧାରାରେ ଦେବପୁରୁଷମାନେ ଅମାପ ଅର୍ଥର ଅଧିକାରୀ ହୁଅନ୍ତି । ସେମାନଙ୍କର ଭକ୍ତମଣ୍ଡଳୀ ଦେଶବିଦେଶକୁ ବ୍ୟାପେ । ସେମାନେ ଶିକ୍ଷାନୁଷ୍ଠାନମାନ ସ୍ଥାପନ କରନ୍ତି ଓ ତାଙ୍କ ବାଣୀ ପ୍ରଚାର ପାଇଁ ଏଗୁଡିକ କେନ୍ଦ୍ରବିନ୍ଦୁ ପାଲଟେ । ଯେତେବେଳେ ପ୍ରଚୁର ଅର୍ଥ ଏହି ଧାରାରେ ଆସେ ଦେବପୁରୁଷଗଣ ଚିକିତ୍ସାଳୟ ନିଜ ଆଶ୍ରମ ପରିସରରେ ସ୍ଥାପନ କରନ୍ତି । ଦେବପୁରୁଷମାନେ ନିଜର ସ୍ୱାସ୍ଥ୍ୟ ସମସ୍ୟା ପାଇଁ ବାହାରକୁ ଗଲେ ତାଙ୍କର ଚମତ୍କାରିତା ଉପରେ କାଳେ ପ୍ରଶ୍ନ ଉଠିବ ସେଥିପାଇଁ ସେମାନେ ହସ୍ପିଟାଲ ପ୍ରତିଷ୍ଠା କରନ୍ତି । ତାଙ୍କର ଅନ୍ଧ-ଶ୍ରଦ୍ଧାଳୁମାନେ ତାଙ୍କ ଚମତ୍କାରିତାକୁ ନେଇ କେତେ କେତେ ମନଗଢା କାହାଣୀ ପ୍ରଚାର କରନ୍ତି । ଦେବପୁରୁଷମାନଙ୍କର ପ୍ରତିଷ୍ଠା ଓ ପ୍ରଭାବକୁ ଲକ୍ଷ୍ୟ ରଖି ସମାଜର କେତେକ ପ୍ରତିଷ୍ଠିତ ଓ ପ୍ରଭାବଶାଳୀ ବ୍ୟକ୍ତି ବି ସେମାନଙ୍କର ଭକ୍ତ ପାଲଟନ୍ତି । ତେବେ ଏହା ମଧ୍ୟ ଦେଖାଯାଏ ଯେ କେତେକ ଅସାଧୁ ବ୍ୟବସାୟୀ, ଦୁର୍ନୀତିଖୋର କର୍ମଚାରୀ ଓ ଅସତ୍ ଉପାୟରେ ଉପାର୍ଜ୍ଜନ କରି ଅନେକ ଅର୍ଥର ଅଧିକାରୀ ହୋଇଥିବା ବ୍ୟକ୍ତିମାନେ ନିଜର ଏକ ଧାର୍ମିକ ପରିଚୟ ସୃଷ୍ଟିକରିବା ପାଇଁ ଦେବପୁରୁଷମାନଙ୍କର ଭକ୍ତ ପାଲଟନ୍ତି । ମୋଟଉପରେ ନାନା ସାମାଜିକ, ମନୋବୈଜ୍ଞାନିକ ଓ କେତେକ ସାଂସ୍କୃତିକ କାରଣରୁ ଆମ ଦେଶରେ ଚମତ୍କାରିତା ଆଳରେ କେତେକ ଦେବପୁରୁଷ ନିଜର ବିଶାଳ ସାମ୍ରାଜ୍ୟ ସୃଷ୍ଟି କରିଛନ୍ତି । ସଂପ୍ରତି କେତେକ ଦେବପୁରୁଷଙ୍କର ମନ୍ଦକାର୍ଯ୍ୟ ଜଣାପଡିଛି ଓ ଏପରିକି ସେମାନେ ବନ୍ଦୀ ଜୀବନ ବିତାଉଛନ୍ତି । ତେବେ ଯେଉଁ ଦେବପୁରୁଷମାନେ ବନ୍ଦୀ ଜୀବନ ବିତାଉଛନ୍ତି ଓ ଯେଉଁମାନେ ଆଉ ସଂସାରରେ ନାହାନ୍ତି ଅଥଚ ସେମାନଙ୍କ ସାମ୍ରାଜ୍ୟର ବହୁ ଅବଶେଷ ବିଭିନ୍ନ ସ୍ଥାନରେ ରହିଛି ଏ ସମସ୍ତଙ୍କ ମଧ୍ୟରେ ଅନେକ ସାମଞ୍ଜସ୍ୟ ରହିଛି । ଦେବପୁରୁଷମାନେ ସାଧାରଣ ଲୋକମାନଙ୍କ ଭିତରେ ଭକ୍ତି, ଶ୍ରଦ୍ଧା ଓ ବିଶ୍ୱାସ ସୃଷ୍ଟି କରିବାପାଇଁ ଚମତ୍କାରିତା କିଛି ଦେଖାନ୍ତି ଓ ସୁନ୍ଦର ପ୍ରବଚନ ଦିଅନ୍ତି । ଏହାରି ମାଧ୍ୟମରେ ସେମାନେ ଅଗଣିତ ଭକ୍ତମଣ୍ଡଳୀ ସୃଷ୍ଟି କରନ୍ତି ଓ ଫଟୋ, ଲକେଟ୍, ପୁସ୍ତକ, ବିଭୂତି ଇତ୍ୟାଦି ବିକ୍ରି କରି ଅମାପ ଅର୍ଥର ଅଧିକାରୀ ହୁଅନ୍ତି । ସେମାନଙ୍କର ଚମତ୍କାରିତାର ପ୍ରମାଣ ସେମାନେ ହେତୁବାଦୀଙ୍କୁ ଦେଖାନ୍ତି ନାହିଁ ବା ହେତୁବାଦୀଙ୍କ ଆହ୍ୱାନକୁ କେବେ ଗ୍ରହଣ କରନ୍ତି ନାହିଁ । ସତ୍ୟ, ଧର୍ମ, ଆଧ୍ୟାତ୍ମିକତାର ବାଣୀ ପ୍ରଚାର କରୁଥିବା ବା ନିଜ ପ୍ରବଚନମାନଙ୍କରେ ଭକ୍ତମାନଙ୍କୁ କେତେ ଉପମା, ଅଳଙ୍କାର ଦେଇ ଏହା ଶୁଣାଉଥିବା ଦେବପୁରୁଷମାନେ ନିଜର ଆଚରଣରେ ତାହା ପ୍ରତିଫଳିତ କରନ୍ତି ନାହିଁ । ବରଂ ବିଭିନ୍ନ କୌଶଳ ଓ ମନ୍ଦ ପନ୍ଥାର ଆଶ୍ରୟ ନେଇ ଜନମାନସକୁ ବିଭ୍ରାନ୍ତ କରନ୍ତି । ଭାରତର ସନ୍ଥମାନଙ୍କ ପାଖରେ

ଯେଉଁ ସାଧୁତା, ସରଳତା, ଅପରିଗ୍ରହତା ଓ ସତ୍ୟନିଷ୍ଠତା ରହିଥିଲା ତାହା ଆଧୁନିକ ସମୟର ଦେବପୁରୁଷମାନଙ୍କ ପାଖରେ ଯେ ଦୁଷ୍ପ୍ରାପ୍ୟ ଏହା ମନେହୁଏ ।

ଆମ ସମାଜର ଏକ ବିଡମ୍ବନା ଯେ ଅନେକ ଉଚ୍ଚଶିକ୍ଷିତ ବ୍ୟକ୍ତି ଓ ସାମାଜିକ ପ୍ରତିଷ୍ଠା ଥିବା ପ୍ରଭାବଶାଳୀ ବ୍ୟକ୍ତିବିଶେଷ କୁସଂସ୍କାରରୁ ମୁକ୍ତ ନୁହନ୍ତି ଓ ସେମାନେ ତଥାକଥିତ ଦେବପୁରୁଷମାନଙ୍କର ଭକ୍ତ ପାଲଟନ୍ତି । ଏହାର ଏକ ମୁଖ୍ୟ କାରଣ ହେଉଛି ଆମ ସମାଜରେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ପ୍ରଚାର ବିଶେଷ ହୋଇପାରି ନାହିଁ । ଆମ ଦେଶର ସମ୍ବିଧାନରେ ଜଣେ ନାଗରିକର କର୍ତ୍ତବ୍ୟ ପୃଷ୍ଠଭୂମିରେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ, ସଂସ୍କାରିତ ଚେତନା ଓ ମାନବବାଦର ବିଚାରକୁ ଗୁରୁତ୍ୱ ଦିଆଯାଇଛି, ହେଲେ ଏହା ବାସ୍ତବରେ ରୂପରେଖ ନେଇପାରି ନାହିଁ । ବରଂ ପରିତାପର ବିଷୟ ବୈଜ୍ଞାନିକ ସାଧନମାନଙ୍କୁ କୁସଂସ୍କାର ପ୍ରସାର ପାଇଁ ବିନିଯୋଗ କରାଯାଉଛି । ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଏକ ମହତ୍ତର ଜୀବନଦୃଷ୍ଟି । ଏହା ସତ୍ୟ ପ୍ରତି ସର୍ବଦା ପ୍ରତିବଦ୍ଧତା ରଖେ । ମୁକ୍ତ ମନ, ବିଚାରଶୀଳ ଦୃଷ୍ଟି, ଏକ ସାର୍ବଜନୀନ ପ୍ରଣାଳୀ ଆଧାରରେ ଜ୍ଞାନଲାଭ ଓ ପ୍ରକୃତିବାଦ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ଅନ୍ତଃସ୍ୱର । ଏହି ଦୃଷ୍ଟିଭଙ୍ଗୀର ବିକାଶଦ୍ୱାରା ହିଁ ଜ୍ଞାନବିଜ୍ଞାନର ବିକାଶ ହୋଇଛି, ପ୍ରକୃତିର ବହୁ ରହସ୍ୟ ଉନ୍ମୋଚିତ ହୋଇପାରିଛି ଓ ଏକ ସୁଖମୟ ଜୀବନପାଇଁ କେତେ କେତେ ପ୍ରଯୁକ୍ତିର ଉଦ୍‌ଭାବନ ହୋଇଛି । ତେବେ ବିଜ୍ଞାନର ବିକାଶ ସହିତ ବୈଜ୍ଞାନିକ ସଚେତନତାର ବିକାଶ ହୋଇପାରି ନାହିଁ । ବୈଜ୍ଞାନିକ ସଚେତନତା ସମାଜରେ ଯେତେ ଅଧିକ ପ୍ରସାରିତ ହେବ ଜନମାନସ ସେତେ ଅଧିକ କୁସଂସ୍କାରରୁ ମୁକ୍ତ ହେବେ । ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ବିଚାରଶୀଳତା ସହ ସମତାଳତା ରକ୍ଷା କରିଥାଏ । ମଣିଷ ଯେତେ ଅଧିକ ବିଚାରଶୀଳ ହେବ ସେ ନିଜର ସାମାଜିକ ଜୀବନକୁ ଉନ୍ନତ କରିବାକୁ ପ୍ରୟାସ କରିବ । ସାମାଜିକ ଜୀବନପ୍ରବାହରେ ଉଚ୍ଚ କର୍ମସଂସ୍କୃତି, ସମାଜ ପ୍ରତି ଉତ୍ତରଦାୟିତ୍ୱବୋଧ, ସାଧୁତା ଓ ମାନବିକତାର ଭାବ ଯେତେ ଅଧିକ ପ୍ରସାରିତ ହେବ ଜୀବନର ଗୁଣାତ୍ମକ ମାନ ସେତେ ଉନ୍ନତ ହୋଇପାରିବ । ଜନମାନସକୁ ଏହି ବାର୍ତ୍ତା ଯିବା ଆବଶ୍ୟକ ଯେ ମଣିଷର ପ୍ରୟାସରେ ହିଁ ଜୀବନର ମାନ ଉନ୍ନତ ହୋଇପାରିବ ଓ ବିକାଶର ଧାରା ଆଗକୁ ଯାଇପାରିବ । କୁସଂସ୍କାର ଓ ବାବାବାଦ ଭିତରେ ଶ୍ରମବିହୀନ ଉପାର୍ଜନର ଯେଉଁ ଭାବଧାରା ଲୁକାୟିତ ହୋଇ ରହିଛି ତାହା ସମାଜର ଉନ୍ନତି ପାଇଁ ମଙ୍ଗଳକର ନୁହେଁ । ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଓ ମାନବବାଦୀ ଜୀବନଦୃଷ୍ଟି ଏ ଯୁଗର ସାର୍ବଜନୀନ ମୂଲ୍ୟବୋଧ ଅଟେ ।

ସମାଜରେ ଏହି ସାର୍ବଜନୀନ ମୂଲ୍ୟବୋଧର ପ୍ରସାର ପାଇଁ ନିଷ୍ଠାପର ପ୍ରୟାସ ଆବଶ୍ୟକ । ଏକ ବିକଶିତ ଓ ପ୍ରଗତିଶୀଳ ସମାଜର ରୂପାୟନ ପାଇଁ ସକଳ କୁସଂସ୍କାର, ପାରଲୌକିକ ଜୀବନବୋଧ ଓ ସାମାଜିକ ଭେଦଭାବ ସବୁଠାରୁ ବଡ ଅନ୍ତରାୟ । ଏହିସବୁ ମନ୍ଦ ବା ଇଭିଲ୍‌ଠାରୁ ସମାଜକୁ ମୁକ୍ତ କରିବାକୁ ହେଲେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଓ ମାନବବାଦର ପ୍ରସାରକୁ ପ୍ରାଧାନ୍ୟ ଦିଆଯିବା ଦରକାର । ଏହି କ୍ଷେତ୍ରରେ ଶିକ୍ଷା ବ୍ୟବସ୍ଥାକୁ କିପରି ଉନ୍ନତ କରିହେବ ଓ କିଶୋର ବୟସରୁ ପିଲାମାନଙ୍କ ଭିତରେ ଏକ ସଂସ୍କାରିତ ଚେତନା, ବୈଜ୍ଞାନିକ ମାନସିକତା, ବୌଦ୍ଧିକ ଅନୁସନ୍ଧିତ୍ସା ଓ ମାନବବାଦୀ ଜୀବନବୋଧ ସୃଷ୍ଟି କରାଯାଇପାରିବ ସେଥିପାଇଁ ନିଷ୍ଠାପର ପ୍ରୟାସ ହେବା ଦରକାର । ସେହିପରି ସାଂପ୍ରତିକ ସ୍ଥିତିରେ ଗଣମାଧ୍ୟମର ବଳିଷ୍ଠ ପ୍ରଭାବ ରହୁଥିବାରୁ ଆମର ଗଣମାଧ୍ୟମ କୁସଂସ୍କାର, ଅବୈଜ୍ଞାନିକ ଚିନ୍ତାଧାରା ଓ ଅହେତୁକ ବିଶ୍ୱାସକୁ ଦୂର କରିବାପାଇଁ ସୁପରିକଳ୍ପିତ କାର୍ଯ୍ୟକ୍ରମର ପ୍ରସାରକୁ ପ୍ରାଧାନ୍ୟ ଦେବା ଆବଶ୍ୟକ । ଲୋକମାନଙ୍କ ଭିତରେ ଆତ୍ମବିଶ୍ୱାସ ଓ ସମାଜ ପ୍ରତି ଉତ୍ତରଦାୟିତ୍ୱବୋଧର ପ୍ରସାର ପାଇଁ ଉଦ୍ୟମର ଆବଶ୍ୟକତା ଯଥେଷ୍ଟ ରହିଛି । ପ୍ରତିକୂଳ ପରିସ୍ଥିତିରେ ବା ଅସହାୟବୋଧରୁ ଲୋକମାନେ ଯେପରି କୁସଂସ୍କାରର ବଶବର୍ତ୍ତୀ ହେଉଛନ୍ତି କିମ୍ବା ଆତ୍ମଘୋଷିତ ଦେବପୁରୁଷମାନଙ୍କର ଶୋଷଣର ଶିକାର ହେଉଛନ୍ତି ସେହି ପରିସ୍ଥିତିକୁ କିପରି ପରିବର୍ତ୍ତନ କରାଯାଇପାରିବ ସେଥିପାଇଁ ଆନ୍ତରିକ ଉଦ୍ୟମ ଆବଶ୍ୟକ । ବ୍ୟକ୍ତିଗତ ବିଶ୍ୱାସ ସ୍ତରରେ ଜଣେ ଧର୍ମପ୍ରାଣ ହେବା ବା ପ୍ରାର୍ଥନା ଓ ଆରାଧନାକୁ ଜୀବନଧାରାର ଅଙ୍ଗ କରିବାକୁ କେହି କେବେ ବିରୋଧ କରିବେ ନାହିଁ । ଧାର୍ମିକ ବିଶ୍ୱାସ ବ୍ୟକ୍ତି ଭିତରେ ଉଦାରତା, ମାନବିକତା, ନୈତିକତା ଓ ସାଧୁତା ପରି ମୂଲ୍ୟବୋଧ ଓ ଜୀବନଦୃଷ୍ଟି ସୃଷ୍ଟି କଲେ ତାହାକୁ ସମସ୍ତେ ସ୍ୱାଗତ କରିବେ । କିନ୍ତୁ ଧାର୍ମିକ ବିଶ୍ୱାସ ଆଳରେ ଲୋକଙ୍କୁ ଶୋଷଣ କରିବା, କୁସଂସ୍କାର ଓ ଚମତ୍କାରିତାକୁ ଆଳ କରି ନିଜର ଅନୈତିକ ସାମ୍ରାଜ୍ୟ ବିସ୍ତାର କରିବା ଓ ଜୀବନର ବାସ୍ତବତାଠାରୁ ଜନମାନସକୁ ଦୂରେଇ ନେଇ ପାରଲୌକିକ ସ୍ୱପ୍ନ ଦେଖାଇବା ଯେତିକି ଅବାସ୍ତବ ସେତିକି ଉଦ୍‌ଭଟ ମନେହୁଏ । ଅଜ୍ଞତାଜନିତ କାରଣରୁ ତଥାକଥିତ ଦେବପୁରୁଷମାନଙ୍କର ଭକ୍ତ ପାଲଟିବା ଯେ ଏକ ଅହେତୁକ ଜୀବନଦୃଷ୍ଟି ଏହା କୁହାଯାଇପାରେ ।



# ଜଗନ୍ନାଥ : ଧାର୍ମିକ ବିଶ୍ୱାସ ବନାମ ମୁକ୍ତ ମନର ପ୍ରଶ୍ନ

ସଂପ୍ରତି ଯାହାକୁ 'ହିନ୍ଦୁଧର୍ମ' କୁହାଯାଉଛି ତାହା ବହୁ ସାଂସ୍କୃତିକ ଧାରା, ଦାର୍ଶନିକ ଭାବନା, ବିଭିନ୍ନ ପରମ୍ପରା, ନାନା ବିଶ୍ୱାସ ଓ କର୍ମକାଣ୍ଡର ଏକ ସମନ୍ୱିତ ଅଭିବ୍ୟକ୍ତି କହିଲେ ଅତ୍ୟୁକ୍ତି ହେବ ନାହିଁ । ହିନ୍ଦୁଧର୍ମର ବିକାଶଧାରା ହଜାର ହଜାର ବର୍ଷର ସାମାଜିକ ଓ ସାଂସ୍କୃତିକ ପ୍ରବାହକୁ ନେଇ ପରିପୁଷ୍ଟ ହୋଇଛି । ବହୁ ଧର୍ମଗ୍ରନ୍ଥ, ପୌରାଣିକ କାହାଣୀ, ସାମାଜିକ ଆଲୋଡନ, ରୀତି ନୀତି ଏହା ସହ ସଂଶ୍ଳିଷ୍ଟ ହେବା ଦେଖାଯାଏ । ଏପରିକି ବହୁ ପରସ୍ପରବିରୋଧୀ ଭାବନା, ଦାର୍ଶନିକ ଧାରା ଓ ରୀତି-ନୀତି ହିନ୍ଦୁ ଧର୍ମଚେତନାରେ ସ୍ଥାନ ପାଇଥିବା ଜଣାଯାଏ । ଏହି ପୃଷ୍ଠଭୂମିରେ ପିତୁଳା ପୂଜା ପ୍ରସଙ୍ଗ ଆଲୋଚନା କଲେ ଜଣାଯାଏ ଯେ, ହିନ୍ଦୁ ସାମାଜିକ ଜୀବନଧାରା ସହିତ ପୌତ୍ତଳିକତା ଅଙ୍ଗାଙ୍ଗୀ ଭାବେ ସଂଶ୍ଳିଷ୍ଟ । ତେବେ ପ୍ରତିମା ପୂଜା ହିନ୍ଦୁଧର୍ମର ଏକ ମୌଳିକ ନିଷ୍କର୍ଷ କି ନୁହଁ ତାହା ବେଶ୍ ବିବାଦୀୟ ମନେହୁଏ । ହିନ୍ଦୁ ସାମାଜିକ ଜୀବନପ୍ରବାହରେ ବହୁ ଦିଅଁଦେବତାର ଆରାଧନା, ନାନା ମନ୍ଦିର ଓ ପୂଜାସ୍ଥଳ ଗାଆଁଠାରୁ ସହର ପର୍ଯ୍ୟନ୍ତ ପରିବ୍ୟାପ୍ତ ହେବା ପରିଲକ୍ଷିତ ହୁଏ । ତେବେ ହିନ୍ଦୁଧର୍ମର କେତେକ ପ୍ରଭାବଶାଳୀ ସଂସ୍କାରବାଦୀ ଅନୁଷ୍ଠାନ ପିତୁଳା ପୂଜାକୁ ବିରୋଧ କରିଥାନ୍ତି । ଏପରିକି ଏହା ହିନ୍ଦୁ ସନାତନ ଧର୍ମର ପ୍ରତିକୂଳ ବୋଲି ମନ୍ତବ୍ୟ ଦେବା ସହ ଦେଶର ବୌଦ୍ଧିକ ଓ ନୈତିକ ଅଧୋପତନ ପାଇଁ ପ୍ରତିମା ପୂଜା ଯେ କେତେକାଂଶରେ ଦାୟୀ ଏହା ମତ ଦେଇଥାନ୍ତି । ବିଶେଷକରି ସ୍ୱାମୀ ଦୟାନନ୍ଦ ସରସ୍ୱତୀଙ୍କ ପରି ବିଶିଷ୍ଟ ବୈଦିକ ବିଦ୍ୱାନ, ସଂସ୍କାରକ ଓ ଆର୍ଯ୍ୟସମାଜର ପ୍ରତିଷ୍ଠାତା ପ୍ରତିମା ପୂଜାକୁ ବିରୋଧ କରିଛନ୍ତି । ଆର୍ଯ୍ୟସମାଜୀମାନେ ହିନ୍ଦୁଧର୍ମର ବିଶିଷ୍ଟ ପୃଷ୍ଠପୋଷକ ହେଲେ ମଧ୍ୟ ପ୍ରତିମା ପୂଜାକୁ ବିରୋଧ କରି ଆସିଛନ୍ତି । ଆର୍ଯ୍ୟସମାଜ ପରି ବ୍ରାହ୍ମସମାଜ, ପ୍ରାର୍ଥନା ସମାଜ ଓ ଅଦ୍ୱୈତବାଦୀମାନେ ପ୍ରତିମା ପୂଜାକୁ ବିରୋଧ କରିଆସିଛନ୍ତି । ହିନ୍ଦୁଧର୍ମର ପ୍ରାମାଣିକ

ଶାସ୍ତ୍ର ବେଦ, ଉପନିଷଦ୍, ବ୍ରହ୍ମସୂତ୍ର ପରି ଗ୍ରନ୍ଥମାନଙ୍କରେ ପ୍ରତିମା ପୂଜାକୁ ସମର୍ଥନ କରାଯାଇ ନାହିଁ ଓ ଏହା ଅବୈଦିକ ବୋଲି ସେମାନେ ମତ ଦେଇଥାନ୍ତି । ସୁତରାଂ ହିନ୍ଦୁଧର୍ମ ପରମ୍ପରା ଭିତରେ କେତେକ ପ୍ରତିମା ପୂଜାକୁ ସ୍ୱୀକାର କରି ଏହାକୁ ହିନ୍ଦୁ ଧର୍ମଧାରାର ଅବିଚ୍ଛେଦ୍ୟ ଅଙ୍ଗ ବୋଲି ନେବା ବେଳେ ଅନ୍ୟ କେତେକ ଏହା ଧର୍ମ ଭାବନାର ପରିପନ୍ଥୀ ବୋଲି ଗ୍ରହଣ କରିଥାନ୍ତି ।

ପ୍ରତିମା ପୂଜା ସନାତନ ହିନ୍ଦୁଧର୍ମର ଏକ ମୌଳିକ ନିଷ୍କର୍ଷ କି ନୁହଁ ସେ ପ୍ରସଙ୍ଗକୁ ବାଦ୍ ଦେବାପରେ ଏହା ସ୍ୱୀକାର କରିବାକୁ ହେବ ଯେ ପିତୁଳା ପୂଜା ବହୁ ଅତୀତରୁ ହିନ୍ଦୁ ସମାଜ ସହ ସଂଶ୍ଳିଷ୍ଟ ହୋଇରହିଛି । ବହୁ ଅତୀତରେ ବିଭିନ୍ନ ଜନଗୋଷ୍ଠୀରେ ନାନା ଦେବଦେବୀ ପୂଜାର ପ୍ରଚଳନ ଦେଖିବାକୁ ମିଳେ । ସଭ୍ୟତାର ବିକାଶଧାରାରେ ଏକେଶ୍ୱରବାଦର ଭାବନା ବହୁ ପରେ ଆନୁଷ୍ଠାନିକ ଧର୍ମମାନଙ୍କ ମଧ୍ୟ ଦେଇ କିମ୍ବା ଦାର୍ଶନିକ ଅନୁଶୀଳନ ଦେଇ ସୃଷ୍ଟି ହୋଇଛି । ସଭ୍ୟତାର ଆରମ୍ଭ ପର୍ବରେ ମଣିଷର ଗୋଷ୍ଠୀଜୀବନ ନଦୀକୂଳମାନଙ୍କରେ କ୍ଷୁଦ୍ର କ୍ଷୁଦ୍ର ଗୋଷ୍ଠୀରେ ସୀମାବଦ୍ଧ ରହିଥିଲା । ପ୍ରକୃତିର ବିଶାଳତା ଓ ଜଟିଳତା ମଣିଷପାଇଁ ବେଶ୍ ରହସ୍ୟମୟ ମନେ ହେବା ଅତ୍ୟନ୍ତ ସ୍ୱାଭାବିକ ଥିଲା । ପ୍ରତ୍ୟେକ କ୍ଷୁଦ୍ର ଗୋଷ୍ଠୀ କୌଣସି କଳ୍ପିତ ଦେବତାଙ୍କଠାରୁ ଯେ ଉଦ୍ଭବ ହୋଇଛି ଏହି ଭାବନା ସମାଜରେ ସୃଷ୍ଟି ହୋଇଥିଲା । ଆଦିବାସୀ ସମାଜରେ ପ୍ରତ୍ୟେକ ଗୋଷ୍ଠୀ ବିଶ୍ୱାସ କରିଛନ୍ତି ଯେ, ସେମାନେ ଏକ ନିର୍ଦ୍ଦିଷ୍ଟ ଦେବତାଙ୍କଠାରୁ ଉଦ୍ଭବ ହୋଇଛନ୍ତି ଓ ସେମାନେ କେବଳ ସେହି ଦେବତାଙ୍କୁ ଆରାଧନା କରିବା ଉଚିତ୍ । ଅନ୍ୟ ଦେବତାଙ୍କୁ ଆରାଧନା କଲେ କୌଣସି ସୁଫଳ ମିଳିବ ନାହିଁ । ପରିଣାମତଃ ପ୍ରାଚୀନ ସମାଜରେ ଏକୈକାଧିଦେବବାଦ (henotheism) ରହିଥିବା ଜଣାଯାଏ ଓ ତାର ପ୍ରତିଫଳନ ଆଦିବାସୀ ସମାଜରେ ଏବେ ବି ପରିଲକ୍ଷିତ ହୁଏ । ସଭ୍ୟତାର ବିକାଶଧାରାରେ ଗ୍ରାମୀଣ ଜୀବନ ଦୃଢ ଭିତ୍ତି ନେବା ପରେ ଓ କ୍ଷୁଦ୍ର କ୍ଷଦ୍ର ରାଜ୍ୟର ବିକାଶ ଯୋଗୁ ଚିନ୍ତା ଚେତନାରେ ସାମାନ୍ୟ ପରିବର୍ତ୍ତନ ଆସିଥିବା ମନେହୁଏ । ପ୍ରାକୃତିକ ବସ୍ତୁ ଯଥା ସୂର୍ଯ୍ୟ, ଚନ୍ଦ୍ର, ଆକାଶ, ଅଗ୍ନି, ବାୟୁ, ଜଳ, ପାହାଡ଼, ପର୍ବତ ଇତ୍ୟାଦିକୁ ଦେବତା ମନେକରି ମଣିଷ ସେମାନଙ୍କୁ ଆରାଧନା କରିଛି । ପ୍ରାଚୀନ ଯୁଗରେ ପ୍ରାକୃତିକ ବସ୍ତୁମାନେ ବି ଦେବତାର ଭୂମିକା ନେଇଥିଲେ । ପୁନଶ୍ଚ ଜୀବନର ଘନଘଟାକୁ ଜାଣିବା ବା ବୁଝିବା ସେତେବେଳେ ମଣିଷ ସାମର୍ଥ୍ୟର ବହିର୍ଭୂତ ଥିଲା । ଜୀବନର ପ୍ରତ୍ୟେକଟି କ୍ଷେତ୍ର ପାଇଁ ଦେବତାର କଳ୍ପନା ଆସିଲା । ଜନ୍ମ, ମୃତ୍ୟୁ, ଜ୍ଞାନ, ଉତ୍ପାଦନ, ଧନ, ରୋଗ, ସୁଖମୟ ବୈବାହିକ ଜୀବନ, କାରିଗରୀ କୌଶଳ ଇତ୍ୟାଦି

ଜୀବନର ପ୍ରତ୍ୟେକଟି କ୍ଷେତ୍ର ପାଇଁ ଜଣେ ଜଣେ ଦେବତାଙ୍କୁ ଅନୁମାନ କରାଗଲା । ଜ୍ଞାନଲାଭ ପାଇଁ ଯେଉଁ ଦେବତାଙ୍କୁ ପ୍ରାର୍ଥନା କରାଯିବ, ସମ୍ପତ୍ତି ଆହରଣ ପାଇଁ ତାଙ୍କୁ ପୂଜା କରାଯିବ ନାହିଁ, ସମ୍ପତ୍ତିଲାଭ ପାଇଁ ଯାହାଙ୍କୁ ପୂଜା କରାଯିବ, କାରିଗରୀ ଜ୍ଞାନ ପାଇଁ ବା ରୋଗରୁ ଉଦ୍ଧାର ପାଇଁ ତାଙ୍କୁ ପୂଜା କରାଯିବ ନାହିଁ । ଏହିପରି ବହୁ ଈଶ୍ୱରବାଦ (poly-theism) ଭାବନା ସମାଜରେ ପ୍ରଚଳିତ ଥିବା ଦେଖାଯାଏ । ତେବେ ଦାର୍ଶନିକ ଚିନ୍ତନ ଓ ଆନୁଷ୍ଠାନିକ ଧର୍ମମାନଙ୍କର ବିକାଶଦ୍ୱାରା ଏକେଶ୍ୱରବାଦର ଭାବନା ସମାଜରେ ସୃଷ୍ଟି ହେବା ଏକ ଐତିହାସିକ ସତ୍ୟ ଅଟେ । ଏକେଶ୍ୱରବାଦର ଭାବନା ଆସିବା ପରେ ଈଶ୍ୱର ସବୁର ସ୍ରଷ୍ଟା, ବିଶ୍ୱର ଆଦିକାରଣ, ସର୍ବଜ୍ଞ, ସର୍ବଶକ୍ତିମାନ, କରୁଣାମୟ ବୋଲି କଳ୍ପନା କରାଗଲା । ଈଶ୍ୱରଙ୍କୁ ଏକ ବ୍ୟକ୍ତିସତ୍ତା ଭାବେ ଗ୍ରହଣ କରାଯାଇ ସେ ସ୍ରଷ୍ଟା, ପାଳନକର୍ତ୍ତା, ସଂହର୍ତ୍ତା ଓ ନ୍ୟାୟର ସଂସ୍ଥାପକ ଭାବେ ତାଙ୍କୁ ଗ୍ରହଣ କରାଗଲା । ଏପରିକି ଈଶ୍ୱରଙ୍କର ଅସ୍ତିତ୍ୱକୁ ଯୁକ୍ତିଦ୍ୱାରା ପ୍ରମାଣ କରିବାପାଇଁ ଦର୍ଶନଶାସ୍ତ୍ରରେ ପ୍ରୟାସ ହେଲା । ଧର୍ମରେ ଈଶ୍ୱରଙ୍କ ଅସ୍ତିତ୍ୱକୁ ଏକ ସ୍ୱତଃସିଦ୍ଧ ସତ୍ତା ଭାବେ ଗ୍ରହଣ କରି ନିଆଯାଉଥିବା ବେଳେ ଦାର୍ଶନିକମାନେ ଈଶ୍ୱରଙ୍କ ଅସ୍ତିତ୍ୱକୁ ପ୍ରମାଣ କରିବାକୁ ନାନା ଯୁକ୍ତିର ଆଶ୍ରୟ ନେଲେ । ସେହି ଯୁକ୍ତିଗୁଡ଼ିକ ଅତ୍ୟନ୍ତ ପ୍ରଭାବଶାଳୀ ହେବା ସହ ତାହାର ଏକ ମନସ୍ତାତ୍ତ୍ୱିକ ପ୍ରଭାବ ଜନଜୀବନକୁ ଗମ୍ଭୀର ଭାବେ ଆଲୋଡ଼ିତ କରିଥିଲା । ସଭ୍ୟତାର ଆରମ୍ଭ ପୂର୍ବରୁ ଆଜିର ସମୟ ପର୍ଯ୍ୟନ୍ତ ଈଶ୍ୱରୀୟ ବିଶ୍ୱାସ ନାନା ଭାବରେ ସମାଜକୁ ପ୍ରଭାବିତ କରିଆସିଥିବା ଦେଖାଯାଏ । ଜଗତ ଓ ଈଶ୍ୱରଙ୍କ ସହ ସମ୍ପର୍କ ନେଇ ନାନା ସିଦ୍ଧାନ୍ତମାନ ବୌଦ୍ଧିକ ସ୍ତରରେ କଳ୍ପନା କରାଯାଏ । ସେହିପରି ନୀତି, ନୈତିକତା ସହ ଈଶ୍ୱର ଭାବନାକୁ ଘନିଷ୍ଠ ଭାବେ ସମ୍ବନ୍ଧିତ କରିବାର ପ୍ରୟାସ ଧର୍ମ, ଦର୍ଶନ, ନୀତିଶାସ୍ତ୍ର ଓ ସାହିତ୍ୟ ଭିତର ଦେଇ ବ୍ୟକ୍ତ ହେବା ଦେଖାଯାଏ । ଏସବୁର ସମ୍ମିଳିତ ପ୍ରଭାବରୁ ଈଶ୍ୱର ଭାବନା ଜନଜୀବନର ଅଙ୍ଗ ହୋଇଉଠିଲା । ପୃଥିବୀର ଅଧିକାଂଶ ଧର୍ମ ନିଜସ୍ୱ ଧାରାରେ ଈଶ୍ୱରଙ୍କର ପରିକଳ୍ପନା କରି ଈଶ୍ୱରଙ୍କୁ ଧାର୍ମିକ ବିଶ୍ୱାସ ସହ ଅଙ୍ଗାଙ୍ଗୀ ଭାବେ ସଂଶ୍ଳିଷ୍ଟ କରିଦେଲେ । ଧର୍ମ ଓ ଈଶ୍ୱର ଏକ ମୁଦ୍ରାର ଦୁଇ ପାଖ ସଦୃଶ୍ୟ ପରସ୍ପର ସହ ନିବିଡ଼ ଭାବେ ସଂଶ୍ଳିଷ୍ଟ ହୋଇଗଲେ । ଈଶ୍ୱରଙ୍କ ଅସ୍ତିତ୍ୱ ନେଇ ପ୍ରଶ୍ନ ଉଠାଇବା, ଧର୍ମୀୟ ବିଧାନକୁ ନମାନିବା, ଈଶ୍ୱରଙ୍କୁ ବିଶ୍ୱାସ ନକରିବା ଇତ୍ୟାଦି କାର୍ଯ୍ୟକୁ ମଧ୍ୟଯୁଗରେ ଅଧାର୍ମିକ, ଅନୈତିକ ଓ ପାପ ବୋଲି ଚିତ୍ରଣ କରାଗଲା । ତେବେ ଈଶ୍ୱର ଭାବନା ନେଇ ବୌଦ୍ଧଧର୍ମ ଓ ଜୈନଧର୍ମ ବ୍ୟତିକ୍ରମ ମନେହୁଏ ।

ଏହି ପରିପ୍ରେକ୍ଷୀରେ ଧର୍ମବିଶ୍ୱାସ, ଧାର୍ମିକ ପରମ୍ପରା, ଧର୍ମଗ୍ରନ୍ଥର ଭାବନା ଜୀବନଯାତ୍ରାର ଅବିଚ୍ଛେଦ୍ୟ ଅଙ୍ଗ ହୋଇଉଠିଲା । କଳା, ସଙ୍ଗୀତ, ନାନ୍ଦନିକତା, ନୈତିକତା

ସବୁ କ୍ଷେତ୍ରରେ ଧର୍ମୀୟ ବିଶ୍ୱାସର ପରିପ୍ରକାଶ ଓ ପ୍ରତିଫଳନ ଘଟିଲା । ବିଭିନ୍ନ ପୁରାଣ, ସୃଜନଶୀଳ ସାହିତ୍ୟ କ୍ଷେତ୍ରରେ ଈଶ୍ୱରଙ୍କର ନାନା ବର୍ଣ୍ଣନା କରାଗଲା । ପରିଣାମତଃ ଈଶ୍ୱର ବିଶ୍ୱାସ ଓ ଭାବନା ସମାଜରେ ଦୃଢ଼ ଭିତ୍ତି ନେଲା । ଏହି ପୃଷ୍ଠଭୂମିରେ ଦେଖିଲେ ଜଗନ୍ନାଥଙ୍କୁ ଆଧାର କରି ଓଡିଶାର ଜନଜୀବନ ବହୁ ଅତୀତରୁ ପ୍ରଭାବିତ ହୋଇଆସୁଛି । ଜଗନ୍ନାଥ ମନ୍ଦିରର ପ୍ରତିଷ୍ଠା ପରଠାରୁ ଜଗନ୍ନାଥଙ୍କ ପିତୁଳା ସେଠାରେ ପୂଜାପାଉଛି । ଐତିହାସିକ ତଥ୍ୟ ଅନୁଯାୟୀ ପୁରୀସ୍ଥିତ ଶ୍ରୀଜଗନ୍ନାଥ ମନ୍ଦିର ଦାକ୍ଷିଣାତ୍ୟର ରାଜା ଅନନ୍ତବର୍ମ ଚୋଳଗଙ୍ଗଦେବ ପୁରୀ ଅଧିକାର କଲାପରେ ପୁରୀଠାରେ ଆରମ୍ଭ କରିଥିଲେ ଓ ପରେ ତାଙ୍କ ପୁତ୍ର ଅନଙ୍ଗଭୀମଦେବ ପୁରୀର ବିଶାଳ ମନ୍ଦିରଟିକୁ ଦ୍ୱାଦଶ ଶତାବ୍ଦୀରେ ପୂର୍ଣ୍ଣାଙ୍ଗ କଲେ । ରାଜତନ୍ତ୍ର ଯୁଗରେ ରାଜାମାନେ ନିଜର ନାମକୁ ଅମର ରଖିବା ପାଇଁ ପ୍ରଜାମାନଙ୍କୁ ଖଟାଇ ମନ୍ଦିର ନିର୍ମାଣ କରୁଥିଲେ । ସେତେବେଳର ମାନସିକତାରେ ଦେଉଳ, ମନ୍ଦିର ନିର୍ମାଣ କରିବା ସବୁଠାରୁ ବଡ ମହତ୍ ଓ ପୁଣ୍ୟ କାର୍ଯ୍ୟ ବୋଲି ବିବେଚିତ ହେଉଥିଲା । ରାଜାମାନେ ରାଜକୋଷର ସମ୍ବଳ ଓ ପ୍ରଜାମାନଙ୍କର ଶସ୍ତା ଶ୍ରମର ବିନିଯୋଗରେ ଏହା ନିର୍ମାଣ କରୁଥିଲେ । ଜଗନ୍ନାଥ ମନ୍ଦିର ନିର୍ମାଣ ପରେ ଜଗନ୍ନାଥଙ୍କ ପ୍ରତିମା ଓ ଅନ୍ୟାନ୍ୟ ପିତୁଳା ମନ୍ଦିର ଭିତରେ ସ୍ଥାନିତ ହୋଇଥିବ । ତେବେ ଜଗନ୍ନାଥ ମନ୍ଦିର ସ୍ଥାପନ ପୂର୍ବରୁ ଜଗନ୍ନାଥ ଉପାସନା କେଉଁ ଭାବରେ ଓଡିଶାରେ ଥିଲା ଓ ଜଗନ୍ନାଥ କେଉଁମାନଙ୍କଦ୍ୱାରା ପୂଜିତ ହେଉଥିଲେ ସେ ବିଷୟରେ ବିଭିନ୍ନ ମତ ଗବେଷକମାନେ ଉପସ୍ଥାପନ କରିଛନ୍ତି ।

ଏହି ପୃଷ୍ଠଭୂମିରେ ତିନୋଟି ମତ ଆଲୋଚନା ପରିସରକୁ ଆସିଥାଏ । ଗୋଟିଏ ମତ ହେଉଛି ଜଗନ୍ନାଥ ଏକ ବୈଦିକ ଦେବତା । ଯେଉଁମାନେ ଜଗନ୍ନାଥଙ୍କୁ ବୈଦିକ ବା ଆର୍ଯ୍ୟଦେବତା ଭାବେ ଉପସ୍ଥାପନ କରନ୍ତି ସେମାନେ ଜଗନ୍ନାଥ ଯେ ବିଷ୍ଣୁମୂଳ ଦେବତା ଏହା ଦର୍ଶାଇବାକୁ ପ୍ରୟାସ କରିଛନ୍ତି । ଜଗନ୍ନାଥଙ୍କୁ ବିଷ୍ଣୁମୂଳ ଆର୍ଯ୍ୟଦେବତା ଭାବେ ଗ୍ରହଣକରି ସେମାନେ ବୈଦିକ ସାହିତ୍ୟରେ ଜଗନ୍ନାଥ ଶବ୍ଦର ପ୍ରୟୋଗ ଥିବା ଓ ବହୁ ଅତୀତରୁ ହିନ୍ଦୁମାନେ ଜଗନ୍ନାଥଙ୍କୁ ପୁରୁଷୋତ୍ତମ ଭାବେ ଆରାଧନା କରିବା କଥା ଦର୍ଶାଇବାକୁ ପ୍ରୟାସ କରିଛନ୍ତି । ବେଦ, ଉପନିଷଦ୍, ଭଗବତ ଗୀତାରେ ପୁରୁଷୋତ୍ତମ ଭାବନା ରହିଛି । ଜଗନ୍ନାଥଙ୍କୁ ପୁରୁଷୋତ୍ତମ ଭାବେ ଗ୍ରହଣ କରି ତାଙ୍କୁ ବେଦ, ଉପନିଷଦ୍ ଓ ଗୀତାରେ ଥିବା ପୁରୁଷୋତ୍ତମ ଭାବନା ସହ ସଂଶ୍ଳିଷ୍ଟ କରାଯାଇଛି । ଦ୍ୱିତୀୟ ମତାନୁଯାୟୀ ଜଗନ୍ନାଥ ଏକ ଆଦିବାସୀ ଦେବତା । ଆଦିବାସୀମାନେ ଓଡିଶାର ମୂଳ ଅଧିବାସୀ ବୋଲି ମନେ କରାଯାଏ । ଆଦିମ ଜନଜାତି ଆଦିବାସୀ ସଂପ୍ରଦାୟ ଭିତରେ ଥିବା ଶବରଗୋଷ୍ଠୀର ପୂଜିତ ଦେବତା ହେଲେ ଜଗନ୍ନାଥ । ଆଦିବାସୀମାନେ ବୃକ୍ଷକୁ ପୂଜା କରିବାର ପରମ୍ପରା ଏବେ ବି ରହିଛି । ବହୁ

ଅତୀତରେ ଆଦିମ ମଣିଷମାନେ ବୃକ୍ଷର ଫଳ ଖାଇ ଜୀବନ ବଞ୍ଚିଛନ୍ତି, ବୃକ୍ଷର ବକଳକୁ ବସ୍ତ୍ର କରିଛନ୍ତି, ବୃକ୍ଷକୁ ଆବାସ ଭାବେ ନେଇଛନ୍ତି । ସୁତରାଂ ଆଦିବାସୀମାନେ ଏଥିପାଇଁ ବୃକ୍ଷକୁ ପୂଜା କରିଆସିଛନ୍ତି । ସମୟର ବ୍ୟବଧାନ ଭିତରେ ବୃକ୍ଷ ଦାରୁ ଓ ମୂର୍ତ୍ତି ରୂପରେ ରୂପାନ୍ତରିତ ହୋଇଛି । ବୃକ୍ଷରୁ ଦାରୁଦେବତା ଓ ପରେ ଜଗନ୍ନାଥ ରୂପ ନେଇ ଏହା ପୂଜିତ ହୋଇଛି । ଏକ ତୃତୀୟ ମତ ହେଉଛି ଜଗନ୍ନାଥ ବୌଦ୍ଧମୂଳ । ବୁଦ୍ଧଙ୍କର ଅନ୍ୟ ନାମ ହେଉଛି ଜଗନ୍ନାଥ ବୋଲି କେତେକ ଗବେଷକ ମତ ଦେଇଥାନ୍ତି । ସୁତରାଂ ବୌଦ୍ଧଧର୍ମାବଲମ୍ବୀମାନେ ବୁଦ୍ଧଙ୍କୁ ଜଗନ୍ନାଥ ଭାବେ ନେଇ ଆରାଧନା କରିବା କଥା କୁହାଯାଇଛି । ବୌଦ୍ଧଧର୍ମରେ ତନ୍ତ୍ରର ପ୍ରଭାବ ଯୋଗୁ ବଜ୍ରଯାନ ନାମକ ଯେଉଁ ଧାରାଟି ସୃଷ୍ଟି ହୋଇଥିଲା ତାହା ଶୂନ୍ୟବାଦରେ ବିଶ୍ୱାସ ସ୍ଥାପନ କରୁଥିଲା । ଶୂନ୍ୟବାଦୀମାନେ ଦାରୁ ବା ଖମ୍ବକୁ ଜଗନ୍ନାଥ ଆଖ୍ୟା ଦେଇ ପୂଜା କରୁଥିଲେ ବୋଲି ଗୋଟିଏ ମତ ରହିଛି । ପୁରାତନ ପାଲି ସାହିତ୍ୟ ଓ ତନ୍ତ୍ର ସାହିତ୍ୟରେ ବୁଦ୍ଧଙ୍କର ନାମ ଜଗନ୍ନାଥ ଥିବା ତଥ୍ୟକୁ ନେଇ ଜଗନ୍ନାଥ ଯେ ବୌଦ୍ଧମୂଳ ଏହା କେତେକ ମତ ଦେଇଥାନ୍ତି । ସୁତରାଂ ଜଗନ୍ନାଥ ମୂଳତଃ ବୈଦିକ ହିନ୍ଦୁ ଦେବତା, ଆଦିବାସୀ ଦେବତା ବା ବୌଦ୍ଧ ଦେବତା ସେ ନେଇ ଗବେଷକମାନଙ୍କ ମଧ୍ୟରେ ମତଭେଦ ରହିଛି । ପୁରୀ ମନ୍ଦିର ସ୍ଥାପନ ପୂର୍ବରୁ ଜଗନ୍ନାଥ ଭାବନା ଓ ପୂଜାର ପରମ୍ପରା ଯେ ରହିଥିଲା ଏହା ପ୍ରତିଷ୍ଠା କରିବାକୁ ଯାଇ ଜଗନ୍ନାଥଙ୍କୁ କିଏ ହିନ୍ଦୁ ଦେବତା, କିଏ ଆଦିବାସୀ ଦେବତା ବା କିଏ ବୌଦ୍ଧଧର୍ମାବଲମ୍ବୀଙ୍କ ଦେବତା ବୋଲି ପ୍ରତିଷ୍ଠା କରିବାକୁ ତଥ୍ୟ ଓ ଯୁକ୍ତିର ଆଶ୍ରୟ ନେଇଛନ୍ତି ।

ପୁରୀ ମନ୍ଦିର ନିର୍ମାଣ ପୂର୍ବରୁ ଜଗନ୍ନାଥ ନାମରେ ଧାର୍ମିକ ବିଶ୍ୱାସ ଓ ଉପାସନା ଥିବା କଥାକୁ ଗ୍ରହଣ କଲେ ପରବର୍ତ୍ତୀ ପ୍ରଶ୍ନ ହେବ-ଜଗନ୍ନାଥ କେଉଁ ସ୍ଥାନରେ ପୂଜିତ ହେଉଥିଲେ ? ଏହି ପ୍ରସଙ୍ଗ ଉପରେ ମଧ୍ୟ ମତପାର୍ଥକ୍ୟ ରହିଥିବା ମନେହୁଏ । ପୁରୀରେ ଜଗନ୍ନାଥ ମନ୍ଦିର ସ୍ଥାପନ ପୂର୍ବରୁ ଓଡିଶାରେ (ସେତେବେଳେ 'ଓଡିଶା' ନାମ ମଧ୍ୟ ନଥିଲା) ଜଗନ୍ନାଥ ଉପାସନା ସୃଷ୍ଟି ହୋଇଥିଲା । ସେତେବେଳେ ଓଡିଶାର ଭୂଗୋଳ ଭିନ୍ନ ପ୍ରକାରର ଥିଲା ଓ ଓଡିଶାର ଗୋଟିଏ ନିର୍ଦ୍ଦିଷ୍ଟ ଭୂଖଣ୍ଡର ନାମ ଓଡ୍ର ଥିଲା । ଓଡ୍ରର ଭୌଗୋଳିକ ସୀମା ଭିତରେ ପୁରୀ ନଥିଲା । ସୁତରାଂ ପୁରୀ ଜଗନ୍ନାଥଙ୍କର ଯେ ଆଦି ପୀଠସ୍ଥଳ ନୁହଁ ଏପରି ମତ ଗବେଷକମାନେ ଦେଇଛନ୍ତି । ଓଡିଶା ବିଭିନ୍ନ ଗଡଜାତରେ ବିଭକ୍ତ ଥିଲା ଓ ବିଭିନ୍ନ ରାଜବଂଶ ଗଡଜାତମାନଙ୍କରେ ଶାସନ କରୁଥିଲେ । ରାଜତନ୍ତ୍ର ଯୁଗରେ ଯୁଦ୍ଧ, ରାଜ୍ୟଜୟ, ରାଜ୍ୟ ବିସ୍ତାର ଏକ ସାଧାରଣ ଘଟଣା ଥିଲା । ପରିଣାମତଃ କୌଣସି ଅଞ୍ଚଳର କିଛି ସାଂସ୍କୃତିକ, ଧାର୍ମିକ ପରମ୍ପରା ଅନାୟାସରେ ଅନ୍ୟ ଅଞ୍ଚଳକୁ ବିସ୍ତାର କରିବା ଓ ସମୟର ବ୍ୟବଧାନ

ଭିତରେ ବିଭିନ୍ନ ଅଞ୍ଚଳ ଓ ଗୋଷ୍ଠୀ ମଧ୍ୟରେ ସାଂସ୍କୃତିକ ସମନ୍ୱୟ ସୃଷ୍ଟି ହେବା ମନେହୁଏ । ଜଗନ୍ନାଥ କେଉଁ ଗୋଷ୍ଠୀଦ୍ୱାରା କେଉଁ ନିର୍ଦ୍ଦିଷ୍ଟ ଭୌଗୋଳିକ ଭୂଖଣ୍ଡରେ ପୂଜିତ ହେଉଥିଲେ ତାହା ଏତେ ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗ ନୁହେଁ । ଶହ ଶହ ବର୍ଷ ଧରି ସାମାଜିକ ସହାବସ୍ଥାନ ଭିତରେ ବିଭିନ୍ନ ଅଞ୍ଚଳର ସାଂସ୍କୃତିକ ପରମ୍ପରା, ରୀତି-ନୀତି, ଧାର୍ମିକ ବିଶ୍ୱାସ, ଉପାସନା ପଦ୍ଧତି ଇତ୍ୟାଦି ପରସ୍ପରକୁ ପ୍ରଭାବିତ କରିବା ଓ ସମନ୍ୱିତ ଭାବନା ବିକଶିତ ହେବା ଅସମ୍ଭବ ନୁହେଁ ।

ଦ୍ୱାଦଶ ଶତାବ୍ଦୀରେ ଜଗନ୍ନାଥ ମନ୍ଦିର ପ୍ରତିଷ୍ଠା ପରଠାରୁ ମନ୍ଦିର ଭିତରେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ତିନି ମୂର୍ତ୍ତିଙ୍କର ଆରାଧନା ହୋଇଆସୁଛି । ଏସବୁ କାଳକ୍ରମେ ହିନ୍ଦୁଧର୍ମଧାରା ସହ ଅଙ୍ଗାଙ୍ଗୀ ଭାବେ ଜଡିତ ହୋଇଛି । ଯେଉଁ ଧାର୍ମିକ ଭାବନା ଓ ବିଶ୍ୱାସମାନ ରାଷ୍ଟ୍ରର ସମର୍ଥନ ଲାଭ କରିଛନ୍ତି, ରାଜତନ୍ତ୍ର ଯୁଗରେ ତାଙ୍କର ସୁରକ୍ଷା ଓ ପ୍ରସାର ସହଜସାଧ୍ୟ ହୋଇଛି । ନିର୍ଦ୍ଦିଷ୍ଟ ଭୂଖଣ୍ଡରେ ସୀମାବଦ୍ଧ ଥିବା ଏକ ଧାର୍ମିକ ପରମ୍ପରା ସମୟର ଅଗ୍ରଗତି ସହ ରାଷ୍ଟ୍ରର ପ୍ରୋତ୍ସାହନରେ ଅନ୍ୟ ଅଞ୍ଚଳକୁ ବିସ୍ତାରଲାଭ କରିବା ସାଧାରଣ ଘଟଣା ହୋଇଥାଏ । ଭାଷାଗତ ଅସ୍ମିତା ଥିବା ବା ଏକ ରାଜନୈତିକ ସଂହତିର ଭିତ୍ତି ନେଇଥିବା ଭୂଖଣ୍ଡରେ ଏକ ପ୍ରଭାବଶାଳୀ ଧାର୍ମିକ ଭାବଧାରା ଯେ ବୃହତ୍ତର ଭୂଖଣ୍ଡରେ ଏକ ସାଂସ୍କୃତିକ ଐକ୍ୟ ସୃଷ୍ଟି କରିଥାଏ ଏହା ନିଃସନ୍ଦେହ ମନେହୁଏ । ଏହି ଦୃଷ୍ଟିରୁ ଦେଖିଲେ ଜଗନ୍ନାଥ ଉପାସନା, କର୍ମକାଣ୍ଡ, ପରମ୍ପରାଗତ ବିଶ୍ୱାସ ସାରା ଓଡିଶାରେ ପ୍ରସାରିତ ହେବା ଓ ଓଡିଶାର ଜନଜୀବନକୁ ପ୍ରଭାବିତ କରିଥିବା ମନେହୁଏ । ଶହ ଶହ ବର୍ଷ ଧରି ଏକ ବିଶାଳ ମନ୍ଦିରରେ ନାନା ବିଧିବିଧାନ ଭିତରେ ପୂଜିତ ହେଉଥିବା ଦିଅଁ, ସ୍ଥାନର ଭୌଗୋଳିକ ଆକର୍ଷଣ, ପୁଣ୍ୟ ଅର୍ଜନ କରିବାର ମନସ୍ତାତ୍ତ୍ୱିକ ଆବେଗ ପରି ନାନା କାରଣରୁ ଜଗନ୍ନାଥ ପୀଠ ଓଡିଶା ଓ ଓଡିଶା ବାହାରେ ବେଶ୍ ପରିଚିତ । ଏହା ସାଙ୍ଗକୁ ରାଷ୍ଟ୍ରୀୟ ସମର୍ଥନ ଓ ସରକାରୀ ସାହାଯ୍ୟ ଆଧାରରେ ଜଗନ୍ନାଥ ମନ୍ଦିର, ପରମ୍ପରା ଓ ପୂଜକ ଗୋଷ୍ଠୀର ସ୍ୱତନ୍ତ୍ରତା ସୁରକ୍ଷିତ ରହିଆସିଛି । ଓଡିଶାର ଜନଜୀବନରେ ଜଗନ୍ନାଥ ଭାବନା ନାନା ଭାବେ ପରିବ୍ୟାପ୍ତ ହୋଇଛି ।

ଶହ ଶହ ବର୍ଷ ଧରି ପିତୁଳାମାନଙ୍କୁ ଦେବତାର ସ୍ଥାନ ଦେଇ ପୂଜା କରିବା, ସେ ସବୁକୁ ଭଗବାନଙ୍କ ପ୍ରତିଭୂ ବୋଲି ଗ୍ରହଣ କରିବା ସହ ଭକ୍ତି-ନୈବେଦ୍ୟର ଏକ ପରିବେଶ ମନ୍ଦିରମାନଙ୍କରେ ସୃଷ୍ଟି କରାଯିବା ହିନ୍ଦୁଧର୍ମ ଚେତନାର ଅଙ୍ଗ ହୋଇରହିଛି । ଭାରତବର୍ଷର ବିଭିନ୍ନ ସ୍ଥାନରେ ବିଶାଳକାୟ ମନ୍ଦିରମାନ ରହିଛି ଓ ଦିଅଁ ଦେବତାଙ୍କୁ ପୂଜା କରାଯାଉଛି ।

ପ୍ରତ୍ୟେକ ମନ୍ଦିର ଓ ମନ୍ଦିରର ପିତୁଳାଙ୍କୁ ନେଇ ନାନା କାହାଣୀ, କିମ୍ବଦନ୍ତୀ ସୃଷ୍ଟି ହୋଇଛି । ଯେଉଁସବୁ ଘଟଣାମାନଙ୍କୁ ପ୍ରାକୃତିକ ଧାରାରେ ବ୍ୟାଖ୍ୟା କରାଯାଇପାରିବ ସେସବୁକୁ ଚମତ୍କାରିତାର ପୁଟ ଦେଇ ଦେବତାଙ୍କର ଅଲୌକିକ ଶକ୍ତି ବୋଲି ବର୍ଣ୍ଣନା କରାଯିବା ସାଧାରଣ ଘଟଣା ହୋଇଥାଏ । ଦିଅଁ ଦେବତାଙ୍କୁ ଆଧାର କରି ନାନା ରହସ୍ୟମୟ କାହାଣୀ, କିମ୍ବଦନ୍ତୀଙ୍କୁ ଜନମାନସରେ ବହୁ ଅତୀତରୁ ପ୍ରସାର କରାଯାଇଛି । ସଭ୍ୟତାର ଅଗ୍ରଗତି ସହ ମନ୍ଦିରମାନଙ୍କର କେତେକ କୁତ୍ସିତ ପ୍ରଥା ସମୟର ଆହ୍ୱାନରେ ପରିବର୍ତ୍ତିତ ହେଇଛି । କେତେକ ମନ୍ଦିରମାନଙ୍କରେ ରହିଥିବା ଅଶୋଭନୀୟ ଦେବଦାସୀ ପ୍ରଥା, ପରିବର୍ତ୍ତିତ ପରିସ୍ଥିତିରେ ବନ୍ଦ ରହିଛି । ପୁରୀ ରଥଯାତ୍ରା ସମୟରେ ଏକଦା ରଥରେ ଡାହୁକମାନେ ଯେପରି ଅଶ୍ଳୀଳ ସଙ୍ଗୀତ ଗାଉଥିଲେ ସେସବୁ କାଳକ୍ରମେ ବନ୍ଦ ହୋଇଯାଇଛି । ଯେଉଁସବୁ ବିଶ୍ୱାସ, ପରମ୍ପରା ଯୁଗଧର୍ମର ପରିପନ୍ଥୀ ସେସବୁକୁ ପରିବର୍ତ୍ତନ କରିବା କ୍ଷେତ୍ରରେ ବିରୋଧ ପ୍ରକାଶ ପାଉନାହିଁ । ଏହା ସହିତ ଆଧୁନିକ ବୈଜ୍ଞାନିକ ଜ୍ଞାନକୌଶଳ ଯୋଗୁ ମନ୍ଦିରମାନଙ୍କର ସଂରକ୍ଷଣ ସମ୍ଭବ ହୋଇଛି । ମନ୍ଦିରମାନଙ୍କୁ ବର୍ତ୍ତମାନର ଜ୍ଞାନକୌଶଳ ଓ ପ୍ରଯୁକ୍ତି ପ୍ରୟୋଗ କରାଯାଇ ସୁରକ୍ଷିତ କରାଯାଉଛି, ନଚେତ୍ ମନ୍ଦିରମାନ ପ୍ରାକୃତିକ ପ୍ରକ୍ରିୟାରେ ଅବକ୍ଷୟ ହୋଇଯାଆନ୍ତା ।

ମନ୍ଦିରର ଦିଅଁ ଦେବତାଙ୍କର ବିଭୂତି, ଚମତ୍କାରିତା, ଅଲୌକିକ ଶକ୍ତି ବିଷୟରେ ନାନା ଭକ୍ତିସଙ୍ଗୀତ, କାହାଣୀ, ବ୍ୟକ୍ତିନିଷ୍ଠ ଅନୁଭୂତି ସାହିତ୍ୟ ପରିସରରେ ରହିବା ଦେଖାଯାଏ । କୌଣସି ମନ୍ଦିର, ମୂର୍ତ୍ତି ଓ ତାର ପରମ୍ପରା ବିଷୟରେ ପ୍ରତ୍ନତାତ୍ତ୍ୱିକ, ଐତିହାସିକ ଓ ଦାର୍ଶନିକ ବିଶ୍ଳେଷଣ କରାଯାଇପାରେ ଓ କରାଯିବା ଆବଶ୍ୟକ ମଧ୍ୟ । ତେବେ ଦିଅଁ ଦେବତାଙ୍କୁ ଆଧାର କରି ଅସୁମାରୀ କାହାଣୀ, ସାହିତ୍ୟ ମଧ୍ୟ ସୃଷ୍ଟି ହୋଇଛି । ଯେଉଁ ଦିଅଁ ଦେବତା ଓ ମନ୍ଦିର ଯେତିକି ପ୍ରାଚୀନ ତାଙ୍କ ଉପରେ ସେତେ ଅଧିକ ସାହିତ୍ୟ ଉପଲବ୍ଧ । ଦିଅଁ ଦେବତାଙ୍କୁ ଆଧାରକରି ଭକ୍ତି ସାହିତ୍ୟର ଧାରା ସାହିତ୍ୟର ଅଙ୍ଗ ହୋଇଯାଇଛି । ତାହା ଜନମାନସକୁ ନାନା ଭାବରେ ପ୍ରଭାବିତ କରିଛି । କେତେକ ମିଥ୍, କିମ୍ବଦନ୍ତୀ ଓ କାଳ୍ପନିକ କାହାଣୀ ଆଧାରରେ ଜନମାନସକୁ ନୈତିକ ଜୀବନବୋଧ ବିଷୟରେ ଧାରଣା ଦିଆଯାଇପାରେ । ଏହା ଭକ୍ତି ସାହିତ୍ୟର ସକାରାତ୍ମକ ଦିଗ ନିଶ୍ଚୟ । ତେବେ ଏହାଦ୍ୱାରା ଲୋକଙ୍କ ଭିତରେ ପାରଲୌକିକ ଜୀବନଦୃଷ୍ଟି, କୁସଂସ୍କାର ଓ ଅବୈଜ୍ଞାନିକ ଧାରଣା ମଧ୍ୟ ସୃଷ୍ଟି ହେବା ସମ୍ଭବ । ଭାଗ୍ୟ, ଅଦୃଷ୍ଟ, ଦେବତାର ଆଶୀର୍ବାଦ ପାଇଁ କୃଚ୍ଛ୍ର ସାଧନା ଓ କର୍ମ ବିମୁଖତା ବି ସୃଷ୍ଟି ହୋଇପାରେ । ମଣିଷକୁ ବାସ୍ତବବାଦୀ କରିବା ପରିବର୍ତ୍ତେ ଭାଗ୍ୟବାଦୀ ଓ

ଭାବବାଦୀ କରିବା ତଥା ପାରଲୌକିକ ଜୀବନଦୃଷ୍ଟିର ପ୍ରସାର ଘଟାଇବା ସମାଜ ପାଇଁ କ୍ଷୟଶୀଳ ହୋଇପାରେ ।

ମଣିଷର ସମସ୍ତ ଧର୍ମଧାରଣା, ଦିଅଁ ଦେବତାଙ୍କର କଳ୍ପନା, ଆରାଧନା ଓ ତତ୍‌ସଂଲଗ୍ନ ପରମ୍ପରା ଶୂନ୍ୟରୁ ସୃଷ୍ଟି ହୋଇନାହିଁ, ଏସବୁ ମଣିଷ ମସ୍ତିଷ୍କରୁ ସଭ୍ୟତାର ବିକାଶଧାରାରେ ସୃଷ୍ଟି ହୋଇଛି । ପ୍ରାକୃତିକ ପରିବେଶରେ ମଣିଷ ଯେତେବେଳେ ଅସହାୟ ଅନୁଭବ କରିଛି, ପ୍ରାକୃତିକ ବିପର୍ଯ୍ୟୟର ସମ୍ମୁଖୀନ ହେବାକୁ ନିରୁପାୟ ହୋଇଛି, ଜୀବନର ଝଡଝଞ୍ଜାକୁ ଅତିକ୍ରମ କରିବାର ପନ୍ଥା ପାଇନାହିଁ ବା ପ୍ରତିକୂଳ ସ୍ଥିତିର ସମ୍ମୁଖୀନ ହୋଇଛି ସେ ଅତିପ୍ରାକୃତିକ ଶକ୍ତିରେ ଆସ୍ଥା ସ୍ଥାପନ କରିଛି । ସେହି ଅତିପ୍ରାକୃତିକ ଆବେଗ ଓ ବିଶ୍ୱାସ ଧାର୍ମିକ ଉପଚାରରେ ରୂପାନ୍ତରିତ ହୋଇଛି । ମଣିଷର ଗୋଷ୍ଠୀ ଜୀବନ, ସାମାଜିକ ସ୍ଥିତି, ରାଷ୍ଟ୍ର ଭାବନାର କ୍ରମବିକାଶ ଦେଇ ଅତୀନ୍ଦ୍ରିୟ, ଅତିପ୍ରାକୃତିକ ସତ୍ତାରେ ବିଶ୍ୱାସ ଦୃଢ ହୋଇଛି । ନିଜର ବିଶ୍ୱାସକୁ ବାସ୍ତବତାରେ ରୂପାନ୍ତରିତ କରିବାକୁ ମଣିଷ ଈଶ୍ୱରୀୟ ଆରାଧନା ଓ ପ୍ରାର୍ଥନା ପାଇଁ ବିଭିନ୍ନ ପୂଜାସ୍ଥଳ, ଧର୍ମପୀଠ, ମନ୍ଦିର ନିର୍ମାଣ କରିଛି । ନିଜ ଗୋଷ୍ଠୀର ଧର୍ମବିଶ୍ୱାସ ଅନୁଯାୟୀ ସେ ତାର କଳ୍ପିତ ଈଶ୍ୱରଙ୍କ ପ୍ରତିମାକୁ ନିର୍ମିତ ପୂଜାପୀଠରେ ସ୍ଥାନ ଦେଇଛି ଓ ପୂଜାସ୍ଥଳକୁ ଈଶ୍ୱରୀୟ ଉପସ୍ଥିତିର କ୍ଷେତ୍ର କରିଛି । ନିଜର ପୂଜାସ୍ଥଳକୁ ପବିତ୍ର, ଆକର୍ଷଣୀୟ କରିବାକୁ ସେ କେତେ ନୈବେଦ୍ୟ ଓ ପୂଜାର ପରିବେଶ ସୃଷ୍ଟି କରିଛି । ଏହି ପରିବେଶରେ ମଣିଷ ତା ମନର ଭାବକୁ ଓ ତାର ଦୁଃଖକୁ ବ୍ୟକ୍ତ କରିଛି । ଦେବତା ପାଖରେ ମନର ଦୁଃଖକୁ ବ୍ୟକ୍ତ କରି ଜୀବନ ପାଇଁ ପ୍ରେରଣା ଲାଭକରିଛି । ଧାର୍ମିକ ବିଶ୍ୱାସ, ଭକ୍ତିଜନିତ ଭାବପ୍ରବଣତା ଭିତରେ ଜଣେ ନିପୀଡିତ ବ୍ୟକ୍ତି କିଛି ମନସ୍ତାତ୍ତ୍ୱିକ ଆଶ୍ରୟ ପାଏ, ତାର ପ୍ରତିକୂଳ ସ୍ଥିତି ଯେ ଦେବତାର ଆଶୀର୍ବାଦରେ ଅପସରି ଯିବ ଏହି ଆଶା ଓ ବିଶ୍ୱାସ ଜୀବନ ପାଇଁ ପ୍ରେରଣାଦାୟକ ହୁଏ ।

ମନ୍ଦିର, ପୂଜାସ୍ଥଳର ଏକ ଅନ୍ତର୍ନିହିତ ଆବେଦନ ହେଉଛି ଭକ୍ତିଦ୍ୱାରା ହିଁ ଈଶ୍ୱର ପ୍ରାପ୍ତି ହୋଇପାରିବ । କେତେକ ମନ୍ଦିର ଭିତରେ ପୂଜକ ଗୋଷ୍ଠୀର ଆବେଦନ ହେଉଛି ଦେବତାର ଆଶୀର୍ବାଦ ଦାନଦ୍ୱାରା ମଳିପାରିବ । ଏହି ଜନ୍ମର ଦୁଃଖ ଦୁର୍ଦ୍ଦଶାକୁ ଭଗବାନ ଯେପରି ଦୂର କରିବେ ସେହିପରି ପରଲୋକରେ ମଧ୍ୟ ସହାୟକ ହେବେ । ବ୍ୟକ୍ତି ଓ ଈଶ୍ୱରଙ୍କ ଭିତରେ ପୂଜକ ହିଁ ମଧ୍ୟସ୍ଥ, ପୂଜକ ଈଶ୍ୱରଙ୍କର ପ୍ରତିନିଧି । ପୂଜକ ଗୋଷ୍ଠୀ ସ୍ଥଳବିଶେଷରେ ଭକ୍ତର ଅସହାୟତାର ସୁଯୋଗ ନେବାର ଦୃଷ୍ଟାନ୍ତ ବିରଳ ନୁହେଁ । ତେବେ ଈଶ୍ୱର ଇହଲୋକରେ ଓ ପରଲୋକରେ ସହାୟକ ହେବେ ଏହି ମାନସିକତାରୁ ସରଳ

ବିଶ୍ୱାସରେ ପ୍ରଭାବିତ ବ୍ୟକ୍ତି ମନ୍ଦିର ଯାଏ । ଈଶ୍ୱରଙ୍କ ପ୍ରତିମା ପାଖରେ ଭକ୍ତି ନୈବେଦ୍ୟ ଅର୍ପଣ କରିବା ସହ ଦାନ, ଦକ୍ଷିଣା ଦେବାରେ କୁଣ୍ଠିତ ହୁଏ ନାହିଁ । ପୁନଶ୍ଚ ଯେଉଁଠି ବ୍ୟକ୍ତି ଭିତରେ କୌଣସି ଅନ୍ୟାୟବୋଧ ଥାଏ କିମ୍ବା ଅନୈତିକ କାର୍ଯ୍ୟରୁ ଆତ୍ମପୀଡ଼ନ ଆସୁଥାଏ ସେ ମନ୍ଦିରକୁ ଯାଇ ଦିଅଁ ଦେବତାଙ୍କୁ ଦର୍ଶନ କରିବାପାଇଁ ଆଗ୍ରହୀ ହୁଏ । ଦିଅଁ ଦେବତାଙ୍କ ପାଖରେ ଭକ୍ତି ଅର୍ଘ୍ୟ ଅର୍ପଣ କରିବାଦ୍ୱାରା ତାର ପାପମୋଚନ ହେବ ଓ ସେ ଇହଲୋକ ବା ପରଲୋକରେ କଷ୍ଟ ପାଇବ ନାହିଁ ଏହି ବିଚାର ତାକୁ ଦିଅଁ ଦେବତାଙ୍କ ପ୍ରତି ଆକର୍ଷିତ କରିଥାଏ । ବିଶେଷକରି ସାମାଜିକ ପରିବେଶରେ ଧାର୍ମିକ ଆବେଗ, ପାରଲୌକିକ ଜୀବନଦୃଷ୍ଟି, ଦିଅଁଙ୍କୁ ଆରାଧନାରେ ପୁଣ୍ୟ ଲାଭ କରିବାର ମନୋଭାବ ବ୍ୟାପକ ରହିଥିଲେ ବ୍ୟକ୍ତି ସେଥିରେ ପ୍ରଭାବିତ ହେବା ସହଜ ହୋଇଯାଏ । ନିଜ ସାମର୍ଥ୍ୟ ଭିତରେ ମନ୍ଦିରଟିଏ ନିର୍ମାଣ କରିବା ବା ଏକ ଖ୍ୟାତିସମ୍ପନ୍ନ ମନ୍ଦିରକୁ ଯାଇ ଦିଅଁଙ୍କ ପାଖରେ ପୂଜାକରି ଦାନ କରିବାକୁ ସେ ମହତ୍ତର କାର୍ଯ୍ୟ ମନେ କରିଥାଏ । ସାମାଜିକ ସମ୍ବନ୍ଧ ଭିତରେ ନୀତିମାନ୍ ହେବା, ଜୀବନର ଯେକୌଣସି ଲକ୍ଷ୍ୟ ସାଧନ କ୍ଷେତ୍ରରେ ପନ୍ଥାର ପବିତ୍ରତା ରକ୍ଷାକରିବା, ସମ୍ବେଦନଶୀଳ ଜୀବନଦୃଷ୍ଟିକୁ ପ୍ରାଧାନ୍ୟ ଦେବା ବ୍ୟକ୍ତି ପାଇଁ ଯେତେ ମହତ୍ତ୍ୱପୂର୍ଣ୍ଣ ନୁହେଁ ଦିଅଁ ଦେବତା ପାଖରେ ପୂଜା ଆରାଧନାରେ ମଗ୍ନ ହେବା, କେତେକ କର୍ମକାଣ୍ଡକୁ ନିଷ୍ଠାର ସହ ପାଳନ କରିବା ଅଧିକ ମହତ୍ତ୍ୱପୂର୍ଣ୍ଣ ହୋଇଥାଏ । ବ୍ୟକ୍ତି ଭିତରେ ଈଶ୍ୱରୀୟ ଆବେଗ ବ୍ୟକ୍ତିନିଷ୍ଠ ଅନୁଭବରେ ଯେତେ ଅଧିକ ପ୍ରତିଫଳିତ ହୁଏ ସେ ସେତେ ଭକ୍ତ ପାଲଟେ କିନ୍ତୁ ଯେତେବେଳେ ଅନ୍ୟ ମଣିଷର ଆବଶ୍ୟକତାକୁ ସେ ଗଭୀର ଭାବେ ଅନୁଭବ କରେ ଓ ସମ୍ବେଦନଶୀଳ ହୁଏ ଏହା ବ୍ୟକ୍ତିର ନୈତିକ ଉତ୍ତରଣ ଆଣିଥାଏ । ଜଣେ ଧର୍ମପ୍ରାଣ ବ୍ୟକ୍ତି ପାଇଁ ଈଶ୍ୱରୀୟ ବିଶ୍ୱାସ ଓ ଉପାସନା ଜୀବନର ସାର୍ଥକତା ପାଇଁ ଅଧିକ ଆବଶ୍ୟକ ହୁଏ, କିନ୍ତୁ ଜଣେ ନୀତିମାନ୍ ବ୍ୟକ୍ତି ପାଇଁ ପରୋପକାର ଓ ସାମାଜିକ କର୍ତ୍ତବ୍ୟବୋଧ ଗୁଣାତ୍ମକ ଜୀବନର ମୂଲ୍ୟ ବହନ କରେ ।

ଇତିହାସରୁ ଏହା ଏକ ଅନୁଭବ ଯେ ଜ୍ଞାନ ଅଜ୍ଞତାକୁ ଦୂର କରିବାରେ ସହାୟକ ହେବାବେଳେ ବିଜ୍ଞାନ ସମାଜର ଅନ୍ଧକାରକୁ ଦୂର କରିବାରେ ପ୍ରମୁଖ ଭୂମିକ ନେଇଥାଏ । ଧାର୍ମିକ ଚେତନା କ୍ଷେତ୍ରରେ ଅନୁସନ୍ଧିତ୍ସା, ଜିଜ୍ଞାସାବୋଧ ଓ ବିଚାରଶୀଳତାର ପ୍ରାଧାନ୍ୟ ନଥାଏ, ଥାଏ ବିଶ୍ୱାସର । ବିଶ୍ୱାସଦ୍ୱାରା ଈଶ୍ୱରଙ୍କ କରୁଣା ମିଳିପାରିବ; ଯୁକ୍ତି, ଜିଜ୍ଞାସାଦ୍ୱାରା ନୁହେଁ । ଈଶ୍ୱର ପ୍ରାପ୍ତି ହିଁ ଜୀବନର ଅନ୍ତିମ ଲକ୍ଷ୍ୟ ଓ ଏହା ହିଁ ଧାର୍ମିକ ବିଶ୍ୱାସର ନିର୍ଦ୍ଦେଶ । 'ଜୀବନ ଦୁଃଖପୂର୍ଣ୍ଣ, ଅଳୀକ, ସମସ୍ତ ମାନବିକ ସମ୍ବନ୍ଧ ଦୁଇଦିନର ଖେଳ, ସମସ୍ତ ସ୍ନେହ, ବନ୍ଧନ ଅସାର' ଗୋଟିଏ ଜୀବନଦୃଷ୍ଟିର ଅଭିବ୍ୟକ୍ତି । ଅପରପକ୍ଷରେ ଅନ୍ୟ ଏକ ଦୃଷ୍ଟି

ହେଉଛି ସମାଜ ଏକ ଚିରନ୍ତନ ପ୍ରବାହ । ବ୍ୟକ୍ତି ମରଣଶୀଳ, କିନ୍ତୁ ମାନବ ସମାଜ ଚିରସ୍ଥାୟୀ । ଆଜି ଆମେ ଯେଉଁ ଦୁନିଆଟିରେ ରହିଛେ, ଯେତେ ସୁଖ ସୁବିଧା ଉପଭୋଗ କରୁଛେ ଓ ଏକ ଗୁଣାତ୍ମକ ଜୀବନ ବଞ୍ଚିବାର ଅବକାଶ ପାଇଛେ ଏହା ପଛରେ ରହିଛି ଆମ ପିତା, ପିତାମହ ଓ ପ୍ରପିତାମହଙ୍କର ଅବଦାନ । ସେହି ଧାରାରେ ଆମେ ବି ଜୀବନକୁ ଆହୁରି ସୁନ୍ଦରତର କରିପାରିବା ଓ ଆମର ଆଗାମୀ ବଂଶଧରଙ୍କ ପାଇଁ ଏକ ପ୍ରୀତିପ୍ରଦ ଦୁନିଆର ପରିବେଶ ଛାଡି ଯାଇପାରିବା । ଏହି ଦାୟିତ୍ୱବୋଧ ଆମ ଜୀବନକୁ ଅଧିକ ସରସ, ଉତ୍ତରଦାୟୀ ଓ ମାନବିକ କରିପାରିବ । କିନ୍ତୁ କଳ୍ପିତ ମୋକ୍ଷ, ମୁକ୍ତି, ଈଶ୍ୱରପ୍ରାପ୍ତି ଜୀବନପ୍ରବାହକୁ ଅଧିକ ଆତ୍ମକୈନ୍ଦ୍ରିକ କରିଥାଏ । ଈଶ୍ୱର ଉପାସନା, ଧର୍ମୀୟ କର୍ମକାଣ୍ଡ ଓ ଭକ୍ତିଭାବ ମଣିଷକୁ ମନୁଷ୍ୟୋଚିତ ନକରି ଅଧିକ ପାରଲୌକିକ ଓ ଐଶ୍ୱରିକ କରିଥାଏ । ପ୍ରକୃତିର ରହସ୍ୟକୁ ବୁଝିବାପାଇଁ ମଣିଷର ପ୍ରୟାସ ସଭ୍ୟତାକୁ ଆଗକୁ ନେଇଛି, ମଣିଷକୁ ଅଧିକ ମାନବିକ କରିଛି । ପରନ୍ତୁ ମଣିଷ ଦିଅଁ ଦେବତାର ପୂଜାରେ ନିମଗ୍ନ ରହିବାର ପରିଣାମ ମଣିଷକୁ ଅଧିକ କର୍ମବିମୁଖ କରିଛି । ଦିଅଁ, ଦେବତା, ଠାକୁର ସଭ୍ୟତାକୁ ଅଗ୍ରସର କରାଇ ନାହାନ୍ତି, ଜୀବନର ଦୁଃଖମୋଚନ କରାଇ ନାହାନ୍ତି ବା ମଣିଷକୁ ମନୁଷ୍ୟୋଚିତ କରିନାହାନ୍ତି । ସାଂପ୍ରତିକ ସ୍ଥିତିରେ ଯେଉଁ ରାଷ୍ଟ୍ରସମୂହ ବିକଶିତ ହୋଇଛନ୍ତି, ସେମାନଙ୍କୁ ଦିଅଁ ଦେବତାର ଆଶୀର୍ବାଦ ମିଳି ନାହିଁ । ଅପରପକ୍ଷରେ ଆମ ଦେଶରେ ଏତେ ଦିଅଁ, ଦେବତାର ଉପାସନା, ପୂଜା ପାର୍ବଣରେ ମତୁଆଲା ଭାବ ଓ ଧାର୍ମିକ ଆବେଗ ଆମକୁ ଅନଗ୍ରସର କରି ରଖିଛି । କେଉଁ ଦେବତା ବା ଠାକୁର ଆମକୁ ପ୍ରାକୃତିକ ବିପଦରୁ ରକ୍ଷା କରିନାହାନ୍ତି, ଆମର ବିକାଶରେ ସହାୟକ ହୋଇନାହାନ୍ତି ବା ଆମ ଦେଶରୁ ଦାରିଦ୍ର୍ୟ, ଭ୍ରଷ୍ଟାଚାର ଦୂର କରିନାହାନ୍ତି । ସମସ୍ତ ଦିଅଁ, ଦେବତା, ଠାକୁର, ପିତୁଳା ମଣିଷ ହାତରେ ନିର୍ମିତ । ମଣିଷ ହିଁ ସେମାନଙ୍କୁ ଦେବତ୍ୱ ଆରୋପ କରିଛି ଓ ବିଭିନ୍ନ ପ୍ରଥା, ପରମ୍ପରା ସୃଷ୍ଟି କରିଛି । ଯେଉଁ ସମାଜ, ଜନଗୋଷ୍ଠୀ, ରାଷ୍ଟ୍ର ଧାର୍ମିକ ବିଶ୍ୱାସ ଆଧାରରେ ଭାବପ୍ରବଣ ହୋଇରହିଛି, ଧାର୍ମିକ ପରମ୍ପରା ପାଳନ କରିବାରେ ଶକ୍ତି, ସାମର୍ଥ୍ୟ ବ୍ୟୟ କରିବାକୁ ଶ୍ରେୟ ମଣିଛି ଓ ତାହାକୁ ଏକ ପବିତ୍ର କର୍ତ୍ତବ୍ୟ ବୋଲି ମନେକରିଛି, ସେହି ସମାଜ ଓ ରାଷ୍ଟ୍ର ଅନଗ୍ରସର ହୋଇ ରହିବାକୁ ବାଧ୍ୟ ହୋଇଛି । ମାନବ ସମାଜକୁ ଗଭୀର ଭାବେ ଅଧ୍ୟୟନ କରିଥିବା ସମାଜବିଜ୍ଞାନୀ ଓ ସଂସ୍କାରକମାନେ ଏହା ହିଁ ଦର୍ଶାଇଛନ୍ତି ।

ଆମ ସମାଜରେ ଏକ ସାଧାରଣ ବିଶ୍ୱାସ ରହିଛି ଯେ ଯେଉଁ ଦେଶମାନେ ବିକଶିତ ସେମାନେ ବସ୍ତୁବାଦୀ, ଅଥଚ ଆମ ଦେଶର ଜୀବନଧାରା, ସଭ୍ୟତା ଓ ସଂସ୍କୃତି ଆଧ୍ୟାତ୍ମିକତାର ଆଧାର ଉପରେ ପ୍ରତିଷ୍ଠିତ । ଆଧ୍ୟାତ୍ମିକତା ଏକ ଅନେକାର୍ଥକ ଶବ୍ଦ, ସୁତରାଂ

ଏହା ସ୍ଥଳବିଶେଷରେ ଅସ୍ୱଷ୍ଟ । ଆଧ୍ୟାତ୍ମିକତାର ଅର୍ଥ ଯଦି ନୈତିକତା ଓ ମହତ୍ତର ଜୀବନବୋଧ ହୁଏ, ତେବେ ଆମର ଜନଜୀବନ ଯେ ଆଧ୍ୟାତ୍ମିକତାଠାରୁ ବହୁ ଦୂରରେ ଏହା କୁହାଯିବା ଅସଙ୍ଗତ ହେବ ନାହିଁ । ସାମାଜିକ ବିଶୃଙ୍ଖଳା, ଯେକୌଣସି ପନ୍ଥାରେ ଲକ୍ଷ୍ୟ ହାସଲ କରିବାର ମନୋଭାବ, ସାମାଜିକ ଜୀବନରେ ଦୁର୍ନୀତି ଓ ଭ୍ରଷ୍ଟାଚାର ଏବଂ ଜାତିଗତ, ଲିଙ୍ଗଗତ ଭେଦଭାବ ଆମ ଜନଜୀବନର ନିପଟ ବାସ୍ତବତା । ବିକଶିତ ରାଷ୍ଟ୍ରମାନଙ୍କରେ ବିଶୃଙ୍ଖଳା, ଦୁର୍ନୀତି ବା ଅପରାଧମୂଳକ ଘଟଣା ଯେ ନାହିଁ ଏହା କୁହାଯାଇନପାରେ । ତେବେ ସାଧାରଣ ଭାବେ ଦେଖିଲେ ଏସବୁର ପରିମାଣ ବିକଶିତ ରାଷ୍ଟ୍ରମାନଙ୍କରେ ଅତି ସୀମିତ ଓ ତାହା ସାମାଜିକ ବ୍ୟତିକ୍ରମ ମାତ୍ର । ବିକଶିତ ରାଷ୍ଟ୍ରମାନଙ୍କରେ ସାମାଜିକ ଶୃଙ୍ଖଳା, ବ୍ୟକ୍ତିର ଜୀବନ-ମୂଲ୍ୟ, ମାନବିକ ମର୍ଯ୍ୟାଦାର ସ୍ତର ବହୁ ଉନ୍ନତ । ଏହାର କାରଣ ସେମାନଙ୍କର ଆର୍ଥିକ ସ୍ଥିତି ସ୍ୱଚ୍ଛଳ, ଉନ୍ନତ ସ୍ୱାସ୍ଥ୍ୟସେବା ସହଜରେ ଉପଲବ୍ଧ, କର୍ମସଂସ୍ଥାନ ସହଜଲଭ୍ୟ ଓ ସମାଜର ସାଧାରଣ ବ୍ୟକ୍ତି ସ୍ୱାବଲମ୍ବୀ । ଯେଉଁଠି ଦାରିଦ୍ର୍ୟ, ଅସହାୟବୋଧ, ବାଳଶ୍ରମିକ, ଅପପୁଷ୍ଟି, ନିରକ୍ଷରତା, ବେକାରୀ ସମସ୍ୟା ବ୍ୟାପକ ସେହି ସାମାଜିକ ଦୃଶ୍ୟପଟରେ ଶୃଙ୍ଖଳା, ନୈତିକତା ଓ ମାନବିକ ମର୍ଯ୍ୟାଦାର ଉଲ୍ଲଙ୍ଘନ ଯେ ସାଧାରଣ ଘଟଣା ଏହା ଏକ ସାଧାରଣ ଅନୁଭବ । ତେବେ ଆଧ୍ୟାତ୍ମିକତାର ଅନ୍ୟ ଏକ ପ୍ରୟୋଗ ରହିଛି । ଦର୍ଶନ ପରିଭାଷାରେ ଆଧ୍ୟାତ୍ମିକତାର ଏକ ତାତ୍ତ୍ୱିକ ଅର୍ଥ କରାଯାଏ । ଯେଉଁ ବିଚାର ଚେତନାକୁ ପ୍ରାଥମିକ ସତ୍ତା ଭାବେ ଗ୍ରହଣ କରେ ଓ ବସ୍ତୁକୁ ଗୌଣ ସତ୍ତା ଭାବେ ନିଏ ତାହା ଆଧ୍ୟାତ୍ମିକ । ଅପରପକ୍ଷରେ ଯେଉଁ ତାତ୍ତ୍ୱିକ ଭାବନା ବସ୍ତୁକୁ ପ୍ରାଥମିକତା ଦେଇ ଚେତନାକୁ ବସ୍ତୁର ରୂପାନ୍ତରିତ ଅଭିବ୍ୟକ୍ତି ବୋଲି ଗ୍ରହଣକରେ ତାହା ବସ୍ତୁବାଦୀ ହୋଇଥାଏ । ଅଧ୍ୟାତ୍ମବାଦ ଓ ବସ୍ତୁବାଦ ଦର୍ଶନ ପରିସରରେ ଏକ ବୈଷୟିକ ପ୍ରତୀତି ଓ ସତ୍ତାର ପ୍ରାଥମିକତା ଆଧାରରେ ଏକ ତତ୍ତ୍ୱମୀମାଂସା ଆଧ୍ୟାତ୍ମିକ ବା ବସ୍ତୁବାଦୀ ହୋଇଥାଏ । ତୃତୀୟରେ ଆଧ୍ୟାତ୍ମିକତା ସହ ଭାବବାଦ, ପାରଲୌକିକ ଜୀବନଦୃଷ୍ଟି ସଂଶ୍ଳିଷ୍ଟ ହେବା ବେଳେ ବସ୍ତୁବାଦ ସହ ବାସ୍ତବବାଦ, ଇହଲୌକିକ ଜୀବନଦୃଷ୍ଟି ଉନ୍ନତ ପରିବେଶ ଓ ଗୁଣାତ୍ମକ ଜୀବନର ମନୋଭାବ ରହିଥାଏ । ଏହି ଶେଷୋକ୍ତ ଅର୍ଥରେ ଭାରତୀୟ ଜୀବନଧାରାକୁ ଆଧ୍ୟାତ୍ମିକ କୁହାଯାଇପାରେ କାରଣ ବାସ୍ତବ ଜୀବନକୁ ଉନ୍ନତ, ପ୍ରୀତିପୂର୍ଣ୍ଣ, ନ୍ୟାୟପୂର୍ଣ୍ଣ କରିବା ପରିବର୍ତ୍ତେ କାଳ୍ପନିକ ଭାବେ ଏମାନେ ପାରଲୌକିକ ଜଗତର ସ୍ୱପ୍ନ ଦେଖନ୍ତି । ଏହି ପ୍ରକାରର ଏକ ଜୀବନଦୃଷ୍ଟିର ପ୍ରସାର ଯୋଗୁ ସାମାଜିକ କର୍ତ୍ତବ୍ୟବୋଧ, ନାଗରିକ ଶୃଙ୍ଖଳାଜ୍ଞାନ, ଅନ୍ୟ ପ୍ରତି ମାନବୋଚିତ ବ୍ୟବହାରକୁ ଗୁରୁତ୍ୱ ନଦେଇ ନାନା ଅର୍ଥହୀନ ପରମ୍ପରା ଓ ଧାର୍ମିକ କର୍ମକାଣ୍ଡ ପାଳନ କରିବାରେ ଶକ୍ତି ଓ ସମୟ ବ୍ୟୟ କରନ୍ତି ।

ଯେଉଁ ପରିବେଶରେ ନୈରାଶ୍ୟ ଓ ହତାଶା ଭାବ ବ୍ୟାପକ ହୋଇ ରହେ ସେଠାରେ ପାରଲୌକିକ ଜୀବନର ସ୍ୱପ୍ନ ଭିତରେ ମନୁଷ୍ୟ ମନୁଷ୍ୟୋଚିତ ଗୁଣରୁ ଦୂରକୁ ଚାଲିଯାଏ ।

ଆମ ଦେଶର ଅସଂଖ୍ୟ ଦେଉଳ, ମନ୍ଦିର ଓ ତାର ପରମ୍ପରା ଭିତରୁ କୌଣସି ସମତାର ବାର୍ତ୍ତା ନ ଆସି ବରଂ ଜାତିବାଦ ଓ ସାମନ୍ତବାଦର ଚିତ୍ର ଆସିଥାଏ । ଆମ ଦେଶର ସମ୍ବିଧାନ ସମତା ଓ ମାନବିକ ମର୍ଯ୍ୟାଦାର ଯେତେ ବାର୍ତ୍ତା ଦେଲେ ମଧ୍ୟ ଆମର ଦେଉଳ, ମନ୍ଦିର ସାମାଜିକ ବୈଷମ୍ୟକୁ ଦୃଢ଼ କରିବାରେ ସହାୟକ ହୋଇଥାଏ । ଐତିହାସିକ ମାନଦଣ୍ଡରୁ ଦେଖିଲେ ଯୁଗ ଯୁଗ ଧରି ଜାତିପ୍ରଥା ଓ ବର୍ଣ୍ଣବ୍ୟବସ୍ଥାକୁ ଦୃଢ଼ କରିବାରେ ମନ୍ଦିର ଓ ପୂଜାସ୍ଥଳ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ନିର୍ବାହ କରିଛନ୍ତି । ଜାତିବାଦ ସମାଜରେ ଯେତିକି ଦୃଢ଼ ହୋଇଛି, ସମାଜର ଉଚ୍ଚବର୍ଗର ଲୋକମାନେ ସେମାନଙ୍କର ମାନବିକ ହୃଦୟକୁ ସେତିକି ହରାଇ ବସିଛନ୍ତି । ପରିଣାମ ସ୍ୱରୂପ, ସମାଜ ରୁଦ୍ଧ ବ୍ୟବସ୍ଥାରେ ଭାଗ ଭାଗ ହେବା ସହ ଏହି ବ୍ୟବସ୍ଥା ଏକ ପରାଂଗଭୋଜୀ ଶ୍ରେଣୀର ସ୍ୱାର୍ଥ ଓ ସୁବିଧାକୁ ରକ୍ଷାକରି ଆସିଛି । ମନ୍ଦିରର ଦୈନନ୍ଦିନ ପୂଜା, ଆରାଧନା, ଦାନ, ଦକ୍ଷିଣା କେବଳ ପୂଜକ ଶ୍ରେଣୀର ଅଧିକାରର ବିଷୟ ହୋଇରହିଛି । ସମାଜର ପୁରୋହିତ ଓ ଶାସକବର୍ଗ ପରସ୍ପରର ସ୍ୱାର୍ଥରକ୍ଷା କରି ସାମନ୍ତବାଦକୁ ଦୃଢ଼ କରିଛନ୍ତି । ସାମନ୍ତବାଦ ଏକ ସ୍ୱେଚ୍ଛାଚାରୀ ଶ୍ରେଣୀର ସ୍ୱାର୍ଥକୁ ସର୍ବଦା ପ୍ରାଧାନ୍ୟ ଦେଇଛି । ଭାରତୀୟ ସମାଜ ଯେତେଦିନ ପର୍ଯ୍ୟନ୍ତ ଜାତିଆଣ ବ୍ୟବସ୍ଥାଦ୍ୱାରା ବିଭାଜିତ ହୋଇ ରହିଥିବ, ସେତେଦିନ ପର୍ଯ୍ୟନ୍ତ ଏହା ବିକଳାଙ୍ଗ ହୋଇ ରହିବ । ସମାଜକୁ ବିକଳାଙ୍ଗ କରିବାରେ ଧାର୍ମିକ ପରମ୍ପରା ଓ ଦେଉଳ, ମନ୍ଦିରର ଯେ ଭୂମିକା ରହିଆସିଛି ଏହା ଯେତେ ଅପ୍ରିୟ ହେଲେ ମଧ୍ୟ ଏକ ନିଛକ ବାସ୍ତବତା । ଆହୁରି ପରିତାପର ବିଷୟ ସମାଜର ଯେଉଁମାନେ ନାନା ଉତ୍ପୀଡନର ଶିକାର ହୋଇଛନ୍ତି ସେମାନେ ମଧ୍ୟ ପରସ୍ପର ଭିତରେ ସଂହତି ରକ୍ଷା କରିପାରିନାହାନ୍ତି ବା ଅନ୍ୟାୟ ବିରୁଦ୍ଧରେ ସଂଗ୍ରାମ କରିନାହାନ୍ତି । ବରଂ ସାମାଜିକ ଭେଦଭାବକୁ ଭାଗ୍ୟ, ପୂର୍ବଜନ୍ମର କର୍ମଫଳ ଭାବି ଏହାକୁ ସ୍ୱୀକାର କରିଯାଇଛନ୍ତି । ଏକ ସଂହତିପୂର୍ଣ୍ଣ ସାମାଜିକ ଜୀବନ ଓ ମହତ୍ତର ଜୀବନବୋଧ ଜନିତ ଶାଶ୍ୱତ ଆକାଂକ୍ଷା ଭାରତୀୟ ସମାଜରେ ପ୍ରତିଫଳିତ ହୋଇନାହିଁ ।

ମାନବ ସଭ୍ୟତାର ଇତିହାସ ବହୁ ଉତ୍‌ଥାନ ପତନ ଦେଇ ଅଗ୍ରସର ହୋଇଆସିଛି । ସକଳ ବୌଦ୍ଧିକ ଅଗ୍ରଗତି ପଶ୍ଚାତରେ ରହିଛି ବୌଦ୍ଧିକ କୌତୂହଳତା, ଅନୁସନ୍ଧିତ୍ସୁ ମନୋଭାବ ଓ ବୈଜ୍ଞାନିକ ମାନସିକତା । ଯେଉଁ ଭୂଖଣ୍ଡର ଲୋକମାନେ ବିଜ୍ଞାନ-ମନସ୍କ ହୋଇଛନ୍ତି ଓ ମାନବିକ ପ୍ରୟାସରେ ଆସ୍ଥା ସ୍ଥାପନ କରିଛନ୍ତି ସେମାନେ ସଭ୍ୟତାକୁ

ଆଗକୁ ନେଇଛନ୍ତି । ମାନବଜାତି ଇତିହାସର ଏହା ଏକ ବିଡମ୍ବନା ଯେ କେତେକ ଭୂଖଣ୍ଡରେ ଜୀବନର ମାନ କ୍ରମୋନ୍ନତ ଭାବେ ଉନ୍ନତ ହୋଇଚାଲିଛି ଓ ଅନ୍ୟ ଭୂଖଣ୍ଡର ବ୍ୟକ୍ତିମାନେ ଏବେ ବି ମଧ୍ୟଯୁଗୀୟ ଅନ୍ଧକାର ଭିତରୁ ମୁକ୍ତ ହୋଇପାରୁ ନାହାନ୍ତି । ଗତ ଏକ ଶତାବ୍ଦୀ ଭିତରେ ମାନବ ସଭ୍ୟତା ଯେଉଁ ବିକାଶଲାଭ କରିଛି ଓ ଆଧୁନିକ ପ୍ରଯୁକ୍ତି ବିଶ୍ୱକୁ ଏକ କ୍ଷୁଦ୍ର ଗ୍ରାମରେ ରୂପାନ୍ତରିତ କରିଛି ତାହା ପଶ୍ଚାତରେ ରହିଛି ଆଧୁନିକ ଜ୍ଞାନକୌଶଳ ଓ ମାନବବାଦୀ ଜୀବନଦୃଷ୍ଟି । ଆଧୁନିକ ଜ୍ଞାନବିଜ୍ଞାନର ବିକାଶ ପଶ୍ଚାତରେ ରହିଛି ବୈଜ୍ଞାନିକ ମାନସିକତା ଓ ମୁକ୍ତ ମନ ଜନିତ ବିଚାରବୋଧ । ମାନବବାଦୀ ଦୃଷ୍ଟିଭଙ୍ଗୀର ଅନ୍ତର୍ନିହିତ ତାତ୍ପର୍ଯ୍ୟ "ମାନବିକ ଅଧିକାରର ବିଶ୍ୱଘୋଷଣା"(Universal Declaration of Human Rights)ରେ ପ୍ରତିଫଳିତ ହୋଇଛି । ସଂହତିପୂର୍ଣ୍ଣ ବିଶ୍ୱସମାଜ ମାନବିକ ଶ୍ରେୟ ଓ ଗୁଣାତ୍ମକ ଜୀବନର ବାର୍ତ୍ତା ଏଥିରେ ନିହିତ ରହିଛି । ଆଜି ମାନବ ସଭ୍ୟତା ଯେଉଁ ସ୍ଥିତିକୁ ଆସିଛି ସେଥିରେ ବିଜ୍ଞାନଭିତ୍ତିକ ଦୃଷ୍ଟିଭଙ୍ଗୀ ଓ ବ୍ୟକ୍ତିମର୍ଯ୍ୟାଦାବୋଧ ଜନିତ ସମତାର ଭାବକୁ ଅସ୍ୱୀକାର କରିହେବ ନାହିଁ । ଆମ ଦେଶର ଜନଜୀବନରେ ଏହି ଆଦର୍ଶର ବାସ୍ତବ ରୂପାୟନ ପାଇଁ ଆମକୁ ବହୁ ପଥ ଯିବାକୁ ରହିଛି । ମଧ୍ୟଯୁଗୀୟ ବିଶ୍ୱାସ, ଚମତ୍କାରିତା, ଜାତିଭିତ୍ତିକ ମାନସିକତା, ଦିଅଁ ଦେବତା ପାଖରେ ସମର୍ପଣ ଜନିତ ଉନ୍ମାଦନା କୌଣସି ରାଷ୍ଟ୍ର ବା ସମାଜକୁ ଆଗେଇ ନେଇପାରିବ ନାହିଁ । ଏତେ ଦିଅଁ, ଦେବତା, ଠାକୁର, ପୂଜାସ୍ଥଳ, କର୍ମକାଣ୍ଡ, ଧାର୍ମିକ ପରମ୍ପରା ଆମର ବୃହତ୍ତର ସାମାଜିକ ପରିବେଶରୁ ଦାରିଦ୍ର୍ୟ, ଭ୍ରଷ୍ଟାଚାର, ସାମାଜିକ ଭେଦଭାବ ଦୂର କରିବାରେ କୌଣସି ଉଲ୍ଲେଖନୀୟ ଭୂମିକା ନେଇପାରି ନାହିଁ । ବରଂ ଏସବୁ ନାନା କୁସଂସ୍କାର ଓ ଅହେତୁକ ବିଶ୍ୱାସର ପ୍ରସାର ପାଇଁ ଆୟୁଧ ହୋଇପାରୁଛି । ସମାଜର କିଛି ବ୍ୟକ୍ତି ଜନମାନସକୁ ଅନ୍ଧକାରରେ ରଖି ଯେଉଁ ବିଧି, ପରମ୍ପରା ଇତ୍ୟାଦି ସୃଷ୍ଟି କରିଛନ୍ତି ତାହା ସେମାନଙ୍କର ଶ୍ରମବିହୀନ ଉପାର୍ଜନ ପାଇଁ ସହାୟକ ହୋଇଛି । ଗୋଟିଏ ଯୁକ୍ତି ଆସିଥାଏ ଯେ ଧାର୍ମିକ ପରମ୍ପରା ଓ ବିଶ୍ୱାସକୁ ସମାଜର ଅଗଣିତ ବ୍ୟକ୍ତି ଗ୍ରହଣ କରୁଛନ୍ତି ଓ ସେଥିରୁ ଏକ ମହତ୍ତର ଜୀବନ ପାଇଁ ପ୍ରେରଣା ଲାଭ କରୁଛନ୍ତି । ତେବେ ଆଜିର ମଣିଷ ପାଖରେ ପ୍ରଶ୍ନ ହେଉଛି-ସେ କେଉଁ ଦୃଷ୍ଟିରେ ଜଗତକୁ, ତାର ବୃହତ୍ତର ସାମାଜିକ ପରିବେଶକୁ ଓ ତାର ନିଜ ଜୀବନକୁ ଦେଖିବ । ବାସ୍ତବତା ଦିଗରୁ ଦେଖିଲେ ସଭ୍ୟତାର ଉତ୍ତରଣ, ପ୍ରୀତିପୂର୍ଣ୍ଣ ସାମାଜିକ ସମ୍ପର୍କ ଓ ସୁଖଶାନ୍ତିମୟ ଜୀବନ ମଣିଷର ପ୍ରୟାସରେ ହିଁ ସମ୍ଭବ । ସଭ୍ୟତାରେ ଯାହା କିଛି ବିକଶିତ ହୋଇଛି, ସେସବୁ ମାନବିକ ପ୍ରଚେଷ୍ଟାର ପରିଣାମ, ଦିଅଁ ଦେବତାର ଆଶୀର୍ବାଦର ପରିଣାମ ନୁହେଁ । ଏହା ଏକ ବିଡମ୍ବନା ଯେ ଥରେ ସାମାଜିକ ଜୀବନରେ ଅନ୍ଧବିଶ୍ୱାସ (ଦୃଷ୍ଟିହୀନଙ୍କର ବିଶ୍ୱାସ

ନୁହେଁ, ବିଚାରଶୂନ୍ୟ ବିଶ୍ୱାସ) ଦୃଢ ହେଲେ ଓ ମଣିଷ ରୂଢ଼ିବାଦର ଶିକାର ହେଲେ ତେଣିକି ପୂଜକ ଗୋଷ୍ଠୀ ଯଜମାନ ଖୋଜିବେ ନାହିଁ ବରଂ ଯଜମାନମାନେ ପୂଜକ ଗୋଷ୍ଠୀ ପାଖରେ ନିଜକୁ ସମର୍ପଣ କରିବେ । ସେମାନେ ଧରିନେବେ ଯେ ପୂଜକ ଗୋଷ୍ଠୀ ହିଁ ଈଶ୍ୱରଙ୍କ ପାଖରେ ପହଞ୍ଚିବାର ବା ଈଶ୍ୱରଙ୍କୁ ମନର ଭାବ ଜଣାଇବାର ହେଲେ ମଧ୍ୟସ୍ଥ । ଏହି ମାନସିକତାରୁ ସମାଜରରେ ସାଂସ୍କୃତିକ ବୈଷମ୍ୟ, ଶୋଷଣ ଦାନା ବାନ୍ଧିଥାଏ, ଯାହାକି ଭାରତୀୟ ଜନଜୀବନର ଏକ ନିଛକ ବାସ୍ତବତା ।

ସମାଜର ସଚେତନ, ବିଚାରବନ୍ତ ଓ ମାନବହିତୈଷୀ ବ୍ୟକ୍ତିଗଣ ଆମ ସମାଜର ପ୍ରଚଳିତ ବିଶ୍ୱାସ, ଅନ୍ଧବିଶ୍ୱାସ, ପୂଜା ଆରାଧନା ନାମରେ ସମୟ, ଶକ୍ତିର ଅପଚୟ ବିଷୟରେ ଗଭୀର ଚିନ୍ତା ପ୍ରକଟ କରିବା ଆବଶ୍ୟକ । "କେଉଁ ଦିଅଁଙ୍କ ମୁଣ୍ଡରେ ପାଣି ଢାଳିଲେ, କେଉଁ ବେଳାରେ ବୁଡ ପକାଇଲେ, କାହାର ପାଦ ଦର୍ଶନ କଲେ, କାହାର ଦଉଡିକୁ ଛୁଇଁ ଦେଲେ, କେଉଁଠି ନିଆଁରେ ଚାଲିଗଲେ ଜୀବନ ସାର୍ଥକ ହେବ, ସବୁ ପାପତାପ ଦୂର ହୋଇଯିବ"-ଯେଉଁ ମାନସିକତା ଆମ ସମାଜରେ ରହିଛି ତାହା ଆମ ଅନଗ୍ରସରତା, ମାନସିକ ଦାରିଦ୍ର୍ୟ ଓ ବିଚାରହୀନ ଦୃଷ୍ଟିର ପରିଚୟ ଦିଏ ନା ଆମ ଆଧ୍ୟାତ୍ମିକ ସଂସ୍କୃତିର ସ୍ୱାକ୍ଷର ବହନ କରେ ? ଜଣେ ବ୍ୟକ୍ତିଙ୍କର ଧାର୍ମିକ ବିଶ୍ୱାସ ଯଦି ତାଙ୍କୁ ନୀତିପୂର୍ଣ୍ଣ ଜୀବନଯାପନ କ୍ଷେତ୍ରରେ ଓ ସମାଜ ପ୍ରତି ଉତ୍ତରଦାୟୀ ହେବାରେ ଅଭିନିବେଶ ଯୋଗାଉଛି ତେବେ ତାଙ୍କର ଏହି ଜୀବନଦୃଷ୍ଟିକୁ କେହି ବିରୋଧ କରିବେ ନାହିଁ । ପରନ୍ତୁ କେତେକ ବିଶ୍ୱାସ ଓ ସ୍ଥଳବିଶେଷରେ ଅନ୍ଧବିଶ୍ୱାସକୁ ସମାଜ ଉପରେ ଲଦିଦେବା, ବିଜ୍ଞାନର ସାଧନମାନଙ୍କର ଅପପ୍ରୟୋଗ କରି କୁସଂସ୍କାରର ପ୍ରସାର କରିବା, ପାରଲୌକିକ ଦୃଷ୍ଟି ସମାଜରେ ଦୃଢ ଭିତ୍ତି ନେବା, ସାମାଜିକ ବାସ୍ତବତାଠାରୁ ଲୋକମାନଙ୍କର ଦୃଷ୍ଟିଭଙ୍ଗୀକୁ ଦୂରେଇ ଦେବାଦ୍ୱାରା ଏକ ଜାତିର ବୌଦ୍ଧିକ ଓ ନୈତିକ ବିକାଶ ପରାହତ ହୋଇଥାଏ- ଏହା ଆମ ସମୟର ଏକ ବାସ୍ତବ ଅନୁଭୂତି । ସାଂପ୍ରତିକ ବିଚାରବୋଧରେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ, ମାନବବାଦ, ସାମାଜିକ ସ୍ତରରେ ଉତ୍ତରଦାୟିତ୍ୱବୋଧ, ମାନବିକ ପ୍ରୟାସ, ସମତାର ଭାବ ଏକ ଜାତିର ବିକାଶରେ ନିର୍ଣ୍ଣାୟକ ମନେହେଲା ବେଳେ ଏହାର ବିପରୀତ ଭାବଧାରା ସାମାଜିକ କ୍ଷୟଶୀଳତା ପାଇଁ ପଥ ପରିଷ୍କାର କରିଥାଏ ।

ଜଗନ୍ନାଥ ପ୍ରତିମା, ଜଗନ୍ନାଥ ମନ୍ଦିର, ନାନା ବିଧିବିଧାନ, ପୂଜା ପଦ୍ଧତି, ପରମ୍ପରା, ଔପଚାରିକତା, ଭକ୍ତିଭାବ, ଅସଂଖ୍ୟ ସାହିତ୍ୟ କୃତି ଓ ସରକାରୀ ପ୍ରୋତ୍ସାହନ ଆଧାରରେ 'ଜଗନ୍ନାଥ ସଂସ୍କୃତି' ମହିମା ମଣ୍ଡିତ ହୋଇପାରିଛି । ଶହ ଶହ ବର୍ଷ ଧରି ଓଡିଶାରେ ଏହି

ଭାବନାକୁ ନେଇ ଓ ଏକ ବିଶାଳ ମନ୍ଦିରକୁ ଆଧାରକରି ଏସବୁ ଯେଉଁ ବିଶ୍ୱାସ ସୃଷ୍ଟି ହୋଇଛି ତାହା ମାଧ୍ୟମରେ ଏକ ସାଂସ୍କୃତିକ ଧାରା ଉଦ୍ଭବ ହୋଇଛି । ସେହିଭଳି ଭାରତବର୍ଷରେ ବିଭିନ୍ନ ମନ୍ଦିରକୁ ନେଇ ସେ ଅଞ୍ଚଳର ସାଂସ୍କୃତିକ ଜୀବନଧାରା ବହୁ ଭାବରେ ବିକଶିତ ହୋଇଆସିଛି । "ଜଗନ୍ନାଥ" ପୃଷ୍ଠଭୂମିରେ ଓଡିଶାର ଜଣେ ପ୍ରଗତିଶୀଳ ଲେଖକ ଦୁଇଟି ଭାବନା ଭିତରେ ପାର୍ଥକ୍ୟ ଦର୍ଶାଇଛନ୍ତି । 'ଜଗନ୍ନାଥ' ପ୍ରତ୍ୟୟକୁ ନେଇ ଚିରାଚରିତ ଭାବନା, ମୂର୍ତ୍ତି, ମନ୍ଦିର ଓ ତତ୍‌ସଂଲଗ୍ନ ସଂସ୍କୃତି ବାହାରେ ଜଗନ୍ନାଥଙ୍କର ଏକ ଭିନ୍ନ ଅର୍ଥ ବାହାର କରିଛନ୍ତି । ତାଙ୍କ ମତରେ ଜଗନ୍ନାଥ ଚେତନା ହେଉଛି ସାମ୍ୟ, ମୈତ୍ରୀ ଓ ପ୍ରୀତିର ଏକ ସମନ୍ୱିତ ଅଭିବ୍ୟକ୍ତି । ସାମ୍ୟ, ମୈତ୍ରୀ ଓ ପ୍ରୀତି ହିଁ ଜଗନ୍ନାଥ ଭାବନା । ଜଗତରେ ଜଡରୁ ଚେତନା, ଚେତନାରୁ ମାନବ ଚେତନା ଓ ମାନବ ଚେତନାରୁ ମାନବତ୍ୱ ଦିଗରେ ଅଗ୍ରସର ହେଉଛି ଜଗନ୍ନାଥ ଚେତନା । ଏହି ଚେତନାର ବିକାଶ ମଣିଷକୁ ପହଞ୍ଚାଏ ସାମ୍ୟ-ମୈତ୍ରୀ-ପ୍ରୀତି ପାଖରେ । ଗୁରୁଚରଣ ପଟ୍ଟନାୟକ ତାଙ୍କର ଦୁଇଖଣ୍ଡ ପୁସ୍ତକ 'ଜଗତ ଦର୍ଶନରେ ଜଗନ୍ନାଥ' ଓ 'ଜଗନ୍ନାଥ ଦର୍ଶନରେ ଜଗତ' ଜଗନ୍ନାଥ ପ୍ରତୀତିର ଏକ ନୂତନ ଅର୍ଥ ଉଦ୍ଭାବନ କରିଛନ୍ତି । ଜଗନ୍ନାଥଙ୍କୁ ସେ ସାମ୍ୟ, ମୈତ୍ରୀ ଓ ପ୍ରୀତିର ପ୍ରତୀକ ଭାବରେ ନେଇ ସେହି ଲକ୍ଷ୍ୟ ଦିଗରେ ବିଶ୍ୱର ମାନବ ସମାଜର ଐତିହାସିକ ଅଗ୍ରଗତିକୁ ଦେଖାଇଛନ୍ତି । ଏହି ଅର୍ଥକୁ ସେ ମଣିଷର ନିଜ ଦୃଷ୍ଟିରେ ସୃଷ୍ଟ ଜଗନ୍ନାଥଙ୍କଠାରୁ ପୃଥକ୍ କରିଛନ୍ତି । ମଣିଷ ଦୃଷ୍ଟିରେ ସୃଷ୍ଟ ଜଗନ୍ନାଥଙ୍କୁ ରୂପ, ଗୁଣ, ଭାବ, ଶକ୍ତି, ପୌତ୍ତଳିକତା ଆରୋପ କରି ତାଙ୍କର ପୂଜା ଆରାଧନା ପାଇଁ ମଣିଷ ନାନା ବିଧିବିଧାନ, ପରମ୍ପରା ସୃଷ୍ଟି କରିଛି । ପୌତ୍ତଳିକ ଜଗନ୍ନାଥଙ୍କଠାରୁ ଜଗନ୍ନାଥ ଚେତନା ବା ଭାବ ପୃଥକ୍ ବୋଲି ନାନା ଶୈଳୀରେ ଗୁରୁଚରଣ ବ୍ୟକ୍ତ କରିଛନ୍ତି । ଜଗନ୍ନାଥ ଭାବକୁ ସେ ବିଶ୍ୱ ମାନବିକତାର ପ୍ରକାଶ ଭାବେ ନେଇ ସାମ୍ୟ, ମୈତ୍ରୀ ଓ ପ୍ରୀତି ସହ ସଂଶ୍ଳିଷ୍ଟ କରିଛନ୍ତି । ଜଗନ୍ନାଥ ଭାବକୁ ମହାମାନବିକତାର ଚେତନା ଭାବେ ନେଇ ସଭ୍ୟତା କିପରି ସେହି ଲକ୍ଷ୍ୟ ଦିଗରେ ଅଗ୍ରଗତି କରୁଛି ତାହା ସେ ଉଲ୍ଲେଖ କରିଛନ୍ତି । ତାଙ୍କରି ଭାଷାରେ କହିଲେ- "ସାମ୍ୟ, ମୈତ୍ରୀ, ପ୍ରୀତିର ଭାବରେ ଜଗନ୍ନାଥ ମୂର୍ତ୍ତିମନ୍ତ । ଏହି ଭାବନା ସ୍ୱର୍ଗପ୍ରାପ୍ତି ଭଳି ବିଶ୍ୱାସର ଶୀତଳ ଗୁହରେ ବିଲୀନ ହୁଏ ନାହିଁ । * * * ପ୍ରକୃତିର ଅବିରାମ ପରିବର୍ତ୍ତନ ଓ ସମାଜର ନିରବଚ୍ଛିନ୍ନ ବିକାଶ ମଧ୍ୟରେ ଅହରହ ସୃଷ୍ଟ ଦ୍ୱନ୍ଦ୍ୱ, ଅର୍ଥାତ୍ ଅସାମ୍ୟକୁ କ୍ରମାଗତ ଅତିକ୍ରମ କରିବାର ଅବିଶ୍ରାମ ଉଦ୍ୟମ ଭିତରେ ସଦା ପ୍ରଜ୍ୱଳିତ ସେହି ଅନିର୍ବାଣ ଶିଖା । ତାହା ହିଁ ହେଲା ମାନବ ସମାଜର ମୁକ୍ତି । ଏହି ମୁକ୍ତି ହେଲା ଅସରନ୍ତି ବିକାଶର ପ୍ରକ୍ରିୟା । ଜଗନ୍ନାଥ (ସାମ୍ୟ, ମୈତ୍ରୀ, ପ୍ରୀତି) ଦର୍ଶନରେ କୌଣସି ଶେଷ ନାହିଁ, ତାର କୌଣସି ପୂର୍ଣ୍ଣତା ନାହିଁ ଓ ତା'ର ମାନବିକତାର କୌଣସି

ପରିସମାପ୍ତି ନାହିଁ । ଚିର ନୂତନ ଜ୍ଞାନ, ବିଜ୍ଞାନ, ଅଭିଜ୍ଞତାର ଉପଲବ୍ଧି ଭିତରେ ଅନବରତ ଆପଣାକୁ ବଳିଷ୍ଠ, ଉନ୍ନତ, ପରିପୁଷ୍ଟ ଓ ପ୍ରତିହତ କରିଚାଲିଥିବ ମାନବ ସମାଜ ଓ ତାର ଦର୍ଶନ । ଏହା ହିଁ ଜଗନ୍ନାଥ ଚେତନା । ରାମ, କୃଷ୍ଣ, ଆଲ୍ଲା, ଈଶ୍ୱର ଆଦି ଭାବରେ ଯେତେ ଭଗବାନ ଅଛନ୍ତି, ଯେତେବେଳେ ସେମାନଙ୍କର ବିଲୋପ ଘଟିବ, କେବଳ ସେତିକିବେଳେ ବିକଶିତ ହେବ-ଗୋଟିଏ ମାତ୍ର ଧର୍ମ-ମହାମାନବିକତା-ଜଗନ୍ନାଥ-ସାମ୍ୟ ମୈତ୍ରୀ ପ୍ରୀତି ସାରା ବିଶ୍ୱରେ ।" ("ଜଗନ୍ନାଥ ଦର୍ଶନରେ ଜଗତ" ମୁଖବନ୍ଧ) ।

ଜଗନ୍ନାଥ ଚେତନାକୁ ଲେଖକ ଏକ ମହାମାନବିକତାର ଭାବନା ଭାବରେ ଗ୍ରହଣ କରି ସାମ୍ୟ ମୈତ୍ରୀ ପ୍ରୀତି ସହ ତାକୁ ସମାନ କରିଛନ୍ତି । ଏହି ଚେତନା ଯେ ଜଗନ୍ନାଥ ସଂସ୍କୃତିର ବହୁ ଊର୍ଦ୍ଧ୍ୱରେ ଓ ପ୍ରାୟତଃ ଜଗନ୍ନାଥ ସଂସ୍କୃତିର ବିପରୀତ ତାହା କୁହାଯାଇପାରେ । 'ତେବେ ଜଗନ୍ନାଥ ସଂସ୍କୃତିରୁ ମୁକ୍ତିଦ୍ୱାରା ଜଗନ୍ନାଥ ଚେତନାର ବିକାଶ ହେବ' ଏକ ପାରିଭାଷିକ ଅସ୍ପଷ୍ଟତା ଆଣିଥାଏ । ଏହାକୁ ଜଗନ୍ନାଥ ଚେତନା ନ କହି ମହାମାନବିକ ଚେତନା ବା ବିଶ୍ୱ ଭାବ କହିଲେ ଅଧିକ ସ୍ପଷ୍ଟ ହେବ । ଜଗନ୍ନାଥ ଭାବନା ସହ ମୂର୍ତ୍ତିପୂଜା, ଧାର୍ମିକ ବିଶ୍ୱାସ, ହିନ୍ଦୁତ୍ୱ ପରମ୍ପରା ସଂଶ୍ଳିଷ୍ଟ ହୋଇରହିଛି । ଏହା ଏକ ମହାମାନବିକ ଚେତନା, ବିଶ୍ୱଦୃଷ୍ଟି, ସାମ୍ୟ ମୈତ୍ରୀ ପ୍ରୀତିପୂର୍ଣ୍ଣ ବିଶ୍ୱର ଯଥାର୍ଥ ଅର୍ଥ ବା ପ୍ରତୀକ ହୋଇପାରିବ ନାହିଁ । ଆଜି ମାନବ ସଭ୍ୟତା ଯେଉଁ ସ୍ଥିତିକୁ ଆସିଛି ସେଥିରେ ବିକାଶ, ବିଜ୍ଞାନ, ବିଚାରଶୀଳତା ଓ ବିଶ୍ୱଭାବର ଆବେଦନ ସାର୍ବଜନୀନ ଭାବେ ରହିଛି, ତାହା ହିଁ ମହାମାନବିକ ଭାବ । ନୈତିକତା, ସମତା ଓ ସମ୍ବେଦନଶୀଳ ଦୃଷ୍ଟି ମହତ୍ତର ଜୀବନବୋଧର ପରିଚାୟକ । ଧାର୍ମିକ ଆବେଗ, ଚମତ୍କାରିତା, ପାରଲୌକିକ ଦୃଷ୍ଟିର ଆବେଦନ ସଭ୍ୟ ଜୀବନଦୃଷ୍ଟିରୁ ଅପସରି ଯିବାରେ ଲାଗିଛି ।

ଉପସଂହାରରେ ସମାଜକୁ ଉନ୍ନତ, ପ୍ରଗତିଶୀଳ, ନ୍ୟାୟପୂର୍ଣ୍ଣ ଓ ସମତାଭିତ୍ତିକ କରିବାକୁ ହେଲେ ଉଚ୍ଚ କର୍ମସଂସ୍କୃତି, ବୈଜ୍ଞାନିକ ବିଚାରବୋଧ ଓ ମାନବବାଦୀ ଜୀବନଦୃଷ୍ଟିର ପ୍ରସାର ଆବଶ୍ୟକ । ଏସବୁ ମୂଲ୍ୟବୋଧ ଧର୍ମନିରପେକ୍ଷ ଓ ସାର୍ବଜନୀନ । ସାମାଜିକ ବିକାଶଧାରାରେ ଧର୍ମଭାବନାକୁ ନେଇ ସମାଜର ଚାରୋଟି ସ୍ତର ବିଷୟରେ ସମାଜବିଜ୍ଞାନୀମାନେ ମତ ଦେଇଥାନ୍ତି । ସଭ୍ୟତାର କ୍ରମବିକାଶଧାରାରେ ଧର୍ମକୁ ନେଇ ପ୍ରାକ୍ ଧର୍ମୀୟ ସମାଜ, ଧର୍ମୀୟ ସମାଜ, ଧର୍ମନିରପେକ୍ଷୀୟ ସମାଜ ଓ ଧର୍ମୋତ୍ତର ସମାଜକୁ କ୍ରମ ଉତ୍ତରଣ ହୋଇଚାଲିଛି । ଆଗାମୀ ସମାଜ ହେବ ଏକ ଧର୍ମୋତ୍ତର(Post-religious) ସମାଜ । ଧର୍ମୋତ୍ତର ସମାଜ ଏକ ବିଶ୍ୱଦୃଷ୍ଟିର ସୂଚନା ଦିଏ, ଯେଉଁଠି ଧର୍ମଭିତ୍ତିକ ସଂକୀର୍ଣ୍ଣ

ଭେଦଭାବରୁ ମଣିଷ ସମାଜ ମୁକ୍ତ ହୋଇପାରିବ । ବିଶ୍ୱ ସମାଜ, ଆନ୍ତର୍ଜାତିକ ମନୋଭାବ ଓ ସାର୍ବଜନୀନ ଜୀବନଦୃଷ୍ଟି ଭିତରେ ମାନବଜାତିର ଏକତ୍ୱ ପ୍ରତିଷ୍ଠା ଲାଭକରିବ । ରାଷ୍ଟ୍ରୀୟତା, ଜାତି, ଧର୍ମକୁ ଆଧାର କରି ମାନବ ସମାଜ ଅତୀତରେ ଯେଉଁ ଭାଗ ଭାଗ ହୋଇଯାଇଛି ଓ ମଣିଷ ମଣିଷ ଭିତରେ ଭେଦଭାବ ଓ ବିଦ୍ୱେଷର ପ୍ରାଚୀର ସୃଷ୍ଟି ହୋଇଛି ତାହା ଦୂର ହେଲେ ମାନବ ସମାଜର ମୁକ୍ତି ସମ୍ଭବ ହେବ । ଏହି ମୁକ୍ତିଦ୍ୱାରା ଏକ ବିଶ୍ୱ, ଏକ ମାନବ ସମାଜର ବାର୍ତ୍ତା ସାର୍ବଜନୀନ ହେବ । ଆମ ପୂର୍ବପୁରୁଷମାନଙ୍କର ଧାର୍ମିକ ବିଶ୍ୱାସ, ଉପାସନା, ପରମ୍ପରା ଇତିହାସର ବସ୍ତୁ ହେବା ସହ ସେସବୁ ଦିନେ ମିଉଜିୟମ୍‌ର ଦର୍ଶନୀୟ ବସ୍ତୁ ହେବେ । ଏହି ପୃଷ୍ଠଭୂମିରେ କଳ୍ପିତ ଦିଅଁ ଦେବତାର ପ୍ରାସଙ୍ଗିକତା ଅପାଂକ୍ତେୟ ହେବ ଓ ଏହା ପ୍ରାଚୀନ ଲୋକଙ୍କର କାହାଣୀ ଭାବେ ଇତିହାସର ବିଷୟ ହେବ । ବିଶ୍ୱ ଦୃଶ୍ୟପଟରେ ଆଞ୍ଚଳିକ ପରମ୍ପରା, କାଳ୍ପନିକ ଦିଅଁ ଦେବତା ଓ ଦେଉଳ ମନ୍ଦିର ଅର୍ଥହୀନ ହୋଇ କେବଳ ପ୍ରାଚୀନ ବିଶ୍ୱାସ ଓ କୀର୍ତ୍ତିର ପରିଚୟ ନେବେ ।



# ବୋଧଗୟାର ସ୍ମୃତି ଓ ବୁଦ୍ଧ

ବିଶ୍ୱକବି ରବୀନ୍ଦ୍ରନାଥ ଓ ସର୍ବପଲ୍ଲୀ ରାଧାକ୍ରିଷ୍ଣନ୍‌ଙ୍କଦ୍ୱାରା ପ୍ରତିଷ୍ଠିତ "ଭାରତୀୟ ଦର୍ଶନ କଂଗ୍ରେସ" ଜାତୀୟ ସ୍ତରରେ ଏକ ପ୍ରମୁଖ ବୌଦ୍ଧିକ ସଙ୍ଗଠନ । ଭାରତୀୟ ଦର୍ଶନ କଂଗ୍ରେସର ଅଧିବେଶନରେ ଭାରତର ବିଭିନ୍ନ ବିଶ୍ୱବିଦ୍ୟାଳୟ ଓ ମହାବିଦ୍ୟାଳୟର ଦର୍ଶନ ଅଧ୍ୟାପକମାନେ ଯୋଗ ଦେଇ ଦର୍ଶନ ସମ୍ବନ୍ଧୀୟ ନିବନ୍ଧ ବିଭିନ୍ନ ଅଧିବେଶନରେ ପାଠ କରିଥାନ୍ତି । ଦର୍ଶନ କଂଗ୍ରେସର ନବେତମ ଅଧିବେଶନ ବିହାରର ବୋଧଗୟାସ୍ଥିତ ମଗଧ ବିଶ୍ୱବିଦ୍ୟାଳୟ ପରିସରରେ ୨୦୧୬ ଫେବୃୟାରୀ ୧ ରୁ ୪ ପର୍ଯ୍ୟନ୍ତ ଅନୁଷ୍ଠିତ ହୋଇଥିଲା । ଏହି ଅଧିବେଶନରେ 'ଗୁଜୁରାଟ ବିଦ୍ୟାପୀଠ ମହାତ୍ମା ଗାନ୍ଧୀ ଦର୍ଶନ ଏଣ୍ଡୋମେଣ୍ଟ ବକ୍ତୃତା' ପ୍ରଦାନ କରିବାର ସୁଯୋଗ ଏ ଲେଖକ ପାଇଥିଲା । ଏହି ଅବସରରେ ବୋଧଗୟା ଓ ନାଳନ୍ଦା ବିଶ୍ୱବିଦ୍ୟାଳୟ ସଂପର୍କରେ ସୂଚନା ଦେବା ଏହି ଲେଖାଟିର ଉଦ୍ଦେଶ୍ୟ ।

ବୋଧଗୟା ଏକ ପବିତ୍ର ଧର୍ମପୀଠ । କୁହାଯାଏ ଯେ ଗୌତମ ବୁଦ୍ଧ ବୋଧଗୟାଠାରେ ଜ୍ଞାନଦୀପ୍ତ ହୋଇଥିଲେ । ବୋଧଗୟାଠାରେ ବୁଦ୍ଧଙ୍କର ବହୁ ମୂର୍ତ୍ତି, କୀର୍ତ୍ତିସ୍ତମ୍ଭ ଓ ମନ୍ଦିରମାନ ରହିଛି । ତେବେ ଯେଉଁ ସ୍ଥାନରେ ସେ ତାଙ୍କର ସାଧନା କରୁଥିଲେ ସେଠାରେ ଏକ ବିଶାଳ ମନ୍ଦିର ହୋଇଛି ଓ ବୁଦ୍ଧଙ୍କର ସୁଦୀର୍ଘ ମୂର୍ତ୍ତି ରହିଛି । ପ୍ରତିଦିନ ହଜାର ହଜାର ବୌଦ୍ଧଧର୍ମାବଲମ୍ବୀ ଲୋକମାନେ ଏହି ସ୍ଥାନକୁ ଆସି ପ୍ରାର୍ଥନା କରିଥାନ୍ତି ଓ ଭଗବାନ ବୁଦ୍ଧଙ୍କ ପାଖରେ ତାଙ୍କର ଭକ୍ତିନୈବେଦ୍ୟ ଅର୍ପଣ କରିଥାନ୍ତି । ମନ୍ଦିରକୁ ଲାଗିକରି ଏକ ବଡ ଅଶ୍ୱତ୍ଥ ବୃକ୍ଷ ମଧ୍ୟ ରହିଛି । ଏହି ବୃକ୍ଷ ତଳେ ଗୌତମ ବୌଦ୍ଧତ୍ୱ ପ୍ରାପ୍ତ ହୋଇଥିଲେ ବୋଲି ବୌଦ୍ଧଧର୍ମାବଲମ୍ବୀମାନେ ବିଶ୍ୱାସ କରନ୍ତି । ଯେଉଁ ଦେଶମାନଙ୍କରେ ବୌଦ୍ଧଧର୍ମର ପ୍ରସାର ଘଟିଥିଲା, ଯଥା-ଚୀନ୍, ଜାପାନ୍, ଥାଇଲାଣ୍ଡ, ତିବତ୍ ଇତ୍ୟାଦି ସେହି ଦେଶର ବୌଦ୍ଧଧର୍ମାବଲମ୍ବୀମାନେ ଏଠାରେ ସ୍ୱତନ୍ତ୍ର ବୌଦ୍ଧ ମନ୍ଦିରମାନ ମଧ୍ୟ ନିର୍ମାଣ କରିଛନ୍ତି । ତେବେ ମୁଖ୍ୟ ମନ୍ଦିର ଚତୁଃପାର୍ଶ୍ୱରେ ଶହ ଶହ ବୌଦ୍ଧ ସନ୍ନ୍ୟାସୀ ଓ ସାଧାରଣ ଲୋକମାନେ ଏକ ଶାନ୍ତ ପରିବେଶରେ ପ୍ରାତଃକାଳରୁ ରାତ୍ର ପର୍ଯ୍ୟନ୍ତ ଧ୍ୟାନ ଓ ପ୍ରାର୍ଥନାରେ ବସି ରହିବାର

ଦୃଶ୍ୟ ଦେଖିବାକୁ ମିଳେ । ଏହି ମହାବୋଧୀ ମନ୍ଦିର ପରିସରରେ ଯେ କୌଣସି ଧର୍ମର ବ୍ୟକ୍ତି ପ୍ରବେଶ କରି ପ୍ରାର୍ଥନା କରିବାରେ ପ୍ରତିବନ୍ଧକ ନାହିଁ । ସ୍ଥାନଟିର ଗୁରୁତ୍ୱ ଦୃଷ୍ଟିରୁ ଜାତିସଂଘର ଇୟୁନେସ୍କୋ ମହାବୋଧି ମନ୍ଦିରକୁ ଏକ ବିଶ୍ୱ ଐତିହ୍ୟ ବା ୱାର୍ଲଡ ହେରିଟେଜ୍‌ର ମାନ୍ୟତା ପ୍ରଦାନ କରିଛି ।

ବୋଧଗୟାଠାରୁ ପ୍ରାୟ ଶହେ କି.ମି. ଦୂରରେ ରହିଛି ରାଜଗିରି ଓ ସେଠାରୁ ବାର କି.ମି. ଦୂରରେ ନାଳନ୍ଦା । ନାଳନ୍ଦାଠାରେ ଥିଲା ବୌଦ୍ଧ ଗୁରୁକୁଳ ବା ବିଶ୍ୱବିଦ୍ୟାଳୟ । ଏହା ପୃଥିବୀର ପ୍ରଥମ ଆବାସିକ ବିଶ୍ୱବିଦ୍ୟାଳୟ । ପଞ୍ଚମ ଶତାବ୍ଦୀରୁ ଦ୍ୱାଦଶ ଶତାବ୍ଦୀ ପର୍ଯ୍ୟନ୍ତ ନାଳନ୍ଦା ଥିଲା ଏକ ଜ୍ଞାନ-କେନ୍ଦ୍ର । ବିଭିନ୍ନ ଦେଶର ବୌଦ୍ଧଧର୍ମାବଲମ୍ବୀ ବିଦ୍ୟାର୍ଥୀମାନେ ସୁଦୀର୍ଘ ପଥ ଅତିକ୍ରମ କରି ନାଳନ୍ଦାରେ ଅଧ୍ୟୟନ କରିବାକୁ ଆସୁଥିଲେ । ଚାଇନିଜ୍ ପରିବ୍ରାଜକ ହୁଏନ୍‌ସାଂ ଏଠାରେ ବହୁ ବର୍ଷ ରହି ଜ୍ଞାନ-ସାଧନାରେ ବ୍ରତୀ ଥିବା ତାଙ୍କ ଭ୍ରମଣ କାହାଣୀରେ ଉଲ୍ଲେଖ ରହିଛି । ଏଠାରେ ବୌଦ୍ଧଦର୍ଶନ, ବେଦ, ତର୍କଶାସ୍ତ୍ର, ଦର୍ଶନ, ବ୍ୟାକରଣ, ଭାଷା ବିଜ୍ଞାନ, ଚିକିତ୍ସା ବିଜ୍ଞାନ ଇତ୍ୟାଦି ପଢ଼ା ଯାଉଥିବାର ବିଭିନ୍ନ ଭ୍ରମଣ କାହାଣୀରେ ଉଲ୍ଲେଖ ରହିଛି । ବିଭିନ୍ନ ତଥ୍ୟରୁ ଜଣାଯାଏ ଯେ, ଏକଦା ନାଳନ୍ଦା ବିଶ୍ୱବିଦ୍ୟାଳୟରେ ଦଶ ହଜାର ବିଦ୍ୟାର୍ଥୀ ଅଧ୍ୟୟନ କରୁଥିଲେ ଓ ଏଠାରେ ଦୁଇ ହଜାର ଆଚାର୍ଯ୍ୟ ଅଧ୍ୟାପନା କରାଉଥିଲେ । ପ୍ରାୟ ସାତ ଶହ ବର୍ଷ ଧରି ଏଠାରେ ଯେଉଁ ବୌଦ୍ଧିକ ବାୟୁମଣ୍ଡଳ ସୃଷ୍ଟି ହୋଇଥିଲା ତାହା ମାନବ ସଭ୍ୟତାର ଇତିହାସରେ ଏକ ଅଭିନବ ଘଟଣା ଥିଲା । ଭାରତବର୍ଷରେ ବୌଦ୍ଧଧର୍ମ ଏକ ଗଣଧର୍ମରେ ପରିଣତ ହୋଇଥିଲା । ତେବେ ଭାରତବର୍ଷରୁ ବୌଦ୍ଧଧର୍ମର କିପରି ବିଲୋପ ଘଟିଲା ତାହା ଏବେ ବି ଏକ ରହସ୍ୟମୟ ଘଟଣା । କୁହାଯାଏ ଶଙ୍କରଙ୍କ ଆବିର୍ଭାବ ପରେ ବ୍ରାହ୍ମଣବାଦ ପୁନଶ୍ଚ ଦୃଢ଼ ହେଲା ଓ ଧୀରେ ଧୀରେ ବ୍ରାହ୍ମଣ ଶାସକମାନେ ବୌଦ୍ଧଧର୍ମକୁ ଧ୍ୱଂସାଭିମୁଖୀ କରାଇଲେ । ପୂଜକ ଶ୍ରେଣୀ ବିଦେଶୀ ଆକ୍ରମଣକାରୀଙ୍କ ସହାୟତାରେ ବୌଦ୍ଧବିହାର, ବୌଦ୍ଧସ୍ତୂପ ଓ ଶିକ୍ଷାନୁଷ୍ଠାନମାନଙ୍କୁ ଧ୍ୱଂସ କଲେ ଓ ଅନେକ ବୌଦ୍ଧ ପଣ୍ଡିତଙ୍କୁ ହତ୍ୟା କଲେ ବା ବିତାଡିତ କଲେ । ସେହି ଧାରାରେ ନାଳନ୍ଦା ବିଶ୍ୱବିଦ୍ୟାଳୟ ଦ୍ୱାଦଶ ଶତାବ୍ଦୀର ଶେଷ ଭାଗରେ ଧ୍ୱଂସ ପାଇଲା । ଏକ ବିଶାଳ ଅନୁଷ୍ଠାନ ଧ୍ୱଂସ ପାଇଲା ଓ ମାଟି ତଳେ ପୋତି ହୋଇ ଜଙ୍ଗଲ ହୋଇଗଲା ।

ତେବେ ହୁଏନ୍‌ସାଂ ଓ ଅନ୍ୟମାନଙ୍କର ଭ୍ରମଣ କାହାଣୀମାନ ଇଂରାଜୀରେ ଅନୁବାଦ ହେବା ପରେ ନାଳନ୍ଦା ବିଶ୍ୱବିଦ୍ୟାଳୟ ବିଷୟରେ ଜଣାପଡିଲା । ପରାଧୀନ ଭାରତରେ କେତେକ ଇଂରେଜ ପ୍ରତ୍ନତତ୍ତ୍ୱବିତ୍ ୧୯୧୫ ମସିହାରେ ଅନୁମାନ କରି ସେ

ସ୍ଥାନଟିକୁ ଖନନ କରିବାଦ୍ୱାରା ମାଟି ତଳୁ ସେ ବିଶାଳ ବିଶ୍ୱବିଦ୍ୟାଳୟର ଭଗ୍ନାବଶେଷ ଆବିଷ୍କୃତ ହେଲା । ଏବେ ସୁଦ୍ଧା ଖନନ ହୋଇଥିବା ତିରିଶ ଏକର ସ୍ଥାନରୁ ଛ'ଟି ବୁଦ୍ଧ ମନ୍ଦିର, ଏଗାରଟି ପୃଥକ୍ ଛାତ୍ରାବାସ, ବିସ୍ତୃତ ଶ୍ରେଣୀଗୃହ, ଧ୍ୟାନକେନ୍ଦ୍ର, ଚାରୋଟି କୂପର ସନ୍ଧାନ ମିଳିଛି । ବିଭିନ୍ନ ମହଲା ବିଶିଷ୍ଟ କକ୍ଷ, ବିଶାଳ ପାଠାଗାର ମଧ ମାଟି ତଳୁ ବାହାରିଛି । ନାଳନ୍ଦା ବିଶ୍ୱବିଦ୍ୟାଳୟର ଭଗ୍ନାବଶେଷ ବୁଲି ଦେଖିଲାବେଳେ ଗାଇଡ୍‌ଙ୍କ ପାଖରୁ ଅନେକ ବିଷୟ ଜାଣିବାକୁ ପ୍ରୟାସ କରିଥିଲି । ବାକ୍‌ପଟୁ ଗାଇଡ୍ ବିଭିନ୍ନ ସ୍ଥାନକୁ ନେଇ ସେସବୁ ସ୍ଥାନର ତାତ୍ପର୍ଯ୍ୟ ସୁନ୍ଦର ଭାବେ ବ୍ୟାଖ୍ୟା କରୁଥିଲେ । ନାଳନ୍ଦା ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ପୂର୍ବରୁ ସେହି ସ୍ଥାନରେ ବୁଦ୍ଧ ବହୁବାର ରହିଥିବା ବିଷୟ ଗାଇଡ୍ ବୁଝାଉଥିଲେ । ବୁଦ୍ଧଙ୍କ ସମୟରେ ମଗଧ ରାଜ୍ୟର ରାଜଧାନୀ ଥିଲା ରାଜଗିରି । ପାଟଳିପୁତ୍ର ଠାରୁ ରାଜଗିରି ଯିବା ବାଟରେ ବୁଦ୍ଧ ନାଳନ୍ଦାଠାରେ ଥିବା ଆମ୍ବ ବଗିଚା ମଧ୍ୟରେ ଅବସ୍ଥାନ କରୁଥିଲେ । ଏହା ସହ ବୁଦ୍ଧଙ୍କର ପ୍ରିୟ ଶିଷ୍ୟ ସାରିପୁତ୍ତଙ୍କ ନାମରେ ନାଳନ୍ଦା ପରିସରରେ ମଧ୍ୟ ଏକ ବଡ ଆବାସ ସ୍ଥଳ ରହିଛି । ବିଶିଷ୍ଟ ବୌଦ୍ଧ ଦାର୍ଶନିକ ନାଗାର୍ଜୁନ ବି ସେଠାରେ ଦ୍ୱିତୀୟ-ତୃତୀୟ ଶତାବ୍ଦୀରେ ରହି ମାଧ୍ୟମିକ ଦାର୍ଶନିକ ଧାରା ପ୍ରବର୍ତ୍ତନ କରିଥିଲେ । ଗୁପ୍ତ ରାଜବଂଶର ଶାସକମାନେ ନାଳନ୍ଦା ବିଶ୍ୱବିଦ୍ୟାଳୟର ପ୍ରତିଷ୍ଠା ଓ ପରିଚାଳନା ପାଇଁ ସମସ୍ତ ସାହାଯ୍ୟ ଯୋଗାଇଥିଲେ । ନାଳନ୍ଦା ବିଶ୍ୱବିଦ୍ୟାଳୟକୁ ପଢ଼ିବାକୁ ଆସୁଥିବା ଉତ୍ସାହୀ ବିଦ୍ୟାର୍ଥୀମାନଙ୍କୁ କେତେକ ପରୀକ୍ଷାର ସମ୍ମୁଖୀନ ହେବାକୁ ପଡୁଥିଲା । ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବା ପରେ ଯାଇ ସେମାନଙ୍କୁ ନାଳନ୍ଦାରେ ଶିକ୍ଷାର୍ଥୀ ହେବାର ସୁଯୋଗ ମିଳୁଥିଲା । ଯେଉଁଠି ପାଠାଗାର ଥିଲା ସେଠାକୁ ଗାଇଡ୍ ନେଇ ବୁଝାଇଲେ ଯେ ସେଠାରେ ଲକ୍ଷାଧିକ ପୋଥି ରହିଥିଲା । ସେ ଯୁଗରେ କାଗଜ ନଥିଲା, କେବଳ ତାଳପତ୍ରରେ ଯାହା ଲେଖା ଯାଉଥିଲା । ପାଠାଗାରକୁ ପୋଡି ଦିଆଯାଇଥିବା ବା ଧ୍ୱଂସ କରାଯାଇଥିବା ଗାଇଡ୍ ବୁଝାଇଲେ । ଗୃହଗୁଡ଼ିକ ସବୁ ପୋଡା ଇଟାରେ ନିର୍ମିତ ହୋଇଥିଲା ଓ ସେହି ଇଟାରେ ଧୂଆଁର ଛାପ ରହିଥିବାରୁ ଅନୁମାନ କରାଯାଏ ଯେ, ସେ ସବୁକୁ ପୋଡାଯାଇଛି ।

ନାଳନ୍ଦା ବିଶ୍ୱବିଦ୍ୟାଳୟ ପାଖରେ ରହିଛି ପ୍ରତ୍ନତାତ୍ତ୍ୱିକ ମିଉଜିୟମ୍ । ମିଉଜିୟମ୍‌ରେ ଶତାଧିକ ବୌଦ୍ଧ ମୂର୍ତ୍ତି ସଂଗୃହୀତ ହୋଇ ରଖାଯାଇଛି । ତେବେ ମୂର୍ତ୍ତିଗୁଡ଼ିକ ଅକ୍ଷତ ଅବସ୍ଥାରେ ନାହିଁ । ମୂର୍ତ୍ତିଗୁଡ଼ିକର ମୁଣ୍ଡ ଭଙ୍ଗାଯାଇଛି ବା ଭାଙ୍ଗିବାର ଉଦ୍ୟମ ହୋଇଛି । ସେହି ମିଉଜିୟମ୍‌ରେ ବୌଦ୍ଧ ମୂର୍ତ୍ତି ସହ କେତେକ ହିନ୍ଦୁ ଦେବ-ଦେବୀଙ୍କର ମୂର୍ତ୍ତି ବି ରହିବାର ଦେଖିବାକୁ ମିଳିଲା । ଏହା ବ୍ୟତୀତ ସେହି ସମୟର ବୁଦ୍ଧଙ୍କ ବାଣୀ ଥିବା କେତେକ

ଶିଳାଲେଖ, କେତେକ ତମ୍ବାପାତ୍ର, ମୁଦ୍ରା ଇତ୍ୟାଦି ମଧ୍ୟ ସେଠାରେ ରଖାଯାଇଛି । ବିଭିନ୍ନ ଇଟାରେ ଖୋଦନ କରି ବୁଦ୍ଧଙ୍କର ଦର୍ଶନ, ବିଭିନ୍ନ ଛବି, ବାଣୀ, ଚିତ୍ରପଟ ରହିଥିବା ଦୃଷ୍ଟି ଆକର୍ଷଣ କରିଥିଲା । ବୁଦ୍ଧଙ୍କର ମୌଳିକ ବିଚାରମାନ ପାଲି ବା ସଂସ୍କୃତ ଭାଷାରେ ଲେଖାଥିବା ଗାଇଡ୍‌ଙ୍କଠାରୁ ଜାଣିବାକୁ ମିଳିଲା ।

ନାଳନ୍ଦା ପରିସରରେ ଥିବା ହୁଏନ୍‌ସାଂ ମେମୋରିଆଲ୍ ହଲ୍ ଅତି ଆକର୍ଷଣୀୟ ହୋଇଛି । ଅବଶ୍ୟ ଏହା ସ୍ୱାଧୀନ ଭାରତରେ ଭାରତ ଓ ଚୀନ ସରକାରଙ୍କ ମିଳିତ ସହଯୋଗରେ ନିର୍ମିତ ହୋଇଛି । ଐତିହାସିକ ତଥ୍ୟ ଅନୁଯାୟୀ ଏହି ବିଦ୍ୟାର୍ଥୀ ପରିବ୍ରାଜକ ଜ୍ଞାନାର୍ଜନ ପାଇଁ ଚୀନ୍‌ରୁ ଚାରି ବର୍ଷ ଯାତ୍ରା କରି ୬୩୩ରେ ନାଳନ୍ଦାରେ ପହଞ୍ଚିଥିଲେ । ନାଳନ୍ଦାରେ ପ୍ରାୟ ବାର ବର୍ଷ ରହି ବୌଦ୍ଧଧର୍ମର କେତେକ ଗ୍ରନ୍ଥ ନେଇ ନିଜ ଦେଶକୁ ପ୍ରତ୍ୟାବର୍ତ୍ତନ କରିଥିଲେ । ନିଜ ଦେଶରେ ପହଞ୍ଚିବା ପରେ ଶେଷ ଜୀବନ ପର୍ଯ୍ୟନ୍ତ ବୌଦ୍ଧ ଗ୍ରନ୍ଥରାଜିକୁ ସେ ଚାଇନିଜ୍ ଭାଷାରେ ଅନୁବାଦ କରିଥିଲେ । ସେ ଏଠାରେ ବିଦ୍ୟାର୍ଥୀ ଥିଲେ ଓ ପରେ ଅଧ୍ୟାପନା କରିଥିବା ଜଣାଯାଏ । ତାଙ୍କ ଭ୍ରମଣ କାହାଣୀରୁ ସେ ସମୟର ଭାରତର ସାମାଜିକ, ସାଂସ୍କୃତିକ ଓ ରାଜନୈତିକ ପରିସ୍ଥିତି ସମ୍ବନ୍ଧରେ ବହୁ ତଥ୍ୟ ମିଳେ ।

ବୌଦ୍ଧଧର୍ମ ଓ ବୌଦ୍ଧଦର୍ଶନକୁ ଆଧାର କରି ଭାରତବର୍ଷରେ ଯେ ଏତେ ବଡ ଏକ ଶୈକ୍ଷିକ ପରିବେଶ ସାତ ଆଠ ଶତାବ୍ଦୀ ଧରି ଗଢି ଉଠିଥିଲା ତାହା ଏକ ବିସ୍ମୟ ମନେହୁଏ । ଯଦି ଏହି ଶୈକ୍ଷିକ ପରମ୍ପରା ସାରା ଦେଶରେ ପରିବ୍ୟାପ୍ତ ହୋଇ ଚାଲୁ ରହିଥାନ୍ତା ତେବେ ସମ୍ଭବତଃ ଆମ ଦେଶ ପୃଥିବୀରେ ଅଦ୍ୱିତୀୟ ସ୍ଥାନ ନେଇଥାନ୍ତା । କିନ୍ତୁ ହାୟ ! ଭାରତବର୍ଷରୁ ବୌଦ୍ଧଧର୍ମକୁ ଲୋପ କରାଗଲା ଓ ବୌଦ୍ଧ ବିହାର ଓ ଗୁରୁକୁଳମାନଙ୍କୁ ଧ୍ୱଂସ କରାଗଲା । ସେ ସମୟରେ ଧାର୍ମିକ ଅସହିଷ୍ଣୁତା ପାଖରେ ଏକ ମାନବବାଦୀ ଅହିଂସ ଧର୍ମ ନିଜକୁ ରକ୍ଷା କରିପାରିଲା ନାହିଁ । ସେହିପରି ସେ ଯୁଗରେ ବିଜ୍ଞାନଭିତ୍ତିକ ଲୋକାୟତ ଦର୍ଶନକୁ ମଧ୍ୟ ନଷ୍ଟ କରାଗଲା ଓ ଚାର୍ବାକ୍‌ଙ୍କର ସମସ୍ତ କୃତିକୁ ଧ୍ୱଂସ କରାଗଲା । ବୌଦ୍ଧଧର୍ମ ଓ ଦର୍ଶନ ଯେହେତୁ ଚୀନ୍, ଜାପାନ୍, ତିବତ୍, କୋରିଆ, ସିଙ୍ଗାପୁର, ଶ୍ରୀଲଙ୍କା ଇତ୍ୟାଦି ରାଷ୍ଟ୍ରମାନଙ୍କୁ ପ୍ରସାରିତ ହୋଇଥିଲା ବୌଦ୍ଧଧର୍ମ ଏକ ଜୀବନ୍ତ ଧର୍ମ ଓ ଏକ ଉଚ୍ଚାଙ୍ଗ ଦର୍ଶନ ଭାବରେ ତିଷ୍ଠି ରହିଲା । କେତେକ ଐତିହାସିକଙ୍କ ମତରେ ବୌଦ୍ଧଧର୍ମ ଯେଉଁ ଦେଶକୁ ଯାଇଛି ସେଠାରେ ଜୀବନର ମାନ ଉନ୍ନତ ହୋଇଛି । ଭାରତବର୍ଷରୁ ବୌଦ୍ଧଧର୍ମ ଲୋପ ପାଇବାର ପରିଣାମରୁ ସବୁ କ୍ଷେତ୍ରରେ ଏକ କ୍ଷୟଶୀଳ ପରିବେଶ ସୃଷ୍ଟି ହେଲା ।

ସେହିପରି ଚାର୍ବାକ୍‌ଙ୍କର ସମସ୍ତ କୃତିକୁ ଧ୍ୱଂସ କରାଯିବା ଜାତୀୟ ଅବକ୍ଷୟ ପାଇଁ ପଥ ପରିଷ୍କାର କରିଥିଲା । ପାରଲୌକିକ ଜୀବନଦୃଷ୍ଟି, ପ୍ରତିମାପୂଜା, ଜାତିବାଦୀ ଭେଦଭାବକୁ ଲୋକାୟତ ଦର୍ଶନ ବିରୋଧ କରିଆସିଥିଲା । ଚାର୍ବାକ୍ ଦର୍ଶନର ସମସ୍ତ କୃତି ଧ୍ୱଂସ ପାଇବାର ଦୁଇ ହଜାର ବର୍ଷ ପରେ ଚାର୍ବାକ୍ ଦର୍ଶନକୁ ଅନ୍ୟ ଦର୍ଶନରେ କରାଯାଇଥିବା ସମାଲୋଚନାରୁ ଚାର୍ବାକ୍ ଦର୍ଶନ ସଂପର୍କରେ ପରିକଳ୍ପନା କରାଗଲା । ଏକ ଦର୍ଶନର ମହତ୍ତର ଭାବନା ସକଳକୁ ସମାଲୋଚନା କରାଯାଏ ନାହିଁ । ଏକ ଦର୍ଶନର କୌଣସି ଦୁର୍ବଳ ଭାବନାକୁ ସମାଲୋଚନା କରାଯିବା ଦାର୍ଶନିକ ପରମ୍ପରାର ସାଧାରଣ ବିଧି । କେତେକ ସମାଲୋଚନାରୁ ଏକ ଦର୍ଶନର ମହତ୍ତର ଭାବନାର ମୂଲ୍ୟାୟନ କରାଯିବା ସମ୍ଭବ ନୁହେଁ । ସଂପ୍ରତି ଯେଉଁ କେତେକ ଗବେଷକ ଚାର୍ବାକ୍‌ଙ୍କ ଦାର୍ଶନିକ ମତ ସଂପର୍କରେ ପାଣ୍ଡିତ୍ୟପୂର୍ଣ୍ଣ ଗ୍ରନ୍ଥମାନ ରଚନା କରିଛନ୍ତି ସେଥିରୁ ସେହି ଦର୍ଶନର ବିଜ୍ଞାନଭିତ୍ତିକ ଚିନ୍ତନମାନ ସ୍ପଷ୍ଟ ହେବାରେ ଲାଗିଛି । ୟୁରୋପରେ ସପ୍ତଦଶ ଶତାବ୍ଦୀରେ ବିଜ୍ଞାନର ଯୁଗ ଆରମ୍ଭ ହେଲା । ତାହା ପୂର୍ବରୁ ଏକ ବୌଦ୍ଧିକ କ୍ରାନ୍ତି ୟୁରୋପୀୟ ରିନାସାଁ ବା ନବଜାଗରଣ ମଧ୍ୟ ଦେଇ ବିକଶିତ ହୋଇଥିଲା । ନବଜାଗରଣ ଓ ଜ୍ଞାନଦୀପ୍ତି(ଏନ୍‌ଲାଇଟେନ୍‌ମେଣ୍ଟ) ସାଂସ୍କୃତିକ ଆଲୋଡନରୁ ବିଜ୍ଞାନର ଯୁଗ ଆରମ୍ଭ ହୋଇଥିଲା । ଭାରତବର୍ଷରେ ଯଦି ଲୋକାୟତ ଦର୍ଶନର ପ୍ରସାର ହୋଇଥାନ୍ତା, ତେବେ ସମ୍ଭବତଃ ୟୁରୋପରେ ବିଜ୍ଞାନର ଯୁଗ ଆରମ୍ଭ ହେବାର ବହୁ ପୂର୍ବରୁ ଭାରତବର୍ଷରେ ବିଜ୍ଞାନର ବିକାଶ ହୋଇପାରିଥାନ୍ତା । କିନ୍ତୁ ହାୟ ! ଲୋକାୟତ ଦର୍ଶନ ଓ ତାର ବୈଚାରିକ ତତ୍ତ୍ୱମାନଙ୍କୁ ବ୍ରାହ୍ମଣ୍ୟବାଦ ଧ୍ୱଂସ କଲା । ବୌଦ୍ଧଧର୍ମ ଓ ଲୋକାୟତ ଦର୍ଶନ ବହୁ ଅତୀତରେ ମାନବବାଦ ଓ ବିଜ୍ଞାନଭିତ୍ତିକ ବିଚାରର ଯେଉଁ ପରିବେଶ ସୃଷ୍ଟି କରିଥିଲେ ତାହାର ବିଲୋପ ଭାରତବର୍ଷ ପାଇଁ ଦୁର୍ଭାଗ୍ୟର କାଳରାତ୍ରି ସୃଷ୍ଟି କଲା । ରାଜନୈତିକ ପରାଧୀନତା, ସାଂସ୍କୃତିକ ଅବକ୍ଷୟ ଓ ଜାତିବାଦୀ ଭେଦଭାବ ଶହ ଶହ ବର୍ଷ ଧରି ଜନଜୀବନକୁ ଅନ୍ଧକାର କରି ରଖିଲା ।

ସୁଖର କଥା ଡ. ବାବାସାହେବ ଆମ୍ବେଦକରଙ୍କର ଆବିର୍ଭାବ ଭାରତୀୟ ଜନଜୀବନରେ ଏକ କ୍ରାନ୍ତିର ସମ୍ଭାବନା ସୃଷ୍ଟି କରିଛି । ବୁଦ୍ଧଙ୍କର ଏକ ବାଣୀ ଯାହାର ସାର୍ବଜନୀନ ଓ ସର୍ବକାଳୀନ ମହତ୍ତ୍ୱ ରହିଛି ସେହି ବାଣୀଟି ଏଠାରେ ଉଦ୍ଧାର କରୁଛି । ତାହା ହେଲା- "ତୁମେ ଯାହା ପଢିଛ କିମ୍ବା ଯାହା ତୁମକୁ କୁହାଯାଇଛି (ତାହା ମୁଁ କହିଥିଲେ ମଧ୍ୟ) ତାହା ବିଶ୍ୱାସ କରିନିଅ ନାହିଁ । ଯାହା ପ୍ରାଚୀନ ପାଣ୍ଡୁଲିପିରେ କୁହାଯାଇଛି, ଯାହା ତୁମ ରାଜ୍ୟରେ ବିଶ୍ୱାସ କରାଯାଉଛି, ଯାହା ପିଲାଟି ବେଳୁ ବିଶ୍ୱାସ କରିବାକୁ ତୁମକୁ

କୁହାଯାଇଛି ତାହା ବିଶ୍ୱାସ କରିନିଅ ନାହିଁ । ସତ୍ୟ ବିଷୟରେ ଅନୁଶୀଳନ କର, ସେହି ଅନୁସନ୍ଧାନରୁ ଯଦି ଅନୁଭବ କର ଯେ, ଏହି ଭାବନା ପ୍ରତ୍ୟେକଙ୍କର ମଙ୍ଗଳ କରିପାରିବ, ତେବେ ତାହା ବିଶ୍ୱାସ କର । ଯେଉଁ ସତ୍ୟରେ ଉପନୀତ ହେଲ, ସେହି ଆଦର୍ଶରେ ଜୀବନକୁ ପରିଚାଳିତ କର, ଅନ୍ୟମାନେ ସେହି ଆଦର୍ଶରେ ବଞ୍ଚିବା ପାଇଁ ସେମାନଙ୍କୁ ସାହାଯ୍ୟ କର ।”

ବୁଦ୍ଧଙ୍କର ଏହି ବକ୍ତବ୍ୟଟି ଏକ ମହତ୍ତର ଜୀବନବୋଧର ସୂଚନା ଦିଏ । ଜ୍ଞାନବିଜ୍ଞାନର ବିକାଶ କ୍ଷେତ୍ରରେ ମୁକ୍ତ ମନ, ସତ୍ୟନିଷ୍ଠତା ଓ ବିଚାରଶୀଳ ଦୃଷ୍ଟି ନିର୍ଣ୍ଣାୟକ ମନେହୁଏ । ବୁଦ୍ଧ ତାଙ୍କ ସାମଗ୍ରିକ ବିଚାର ପରିପ୍ରେକ୍ଷୀରେ କୌଣସି ପାରଲୌକିକ ବିଶ୍ୱାସ, ଅତୀନ୍ଦ୍ରିୟ ସ୍ଥିତିର ଅବତାରଣା କରିନାହାନ୍ତି ଯାହା ସାଧାରଣତଃ ଧର୍ମ ସହ ସଂଶ୍ଳିଷ୍ଟ ହେବା ଦେଖାଯାଏ । ସେହିପରି ଜୀବନପ୍ରବାହରୁ ସକଳ ଦୁଃଖ ଦୁର୍ଦ୍ଦଶାକୁ ଦୂର କରିବାକୁ ସେ ସର୍ବଦା ପ୍ରାଧାନ୍ୟ ଦେଇଛନ୍ତି । ଏକ ଦୁଃଖରହିତ ଜୀବନ ପାଇଁ ସେ ଯେଉଁ ଗମ୍ଭୀର ସଂପୃକ୍ତି ବ୍ୟକ୍ତ କରିଛନ୍ତି ତାହା ଏକ ଅନନ୍ୟ ମାନବବାଦୀ ଜୀବନବୋଧ କହିଲେ ଅତ୍ୟୁକ୍ତି ହେବ ନାହିଁ । ଏକ ବାସ୍ତବବାଦୀ ଓ ନ୍ୟାୟନିଷ୍ଠ ଜୀବନ ନିର୍ବାହ ପାଇଁ ବୁଦ୍ଧ ଗଭୀର ନିବେଦନ ପ୍ରକାଶ କରିଛନ୍ତି । ଜୀବନ ପ୍ରତି ଓ ସମାଜ ପ୍ରତି ସର୍ବଦା ଏକ ସକାରାତ୍ମକ ଦୃଷ୍ଟିଭଙ୍ଗୀ ପୋଷଣ କରିବାକୁ ପ୍ରେରଣା ଦେଇଛନ୍ତି । କୌଣସି ଭାବନାକୁ ଶାଶ୍ୱତ ବା ଚିରନ୍ତନ ବୋଲି ଗ୍ରହଣ ନକରି ଏହାକୁ ସାଂପ୍ରତିକ ଜ୍ଞାନର ମାନଦଣ୍ଡରେ ମୂଲ୍ୟାୟନ କରିବାକୁ ସେ ଭାବନା ବ୍ୟକ୍ତ କରିଛନ୍ତି । ଅର୍ଥାତ୍ ଜ୍ଞାନର ଦିଗନ୍ତ ଯେ ଉନ୍ମୁକ୍ତ ଓ ଏକ କ୍ରମ-ପ୍ରସାରିତ ଧାରା ଏହି ସତ୍ୟରେ ବିଶ୍ୱାସ ରଖିଛନ୍ତି । ଜ୍ଞାନ, ବିଜ୍ଞାନ, ସତ୍ୟ, ନ୍ୟାୟ, ନୀତିବୋଧ ସାମାଜିକ ବିକାଶଧାରାରେ ଯେ ସର୍ବଦା ଅଗ୍ରଗାମୀ ଏହିପରି ଏକ ଜୀବନଦର୍ଶନର ଝଲକ ବୁଦ୍ଧ ବ୍ୟକ୍ତ କରିଛନ୍ତି । ମାନବୀୟ ଚେତନା ହିଁ ସକଳ ମୂଲ୍ୟାୟନର ମାନଦଣ୍ଡ ଓ ବିକାଶର ଦିଗ୍‌ଦର୍ଶକ ଏହା ବୁଦ୍ଧ ତାଙ୍କ ତତ୍ତ୍ୱ ଆଧାରରେ ଦର୍ଶାଇଛନ୍ତି ।

ମୋଟଉପରେ ବୁଦ୍ଧ ଏକ ମାନବବାଦୀ ଜୀବନଦର୍ଶନ ଓ ମହତ୍ତର ଜୀବନବୋଧର ସାର୍ବଜନୀନ ଚିତ୍ର ପ୍ରଦାନ କରିଛନ୍ତି ।



# ବୈଚାରିକ କ୍ରାନ୍ତି ଓ ବିକାଶ

ମାନବ ସଭ୍ୟତା ଆଜି ଯେଉଁ ସ୍ଥିତିରେ ପହଞ୍ଚିଛି ତାହା ପଶ୍ଚାତରେ ଏକ ସୁଦୀର୍ଘ ଇତିହାସ ରହିଛି । ଏକ ଆଦିମ ସ୍ଥିତିରୁ ନାନା ପରିବର୍ତ୍ତନ ଓ ବିକାଶର ସ୍ତର ଦେଇ ସଭ୍ୟତା ଆଜିର ସ୍ତରକୁ ଆସିଛି । ସଭ୍ୟତାର କ୍ରମବିକାଶ ପଶ୍ଚାତରେ ରହିଛି ମାନବିକ ପ୍ରୟାସ ଓ ଅନୁସନ୍ଧିତ୍ସା । ଚିନ୍ତା, ଚେତନାର ବିକାଶ ପରଠାରୁ କେତେକ ବ୍ୟକ୍ତି ନିଜର ପରିବେଶ, ଜୀବନର ଘଟଣା ପ୍ରବାହ ଓ ସାମାଜିକ ବ୍ୟବସ୍ଥାକୁ ବ୍ୟାଖ୍ୟା କରିବାକୁ ପ୍ରୟାସ କରିଛନ୍ତି । ଏହି ପ୍ରୟାସ ମଧ୍ୟ ଦେଇ ଧୀରେ ଧୀରେ ଜ୍ଞାନ-ବିଜ୍ଞାନର ବିକାଶ ହୋଇଛି ଓ ସଭ୍ୟତା ଆଗକୁ ଯାଇଛି । ଜ୍ଞାନବିଜ୍ଞାନର ବିକାଶ ପ୍ରକ୍ରିୟାରେ କ୍ରମୋନ୍ନତି ହୋଇଚାଲିଛି । ଯେଉଁ ସମୟରେ ବିଜ୍ଞାନର ବିକାଶ ହୋଇନଥିଲା, ପ୍ରାକୃତିକ ଘଟଣା ପ୍ରବାହ ଓ ଜୀବନର ଘନଘଟା ମଣିଷ ପାଇଁ ବେଶ୍ ରହସ୍ୟମୟ ଥିଲା । ମଧ୍ୟଯୁଗରେ ବା ତା ପୂର୍ବରୁ ସବୁକିଛି ଘଟଣାକୁ ଏକ ଅଲୌକିକ ପ୍ରକ୍ରିୟାରେ ବୁଝିବାକୁ ମଣିଷ ପ୍ରୟାସ କରୁଥିଲା । ସବୁକିଛି ଈଶ୍ୱର-କୃତ .ଓ ପୂର୍ବନିର୍ଦ୍ଧାରିତ ବୋଲି ଭାବନା ସମାଜରେ ବ୍ୟାପକ ଭାବେ ରହିଥିଲା । ଏହା ସହ ଗ୍ରନ୍ଥମାନଙ୍କରେ ଈଶ୍ୱରୀୟ ବ୍ୟବସ୍ଥାର ଯେଉଁ ବର୍ଣ୍ଣନା ରହିଲା, ତାହା ଯେ ଶାଶ୍ୱତ ଓ ଚିରନ୍ତନ ତାହା ମଧ୍ୟ ବିଶ୍ୱାସ କରାଗଲା । ପ୍ରତ୍ୟେକ ଭୌଗୋଳିକ ଭୂଖଣ୍ଡର ଜୀବନବୋଧକୁ ସେହି ଭୂଖଣ୍ଡରେ ପ୍ରଚାରିତ ଧର୍ମଚେତନା ଗଭୀର ଭାବେ ପ୍ରଭାବିତ କରିଥିଲା । ଧାର୍ମିକ ମାନସିକତାରୁ ଘଟଣା ପ୍ରବାହର କାଳ୍ପନିକ, ପାରଲୌକିକ ଓ ଐଶ୍ୱରିକ ବ୍ୟାଖ୍ୟା ହିଁ ଗୋଟିଏ ସମୟରେ ଚିନ୍ତାରାଜ୍ୟରେ ପ୍ରଭାବ ବିସ୍ତାର କରି ରହିଥିଲା । ତେବେ ୟୁରୋପୀୟ ନବଜାଗରଣର ପରିଣାମରୁ ବିଜ୍ଞାନର ଯୁଗ ଆରମ୍ଭ ହେଲା । ସମସ୍ତ ଘଟଣାମାନଙ୍କର ପ୍ରାକୃତିକ ଓ ତଥ୍ୟାଧାରିତ ବ୍ୟାଖ୍ୟାକୁ ବିଜ୍ଞାନ ପ୍ରାଧାନ୍ୟ ଦେଲା ଓ ବୈଜ୍ଞାନିକ ଜ୍ଞାନ ତଥ୍ୟ ଆଧାରିତ, ବସ୍ତୁନିଷ୍ଠ ଓ ପରୀକ୍ଷା-ସାପେକ୍ଷ ହୋଇଥିବାରୁ ଏହା ସତ୍ୟ ବୋଲି ଧୀରେ ଧୀରେ ଚିନ୍ତାରାଜ୍ୟରେ ଗୃହୀତ ହେଲା । ତଥାପି ବିଭିନ୍ନ ସମାଜରେ ପ୍ରାଚୀନ ଦୃଷ୍ଟିଭଙ୍ଗୀ ଓ ଧାର୍ମିକ ମନୋଭାବର ପ୍ରଭାବ ଅତୁଟ ରହିଥିବା ମନେହୁଏ । ଏହି ପୃଷ୍ଠଭୂମିରେ ଧାର୍ମିକ ବ୍ୟାଖ୍ୟା ଓ ବୈଜ୍ଞାନିକ ବ୍ୟାଖ୍ୟା ସମ୍ପର୍କରେ କେତେକ ଘଟଣାକୁ ଉଲ୍ଲେଖ କରାଯାଇପାରେ ।

ଆମ ବାସ୍ତବ ଅନୁଭବରେ ଆମେ ଦେଖେ ଯେ କେତେକ ବ୍ୟକ୍ତି ସୁଖ ଓ ପ୍ରାଚୁର୍ଯ୍ୟ ଭିତରେ ଜୀବନ ଅତିବାହିତ କରନ୍ତି ଅଥଚ ଅନ୍ୟ କେତେକ ବ୍ୟକ୍ତି ନାନା ସଂଗ୍ରାମ ଭିତରେ ଜୀବନର ସର୍ବନିମ୍ନ ଆବଶ୍ୟକତା ପୂରଣ କରିପାରନ୍ତି ନାହିଁ । କେତେକ ଜନ୍ମରୁ ସମ୍ମାନଜନକ ସ୍ଥିତିରେ ରୁହନ୍ତି ଅଥଚ ଅନ୍ୟ କେତେକ ଅସମ୍ମାନଜନକ ଭାବେ ଭେଦଭାବର ଶିକାର ହୁଅନ୍ତି । ଏହି ଅନୁଭବରେ ସ୍ୱାଭାବିକ ଭାବେ ପ୍ରଶ୍ନ ଆସେ କେତେକଙ୍କ ପାଇଁ ଜୀବନ ସୁଖପ୍ରଦ ଓ ସୁଗମ ହେବାବେଳେ ଅନ୍ୟମାନେ ଜୀବନସାରା ଏତେ ଅଭାବ, ଅନାଟନ ଭିତରେ କାହିଁକି ଘାଣ୍ଟି ହେଉଛନ୍ତି ? ସେହିପରି କେତେକଙ୍କ ପାଇଁ ସେମାନଙ୍କର ସାମାଜିକ ପରିଚୟଟି ସମ୍ମାନଜନକ ନୁହେଁ କାହିଁକି ? ଏକ ଜାତିଭିତ୍ତିକ ଭେଦଭାବମୂଳକ ସମାଜରେ ବ୍ୟକ୍ତିମାନଙ୍କର ସାମାଜିକ ସମ୍ମାନ ଜନ୍ମରୁ ନିର୍ଦ୍ଧାରିତ ହୋଇଯାଏ । ଏହିସବୁ ପ୍ରଶ୍ନର ଉତ୍ତର ଦୁଇଟି ପୃଥକ୍ ମାନଦଣ୍ଡରୁ ଦେବାକୁ ପ୍ରୟାସ ହୋଇଛି; ଦିଆଯାଇଛି ମଧ୍ୟ । ଗୋଟିଏ ଦୃଷ୍ଟିଭଙ୍ଗୀର ଉତ୍ତର ହେଉଛି, ଏସବୁ ସେମାନଙ୍କର ଭାଗ୍ୟ, ସେମାନଙ୍କ କର୍ମଫଳ, କପାଳ ଲିଖନ ଓ ସେମାନେ ଏଭଳି ରହିବା ପୂର୍ବନିର୍ଦ୍ଦିଷ୍ଟ । ଅନ୍ୟ ଏକ ଦୃଷ୍ଟିଭଙ୍ଗୀର ଉତ୍ତର ହେଉଛି ଏହି ସ୍ଥିତି ଗୋଟିଏ ସାମାଜିକ ପରିବେଶର ପରିଣାମ, କେତେକ ରାଜନୈତିକ, ଅର୍ଥନୈତିକ ଓ ସାଂସ୍କୃତିକ ଘଟଣା ପ୍ରବାହର ପରିଣତି । ତେବେ ଏହି ସ୍ଥିତିକୁ ପ୍ରୟାସ କଲେ ପରିବର୍ତ୍ତନ କରାଯାଇପାରିବ ଓ ସମାଜରେ ଏକ ଉନ୍ନତ ଓ ମାନବିକ ପରିବେଶ ସୃଷ୍ଟି କରିହେବ । ଆମ ସଂସାରରେ ଅନେକ ଦେଶରେ ଜୀବନର ଗୁଣାତ୍ମକ ମାନ ବହୁ ଉନ୍ନତ; ବ୍ୟକ୍ତମର୍ଯ୍ୟାଦାବୋଧ ଓ ମାନସିକ ଅଧିକାର ନେଇ ସାମାଜିକ ଚେତନା ବେଶ୍ ବିକଶିତ । କିନ୍ତୁ ଭାବବାଦୀ ଜୀବନଦୃଷ୍ଟିର ପ୍ରାବଲ୍ୟ ଥିବା ଦେଶମାନଙ୍କରେ ମାନବିକ ଅଧିକାର ଓ ବ୍ୟକ୍ତିମର୍ଯ୍ୟାଦାବୋଧ ନେଇ ସାମାଜିକ ଚେତନାର ସ୍ତର ନ୍ୟୂନ ଥିବା ମନେହୁଏ ।

ଆମେ ଆଜି ଇତିହାସର ଯେଉଁ କାଳଖଣ୍ଡରେ ବଞ୍ଚୁଛେ, ସେତେବେଳେ ଅନେକ ପ୍ରାଯୁକ୍ତିକ ପରିବର୍ତ୍ତନକୁ ଲକ୍ଷ୍ୟ କରୁଛେ । ଷାଠିଏ ସତୁରୀ ବର୍ଷ ତଳର ସମାଜ ଓ ପରିବେଶ ଓ ଆଜିର ପରିବେଶ ଭିତରେ ବହୁ ପରିବର୍ତ୍ତନ ହେବା ଆମ ଜୀବନକାଳରେ ଆମେ ଦେଖୁଛେ । ଏହି ଶହେ ବର୍ଷ ଭିତରେ ବିଜ୍ଞାନ ପୃଥିବୀର ରୂପରେଖକୁ ପରିବର୍ତ୍ତନ କରିଦେଇଛି । ଗମନାଗମନ, ଆଧୁନିକ ଚିକିତ୍ସା, ମୋବାଇଲ, ଇଣ୍ଟରନେଟ୍, ଅତ୍ୟାଧୁନିକ ଚାଷପ୍ରଣାଳୀ ଇତ୍ୟାଦି ଶହେ ବର୍ଷ ତଳେ ଅଚିନ୍ତନୀୟ ଥିଲା, ଯାହା ଆଜି ଅତି ସାଧାରଣ ଘଟଣା ହୋଇପାରିଛି । ଆମର ରାସ୍ତାଘାଟ, ଯାନବାହାନ, ବହୁତଳ ପ୍ରାସାଦ ଆପାର୍ଟମେଣ୍ଟ, ଶିକ୍ଷା, ଚିକିତ୍ସା, କଳାକୃତି, ସିନେମା, ସ୍ଥାପତ୍ୟ କିପରି ସମ୍ଭବ ହୋଇଛି ? ଗୋଟିଏ

ଦୃଷ୍ଟିଭଙ୍ଗୀର ଉତ୍ତର ହେଉଛି ଏସବୁ ଉପରବାଲାର ଆଶୀର୍ବାଦର ଫଳ, ଈଶ୍ୱରଙ୍କର ଅବଦାନ । ମନୁଷ୍ୟ ନିମିତ୍ତ ମାତ୍ର । ଯାହା ସେ ନ ଚାହିଁବେ ତାହା ଆମକୁ କୁଆଡୁ ମିଳିବ ! ଈଶ୍ୱର ନ ଚାହିଁଲେ ଦୁବଘାସ ତ ହଲେ ନାହିଁ ! ଅନ୍ୟ ଦୃଷ୍ଟିଭଙ୍ଗୀଟି ହେଉଛି ସକଳ ପ୍ରଗତି ମଣିଷ ହାତ ଓ ମୁଣ୍ଡର କରାମତି । ମଣିଷ ନିଜର ଅବିରତ ପ୍ରୟାସଦ୍ୱାରା ଓ ପିଢି ପରେ ପିଢି ଉଦ୍ୟମକରି ଏସବୁ ବିକାଶ ହାସଲ କରିଛି । ଆମର ଜ୍ଞାନ, ବିଜ୍ଞାନ, ଭାଷା, ସାହିତ୍ୟ, କଳା, ସଂସ୍କୃତି, କାରିଗରୀ ଜ୍ଞାନ ଓ ପ୍ରଯୁକ୍ତି ସବୁ କିଛି ମଣିଷ ନିଜର ବୁଦ୍ଧି ଖଟାଇ ନିଜ ହାତରେ ନିର୍ମାଣ କରିଛି । ନିଜର ବୁଦ୍ଧି ଖଟାଇ ନଦୀ ଉପରେ ପୋଲ ନିର୍ମାଣ କରିଛି, ପାହାଡ ଫଟାଇ ରାସ୍ତା ନିର୍ମାଣ କରିଛି, ଜଙ୍ଗଲ ସଫାକରି ଚାଷଜମି ପ୍ରସ୍ତୁତ କରିଛି, ରାତିକୁ ଦିନ ପରି ଆଲୋକିତ କରିବାକୁ ସମର୍ଥ ହୋଇଛି ଇତ୍ୟାଦି ଇତ୍ୟାଦି । ଏହି ବିକାଶର କାହାଣୀ ଅତି ସୁଦୀର୍ଘ, ତେବେ ଏସବୁ ମଣିଷର ଶ୍ରମ ଓ ବୁଦ୍ଧିର କରାମତି, ଏହା କେଉଁ ଆକାଶରୁ ଖସି ନାହିଁ ବା କେଉଁ କଳ୍ପିତ ଦିଅଁ ଦେବତା ଦେଇନାହାନ୍ତି ।

ସମାଜରେ ଯେଉଁ ନୀତି, ଆଦର୍ଶ, ମୂଲ୍ୟବୋଧ ରହିବା ଆମେ ଦେଖୁଛେ ଓ ଯାହା ସଭ୍ୟ ଜୀବନର ମାନଦଣ୍ଡ ସେସବୁ ଆମେ କିପରି ଓ କେଉଁଠୁ ଲାଭ କରିଛେ ? ବ୍ୟକ୍ତିର ନୈତିକ କର୍ତ୍ତବ୍ୟ, ନାଗରିକ ଶୃଙ୍ଖଳାବୋଧ ସମାଜରେ କିପରି ବିକଶିତ ହୋଇଛି ? ଗୋଟିଏ ଦୃଷ୍ଟିଭଙ୍ଗୀର ଉତ୍ତର ହେବ ଏସବୁ ଈଶ୍ୱରଦତ୍ତ ଓ ଏହା ଧର୍ମଗ୍ରନ୍ଥରେ ଲିପିବଦ୍ଧ ହୋଇରହିଛି । ଧର୍ମଶାସ୍ତ୍ରରେ ଥିବା ବାଣୀ ଆପ୍ତବଚନ ଓ ଏହା ଧର୍ମ ଜରିଆରେ ଈଶ୍ୱର ସମାଜକୁ ଦେଇଛନ୍ତି । ବିଭିନ୍ନ ଭୌଗୋଳିକ ଭୂଖଣ୍ଡରେ ସୃଷ୍ଟି ହୋଇଥିବା ଧର୍ମମାନ ଏ ନେଇ କେତେ କେତେ କାଳ୍ପନିକ କାହାଣୀ ବା ମିଥ୍ ସୃଷ୍ଟି କରିଛନ୍ତି । ଈଶ୍ୱର ତାଙ୍କ ପୁତ୍ରକୁ ପଠାଇ, ଦୂତ ଜରିଆରେ ବା ନିଜେ ଅବତାର ନେଇ ଏହା ଆମକୁ ଶିକ୍ଷା ଦେଇଛନ୍ତି । ଈଶ୍ୱରଙ୍କ ବାଣୀ ଧର୍ମଗ୍ରନ୍ଥରେ ଲିପିବଦ୍ଧ ହୋଇଛି । ଯାହା ଧର୍ମଗ୍ରନ୍ଥରେ ଲେଖାଯାଇଛି ତାହା ଅଲଙ୍ଘ୍ୟ, ଚିରନ୍ତନ ଓ ପବିତ୍ର । ଏହା ଈଶ୍ୱରୀୟ ନିର୍ଦ୍ଦେଶ ହୋଇଥିବାରୁ ତାହା ଆମର କର୍ତ୍ତବ୍ୟ ଓ ଏହାର ବିରୋଧ ଅପବିତ୍ର ଓ ଈଶ୍ୱରୀୟ ନିୟମ-ବିରୁଦ୍ଧ । ଅନ୍ୟ ଦୃଷ୍ଟିଭଙ୍ଗୀର ଉତ୍ତର ହେଉଛି ସମାଜର ସକଳ ନୀତି, ନୈତିକତା, ଆଦର୍ଶ ଇତ୍ୟାଦି ସାମାଜିକ ପରିବେଶ ଓ ଜୀବନର ବାସ୍ତବତା, ଅନୁଭୂତି ଓ ବିଚାରଶୀଳତା ଦେଇ ସଭ୍ୟତାରେ ବିକଶିତ ହୋଇଛି । ଆମର ଆଦର୍ଶ, ଶିଷ୍ଟାଚାର, ସମ୍ବେଦନଶୀଳ ଜୀବନବୋଧ ଓ ନାଗରିକ ଶୃଙ୍ଖଳାଜ୍ଞାନ ନାନା ସାମାଜିକ ଓ ସାଂସ୍କୃତିକ ଘଟଣା ପ୍ରବାହ ଦେଇ ଉଦ୍‌ଭବ ହୋଇଛି । ସେଗୁଡିକ ସ୍ଥାନ, କାଳ ପରିପ୍ରେକ୍ଷୀରେ ପୃଥକ୍ ଓ ଜୀବନର ନୂତନ ଆହ୍ୱାନ ଓ ପରିସ୍ଥିତିରେ ବଦଳିଯିବା

ସମ୍ଭବ । ନୀତି, ନୈତିକତା ଏକ ସାମାଜିକ କର୍ତ୍ତବ୍ୟ । ସୁସ୍ଥ ସାମାଜିକ ଜୀବନ ପାଇଁ ଏହା ଅବଶ୍ୟମ୍ଭାବୀ ଓ ଏହା ସହ ଧର୍ମ ଓ ଈଶ୍ୱର-ଭାବନାର ସମ୍ବନ୍ଧ କେବଳ ମନସ୍ତାତ୍ତ୍ୱିକ ।

ଏହି ଦୁଇଟି ଦୃଷ୍ଟିଭଙ୍ଗୀ ଭିତରେ ମୌଳିକ, ସୈଦ୍ଧାନ୍ତିକ ଓ ବ୍ୟାବହାରିକ ପାର୍ଥକ୍ୟ ସହଜରେ ଅନୁମେୟ । ଗୋଟିଏ ଦୃଷ୍ଟିଭଙ୍ଗୀର ବିଚାର ହେଉଛି ଈଶ୍ୱରକୈନ୍ଦ୍ରିକ ଓ ପାରଲୌକିକ ଯାହା ମୁଖ୍ୟତଃ ଏକ କାଳ୍ପନିକ ଭାବବାଦୀ ବିଚାର । ଏହି ବିଚାର ଈଶ୍ୱର, ପରଲୋକ, ଭାଗ୍ୟ, ପୂର୍ବନିର୍ଦ୍ଧିଷ୍ଟ ଇତ୍ୟାଦି ଭାବନାକୁ ପ୍ରାଧାନ୍ୟ ଦେଇଥାଏ । ଏଥିରେ ପ୍ରଭାବିତ ସାଧାରଣ ମଣିଷଟି ବହୁ କ୍ଷେତ୍ରରେ ଅଜ୍ଞ ରହି ଦୈବୀକୃପା ଉପରେ ନିର୍ଭର କରେ । ଜୀବନର କୌଣସି ପ୍ରତିକୂଳ ପରିସ୍ଥିତିକୁ ଦୂର କରିବାପାଇଁ କଳ୍ପିତ ଦିଅଁ ଦେବତାର ଶରଣାପନ୍ନ ହୁଏ । ସେଥିପାଇଁ ପୂଜାସ୍ଥଳକୁ ଯାଏ, କେତେ ମାନସିକ କରେ, ପୂଜା ବ୍ରତ କରିବାକୁ ନିଜର କର୍ତ୍ତବ୍ୟ ବୋଲି ଭାବେ । ତାର ଜୀବନଚର୍ଯ୍ୟା ଭିତରେ ଦିଅଁ ଦେବତା ମୁଖ୍ୟ ସ୍ଥାନ ନିଅନ୍ତି । ପ୍ରତିକୂଳ ପରିସ୍ଥିତିରେ ବା ବିପଦ ଆପଦରେ ସେ କେଉଁ ଦିଅଁଙ୍କ ପାଖରେ ନଡିଆ ବାଡେଇବାକୁ, ଜଳ ଢାଳିବାକୁ, କାହାର ପାଦ ଦର୍ଶନ କରିବାକୁ, କାହା ଦଉଡିକୁ ଛୁଇଁବାକୁ ବା ସେପରି କିଛି ମାନସିକ କରେ । ଏପରିକି କେତେକ ବ୍ୟକ୍ତି ଶରୀରକୁ ଯନ୍ତ୍ରଣା ଦେଇ କୃଚ୍ଛ୍ର ସାଧନାରେ ବ୍ରତୀ ହୁଅନ୍ତି । ଏପରି କରିବାଦ୍ୱାରା ପରଲୋକରେ ଯେ ମୁକ୍ତି ବା ସୁଖ ମିଳିବ ଏହି ସ୍ୱପ୍ନ ରହିଥାଏ । ଅଧିକନ୍ତୁ ମୃତ୍ୟୁ ପରେ ତାର କଳ୍ପିତ ଆତ୍ମା କିପରି ସଦ୍‌ଗତି ଲାଭକରିବ ସେଥିପାଇଁ ତାର ଶରୀରକୁ କେଉଁ ଧର୍ମସ୍ଥଳରେ ନେଇ ଦାହ କରିବାକୁ ଇଚ୍ଛା ପ୍ରକାଶକରେ । ପରିବାର ଲୋକେ ସେ ପାଇଁ କେତେ କର୍ମକାଣ୍ଡ ପାଳନ କରନ୍ତି । ପୂଜକଗୋଷ୍ଠୀର ନିର୍ଦ୍ଦେଶରେ କେତେ ବିଧିବିଧାନ ମାନନ୍ତି । ତାର ସ୍ୱର୍ଗବାସ, ମୁକ୍ତି ବା ସଦ୍‌ଗତି ପାଇଁ ତାର ଅସ୍ଥି ନେଇ କେଉଁ କାଳ୍ପନିକ ପବିତ୍ର ପୀଠରେ ବିସର୍ଜନ କରିଥାନ୍ତି । ପ୍ରତିବର୍ଷ ଶ୍ରାଦ୍ଧ ଦିଅନ୍ତି, ମୃତ୍ୟୁର ବହୁବର୍ଷ ପରେ ମଧ୍ୟ କେତେକ ଔପଚାରିକ ବିଧାନକୁ ପାଳନ କରନ୍ତି । ଏହା ସ୍ମୃତି ଉଦ୍ଦେଶ୍ୟରେ କରନ୍ତି ନାହିଁ, କରନ୍ତି ଏକ ଧାର୍ମିକ ଆବେଗ, ବିଶ୍ୱାସ ଓ ଜୀବନଦୃଷ୍ଟିର ପ୍ରଭାବରେ ।

ଏହି ପ୍ରକାର ବିଶ୍ୱାସ ଓ ଜୀବନଦୃଷ୍ଟିର ମୂଳ ଆଧାର ହେଉଛି ଧାର୍ମିକ ମାନସିକତା । ବହୁ ଅତୀତରେ ବିଭିନ୍ନ ଭୌଗୋଳିକ ଭୂଖଣ୍ଡରେ ଯେଉଁ ସାଂସ୍କୃତିକ ପ୍ରବାହର ଧାରା ସୃଷ୍ଟି ହୋଇଥିଲା ତାହା ପରବର୍ତ୍ତୀ ପର୍ଯ୍ୟାୟରେ ଆନୁଷ୍ଠାନିକ ଧର୍ମର ରୂପ ନେଲା । ପ୍ରତ୍ୟେକ ଧର୍ମ ସହ କୌଣସି କ୍ରାନ୍ତିକାରୀ ବ୍ୟକ୍ତି, ଧର୍ମଗ୍ରନ୍ଥ ବା ଉଭୟକୁ ସଂଶ୍ଳିଷ୍ଟ କରାଗଲା । ପ୍ରତ୍ୟେକ ଧର୍ମର ଏକ ଐତିହାସିକ ଭିତ୍ତି ଓ କେତେକ ତାତ୍ତ୍ୱିକ ଭାବନା ରହିଲା । ଏହା ସହିତ

ପ୍ରତ୍ୟେକ ଧର୍ମ ସହ ନାନା କର୍ମକାଣ୍ଡ, କେତେକ ନୀତିବୋଧ ଓ ନାନା କାହାଣୀ, କିମ୍ବଦନ୍ତୀ ସଂଶ୍ଳିଷ୍ଟ ହେଲା । ତେବେ ଧର୍ମଗୁଡ଼ିକ ଯେଉଁ ଯୁଗରେ ଉଦ୍ଭବ ହୋଇଥିଲେ ତାହା ଥିଲା ସଭ୍ୟତାର ବାଲ୍ୟକାଳ । ସେତେବେଳେ ମଣିଷର ଚିନ୍ତାଚେତନାର ଯଥେଷ୍ଟ ବିକାଶ ହୋଇନଥିଲା । ଭୟ, ନିରାପଦବିହୀନ ଜୀବନ ଓ ଅଜ୍ଞତା ଯୋଗୁ ବହୁ କାଳ୍ପନିକ ବିଶ୍ୱାସ ସୃଷ୍ଟି ହୋଇଥିଲା । ଆମ ଦୃଷ୍ଟିର ଅନ୍ତରାଳରେ କିଛି ଶକ୍ତି ରହିଛି ଓ ସେହି ଶକ୍ତି ପ୍ରକୃତିକୁ ପରିଚାଳିତ କରିବା ସହ ଆମ ଜୀବନକୁ ମଧ୍ୟ ନିୟନ୍ତ୍ରିତ କରୁଛି । କେବଳ ସେତିକି ନୁହଁ, ଏ ବିଶାଳ ପ୍ରକୃତିକୁ ଜଣେ ସର୍ବଶକ୍ତିମାନ ଈଶ୍ୱର ସୃଷ୍ଟି କରିଛନ୍ତି । ମଣିଷର ସୁଖ ଶାନ୍ତି ପାଇଁ ପ୍ରକୃତି ଓ ପ୍ରାଣୀ ଜଗତକୁ ଈଶ୍ୱର ସୃଷ୍ଟି କରିଛନ୍ତି । ସୂର୍ଯ୍ୟ, ଚନ୍ଦ୍ର, ନଭମଣ୍ଡଳ, ପ୍ରକୃତି ଈଶ୍ୱରଙ୍କ ନିର୍ଦ୍ଦେଶରେ ପରିଚାଳିତ ହେଉଛି । ସେହିପରି ମଣିଷ କଳ୍ପନା କଲା ଯେ, ମଣିଷର ଏକ ଆତ୍ମା ରହିଛି । ମୃତ୍ୟୁ ପରେ ବ୍ୟକ୍ତିର ଆତ୍ମା ରହେ । ଆତ୍ମା ଭାବନାକୁ ଆଧାର କରି ସ୍ୱର୍ଗ, ନରକ, ଯମପୁର, ପୁନର୍ଜନ୍ମବାଦ, ମୋକ୍ଷ, ନିର୍ବାଣ ଇତ୍ୟାଦିର ନାନା କଳ୍ପନା ଧର୍ମ ପରିସରରେ ପ୍ରକାଶ ପାଇଲା । ଯେହେତୁ ଏଗୁଡ଼ିକ ଥିଲା କଳ୍ପନା, ସବୁ ଧର୍ମମାନଙ୍କର ଏହି ବିଶ୍ୱାସଗୁଡ଼ିକ ସମାନ ନହୋଇ ପରସ୍ପର ବିରୋଧୀ ହେବା ସ୍ୱାଭାବିକ ଥିଲା । ଊନବିଂଶ ଶତାବ୍ଦୀରେ ଧର୍ମମାନଙ୍କର ତୁଳନାତ୍ମକ ଅନୁଶୀଳନରୁ ଧର୍ମମାନଙ୍କର ତାତ୍ତ୍ୱିକ ଭାବନା ଓ ବିଶ୍ୱାସମାନ କିପରି ପରସ୍ପର-ବିରୋଧକ ତାହା ସ୍ପଷ୍ଟ ହେବାକୁ ଲାଗିଲା ।

ମାନବ ସଭ୍ୟତାର ବିକାଶଧାରାରେ ବିଭିନ୍ନ ଭୂଖଣ୍ଡର ଧର୍ମଚେତନା ଏହି ଭୌଗୋଳିକ ଭୂଖଣ୍ଡରେ ଏକ ପ୍ରଭାବଶାଳୀ ବ୍ୟବସ୍ଥା ଭାବେ ଉଦ୍ଭବ ହୋଇଥିଲା । ଧର୍ମ ଏକ ସର୍ବଗ୍ରାସୀ ଭୂମିକା ନେଇ ସାମାଜିକ ଜୀବନର ସକଳ କ୍ଷେତ୍ରକୁ ନିୟନ୍ତ୍ରଣ କରିଥିଲା । ସମାଜର ଶିକ୍ଷା, ସାହିତ୍ୟ, କଳାସ୍ଥାପତ୍ୟ ଇତ୍ୟାଦି ଧାର୍ମିକ ବିଶ୍ୱାସ ଆଧାରରେ ପ୍ରଭାବିତ ହୋଇଥିଲା । ଏହା ସହ ସମାଜର ରାଜନୈତିକ ବ୍ୟବସ୍ଥା, ଅର୍ଥନୀତି ଓ ସଂସ୍କୃତି ଧାର୍ମିକ ବିଶ୍ୱାସ ଆଧାରରେ ନିୟନ୍ତ୍ରିତ ହେଉଥିଲା । ସମାଜରେ ସାମନ୍ତବାଦୀ ବ୍ୟବସ୍ଥାର ପ୍ରଚଳନ ପାଇଁ ଧର୍ମର ମୁଖ୍ୟ ଭୂମିକା ରହିଥିଲା । ସମାଜର ପ୍ରତ୍ୟେକ କ୍ଷେତ୍ର ଧର୍ମଦ୍ୱାରା ପ୍ରଭାବିତ ଓ ନିୟନ୍ତ୍ରିତ ହେଉଥିଲା । ଧର୍ମକୁ ଆଧାରକରି ଏକ ପାରଲୌକିକ ଜୀବନଦୃଷ୍ଟି ସମାଜରେ ଦୃଢ଼ ଭିତ୍ତି ନେଇଥିଲା । ଜୀବନର ସକଳ ଶ୍ରେୟ ଓ ମହତ୍ତର ଭାବନା ହିଁ ଧର୍ମକୈନ୍ଦ୍ରିକ ହୋଇରହିଥିଲା ।

ଏହି ପୃଷ୍ଠଭୂମିରେ ୟୁରୋପୀୟ ନବଜାଗରଣ ଥିଲା ସଭ୍ୟତାର ଇତିହାସରେ ଏକ କ୍ରାନ୍ତିକାରୀ ଆଲୋଡ଼ନ । ମଧ୍ୟଯୁଗୀୟ ମାନସିକତାରେ ବୈପ୍ଳବିକ ପରିବର୍ତ୍ତନ ଆଣିବା

କ୍ଷେତ୍ରରେ ନବଜାଗରଣ ଏକ ଯୁଗାନ୍ତକାରୀ ପରିବର୍ତ୍ତନ ଆଣିଲା । ସପ୍ତଦଶ ଶତାବ୍ଦୀରୁ ଆରମ୍ଭ ହେଲା ବିଜ୍ଞାନର ଯୁଗ । ବିଜ୍ଞାନର ଆଦିପର୍ବଟି ଥିଲା ଏକ ସଂଘର୍ଷର ସମୟ । ଯୁଗ ଯୁଗର ପାରଲୌକିକ ବିଶ୍ୱାସ ବିଜ୍ଞାନ ଆଧାରରେ ଅସତ୍ୟ ବୋଲି ଜଣାପଡିଲା । ସେହି କାରଣରୁ ବହୁ ସତ୍ୟାନ୍ୱେଷୀ ବୈଜ୍ଞାନିକଙ୍କୁ କାଠଗଡାରେ ଛିଡା ହେବାକୁ ପଡିଲା ଓ ଏପରିକି ଶହୀଦ ହେବାକୁ ହେଲା । ଜ୍ୟୋତିର୍ବିଜ୍ଞାନ ବସ୍ତୁନିଷ୍ଠ ଭାବେ ପ୍ରମାଣ କଲା ଯେ, ଆମ ପୃଥିବୀ ଗୋଟିଏ ସୌରମଣ୍ଡଳର ଏକ ଗ୍ରହ ମାତ୍ର । କୋଟି କୋଟି ସୌରମଣ୍ଡଳକୁ ନେଇ ଏକ ଛାୟାପଥ ଓ ବିଶ୍ୱରେ କୋଟି କୋଟି ଛାୟାପଥ ରହିଛି । ସୁତରାଂ ପୃଥିବୀ ଏକ ନିର୍ବାଚିତ ଗ୍ରହ ନୁହଁ । ସୂର୍ଯ୍ୟ, ଚନ୍ଦ୍ର, ଆକାଶ କୌଣସି ଦେବତା ନୁହନ୍ତି । ସ୍ୱର୍ଗ, ନରକ, ଯମପୁର ଇତ୍ୟାଦି ଭାବନାଗୁଡିଏ ଆଇମା' କାହାଣୀ ମାତ୍ର; ସେମାନଙ୍କର କୌଣସି ଅସ୍ତିତ୍ୱ ହିଁ ନାହିଁ । ପ୍ରାଣୀଜଗତ ଓ ମଣିଷକୁ କୌଣସି ସର୍ବଜ୍ଞ ଈଶ୍ୱର ତାଙ୍କ ସ୍ୱରୂପରେ ସୃଷ୍ଟି କରିନାହାନ୍ତି । ବରଂ କୋଟି କୋଟି ବର୍ଷର ପ୍ରାକୃତିକ ପରିବର୍ତ୍ତନ ଓ ଜୈବିକ ବିବର୍ତ୍ତନ ମଧ ଦେଇ ପ୍ରାଣୀଜଗତ ଓ ମଣିଷର ଉତ୍ପତ୍ତି ହୋଇଛି । ମଣିଷ ଆଜି ଯେଉଁ ସ୍ଥିତିରେ ରହିଛି, ଆରମ୍ଭ ବେଳେ ସେହି ସ୍ଥିତିରେ ନଥିଲା । ଲକ୍ଷ ଲକ୍ଷ ବର୍ଷର ଜୈବିକ ପରିବର୍ତ୍ତନ ଧାରାରେ ଆଜିର ସ୍ଥିତିକୁ ଆସିବାକୁ ମଣିଷ ସମର୍ଥ ହୋଇଛି । ସାମାଜିକ ପରିବର୍ତ୍ତନ ଓ ବିକାଶ ଏକ ନିରନ୍ତର ପ୍ରକ୍ରିୟା । ଏକ ଆଦିମ ସ୍ତରରୁ ନାନା ପରିବର୍ତ୍ତନ ଦେଇ ଆଜିର ସମାଜ ବ୍ୟବସ୍ଥା ବିକଶିତ ହୋଇଛି ।

ବିଜ୍ଞାନର ବିକାଶ ପରଠାରୁ ଏକ ବଡ ଉପଲବ୍ଧି ଆସିଛି ଯେ, ସଭ୍ୟତାର ବିକାଶ, ଜ୍ଞାନବିଜ୍ଞାନର ଅଭ୍ୟୁଦୟ, ଉନ୍ନତ ଜୀବନଶୈଳୀ ଓ ସୁସ୍ଥ ସାମାଜିକ ବ୍ୟବସ୍ଥା ମଣିଷର ପ୍ରୟାସ ତଥା ଅନୁସନ୍ଧିତ୍ସା ଯୋଗୁ ସମ୍ଭବ ହୋଇଛି । ଯେଉଁଠି ସାମାଜିକ ଜୀବନପ୍ରବାହରେ ବିଜ୍ଞାନ-ମନସ୍କତା ବା ବୈଜ୍ଞାନିକ ମନୋଭାବ ଅଧିକ ପ୍ରକାଶ ପାଇଛି, ସେଠାରେ ପ୍ରକୃତିର ରହସ୍ୟ ବୁଝିବାକୁ ପ୍ରୟାସ ହୋଇଛି । ଏହାଦ୍ୱାରା ପ୍ରତିକୂଳ ସ୍ଥିତିକୁ ଅତିକ୍ରମ କରିବାକୁ ଜ୍ଞାନକୌଶଳର ବିକାଶ ହୋଇଛି ଓ ପରିଣାମତଃ ବିକାଶର ଧାରା ଦ୍ରୁତଗାମୀ ହୋଇଛି । କୌଣସି ବିକାଶ ଶୂନ୍ୟରୁ ସମ୍ଭବ ହୋଇନାହିଁ ବା କେଉଁ ଦିଅଁ ଦେବତାଙ୍କ ଆଶୀର୍ବାଦରୁ ଆସି ନାହିଁ । ସୁସ୍ଥ ସାମାଜିକ ବ୍ୟବସ୍ଥା, ମାନବବାଦୀ ଜୀବନଦର୍ଶନ, ଉଚ୍ଚ କର୍ମସଂସ୍କୃତି ଓ ସମ୍ବେଦନଶୀଳ ଜୀବନଦୃଷ୍ଟି ଜୀବନର ଗୁଣାତ୍ମକ ମାନବୃଦ୍ଧିରେ ସହାୟକ ହୋଇଛି । ଅପରପକ୍ଷରେ ଯେଉଁଠି ଏହି ସଂପୃକ୍ତି ପ୍ରକାଶ ପାଇ ନାହିଁ, ପାରଲୌକିକ ମାନସିକତା ଜୀବନବୋଧକୁ ଅଧିକ ପ୍ରଭାବିତ କରିରଖିଛି, ଧାର୍ମିକ ଆବେଗ ସାମାଜିକ ମନସ୍ତତ୍ତ୍ୱକୁ

କବଳିତ କରିଛି ଓ ନୀତି ନୈତିକତା ସାମାଜିକ କର୍ତ୍ତବ୍ୟ ପରିବର୍ତ୍ତେ ଧାର୍ମିକ କର୍ମକର୍ମାଣି ସହ ସଂପୃକ୍ତ ହୋଇଛି ସେଠି ଜୀବନର ଗୁଣାତ୍ମକ ମାନ ନ୍ୟୂନ ହୋଇରହିଛି ।

ବିଜ୍ଞାନର ଯୁଗ ଆସିବା ପରେ ଏହି ତିନି ଶହ ବର୍ଷ ମଧ୍ୟରେ ସଭ୍ୟତାର ରୂପରେଖ ବଦଳି ଯାଇଛି । ଏହା ସହିତ ଏକ ଜୀବନଦର୍ଶନର ବିକାଶ ହୋଇଛି । ଏହି ଜୀବନଦର୍ଶନର ତିନୋଟି ମୌଳିକ ଅଭିବ୍ୟକ୍ତି ହେଉଛି ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ, ବିଚାରଶୀଳତାର ସାର୍ବଜନୀନ ପ୍ରାଧାନ୍ୟ ଓ ମାନବବାଦ । ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଏହା ପ୍ରତିଷ୍ଠା କରିଛି ଯେ ପ୍ରକୃତିରେ ଯାହା କିଛି ଅଛି ବା ଯେଉଁସବୁ ଘଟଣା ଘଟେ ତାହା ପଶ୍ଚାତ୍‌ରେ କେବଳ ପ୍ରାକୃତିକ କାରଣ ରହିଛି । ଆମେ କେତେକ ଘଟଣାର କାରଣ ଜାଣିବାକୁ ସମର୍ଥ ହୋଇଛେ, ତେବେ ଏବେ ବି ପ୍ରକୃତିରେ ଅନେକ ରହସ୍ୟ ଆମେ ଜାଣିବାକୁ ସମର୍ଥ ହୋଇନାହେଁ । ତେବେ ସଭ୍ୟତା ଯେତେ ଅଗ୍ରସର ହେଉଥିବ ଆଜି ଯାହା ଅଜ୍ଞେୟ ରହିଛି ଆଗାମୀ ଦିନରେ ତାହା ଜ୍ଞେୟ ହୋଇପାରିବ । ବିଜ୍ଞାନ ଏକ ସାର୍ବଜନୀନ ପ୍ରଣାଳୀ ଆଧାରରେ ପ୍ରାକୃତିକ ଘଟଣାମାନଙ୍କୁ ବ୍ୟାଖ୍ୟା କରିବାକୁ ପ୍ରଯତ୍ନ କରିଥାଏ । ସେହି ଦୃଷ୍ଟିଭଙ୍ଗୀ ପୋଷଣ କରିବା ହେଉଛି ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ । ବିଚାରଶୀଳତା ହେଉଛି ନିଜର ଯୁକ୍ତିନିଷ୍ଠତା । ବୁଦ୍ଧି, ତର୍କଶୀଳତା ଓ ତଥ୍ୟଭିତ୍ତିକ ଜ୍ଞାନକୁ ପ୍ରାଧାନ୍ୟ ଦେବା ଓ ସବୁ ସ୍ତରରେ ବିଚାରଶୀଳ ମନୋଭାବ ପୋଷଣ କରିବା ହେଉଛି ବିଚାରଶୀଳତା । ମଣିଷ ଯେତେ ଅଧିକ ବିଚାରଶୀଳ ହେବ ଓ ସବୁ ବିଷୟକୁ ବିଚାରଶୀଳତାର କଷଟିରେ ପରଖିବ ସେ ସତ୍ୟର ଉପଲବ୍ଧି କରିବ । ଅନେକ କୁସଂସ୍କାର, ଅହେତୁକ ବିଶ୍ୱାସ ଓ ଆଧାରହୀନ ଭାବନାକୁ ବିଚାରଶୀଳତା ଆଧାରରେ ସେ ଦୂର କରିପାରିବ । ମାନବବାଦ ଏକ ମହତ୍ତର ଜୀବନବୋଧ ଓ ଏହାର ପ୍ରତିଫଳନ ରାଜନୀତି, ଅର୍ଥନୀତି ଓ ସମାଜ ବ୍ୟବସ୍ଥାରେ ଯେତେ ଅଧିକ ହେବ ସମାଜ ସେତେ ଉନ୍ନତ ହେବ । ଏହି ଭାବନାରୁ ହିଁ ସମାଜବାଦ, ଗଣତାନ୍ତ୍ରିକ ବିଚାରବୋଧ, ମାନବିକ ଅଧିକାରର ବିଶ୍ୱଘୋଷଣା, ସାର୍ବଜନୀନ ଶିକ୍ଷା ଇତ୍ୟାଦି ମୂଲ୍ୟବୋଧ ଓ ଆଦର୍ଶମାନ ସମାଜରେ ବିକଶିତ ହୋଇଛି । କୌଣସି ବ୍ୟକ୍ତି ଶୋଷିତ, ଅତ୍ୟାଚାରିତ ବା ଭେଦଭାବର ଶିକାର ହେବ ନାହିଁ ଓ ମର୍ଯ୍ୟାଦାର ସହ ଜୀବନ ବଞ୍ଚିବ ହେଲା ମାନବବାଦର ଆଭିମୁଖ୍ୟ । ପ୍ରତ୍ୟେକ ବ୍ୟକ୍ତିର ଜୀବନର ମୂଲ୍ୟ ରହିଛି । ଶିକ୍ଷା ପାଇବା, ସୁସ୍ଥ ପାରିବାରିକ ଜୀବନ ବଞ୍ଚିବା, ଆଇନ୍ ଦୃଷ୍ଟିରେ ସମାନ ବିବେଚିତ ହେବା, ସ୍ୱାବଲମ୍ବୀ ହୋଇ ଜୀବନ ନିର୍ବାହ କରିବା ବ୍ୟକ୍ତିର ମୌଳିକ ଅଧିକାର । ମାନବବାଦ ବହୁ ଦିଗନ୍ତକୁ ସ୍ପର୍ଶ କରି ଏକ ପ୍ରୀତିପୂର୍ଣ୍ଣ ବିଶ୍ୱର ପରିବେଶ ପାଇଁ ଚେତନା ସୃଷ୍ଟି କରିଛି ।

ଏହି ସକଳ ବିଚାର ପଶ୍ଚାତରେ ଏକ ମୁଖ୍ୟ ଭାବନା ହେଉଛି ମଣିଷ ହିଁ ତା ଭାଗ୍ୟର ନିୟନ୍ତା । ସମାଜରେ ଯେତେ ସବୁ ଦୁଃଖ, ଦୁର୍ଦ୍ଦଶା ରହିଛି ତାହାର ଉତ୍ସ ହେଉଛି ପ୍ରାକୃତିକ ବା ମନୁଷ୍ୟକୃତ । ତେବେ ମଣିଷ ତାର ଉଦ୍ୟମରେ ପ୍ରାକୃତିକ ପ୍ରତିକୂଳତାକୁ ନିୟନ୍ତ୍ରଣ କରିବାକୁ ପ୍ରୟାସ କରିଆସିଛି । ବନ୍ୟା, ବାତ୍ୟା, ଭୂକମ୍ପ, ସୁନାମି, ମହାମାରୀ ଇତ୍ୟାଦି ନାନା ପ୍ରାକୃତିକ ବିପଦକୁ ପ୍ରତିହତ କରିବାପାଇଁ ବା ଏପରି ସ୍ଥିତିକୁ ମୁକାବିଲା କରିବାକୁ ସେ ପ୍ରୟାସ ଜାରି ରଖିଛି । ଏଥିରେ କେତେକ ସଫଳତା ନିଶ୍ଚୟ ମିଳିଛି ଓ ଭବିଷ୍ୟତରେ ହୁଏତ ଅଧିକ ସଫଳତା ମିଳିପାରିବ । ତେବେ ମାନବକୃତ ଅହେତୁକ କାର୍ଯ୍ୟ ହିଁ ସମାଜରେ ଅନେକ ଦୁଃଖ ଦୁର୍ଦ୍ଦଶାର କାରଣ ହୋଇଆସିଛି । ସଭ୍ୟତାର ଆରମ୍ଭ ପର୍ବରୁ ଯୁଦ୍ଧ, ବିଭୀଷିକା ଲାଗି ରହିଛି । ଧାର୍ମିକ ସାଂପ୍ରଦାୟିକତା ପୃଥିବୀରେ ନାନା ଘୃଣା, ବିଦ୍ୱେଷ ଓ ଅସହିଷ୍ଣୁତା ସୃଷ୍ଟି କରିଛି । ବିଜ୍ଞାନରେ ଉନ୍ନତ ରାଷ୍ଟ୍ରମାନେ ସାମ୍ରାଜ୍ୟବାଦର ବିକାଶ କରିଛନ୍ତି । ଜାତିଭେଦ, ରଙ୍ଗଭେଦ, ଲିଙ୍ଗଭେଦ ନାମରେ ବହୁ ଅମାନବୀୟ ଶୋଷଣ ସାରା ପୃଥିବୀରେ ରହିଆସିଛି । ରାଷ୍ଟ୍ର-ରାଷ୍ଟ୍ର ମଧ୍ୟରେ ଶତ୍ରୁତାର ପରିବେଶରୁ ପ୍ରତ୍ୟେକ ରାଷ୍ଟ୍ର ଗଣବିଧ୍ୱଂସୀ ମାରଣାସ୍ତ୍ର ନିର୍ମାଣ କରିବାକୁ ପ୍ରୟାସ କରୁଛି । ତୃତୀୟ ବିଶ୍ୱର ରାଷ୍ଟ୍ରମାନଙ୍କରେ ବହୁ ଦାରିଦ୍ର୍ୟ ଓ ଅଶିକ୍ଷା ରହିଛି । ସମାଜର ଅଗଣିତ ମଣିଷ ଅବମାନବୀୟ ସ୍ତରରେ ଜୀବନ ନିର୍ବାହ କରିବାକୁ ବାଧ୍ୟ ହେଉଛନ୍ତି । ଯେଉଁ ଭୂଖଣ୍ଡରେ ଦାରିଦ୍ର୍ୟ, ଶୋଷଣ, ନିରକ୍ଷରତା, ସାମାଜିକ ଭେଦଭାବ ପରି ସମସ୍ୟାମାନ ରହିଛି ସେସବୁ ମଣିଷ ଯୋଗୁ ବା ମଣିଷଦ୍ୱାରା ପ୍ରବର୍ତ୍ତିତ ସାମାଜିକ ବ୍ୟବସ୍ଥାରୁ ହୋଇଛି । ମାନବିକ ଉଦ୍ୟମ ଓ ରାଜନୈତିକ ପ୍ରୟାସ ମାଧ୍ୟମରେ ସମାଜରୁ ସବୁ ପ୍ରକାରର ଭେଦଭାବ, ଶୋଷଣ, ଅନ୍ୟାୟ ଦୂର କରାଯାଇପାରିବ । ସେହିପରି ରୋଗ, ଦାରିଦ୍ର୍ୟ, ନିରକ୍ଷରତା, ଅପପୁଷ୍ଟି, ବାଳଶ୍ରମିକ ପ୍ରଥା, ଜାତିବାଦ ପରି ମନ୍ଦ ସ୍ଥିତିକୁ ନିରନ୍ତର ପ୍ରୟାସ ଓ ଉନ୍ନତ ବ୍ୟବସ୍ଥା ମାଧ୍ୟମରେ ଦୂର କରିହେବ । ସଭ୍ୟ ଆଚରଣ ଏବଂ ନୈତିକ ମୂଲ୍ୟବୋଧ ପରି ମାନବିକ ଶ୍ରେୟର ଭାବନା ଶିକ୍ଷା ଓ ଗଣମାଧ୍ୟମ ସାହାଯ୍ୟରେ ସମାଜରେ ପ୍ରସାର କରିହେବ । ଗଣତାନ୍ତ୍ରିକ ମୂଲ୍ୟବୋଧ, ଗଣଶିକ୍ଷାର ପରିବେଶ, ସାମାଜିକ ନ୍ୟାୟ ଓ ବ୍ୟକ୍ତି ସମ୍ମାନବୋଧ ପରି ଭାବନାମାନ ବିଚାରଶୀଳତାରୁ ଉଦ୍ଭବ ହୋଇଛି । ଏହି ଦୃଷ୍ଟିଭଙ୍ଗୀ ହିଁ ଯଥାର୍ଥରେ ହେତୁବାଦର ଅନ୍ତଃସ୍ୱର । ଏହା ମାନବକୈନ୍ଦ୍ରିକ ଓ ଇହଲୌକିକ ଜୀବନାଦର୍ଶରୁ ସମ୍ଭବ ହୋଇଛି । ଏହି ଜୀବନଦର୍ଶନର ଆଧାର ଧର୍ମ, ଈଶ୍ୱର ବା ଧର୍ମଗ୍ରନ୍ଥ ନୁହେଁ, ବରଂ ଏହାର ଆଧାର ହେଉଛି ମାନବିକତା, ସମ୍ବେଦନଶୀଳ ଦୃଷ୍ଟିଭଙ୍ଗୀ ଓ ନୈତିକ ମୂଲ୍ୟବୋଧ ।

ଧର୍ମ ଦୃଷ୍ଟିରୁ ଜୀବନର ଅନ୍ତିମ ଲକ୍ଷ୍ୟକୁ ମୁକ୍ତି, ମୋକ୍ଷ, ଈଶ୍ୱରପ୍ରାପ୍ତି, ସ୍ୱର୍ଗପ୍ରାପ୍ତି ଇତ୍ୟାଦି ନିଆଯାଇଛି । ତେବେ ଏସବୁ କେବଳ କଳ୍ପନା ମାତ୍ର । ହେତୁବାଦରେ ଜୀବନକୁ ଅଧିକ ସୃଜନଶୀଳ ଓ ପ୍ରୀତିମୟ କରିବାର ସ୍ୱପ୍ନ ନିହିତ ଥାଏ । ଧାର୍ମିକ ଦୃଷ୍ଟିଭଙ୍ଗୀ ସବୁକିଛିକୁ ଅଲୀକ, ମାୟା, ଦୁଇଦିନର ଖେଳ ବୋଲି ନିଏ । ଏହା ଜୀବନ ପ୍ରତି ଏକ ନକାରାତ୍ମକ ମନୋଭାବ କହିଲେ ଅତ୍ୟୁକ୍ତି ହେବ ନାହିଁ । ବରଂ ପ୍ରତ୍ୟେକ ବ୍ୟକ୍ତି ଅଧିକ ସୃଜନଶୀଳ ହେବା, ନିଜ ସାମର୍ଥ୍ୟର ବିକାଶ କରିବାର ଉପଯୁକ୍ତ ପରିବେଶ ପାଇବା, ସମାଜ ପ୍ରତି ଏକ ଉତ୍ତରଦାୟୀ ମନୋଭାବ ପୋଷଣ କରିବା ଓ ସାମାଜିକ ଜୀବନ ପ୍ରବାହକୁ ଅଧିକରୁ ଅଧିକ ପ୍ରୀତିମୟ କରିବା ହେଲା ଏକ ଯଥାର୍ଥ ଜୀବନଦୃଷ୍ଟି । ବ୍ୟକ୍ତି ମରଣଶୀଳ, କିନ୍ତୁ ମାନବ ସମାଜ ଏକ ଶାଶ୍ୱତ ଧାରା । ତେଣୁ ଆଗାମୀ ପୃଥିବୀ କିପରି ଅଧିକ ପ୍ରୀତିପୂର୍ଣ୍ଣ ଓ ଜୀବନ ଅଧିକ ଅର୍ଥପୂର୍ଣ୍ଣ ହେବ ସେଥିପାଇଁ ସଚେତନତା ପ୍ରକାଶ ପାଇବା ଆବଶ୍ୟକ । ଆମେ ଆଜି ଯେଉଁ ପୃଥିବୀଟିରେ ରହିଛେ ଓ ସୁଖରେ ବଞ୍ଚିବାର ଅବକାଶ ଓ ପରିବେଶ ପାଇଛେ ତାହା ପଶ୍ଚାତରେ ଆମ ପିତାମହ ଓ ପ୍ରପିତାମହମାନଙ୍କର ଅବଦାନ ରହିଛି । କେତେ ସୃଜନଶୀଳ ମଣିଷଙ୍କର ଅବଦାନ ପାଇଁ ଆମର ଜୀବନଯାତ୍ରା ସୁଗମ ହୋଇପାରିଛି । ସେହିପରି ଆଗାମୀ ପିଢିର ଜନଗଣଙ୍କ ଜୀବନଧାରା ଅଧିକ ସୁଖପ୍ରଦ, ନିରାପଦ ଓ ପ୍ରୀତିପଦ ହେବା ପାଇଁ ଆମର ଅନେକ କର୍ତ୍ତବ୍ୟ ରହିଛି । ଆମ ଜୀବନଧାରା ଯେତେ ଅଧିକ ସୃଜନଶୀଳ ଓ ମାନବିକ ହେବ, ତାହା ଆମ ଜୀବନକୁ ଓ ଆଗାମୀ ପିଢିକୁ ସେତେ ସୁଖଶାନ୍ତିର ପରିବେଶ ଦେଇପାରିବ ।

ଇତିହାସରୁ ଏହା ଏକ ଉପଲବ୍ଧି ଯେ ହେତୁବାଦୀ, ମାନବବାଦୀମାନେ ଅଧିକ ସୃଜନଶୀଳ, ବିଚାରଶୀଳ ଓ ଜୀବନଧର୍ମୀ । ସେମାନେ ସଭ୍ୟତାକୁ ବହୁ ଅମୂଲ୍ୟ ଅବଦାନ ଦେଇଛନ୍ତି । ସ୍ୱର୍ଗ, ପରଲୋକ, ମୁକ୍ତି, ମୋକ୍ଷ ପରିବର୍ତ୍ତେ ମାନବିକତା, ବିଜ୍ଞାନ, ସୃଜନଶୀଳତା, ସାମାଜିକ ସମତା ଓ ଉତ୍ତରଦାୟୀ ଜୀବନବୋଧକୁ ସେମାନେ ସର୍ବଦା ପ୍ରାଧାନ୍ୟ ଦେଇଆସିଛନ୍ତି । ତାହାର ପରିଣାମରୁ ସଭ୍ୟତାର ବିକାଶ ହୋଇଛି ଓ ସମାଜରେ ମହତ୍ତର ମୂଲ୍ୟବୋଧର ଭାବନା ଦୃଢ ଭିତ୍ତି ନେଇଛି । ସେହି ଧାରାକୁ ଅଧିକ ଅଗ୍ରଗତି କରାଇବା ଆଜିର ବଡ ଆହ୍ୱାନ ମନେହୁଏ । ଏହି ବୌଦ୍ଧିକ କ୍ରାନ୍ତିଦ୍ୱାରା ସଭ୍ୟତାରେ ଯେ ଏକ ମହତ୍ତର ବିକାଶ ସମ୍ଭବ ହେବ, ଏହା ଆଶା କରାଯାଏ ।



# ଇତିହାସରୁ ଉପଲବ୍ଧି

ଇତିହାସରୁ ଏହା ଏକ ଉପଲବ୍ଧି ଯେ ମଣିଷ ହିଁ ତାର ସମାଜ, ସଂସ୍କୃତି, ଧର୍ମ, ନୀତିବୋଧ, ପରମ୍ପରା ଇତ୍ୟାଦି ନିର୍ମାଣ କରିଛି । ସଭ୍ୟତାରେ ଯାହା କିଛି ବିକଶିତ ହୋଇଛି ସେସବୁ ମଣିଷର ପ୍ରୟାସରେ ସମ୍ଭବ ହୋଇଛି । ହଜାର ହଜାର ବର୍ଷର ସଂଘବଦ୍ଧ ପ୍ରୟାସ ଓ ବୌଦ୍ଧିକ କୌତୂହଳତା ମଧ୍ୟ ଦେଇ ସାମାଜିକ ବିକାଶର ରଥ ଆଗକୁ ଯାଇଛି । ପ୍ରତ୍ୟେକ ସଭ୍ୟତାର କିଛି ଗୁଣୀ, ଜ୍ଞାନୀ, ବୁଦ୍ଧିଦୀପ୍ତ ବ୍ୟକ୍ତି ନିଜ ସମାଜର ଜୀବନଧାରାରୁ ଦୁଃଖ, ଦୁର୍ଦ୍ଦଶା ଦୂର କରିବାକୁ ପ୍ରଯତ୍ନ କରିଛନ୍ତି ଓ ଏକ ସୁଖପ୍ରଦ ପରିବେଶ ପାଇଁ ସଂପୃକ୍ତି ବ୍ୟକ୍ତ କରିଛନ୍ତି । ତେବେ ମାନବ ସମାଜରେ ସର୍ବଦା କିଛି ଦୁଃଖ, ସଙ୍କଟ, ଉତ୍ପୀଡନ ଲାଗିରହିଛି । ଗୋଟିଏ ପଟେ ପ୍ରକୃତି ମଣିଷ ପାଇଁ ପ୍ରତିକୂଳତା ସୃଷ୍ଟି କରିଆସିଛି । ଯେଉଁ ସମୟରେ ଗାଡି ମଟର ନଥିଲା, ରାସ୍ତାଘାଟ ନଥାଇ ଜଙ୍ଗଲଭରା ପରିବେଶ ରହିଥିଲା ସେହି ସମୟରେ ମଣିଷ ଏକ ସୀମିତ ଅଞ୍ଚଳରେ ଜୀବନ ନିର୍ବାହ କରୁଥିଲା । କୌଣସି ପ୍ରାକୃତିକ ଦୁର୍ବିପାକ ଘଟିଲେ ଅସହାୟ ହୋଇ ମୃତ୍ୟୁବରଣ କରିବା ବ୍ୟତୀତ ଅନ୍ୟ ଉପାୟ ନଥିଲା । ଏପରିକି ଶହେ ଦୁଇଶହ ବର୍ଷ ତଳର ପୃଥିବୀରେ କେତେ ଦୁର୍ଭିକ୍ଷ ପଡୁଥିଲା ତାହାର କାହାଣୀ ବେଶ୍ ମର୍ମାନ୍ତିକ । ଊନବିଂଶ ଶତାବ୍ଦୀର ସତୁରୀ ଦଶକରେ ଓଡିଶାର ନଅଙ୍କ ଦୁର୍ଭିକ୍ଷ ଓ ସ୍ୱାଧୀନତା ପୂର୍ବରୁ ବଙ୍ଗଳା ଦୁର୍ଭିକ୍ଷରେ ଲକ୍ଷ ଲକ୍ଷ ଲୋକ ପୋକ ମାଛି ପରି ଖାଦ୍ୟାଭାବ ଯୋଗୁ ମୃତ୍ୟୁବରଣ କରିଥିବାର କାହାଣୀ ସୁବିଦିତ । ଭାରତବର୍ଷର ବିଭିନ୍ନ ଅଞ୍ଚଳରେ ବିଭିନ୍ନ ବର୍ଷ ମରୁଡି, ନଦୀବଢି, ବାତ୍ୟା ଇତ୍ୟାଦି ଯୋଗୁ ଲୋକମାନେ ମୃତ୍ୟୁବରଣ କରୁଥିଲେ କିମ୍ବା ବହୁ ପ୍ରତିକୂଳ ପରିସ୍ଥିତିର ସମ୍ମୁଖୀନ ହେଉଥିଲେ । କେବଳ ଭାରତବର୍ଷରେ ଯେ ଏପରି ସ୍ଥିତି ଥିଲା ତାହା ନୁହେଁ, ସାରା ପୃଥିବୀରେ ଅଳ୍ପ ବହୁତ ଏହି ସ୍ଥିତି ରହିଥିଲା । ସେହିପରି ଶହେ ଦୁଇଶହ ବର୍ଷ ତଳେ ଚିକିତ୍ସା ବିଜ୍ଞାନର ବିକାଶ ବିଶେଷ ହୋଇନଥିଲା । ରୋଗ ବାଧକରେ ଲୋକମାନେ ଅସହାୟ ହୋଇ ମୃତ୍ୟୁବରଣ କରୁଥିଲେ । ବିଶେଷକରି କେତେକ ରୋଗ ମହାମାରୀର ରୂପ ନେଇ ଆସୁଥିଲା ଯେଉଁଥିରେ ଗାଁ ଗାଁରେ ମୃତ୍ୟୁର କରାଳ ତାଣ୍ଡବ ସୃଷ୍ଟି ହେଉଥିଲା । ଏସବୁ ପ୍ରାକୃତିକ ବିପର୍ଯ୍ୟୟ ସହିତ

ମାନବକୃତ ଶୋଷଣ, ଅତ୍ୟାଚାର, କ୍ରୂରତା ମଧ୍ୟ ସମାଜରେ ବହୁ ଦୁଃଖର କାରଣ ହେଉଥିଲା । ଯୁଦ୍ଧ, ବିଭୀଷିକା, ରାଜ୍ୟଜୟ ରାଜତନ୍ତ୍ର ଯୁଗରେ ସାଧାରଣ ଘଟଣା ଥିଲା । ସାମ୍ରାଜ୍ୟବାଦ, ସାମନ୍ତବାଦର ଶୋଷଣ ବିଭିନ୍ନ ଦେଶରେ ରହିଥିଲା । ଶିକ୍ଷା ସମାଜର ମୁଷ୍ଟିମେୟ ସାମନ୍ତବର୍ଗଙ୍କ ନିୟନ୍ତ୍ରଣ ଭିତରେ ଥିଲା ଓ ଗଣଶିକ୍ଷାର ଭାବନା ହିଁ ଆସିନଥିଲା । ଦୁଇଶହ ବର୍ଷ ତଳେ ଛପା ବହି ଖଣ୍ଡିଏ ଦୁଷ୍ପ୍ରାପ୍ୟ ବସ୍ତୁ ହୋଇ ରହିଥିଲା । ସାଧାରଣ ବ୍ୟକ୍ତି ଜୀବନର କୌଣସି ମୂଲ୍ୟ ନଥିଲା । ସବୁ ସଭ୍ୟତାରେ ମହିଳାମାନେ ନ୍ୟୂନ ହୋଇ ରହିଥିଲେ । ବିଜ୍ଞାନର ବିକାଶ ପୂର୍ବରୁ ୟୁରୋପରେ ଲକ୍ଷ ଲକ୍ଷ ମହିଳାଙ୍କୁ ମନ୍ଦାତ୍ମା, ଡାହାଣୀ କହି ମାରି ଦିଆଯାଉଥିଲା । କେଉଁଠି ସତୀଦାହ ପ୍ରଥା ଥିଲା ଓ ଅନ୍ୟ କେଉଁଠି ପରଦାପ୍ରଥାର ଆବରଣ ତଳେ ମହିଳାମାନଙ୍କୁ ଦମନକରି ରଖାଯାଇଥିଲା । ବିଭିନ୍ନ ଭୂଖଣ୍ଡରେ ଉତ୍କଟ ଦାରିଦ୍ର୍ୟ ରହିଥିଲା ଓ ଦୁଇଶହ ତିନିଶହ ବର୍ଷ ତଳେ ନିରକ୍ଷରତା ସର୍ବବ୍ୟାପୀ ହୋଇ ରହିଥିଲା । ସବୁ ସମାଜରେ ମୃତ୍ୟୁହାର ବହୁ ଅଧିକ ଥିଲା ଓ ମଣିଷର ସାଧାରଣ ଆୟୁ ଆଜିର ତୁଳନାରେ ବହୁତ କମ୍ ରହିଥିଲା । ୧୮୦୦ ମସିହାରେ ପୃଥିବୀର ଲୋକସଂଖ୍ୟା ଥିଲା ଶହେ କୋଟି, ୧୯୦୦ ମସିହା ବେଳକୁ ତାହା ବୃଦ୍ଧି ପାଇ ହେଲା ଶହେ ଷାଠିଏ କୋଟି । ଏତେ କମ୍ ଲୋକ ଥିବା ପୃଥିବୀରେ ବି ବହୁ ଦୁର୍ଭିକ୍ଷ ପଡୁଥିଲା । ଆଜି ତ ପୃଥିବୀର ଲୋକସଂଖ୍ୟା ସାତଶହ କୋଡିଏ କୋଟି ବୋଲି କୁହାଯାଉଛି । ସମ୍ଭବତଃ ପୃଥିବୀରେ କେଉଁଠି ଦୁର୍ଭିକ୍ଷର ପରିବେଶ ନାହିଁ । ଅବଶ୍ୟ କେତେକ ଅନଗ୍ରସର ରାଷ୍ଟ୍ରରେ ଅପପୁଷ୍ଟି ଏବେ ବି ଏକ ସମସ୍ୟା ହୋଇରହିଛି । ସମଗ୍ର ପୃଥିବୀରେ ଧୀରେ ଧୀରେ ଶିକ୍ଷା ସାର୍ବଜନୀନ ହେବାରେ ଲାଗିଛି ଓ ନିରକ୍ଷରତା ଦୂର କରିବା ପାଇଁ ସମସ୍ତ ଜନମଙ୍ଗଳକାରୀ ରାଷ୍ଟ୍ରରେ ନାନା ଯୋଜନା କରାଯାଉଛି । ରାଜତନ୍ତ୍ର ସାରା ପୃଥିବୀରୁ ଲୋପ ପାଇଛି । ଗଣତନ୍ତ୍ର, ସମାଜବାଦ, ଜନମଙ୍ଗଳକାରୀ ଭାବନା, ବ୍ୟକ୍ତି ସମ୍ମାନବୋଧ ପରି ମୂଲ୍ୟଚୟ ସାମାଜିକ ଜୀବନ ପ୍ରବାହରେ ଅଧିକରୁ ଅଧିକ ସ୍ୱୀକୃତ ହେବାରେ ଲାଗିଛି । ସଭ୍ୟତାରୁ ଅନେକ ଅନ୍ଧକାର ଦୂର ହେବାରେ ଲାଗିଛି ।

ଏହିସବୁ ବିକାଶର ଇତିହାସରୁ ଗୋଟିଏ କଥା ସତ୍ୟ ଯେ, ସବୁ ବିକାଶ ମଣିଷର ପ୍ରୟାସ ଯୋଗୁ ସମ୍ଭବ ହୋଇଛି । ସାମଗ୍ରିକ ଭାବେ ଚିନ୍ତା ଚେତନାରେ ଯେଉଁ ପରିବର୍ତ୍ତନ ଆସିଛି ତାହା ସମ୍ଭବ ହୋଇଛି ମଣିଷର ଚେଷ୍ଟା ତଥା ସୃଜନଶୀଳ ଓ ବୌଦ୍ଧିକ ଉଦ୍ୟମରୁ । ଅବଶ୍ୟ ଏହିସବୁ ବିକାଶ ସବୁ ରାଷ୍ଟ୍ରରେ ସମାନ ଭାବେ ଉପଲବ୍ଧ ହୋଇନାହିଁ । ଏବେବି ତୃତୀୟ ବିଶ୍ୱର ରାଷ୍ଟ୍ରମାନଙ୍କରେ ଅନେକ ଦାରିଦ୍ର୍ୟ ରହିଛି । ଏବେବି ଅପପୁଷ୍ଟି, ନିରକ୍ଷରତା, ବାଳଶ୍ରମିକ ପ୍ରଥା, ଭିକ୍ଷାବୃତ୍ତି, ବେଶ୍ୟାବୃତ୍ତି ପରି କେତେକ ଜଘନ୍ୟ ସ୍ଥିତି

କେତେକ ସମାଜରେ ରହିଛି । ପୃଥିବୀର ସବୁ ରାଷ୍ଟ୍ରର ଜନଗଣଙ୍କର ଜୀବନଧାରଣର ମାନ ସମାନ ସ୍ତରକୁ ଆସିପାରିନାହିଁ । ନାନା ମନ୍ଦ ସ୍ଥିତି କେତେକ ଦେଶରେ ଏବେ ବି କାୟା ବିସ୍ତାରକରି ରହିଛି । ପୃଥିବୀର ବିକଶିତ ରାଷ୍ଟ୍ରସମୂହ ଯେଉଁମାନଙ୍କୁ ପ୍ରଥମ ବିଶ୍ୱ କୁହାଯାଉଛି ସେମାନେ ବହୁ ଉନ୍ନତ ସ୍ଥିତିକୁ ଯାଇଛନ୍ତି । ଜୀବନର ଗୁଣାତ୍ମକ ମାନ ସେଠାରେ ଯଥେଷ୍ଟ ଉନ୍ନତ ହେବା କୁହାଯାଉଛି । ସମସ୍ତ ସମାଜବାଦୀ ରାଷ୍ଟ୍ରମାନେ ହେଲେ ଦ୍ୱିତୀୟ ବିଶ୍ୱ ଓ ସେଠାରେ ମଧ୍ୟ ଭୌତିକ ବିକାଶ ସହ ଜୀବନର ମାନ ଉନ୍ନତ ହୋଇପାରିଛି ।

ଏହି ପଚାଶବର୍ଷ ଭିତରେ ମାନବ ସଭ୍ୟତାର ଇତିହାସରେ ଏକ ବଡ ନୈତିକ ଉତ୍ତରଣ ଅନ୍ତତଃ ଚିନ୍ତା ସ୍ତରରେ ହୋଇଛି । ମାନବ ସଭ୍ୟତାର ଇତିହାସରେ ମଣିଷ ଉପରେ ମଣିଷର ଅତ୍ୟାଚାରର ଯେଉଁ ମର୍ମାନ୍ତିକ କାହାଣୀ ରହିଛି ତାହା ବିରୁଦ୍ଧରେ ଏକ ଆନ୍ତର୍ଜାତିକ ଆଲୋଡନ ଆସିଛି । ରଙ୍ଗଭେଦଜନିତ ଶୋଷଣ, ଅସ୍ପୃଶ୍ୟତା, ଜାତିବାଦ, ଆପରଥେଡ୍ ପରି ଯେଉଁ ଜଘନ୍ୟ ବ୍ୟବସ୍ଥା ବିଭିନ୍ନ ଦେଶରେ ରହିଥିଲା ତାହାର ବିଲୋପ ପାଇଁ ବିଶ୍ୱ ସ୍ତରରେ ପ୍ରୟାସ ହୋଇଛି । ସବୁ ମଣିଷ ଜନ୍ମରୁ ସମାନ, ପ୍ରତ୍ୟେକ ବ୍ୟକ୍ତି ଏକ ମର୍ଯ୍ୟାଦାର ସହ ଜୀବନ ବଞ୍ଚିବା ତାହାର ଏକ ପ୍ରାକୃତିକ ଅଧିକାର । ଯେକୌଣସି ପ୍ରକାରର ଭେଦଭାବ ଓ ଅନ୍ୟ ପ୍ରତି ନ୍ୟୂନ ମନୋଭାବ ଅନ୍ୟାୟ, ଅନୈତିକ ଓ ମାନବିକତା-ବିରୋଧୀ । ଜାତି, ଧର୍ମ, ବର୍ଣ୍ଣ, ଲିଙ୍ଗ, ଭାଷା, ଜାତୀୟତା ନିର୍ବିଶେଷରେ ପ୍ରତ୍ୟେକ ବ୍ୟକ୍ତି ନିଜ ସାମର୍ଥ୍ୟର ବିକାଶ ଘଟାଇବା ଓ ଆତ୍ମମର୍ଯ୍ୟାଦାର ସହ ବଞ୍ଚିବା ପାଇଁ ପ୍ରତ୍ୟେକ ରାଷ୍ଟ୍ର ଉତ୍ତରଦାୟୀ । ଯେକୌଣସି ପ୍ରକାରର ଶୋଷଣ, କ୍ରୂରତା ଓ ଭେଦଭାବକୁ ଲୋପ କରିବାପାଇଁ ପ୍ରତ୍ୟେକ ରାଷ୍ଟ୍ର ପ୍ରୟାସ କରିବ । ମାନବିକ ଅଧିକାରର ବିଶ୍ୱ ଘୋଷଣାନାମାରେ ଆନ୍ତର୍ଜାତିକ ସ୍ତରରେ ମାନବବାଦର ଏହି ଯେଉଁ ବିଚାର ସ୍ୱୀକୃତ ହୋଇଛି ତାହା ଯେ ସଭ୍ୟତାର ଇତିହାସରେ ଏକ ଉଲ୍ଲେଖନୀୟ ଘଟଣା ତାହା ନିଃସନ୍ଦେହ । ଏହାର ବହୁ ବ୍ୟତିକ୍ରମ ବା ଉଲ୍ଲଘନ ହୁଏତ ବିଭିନ୍ନ ଦେଶରେ ଘଟୁଛି, ତଥାପି ଏ କ୍ଷେତ୍ରରେ ଯେଉଁ ସଚେତନତା ସାରା ବିଶ୍ୱରେ ପ୍ରକାଶ ପାଇଛି ତାହା ଏକ ଗୌରବାବହ ଘଟଣା । ସେହିପରି ବିଜ୍ଞାନ ଓ ପ୍ରଯୁକ୍ତି ଆଜି ସମଗ୍ର ବିଶ୍ୱର ଜନଗଣଙ୍କ ଜୀବନଧାରାରେ ବହୁ ଉନ୍ନତି ଆଣିପାରିଛି । ଜ୍ଞାନ, ବିଜ୍ଞାନ ସାର୍ବଜନୀନ ହେବାରେ ଲାଗିଛି । ଯେଉଁମାନେ ନିଜର ଗବେଷଣା ଦ୍ୱାରା ନୂଆ ନୂଆ ଜ୍ଞାନ ଦେଇଛନ୍ତି ତାହାର ସୁଫଳ ସମଗ୍ର ମାନବ ସମାଜ ଉପଭୋଗ କରୁଛି । ଗୋଟିଏ ଗୋଟିଏ ନୂଆ ଉଦ୍ଭାବନ ବା ଆବିଷ୍କାର ସଭ୍ୟତାକୁ ଯେଉଁ ଲମ୍ଫ ଦେଇଛି ତାହା ସମଗ୍ର ମାନବଜାତିର ମଙ୍ଗଳ ସାଧନ କରିଛି । ପ୍ରିଣ୍ଟିଂ ପ୍ରେସ୍, ବିଜୁଳି ଆଲୁଅ, ବିଭିନ୍ନ ରୋଗର

ନିଦାନ, ଟେଲିଭିଜନ, ଉଡାଜାହାଜ, ମୋବାଇଲ ଫୋନ୍, ଇଣ୍ଟରନେଟ୍ ଇତ୍ୟାଦି ଜ୍ଞାନକୌଶଳ ସଭ୍ୟତାର ରୂପରେଖ ପରିବର୍ତ୍ତନ କରିପାରିଛି । ସେହିପରି ବୈଜ୍ଞାନିକ ଚାଷପ୍ରଣାଳୀ ପୃଥିବୀର କ୍ରମବର୍ଦ୍ଧିଷ୍ଣୁ ଜନସଂଖ୍ୟାର ଖାଦ୍ୟାଭାବ ଦୂର କରିବାରେ ସହାୟକ ହୋଇପାରିଛି । ଏହିସବୁ ବିକାଶ ଓ ସମୃଦ୍ଧି ମାତ୍ର ଦୁଇ ଶହ ବର୍ଷ ଭିତରେ ସମ୍ଭବ ହୋଇଛି । ବିଜ୍ଞାନ ଏକ ନୂଆ ଦୁନିଆ ଗଢିବାରେ ମଣିଷର ସାମର୍ଥ୍ୟକୁ ବହୁଗୁଣିତ କରିପାରିଛି ।

ଏସବୁ ସକାରାତ୍ମକ ବିକାଶ ସତ୍ତ୍ୱେ ତଥାପି ମାନବ ସଭ୍ୟତାରେ ବହୁ ସଙ୍କଟ ରହିଛି । ଆତଙ୍କବାଦ, ସନ୍ତ୍ରାସବାଦ, ବିଜ୍ଞାନର ଅପପ୍ରୟୋଗ, ଉଗ୍ର ଜାତୀୟତାବାଦ, ସାଂପ୍ରଦାୟିକ ବିଦ୍ୱେଷ, ମୌଳବାଦ ଓ ପୁଞ୍ଜିବାଦୀ ଶୋଷଣ ସମସ୍ୟାମାନ ବହୁ ଭାବରେ ସମାଜର ଶାନ୍ତି, ସ୍ଥିରତାକୁ ବିପନ୍ନ କରିବାରେ ଲାଗିଛି । ଦେଖିବାକୁ ଗଲେ ଧାର୍ମିକ ରକ୍ଷଣଶୀଳତା ବା ଧର୍ମାନ୍ଧତାରୁ ବହୁ ବିଦ୍ୱେଷ ଓ ଆତଙ୍କବାଦ ସୃଷ୍ଟି ହେଉଛି । ଧର୍ମାନ୍ଧତା ନାନା ଉଗ୍ରବାଦ ଓ ମାନବିକତା-ବିରୋଧୀ ମାନସିକତା ସୃଷ୍ଟିରେ ମୁଖ୍ୟ ଆୟୁଧ ହେଉଛି । ସେହିପରି ପ୍ରତ୍ୟେକ ରାଷ୍ଟ୍ର ନିଜ ରାଷ୍ଟ୍ରର ସୁରକ୍ଷା ପାଇଁ ପ୍ରତିରକ୍ଷା କ୍ଷେତ୍ରରେ ଜାତୀୟ ଆୟର ଏକ ମୁଖ୍ୟ ଭାଗ ବ୍ୟୟ କରୁଛି । ପ୍ରତ୍ୟେକ ରାଷ୍ଟ୍ର ଆଣବିକ ଶକ୍ତି ହାସଲ କରିବାକୁ ନାନା ଗବେଷଣାରେ ପ୍ରଚୁର ବ୍ୟୟକରୁଛି । ଧର୍ମାନ୍ଧତା ଓ ଉଗ୍ର ଜାତୀୟତା ସାଂପ୍ରତିକ ସ୍ଥିତିରେ ସଭ୍ୟତାର ଦୁଇଟି ବଡ ନକାରାତ୍ମକ ଦିଗ ବୋଲି ବିଶ୍ୱ ସ୍ତରରେ ବୁଦ୍ଧିଜୀବୀମାନେ ମତପୋଷଣ କରିବାରେ ଲାଗିଛନ୍ତି ।

ମଣିଷ ନିଜର ବିଚାରଶୀଳତାର ପ୍ରୟୋଗ କରି ଯେକୌଣସି ମାନବୀୟ ସଙ୍କଟକୁ ଦୂର କରିବାକୁ ପ୍ରଯତ୍ନ କରିଆସୁଛି । ଏହି ସ୍ଥିତିରେ ଏହି ଦୃଷ୍ଟିକୋଣ ବ୍ୟକ୍ତ ହେବାରେ ଲାଗିଛି ଯେ, ସମଗ୍ର ବିଶ୍ୱ ପାଇଁ ଏକ ବିଶ୍ୱ ସରକାର ପ୍ରତିଷ୍ଠା ହେଲେ ସମ୍ଭବତଃ ରାଷ୍ଟ୍ର ରାଷ୍ଟ୍ର ଭିତରର ବିଦ୍ୱେଷ ଓ ଆଣବିକ ଶକ୍ତି ବୃଦ୍ଧି ପାଇଁ ପ୍ରତିଯୋଗିତାର ଅବସାନ ହୋଇପାରିବ । ପ୍ରତିରକ୍ଷା କ୍ଷେତ୍ରରେ ବ୍ୟୟ ହେଉଥିବା ଅର୍ଥ ବିକାଶ କ୍ଷେତ୍ରରେ ବିନିଯୋଗ ହେଲେ ପୃଥିବୀରୁ ସକଳ ଦାରିଦ୍ର୍ୟର ବିଲୋପ ହେବ । ଏହା ସହ ଧାର୍ମିକ ମତାନ୍ଧତାର ଊର୍ଦ୍ଧ୍ୱକୁ ଯାଇ ଧର୍ମ ନିରପେକ୍ଷତା ଓ ମାନବବାଦ ବିଶ୍ୱର ନୈତିକ ଆଦର୍ଶ ହେବ । ଏକ ଆଦିମ ସ୍ଥିତିରୁ ଆରମ୍ଭ ହୋଇଥିବା ଯାତ୍ରାର ପରିଣତି ହେବ ଏକ ଭ୍ରାତୃତ୍ୱଭରା ବିଶ୍ୱସମାଜ । ଏହା ଯଦି ସମ୍ଭବ ହୁଏ, ଏହା ସମ୍ଭବ ହେବ ମହତ୍ତ୍ୱାକାଂକ୍ଷୀ ବ୍ୟକ୍ତିମାନଙ୍କର ଉଦ୍ୟମରେ, କୌଣସି ଈଶ୍ୱରୀୟ ଆଶୀର୍ବାଦରେ ନୁହଁ ।

ବିଡମ୍ବନାର ବିଷୟ ପୃଥିବୀର ତୃତୀୟ ବିଶ୍ୱର ରାଷ୍ଟ୍ରମାନଙ୍କ ଭିତରେ ବହୁ ଦାରିଦ୍ର୍ୟ ରହିଛି । ପରିଣାମତଃ ଅନଗ୍ରସରତା ଭିତରେ ରହିଥିବା ଏହି ତୃତୀୟ ବିଶ୍ୱର ରାଷ୍ଟ୍ରମାନଙ୍କ ଜନଗଣଙ୍କ ଭିତରେ ନିରକ୍ଷରତା, ଅପପୁଷ୍ଟି, ଭିକ୍ଷାବୃତ୍ତି, ବାଳଶ୍ରମିକ ପ୍ରଥା, ସମସ୍ତଙ୍କ ପାଇଁ ଆବଶ୍ୟକ ବେଳେ ସ୍ୱାସ୍ଥ୍ୟସେବାର ଅଭାବ ପରି ସମସ୍ୟାମାନ ରହିଛି । ଏହି ସହିତ ଆମ ଦେଶ ପରି କେତେକ ରାଷ୍ଟ୍ରରେ ଜୀବନର ଗୁଣାତ୍ମକ ମାନ ନ୍ୟୂନ ହୋଇ ରହିଛି । ଏକବିଂଶ ଶତାବ୍ଦୀରେ ବି ନାନା କୁସଂସ୍କାର ଓ ଅପସଂସ୍କୃତି ଜୀବନପ୍ରବାହରେ ରହିବା ଏକ ବିଡମ୍ବନା ନିଶ୍ଚୟ । ଚେଙ୍କ ଚିକିତ୍ସା, ଡାହାଣୀ ହତ୍ୟା, ଶକ୍ତିପୀଠରେ ପଶୁବଳି, ଅପରାଧମୂଳକ କାର୍ଯ୍ୟ ଧରିବା ପାଇଁ କୁଲାବୁଲା, ଖଟବୁଲା ଇତ୍ୟାଦି ଘଟଣାମାନ ଏ ଯୁଗରେ ଘଟିବା ଆମ ମାନସିକ ଅନଗ୍ରସରତାର ଚିତ୍ର ଦେଇଥାଏ । ଜୀବନର ଗୁଣାତ୍ମକ ମୂଲ୍ୟକୁ ନେଇ ପ୍ରଥମ ବିଶ୍ୱ ଓ ତୃତୀୟ ବିଶ୍ୱର ରାଷ୍ଟ୍ରମାନଙ୍କ ଭିତରେ ଯେପରି ପାର୍ଥକ୍ୟ ପରିଲକ୍ଷିତ ହୁଏ, ସେହିପରି ଗୋଟିଏ ରାଷ୍ଟ୍ରର ଜନଗୋଷ୍ଠୀମାନଙ୍କ ମଧ୍ୟରେ ମଧ୍ୟ ପ୍ରଭେଦ ଦୃଷ୍ଟିଗୋଚର ହୋଇଥାଏ । ଆମ ଦେଶରେ ଯେପରି ଧର୍ମ, ଭାଷା, ସାଂସ୍କୃତିକ ପରିବେଶ ଇତ୍ୟାଦି କ୍ଷେତ୍ରରେ ଭିନ୍ନତା ରହିଛି ସେହିପରି ଆମର ଜୀବନବୋଧ ଓ ବୈଚାରିକ ଅବବୋଧ କ୍ଷେତ୍ରରେ ମଧ୍ୟ ନାନା ଭେଦଭାବ ରହିଆସିଛି । ସମାଜର କେତେକ ବ୍ୟକ୍ତି ଗଣତାନ୍ତ୍ରିକ ଜୀବନଦୃଷ୍ଟି, ମାନବିକ ମର୍ଯ୍ୟାଦା, ବୈଜ୍ଞାନିକ ମନୋଭାବ ଓ ମାନବବାଦକୁ ସର୍ବଶ୍ରେଷ୍ଠ ମହତ୍ତ୍ୱ ଦିଅନ୍ତି, ପରନ୍ତୁ ଅନ୍ୟମାନେ ଏହିସବୁ ମୂଲ୍ୟବୋଧଠାରୁ ଯୋଜନ ଦୂରରେ ରହିଛନ୍ତି । ସାମାଜିକ ସ୍ଥିତି ନିର୍ବିଶେଷରେ ସମାଜରେ କିଛି ବ୍ୟକ୍ତି ପାରଲୌକିକତାରେ ଆସ୍ଥା ସ୍ଥାପନ କରନ୍ତି, ଜାତିବାଦକୁ ସମର୍ଥନ କରନ୍ତି ଓ ମଧ୍ୟଯୁଗୀୟ ଆଦର୍ଶକୁ ଗୁରୁତ୍ୱ ପ୍ରଦାନ କରନ୍ତି । ସେମାନେ ଏକବିଂଶ ଶତାବ୍ଦୀର ପ୍ରଯୁକ୍ତିର ସୁଫଳ ଉପଭୋଗ କରନ୍ତି କିନ୍ତୁ ମାନସିକତାରେ ବୈଜ୍ଞାନିକ ବିଚାରଧାରାକୁ ଗ୍ରହଣ କରିପାରନ୍ତି ନାହିଁ । ପୁନଶ୍ଚ ଏବେବି ଆମ ସମାଜରେ ଜାତିଗତ ଭେଦଭାବ ଓ ଧର୍ମାନ୍ଧତା ନାନା ଭାବରେ କାୟା ବିସ୍ତାର କରି ରହିଛି । ମାନବବାଦ, ସାମାଜିକ ସମତା, ବ୍ୟକ୍ତି ମର୍ଯ୍ୟାଦାବୋଧ ପରି ସାର୍ବଜନୀନ ମୂଲ୍ୟଚୟମାନ ଆମ ଜନଜୀବନରେ ଦୃଢ଼ ଭିତ୍ତି ନେଇପାରି ନାହିଁ । ସଭ୍ୟତା ଯେତେ ଅଗ୍ରସର ହେଲେ ବି ଜନଗୋଷ୍ଠୀର ଏକ ମୁଖ୍ୟ ଅଂଶ ଅନ୍ଧକାର ଭିତରେ ରହିଛନ୍ତି ।

ଯେଉଁ ରାଷ୍ଟ୍ରମାନେ ଅନଗ୍ରସର ରହିଛନ୍ତି, ମୁଖ୍ୟତଃ ତୃତୀୟ ବିଶ୍ୱର ରାଷ୍ଟ୍ରମାନେ, ସେଠାରେ ଜୀବନର ଭୌତିକ ଓ ଗୁଣାତ୍ମକ ମାନ ତଳ ସ୍ତରରେ ରହିଛି । ସେମାନେ ଏହି ସ୍ଥିତିରେ ରହିବାକୁ ଅଭିଶପ୍ତ ହୋଇନାହାନ୍ତି । ଯେଉଁ ରାଷ୍ଟ୍ରମାନେ ଉନ୍ନତ ସ୍ଥିତିକୁ ଯାଇଛନ୍ତି

ସେମାନଙ୍କୁ କେଉଁ ଈଶ୍ୱରୀୟ କରୁଣା ମିଳି ନାହିଁ ଓ ଯେଉଁମାନେ ଅନଗ୍ରସର ରହିଛନ୍ତି ସେମାନଙ୍କୁ କିଛି ଅଭିଶାପ ମିଳି ନାହିଁ । ବିଶେଷକରି ଯେଉଁ ଦେଶରେ ବିଭିନ୍ନ ଦିଅଁ ଦେବତା, ପୂଜାସ୍ଥଳ, ଧାର୍ମିକ ଆବେଗ ଏତେ ବ୍ୟାପକ ରହିଛି ସେହି ଦେଶମାନ ବିକାଶର ସିଡ଼ିରେ ତଳେ ରହିଛନ୍ତି । ଯେଉଁମାନେ ବିକାଶର ଶିଡ଼ିରେ ତଳେ ରହିଛନ୍ତି ସେଠାରେ ଯେ ପ୍ରାକୃତିକ ସାଧନମାନ କମ୍ ରହିଛି କିମ୍ବା ପ୍ରକୃତି ପ୍ରତିକୂଳ ହୋଇଛି ତାହା ମଧ୍ୟ ନୁହେଁ । ପ୍ରାକୃତିକ ସମ୍ପଦର ବହୁଳତା ଓ ଅନୁକୂଳ ପରିବେଶ ଥାଇ ମଧ୍ୟ ଜନଗଣ ଅନଗ୍ରସର ରହିବା ପଶ୍ଚାତରେ ବହୁ ଐତିହାସିକ, ସାଂସ୍କୃତିକ ଓ ସାମାଜିକ କାରଣ ରହିଆସିଛି । ଉପଯୁକ୍ତ କର୍ମସଂସ୍କୃତିର ଅଭାବ, ସାମାଜିକ ପରିବେଶ ଓ ଜୀବନଦୃଷ୍ଟି ନାନା କାରଣ ଭିତରୁ ଅଧିକ ଗୁରୁତ୍ୱପୂର୍ଣ୍ଣ ମନେହୁଏ । ଯେଉଁଠି ପାରଲୌକିକ ଜୀବନଦୃଷ୍ଟିର ପ୍ରାବଲ୍ୟ ରହେ, ସମାଜରେ ଏକ ଉତ୍ତରଦାୟୀ କର୍ମସଂସ୍କୃତିର ବିକାଶ ହୁଏ ନାହିଁ ଓ ନାଗରିକ ସଚେତନତା ତଥା ଶୃଙ୍ଖଳାବୋଧର ଅଭାବ ରହେ ସେଠାରେ ସାମାଜିକ ବିକାଶ ପ୍ରକ୍ରିୟା ନ୍ୟୂନ ହୋଇଥାଏ । ଏହା ସହିତ ଦୁର୍ନୀତି, ସାମାଜିକ ଭେଦଭାବ ଓ ମୌଳବାଦୀ ଜୀବନଦୃଷ୍ଟି ସାମାଜିକ ବିକାଶ ପ୍ରକ୍ରିୟାରେ ବଡ ପ୍ରତିବନ୍ଧକ ହେବା ଦେଖାଯାଏ । ଏସବୁର ସମ୍ମିଳିତ ପ୍ରଭାବ ଆମ ଅନଗ୍ରସରତା ପାଇଁ ଯେ ଦାୟୀ ଏହା କୁହାଯାଇପାରେ ।

ଏକ ରକ୍ଷଣଶୀଳ ଓ ସାମନ୍ତବାଦୀ ସମାଜରେ ବିଜ୍ଞାନ ଓ ପ୍ରଯୁକ୍ତିକୁ ବିକାଶର ମନ୍ତ୍ର ଭାବରେ ନିଆନଯାଇ ଧାର୍ମିକ ପରମ୍ପରା ଓ କୁସଂସ୍କାରର ପ୍ରସାର ପାଇଁ ବିନିଯୋଗ କରାଯିବା ଏକ ବିଡମ୍ବନା ନିଶ୍ଚୟ । ଜନମାନସରେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଓ ଭେଦଭାବରହିତ ମାନବବାଦୀ ଜୀବନବୋଧର ପ୍ରସାର ନ ହେଲେ ସମାଜର ବିକାଶ ତ୍ୱରାନ୍ୱିତ ହୋଇପାରିବ ନାହିଁ । ଏକ ସଭ୍ୟତା ପ୍ରାଚୀନ ହୋଇପାରେ, କିନ୍ତୁ ପ୍ରାଚୀନତା ଉତ୍କର୍ଷର ମାନଦଣ୍ଡ ନୁହେଁ । ଏହା ହିଁ ଇତିହାସର ଏକ ଉପଲବ୍ଧି ।



# ସମାଜ ସଂସ୍କାର : ଦିଗ ଓ ଦିଗନ୍ତ

ଏକ ଆଦିମ ସ୍ତରରୁ ନାନା ପରିବର୍ତ୍ତନ ଓ ବିବର୍ତ୍ତନ ମଧ୍ୟ ଦେଇ ମାନବ ସଭ୍ୟତାର ଅଗ୍ରଗତି ଘଟିଛି । ସଂପ୍ରତି ସଭ୍ୟତା ଯେଉଁ ସ୍ତରରେ ପହଞ୍ଚିଛି ତାହା ପଶ୍ଚାତରେ ସୁଦୀର୍ଘ କାହାଣୀ ରହିଛି । ମଣିଷର ଜ୍ଞାନ-ବିଜ୍ଞାନ ସ୍ତରରେ କ୍ରମବର୍ଦ୍ଧିଷ୍ଣୁ ଭାବେ କ୍ରମୋନ୍ନତି ଘଟିଛି, ପ୍ରାଯୁକ୍ତିକ କୌଶଳ ବୃଦ୍ଧି ପାଇଛି, ସାମାଜିକ ବ୍ୟବସ୍ଥା ଦୃଢ ହୋଇଛି, ରାଜନୈତିକ ସ୍ତରରେ ଜନମଙ୍ଗଳକାରୀ ଭାବନା ଓ ଗଣତାନ୍ତ୍ରିକ ବ୍ୟବସ୍ଥାର ବିକାଶ ହୋଇଛି, ସାର୍ବଜନୀନ ଶିକ୍ଷାର ମନୋଭାବ ଆସିଛି, ସାମାଜିକ ସମାଜ, ନ୍ୟାୟ ଓ ବ୍ୟକ୍ତି ମର୍ଯ୍ୟାଦାବୋଧ ନେଇ ସଚେତନତା ପ୍ରକାଶ ପାଇଛି ତଥା ବ୍ୟକ୍ତି ଓ ଗୋଷ୍ଠୀ ଜୀବନର ଗୁଣାତ୍ମକ ମୂଲ୍ୟ ନେଇ ଦୃଷ୍ଟିଭଙ୍ଗୀରେ ପରିବର୍ତ୍ତନ ଆସିବାରେ ଲାଗିଛି । ଅଧିକନ୍ତୁ ସମଗ୍ର ବିଶ୍ୱରେ ଆନ୍ତର୍ଜାତିକ ମନୋଭାବ ଓ ସାର୍ବଜନୀନ ଦୃଷ୍ଟିଭଙ୍ଗୀ ବୃଦ୍ଧି ପାଇବାରେ ଲାଗିଛି । ଆଧୁନିକ ପ୍ରଯୁକ୍ତି ମାନବ ସମାଜକୁ ଗୋଟିଏ ବିଶ୍ୱ-ଗ୍ରାମରେ ରୂପାନ୍ତରିତ କରିବାର ପରିବେଶ ସୃଷ୍ଟି କରିଛି । ପୃଥିବୀରେ ବହୁ ଆନ୍ତର୍ଜାତିକ ସଂସ୍ଥା ଓ ସଙ୍ଗଠନ ସମଗ୍ର ମାନବ ସମାଜର ମଙ୍ଗଳ ପାଇଁ ନିଜର ସଂପୃକ୍ତି ବ୍ୟକ୍ତ କରିବାରେ ଲାଗିଛନ୍ତି । ପ୍ରତ୍ୟେକ ସଂସ୍କୃତିରେ ରହିଥିବା ମହାମାନବୀୟ ଚେତନା ଓ ମାନବବାଦୀ ଜୀବନବୋଧର ବାର୍ତ୍ତା ସମଗ୍ର ମଣିଷ ସମାଜକୁ ଭଲ ଦିଗରେ ପ୍ରଭାବିତ କରୁଛି । ସାଂସ୍କୃତିକ ଆଦାନ-ପ୍ରଦାନ ମଧ୍ୟ ଦେଇ ବିଶ୍ୱରେ ଏକ ସମନ୍ୱିତ ଜୀବନବୋଧର ସଂସ୍କୃତି ବୃଦ୍ଧି ପାଇବାରେ ଲାଗିଛି । ଆଧୁନିକ ବିଜ୍ଞାନ ପୃଥିବୀର ଦୂରତ୍ୱକୁ ହ୍ରାସ କରିପାରିଛି ଓ ଯେକୌଣସି ଅଞ୍ଚଳର ବ୍ୟକ୍ତି ଅନ୍ୟ ଯେକୌଣସି ଅଞ୍ଚଳ ସହ ସମ୍ବନ୍ଧ ପ୍ରତିଷ୍ଠା କରିବା ସମ୍ଭବ ହୋଇଛି ।

ଦୁଇ ତିନି ଶତାବ୍ଦୀ ତଳେ ସାମାଜିକ ଦୃଶ୍ୟପଟ ଭିନ୍ନ ରହିଥିଲା । ନଦୀ, ସମୁଦ୍ର, ପାହାଡ, ପର୍ବତ ଇତ୍ୟାଦି ଯୋଗୁ ପୃଥିବୀ ଭାଗ ଭାଗ ହୋଇ ରହିଥିଲା । ବିଭିନ୍ନ ଭୌଗୋଳିକ ଭୂଖଣ୍ଡମାନଙ୍କରେ ରହିଥିବା ସଭ୍ୟତାମାନଙ୍କ ଭିତରେ ଆଦାନ-ପ୍ରଦାନ ନଥିଲା କିମ୍ବା ସମ୍ବନ୍ଧ ଅତ୍ୟନ୍ତ ସୀମିତ ଥିଲା । ପୃଥିବୀରେ ହଜାର ହଜାର ଭାଷା ରହିଥିଲା ଓ କୌଣସି ସମନ୍ୱୟକାରୀ ଭାଷା ନଥିଲା । ନାନା ଭେଦଭାବ ଓ ଅଞ୍ଚଳ-ଅଞ୍ଚଳ ଭିତରେ ବିଦ୍ୱେଷ ରହିଥିଲା । ଜାତି,

ବର୍ଣ୍ଣ, ଧର୍ମ, ଜାତୀୟତା ଆଧାରରେ ସମାଜ ନାନା ଭାବରେ ବିଭାଜିତ ହୋଇ ରହିଥିଲା । ବିଜ୍ଞାନର ଯୁଗ ଆସିବା ପୂର୍ବରୁ ବହୁ ଅଜ୍ଞତା, କୁସଂସ୍କାର, ଅପବିଶ୍ୱାସ, ପାରଲୌକିକ ମନୋଭାବ ସମାଜରେ ସୁଦୃଢ ଥିଲା । ସାମନ୍ତବାଦ, ସାମ୍ରାଜ୍ୟବାଦ, ରାଜତନ୍ତ୍ର ଯୁଗରେ ମୁଷ୍ଟିମେୟ ଶକ୍ତିଶାଳୀ ଗୋଷ୍ଠୀ ବହୁଜନ ଗୋଷ୍ଠୀକୁ ନାନା ଭାବରେ ଶୋଷଣ କରିବାର ମନୋଭାବ ରଖିଥିଲେ । ବିଭିନ୍ନ ରୋଗ, ମହାମାରୀ, ପ୍ରାକୃତିକ ଦୁର୍ବିପାକ ମଣିଷ ସମାଜରେ ଯେଉଁ ଦୁଃଖ କଷ୍ଟର ପରିବେଶ ସୃଷ୍ଟି କରିଆସିଛି ତାହାପେକ୍ଷା ମାନବିକ କ୍ରୂରତା, ହିଂସା, ବର୍ବରତା ଓ ଶୋଷଣ ସମାଜରେ ଅଧିକ ଦୁଃଖ ଯନ୍ତ୍ରଣାର ପରିସ୍ଥିତି ସୃଷ୍ଟି କରିଆସିଛି । ଅଜ୍ଞତା ଜନିତ ବିଶ୍ୱାସରୁ ସମାଜରେ ନାନା ପ୍ରକାରର କୁସଂସ୍କାର, ଅପବିଶ୍ୱାସ ସୃଷ୍ଟି ହୋଇ ଗୋଷ୍ଠୀଜୀବନକୁ କବଳିତ କରିବା ସାଧାରଣ ଘଟଣା ହୋଇଯାଇଛି । କେତେକ ଅହେତୁକ ବିଶ୍ୱାସ ଓ ପାରଲୌକିକ ଅବୈଜ୍ଞାନିକ ମନୋଭାବ ପିଢି ପିଢି ଦେଇ ବିଭିନ୍ନ ସମାଜର ଜନଜୀବନକୁ ନାନା ଭାବରେ କବଳିତ କରିଛି । ସେସବୁକୁ ପରମ୍ପରା, ସାମାଜିକ ଅସ୍ମିତା ଓ ଐତିହ୍ୟର ରୂପ ଦେଇ ଆଧାରହୀନ ବିଶ୍ୱାସମାନଙ୍କୁ ଦୃଢ କରାଯାଇଛି ।

ତେବେ ସବୁ ସଭ୍ୟତାର ଇତିହାସରେ କିଛି ବୁଦ୍ଧିଦୀପ୍ତ ବ୍ୟକ୍ତି ସାମାଜିକ ଜୀବନ ପ୍ରବାହରେ ନୂଆ ନୂଆ ଆଲୋଡନ ଆଣିବାକୁ ପ୍ରୟାସ କରିଛନ୍ତି । ସମାଜର କୌଣସି ଭେଦଭାବ, ଅଜ୍ଞତା ଓ ଶୋଷଣକୁ ଅନୁଭବ କରୁଥିବା ବ୍ୟକ୍ତିବିଶେଷ ପ୍ରଚଳିତ ପନ୍ଥା, ପରମ୍ପରା କିପରି ମାନବୀୟ ଦୁଃଖ ଯନ୍ତ୍ରଣାର କାରଣ ତାହାର ଅନୁଶୀଳନ କରିବାରେ ପାରଦର୍ଶିତା ଦେଖାଇଛନ୍ତି । ସମାଜର ପ୍ରଚଳିତ ବ୍ୟବସ୍ଥା ଓ ପରମ୍ପରା ଯେତେ ଜ୍ଞାନବିରୋଧୀ, ନୀତିବିରୋଧୀ ଓ ମାନବିକତାବିରୋଧୀ ହେଲେ ବି ତାହା ବିରୋଧରେ ଉଠୁଥିବା ସ୍ୱରକୁ ସମାଜ ତୁରନ୍ତ ଗ୍ରହଣ କରିନାହିଁ । ଇତିହାସରେ ଏହା ଏକ ବିଡମ୍ବନା ଯେ ସମାଜ ସଂସ୍କାରକମାନେ ସେମାନଙ୍କର ସମସାମୟିକ ସମାଜରେ ବହୁ ସମାଲୋଚନା ଓ ବିରୋଧର ସମ୍ମୁଖୀନ ହୋଇଛନ୍ତି । ଏପରିକି ଜ୍ଞାନ ବିଜ୍ଞାନକୁ ଅମୂଲ୍ୟ ଅବଦାନ ଦେଇଥିବା ଓ ଜୀବନର ଗୁଣାତ୍ମକ ମାନରେ ପରିବର୍ତ୍ତନ ଆଣିଥିବା ବ୍ୟକ୍ତିମାନେ ନାନା ପ୍ରତିବନ୍ଧକର ସାମ୍ନା କରିଛନ୍ତି । ଏସବୁ ସତ୍ତ୍ୱେ ପ୍ରଗତିଶୀଳ ଲକ୍ଷ୍ୟ ଦିଗରେ ସମାଜର ଅଗ୍ରଗତି ଅବ୍ୟାହତ ରହିଛି, ମାନବବାଦୀ ମୂଲ୍ୟବୋଧର ପ୍ରସାର ହୋଇଚାଲିଛି ଓ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ପ୍ରତି ଅଧିକରୁ ଅଧିକ ସାମାଜିକ ସ୍ୱୀକୃତି ପ୍ରକାଶ ପାଉଛି । ମୋଟ ଉପରେ କହିଲେ ସମାଜ ସଂସ୍କାରର ଦିଗନ୍ତ ବିସ୍ତାରିତ ହେବାରେ ଲାଗିଛି । ଏହି ପୃଷ୍ଠଭୂମିରେ ସମାଜ ସଂସ୍କାରର ଭାବନାକୁ ବ୍ୟାଖ୍ୟା କରିବା ଶଂସିତ ପ୍ରବନ୍ଧଟିର ଆଭିମୁଖ୍ୟ । ତେବେ ପ୍ରସଙ୍ଗଟି ଏତେ ବ୍ୟାପକ ଓ ଏହାର

ପରିସରଟି ଏତେ ବିସ୍ତାରିତ ଯେ ଏହାର ଏକ ସାମଗ୍ରିକ ଚିତ୍ର ଦେବା ଏଠାରେ ସମ୍ଭବ ନୁହେଁ । ପରନ୍ତୁ ସମାଜ ସଂସ୍କାରର କେତେକ ସାଧାରଣ ଲକ୍ଷଣକୁ ଦର୍ଶାଇବା ଆମର ଲକ୍ଷ୍ୟ । ସମାଜ ସଂସ୍କାରର ସଂକ୍ଷିପ୍ତ ଆଲୋଚନା ପରେ ଆମ ଜାତୀୟ ଜୀବନର ସାମାଜିକ ସ୍ଥିତିରେ ପରିବର୍ତ୍ତନ ପାଇଁ ହୋଇଥିବା ପ୍ରୟାସର ସୂଚନା ଦେବା ଆମର ଉଦ୍ଦେଶ୍ୟ ।

ଇତିହାସରୁ ଏହା ଏକ ଉପଲବ୍ଧି ଯେ ଅଜ୍ଞତା, ହିଂସା ଓ ଭେଦଭାବର ସଂସାର ହେଉଛି ଏକ ଦୁଃଖର ସଂସାର । ଏକ ଶୋଭନୀୟ ସମାଜ ପାଇଁ ଅଜ୍ଞତା ଓ ସାମାଜିକ ଭେଦଭାବ ସବୁଠାରୁ ବଡ ପ୍ରତିବନ୍ଧକ । ସମାଜ ଯେବେଠାରୁ ଦୃଢ ଭିତ୍ତି ନେଇଛି ସମାଜର କିଛି ବୁଦ୍ଧିଦୀପ୍ତ ବ୍ୟକ୍ତି ଏକ ଉନ୍ନତ ଓ ସୁସଂହତ ସାମାଜିକ ଜୀବନ ପାଇଁ ଗମ୍ଭୀର ସଂପୃକ୍ତି ବ୍ୟକ୍ତ କରିଆସିଛନ୍ତି । ଏହି ପରିପ୍ରେକ୍ଷୀରେ କେତେ କେତେ ବୌଦ୍ଧିକ ଆଲୋଡନ ବିଭିନ୍ନ ଭୂଖଣ୍ଡରେ ସୃଷ୍ଟି ହୋଇଛି । ସେହି ଆଲୋଡନ ମଧ୍ୟ ଦେଇ ସାମାଜିକ ଜୀବନଧାରାରେ ସାଂସ୍କୃତିକ ପରିବର୍ତ୍ତନମାନ ଆସିଛି । ସମାଜର ନୈତିକ ଓ ବୌଦ୍ଧିକ ଉତ୍ତରଣ ଦିଗରେ ଏହି ନବଜାଗରଣ ଯେଉଁ ପ୍ରଭାବ ସୃଷ୍ଟି କରିଛି ତାହାର ସୁଦୂରପ୍ରସାରୀ ପ୍ରଭାବ ମାନବ ସଭ୍ୟତାକୁ ନୂଆ ମୋଡ ଦେଇଛି । ମଣିଷ ଜାତିର ଚିନ୍ତା, ଚେତନାକୁ ତାହା ଗଭୀର ଭାବେ ପ୍ରଭାବିତ କରିଛି । ସାମାଜିକ, ରାଜନୈତିକ, ସାଂସ୍କୃତିକ, ବୌଦ୍ଧିକ ଓ ନୈତିକ ଦିଗନ୍ତକୁ ଗଭୀର ଭାବେ ଯେଉଁ ବିଚାର ପ୍ରଭାବିତ କରିଛି ତାହାକୁ ଏକ ନବଜାଗରଣ ବା ରେନେସାଁ କୁହାଯାଇପାରେ । ଏହି ପୃଷ୍ଠଭୂମିରେ ତିନୋଟି ନବଜାଗରଣ ଯାହା ସମୟର ବେଳାଭୂମିରେ ଗଭୀର ପଦଚିହ୍ନ ରଖିଛନ୍ତି ତାହାର ସଂକ୍ଷିପ୍ତ ସୂଚନା ଦିଆଯାଇପାରେ । ସେହି ପଦଚିହ୍ନମାନ ହେଲା ଧାର୍ମିକ ବିଶ୍ୱାସର ଅଭ୍ୟୁଦୟ, ବୈଜ୍ଞାନିକ ବିଚାରର ବିକାଶ ଓ ଏକ ମାନବବାଦୀ ଜୀବନ-ଦର୍ଶନର ପରିପ୍ରକାଶ ।

ଆନୁଷ୍ଠାନିକ ଧର୍ମମାନଙ୍କର ବିକାଶ ସଭ୍ୟତାର ଇତିହାସରେ ଥିଲା ଯୁଗାନ୍ତକାରୀ ଘଟଣା । ଖ୍ରୀ.ପୂ. ୮୦୦ ପରଠାରୁ ବିଭିନ୍ନ ସଭ୍ୟତାରେ କିଛି କ୍ରାନ୍ତିକାରୀ ବିଚାରମାନ ସୃଷ୍ଟି ହୋଇଥିଲା । ପ୍ରାଗ୍‌ଧର୍ମୀୟ ସମାଜରେ ଯେତିକି ବୌଦ୍ଧିକ ବିକାଶ ହୋଇଥିଲା ସେଥିରେ ବହୁ ଦେବାଦେବୀରେ ବିଶ୍ୱାସ, ବଳିପ୍ରଥା, ନାନା ଅସଭ୍ୟ ଭାବନା ରହିଥିଲା । ପ୍ରାକୃତିକ ଘଟଣା ପ୍ରବାହ ଓ ଜୀବନର ଘନଘଟା ବୁଝିବା ମଣିଷର ସାଧ୍ୟାତୀତ ଥିଲା । ଜୀବନର ପ୍ରତ୍ୟେକ କ୍ଷେତ୍ର ଓ ପ୍ରକୃତିର ବିଭିନ୍ନ ଘଟଣା ପ୍ରବାହକୁ ନାନା ଦେବ ଦେବୀ ନିୟନ୍ତ୍ରଣ କରୁଥିବା ବିଶ୍ୱାସ ସର୍ବବ୍ୟାପ୍ୟ ଥିଲା । ବହୁ ଦେବବାଦ ଭାବନାରୁ ଏକେଶ୍ୱରବାଦର ପରିକଳ୍ପନା ଏକ କ୍ରାନ୍ତିକାରୀ ବିଚାର ଭାବେ ଆସିଥିଲା । ମଣିଷର ସହଜାତ ବିଶ୍ୱାସ ଓ ଧାର୍ମିକ ଆବେଗ ଭିତରୁ ନାନା ପାରଲୌକିକ କଳ୍ପନାର ବିକାଶ ହେଲା । ବିଭିନ୍ନ ସଭ୍ୟତାରେ

ଓ ଭୌଗୋଳିକ ପରିବେଶରେ କେତେକ ଆଧ୍ୟାତ୍ମିକ ବ୍ୟକ୍ତିଙ୍କର ଆବିର୍ଭାବ ଜନଜୀବନକୁ ନୂତନ ଦିଗନ୍ତର ସନ୍ଧାନ ଦେଲା । ବିଭିନ୍ନ ଭୂଖଣ୍ଡରେ କେତେକ ଆଧ୍ୟାତ୍ମିକ ପ୍ରବକ୍ତାଙ୍କର ବିଚାରବୋଧକୁ ନେଇ ଭିନ୍ନ ଭିନ୍ନ ସାଂସ୍କୃତିକ ଧାରା ସୃଷ୍ଟି ହେଲା । ଇସ୍ରାଏଲରେ ହିବ୍ରୁ ସନ୍ଥମାନଙ୍କ ବିଚାରବୋଧରୁ ଇହୁଦୀମାନଙ୍କର ଧର୍ମଚେତନା ରୂପରେଖ ନେଇଥିଲା । ପର୍ଶିଆରେ ଜୋରାଷ୍ଟରଙ୍କ ବିଚାରଧାରାରୁ ଯେଉଁ ସାଂସ୍କୃତିକ ଆଲୋଡନ ଆସିଥିଲା ତାହା ପାର୍ଶୀଧର୍ମରେ ରୂପାନ୍ତରିତ ହେଲା । ଚୀନରେ କନଫୁସିଅସ୍‌ଙ୍କ ଆବିର୍ଭାବକୁ ନେଇ ଟାଓବାଦ ଏକ ବୈଚାରିକ ବିପ୍ଳବ ସୃଷ୍ଟି କରିଥିଲା । ଭାରତ ଭୂଖଣ୍ଡରେ ଉପନିଷଦ୍, ବ୍ରହ୍ମସୂତ୍ରର ରଚନା ଭିତର ଦେଇ ଏକେଶ୍ୱରବାଦର ବିଚାରବୋଧ ସୃଷ୍ଟି ହୋଇଥିଲା । ମହାବୀର ଓ ବୁଦ୍ଧଙ୍କର ଆବିର୍ଭାବ ଓ ତାଙ୍କ ବିଚାରଧାରାକୁ ନେଇ ଦୁଇଟି ପୃଥକ୍ ସାଂସ୍କୃତିକ ଆଲୋଡନ ମଧ୍ୟ ବେଶ୍ କ୍ରାନ୍ତିକାରୀ ଥିଲା । ଖ୍ରୀଷ୍ଟାବ୍ଦ ଆରମ୍ଭ ବେଳକୁ ଯିଶୁଖ୍ରୀଷ୍ଟଙ୍କ ଆଧ୍ୟାତ୍ମିକ ଚିନ୍ତାର ଭିତ୍ତି ଉପରେ ଏକ ସାଂସ୍କୃତିକ ପ୍ରବାହର ସୂତ୍ରପାତ ହେଲା । ଷଷ୍ଠ ଶତାବ୍ଦୀରେ ଆରବ ଭୂଖଣ୍ଡରେ ପ୍ରଫେଟ୍ ମହମ୍ମଦଙ୍କର ଆବିର୍ଭାବ ସେ ଭୂଖଣ୍ଡର ସାଂସ୍କୃତିକ ଜୀବନପ୍ରବାହକୁ ଗଭୀରଭାବେ ପ୍ରଭାବିତ କରିଥିଲା । ପୃଥିବୀର ବିଭିନ୍ନ ଭୌଗୋଳିକ ଭୂଖଣ୍ଡରେ ଯେପରି ସଭ୍ୟତାମାନଙ୍କର ବିକାଶ ହୋଇଥିଲା ସେହିପରି ବିଭିନ୍ନ ଭୂଖଣ୍ଡରେ ଯେଉଁ ଆଧ୍ୟାତ୍ମିକ ଜୀବନବୋଧର ଭାବନା ସୃଷ୍ଟି ହୋଇଥିଲା ତାହା କାଳକ୍ରମେ ଆନୁଷ୍ଠାନିକ ଧର୍ମର ରୂପରେଖ ନେଲା । ସାଂପ୍ରତିକ ପରିଭାଷାରେ ଯାହାକୁ ଧର୍ମ କୁହାଯାଉଛି (ଯଥା ହିନ୍ଦୁଧର୍ମ, ବୌଦ୍ଧଧର୍ମ, ଖ୍ରୀଷ୍ଟଧର୍ମ, ପାର୍ଶୀଧର୍ମ, ଇସ୍‌ଲାମ୍ ଧର୍ମ ଇତ୍ୟାଦି) ତାହା ଥିଲା ଏକ ଏକ ସାଂସ୍କୃତିକ ପ୍ରବାହ । ପ୍ରତ୍ୟେକଟି ସାଂସ୍କୃତିକ ପ୍ରବାହ ଜୀବନର ଏକ ନୂତନ ବ୍ୟାଖ୍ୟା ଦେବା ସହ ବିଶ୍ୱ ତଥା ଜୀବଜଗତର ଉତ୍ପତ୍ତି ନେଇ ନିଜସ୍ୱ କଳ୍ପନା ସୃଷ୍ଟି କରିଥିଲା । କେତେକ ନୈତିକ ବିଚାର ସହ ଜୀବନର ଅନ୍ତିମ ଲକ୍ଷ୍ୟ ସଂପର୍କରେ ପ୍ରତ୍ୟେକ ଧର୍ମ ନିଜସ୍ୱ ଧାରାରେ କଳ୍ପନା ବ୍ୟକ୍ତ କରିଥିଲା । ଏକ ଆଦିମ ସମାଜର ବହୁ ଦେବଦେବୀ ପୂଜା, ବହୁ-ଈଶ୍ୱରବାଦ, ବଳିପ୍ରଥା ଜନିତ ପାଶବିକ କ୍ରୂରତା ଓ ଗୋଷ୍ଠୀ ସଂଘର୍ଷକୁ ପରିବର୍ତ୍ତନ କରିବାରେ ପ୍ରତ୍ୟେକ ଧର୍ମ ସଂସ୍କାରିତ ଭାବନାର ବିକାଶ ଘଟାଇଥିଲା । ଏକ ବୃହତ୍ତର ଜନଗୋଷ୍ଠୀରେ ସାଂସ୍କୃତିକ ସଂହତି ସୃଷ୍ଟି କରିବା ସହ ବିଭିନ୍ନ ତାତ୍ତ୍ୱିକ ଭାବନା, ପୂଜା, ପ୍ରାର୍ଥନା ଦେଇ ପବିତ୍ର ଭାବ ସୃଷ୍ଟି କରିବାରେ ଧର୍ମର ଭୂମିକା ମୁଖ୍ୟ ସ୍ଥାନ ନେଇଥିଲା । ପ୍ରତ୍ୟେକ ଧର୍ମଗୋଷ୍ଠୀ ନିଜ ଧର୍ମଗ୍ରନ୍ଥକୁ ପବିତ୍ର, ଈଶ୍ୱରଦତ୍ତ ଜ୍ଞାନ ଓ ଅଭ୍ରାନ୍ତ ବୋଲି ବିଚାର କରିବାକୁ ଲାଗିଲା । ଈଶ୍ୱର ଏକ; ସେ ସର୍ବବ୍ୟାପୀ, ସର୍ବଜ୍ଞ, ସର୍ବଶକ୍ତିମାନ୍, କରୁଣାମୟ, ଜୀବନର ସର୍ବଶ୍ରେଷ୍ଠ ବିଚାରକ ବୋଲି ଯେଉଁ ଭାବନା ଧର୍ମ ବିଶ୍ୱାସ ମଧ୍ୟ ଦେଇ ସୃଷ୍ଟି ହେଲା ତାହା ସମାଜର ନୀତିବୋଧ, ନ୍ୟାୟ-ଅନ୍ୟାୟର ପାର୍ଥକ୍ୟ ନେଇ ମାନବୀୟ ଚେତନାକୁ ବ୍ୟାପ୍ତ କରିବାରେ ସହାୟକ

ହୋଇଥିଲା । ମୋଟ ଉପରେ କହିବାକୁ ଗଲେ ପ୍ରାୟ ଦେଢ଼ ହଜାର ବର୍ଷ ମଧ୍ୟରେ ମାନବଜାତିର ଇତିହାସରେ ଯେଉଁ ଭିନ୍ନ ଭିନ୍ନ ସାଂସ୍କୃତିକ ପ୍ରବାହ ବିଭିନ୍ନ ଭୌଗୋଳିକ ଭୂଖଣ୍ଡରେ ସୃଷ୍ଟି ହୋଇଥିଲା ତାହା କାଳକ୍ରମେ ଗୋଟିଏ ବୃହତ୍ତର ଜନଗୋଷ୍ଠୀ ଭିତରେ ସଂହତି ସ୍ଥାପନା କରିପାରିଲା । ଏହା ସହ ଗୋଟିଏ ସଭ୍ୟତାର ସାଂସ୍କୃତିକ, ନୈତିକ, ମାନବିକ ଓ ରାଜନୈତିକ ଜୀବନଧାରାକୁ ଗଭୀର ଭାବେ ପ୍ରଭାବିତ କରିବାରେ ଧର୍ମ ଓ ଆଧ୍ୟାତ୍ମିକ ଚେତନା ଏକ ପ୍ରଭାବଶାଳୀ ଭୂମିକା ନେଇଥିଲା । ଏହାର ଗଭୀର ପ୍ରଭାବରୁ ଧର୍ମ ଏକ ଅସ୍ମିତା ଓ ଆବେଗର ପ୍ରଶ୍ନ ହେଲା । ଏହି ଆବେଗ ଓ ଅସ୍ମିତା କିପରି ପରିବର୍ତ୍ତିତ ପରିସ୍ଥିତିରେ ସମାଜ ପାଇଁ ଓ ଏକ ସମନ୍ୱିତ ମାନବବାଦୀ ଜୀବନଦୃଷ୍ଟିର ବିକାଶ ପାଇଁ କ୍ଷତିକାରକ ହୋଇଛି ଓ ସାମାଜିକ ସଂସ୍କାର କ୍ଷେତ୍ରରେ ପ୍ରତିବନ୍ଧକ ପାଲଟିଛି ତାହାର କିଛି ସୂଚନା ଆମେ ଆଗକୁ ଆଲୋଚନା କରିବା । କିନ୍ତୁ ଯେଉଁ ଯୁଗରେ ଧର୍ମମାନଙ୍କର ଉଦ୍ଭବ ହୋଇଥିଲା, ତାହା ସେସମୟର ପରିବେଶରେ ବେଶ୍ କ୍ରାନ୍ତିକାରୀ ଥିଲା ।

ମାନବ ସଭ୍ୟତାର କ୍ରମବିକାଶଧାରାରେ ବୈଜ୍ଞାନିକ ଚିନ୍ତା ଚେତନାର ବିକାଶ ଏକ ଉଲ୍ଲେଖନୀୟ ଘଟଣା । ସଭ୍ୟତାର ବିକାଶ ପ୍ରାଚୀନ ହେଲେ ବି ଆଧୁନିକ ବିଜ୍ଞାନର ବିକାଶ ପର୍ବ ସପ୍ତଦଶ ଶତାବ୍ଦୀରୁ ଆରମ୍ଭ ହୁଏ । ମଧ୍ୟଯୁଗୀୟ ଅନ୍ଧକାର ଭିତରୁ ୟୁରୋପରେ ଆରମ୍ଭ ହୁଏ ଏକ ନବଜାଗରଣ ବା ରେନେସାଁର ଯୁଗ । ପଞ୍ଚଦଶ ଶତାବ୍ଦୀରୁ ଆରମ୍ଭ ନବଜାଗରଣ ଯୁଗ ସଭ୍ୟତାର ବିକାଶଧାରାରେ ଏକ ମାଇଲଖୁଣ୍ଟ ମନେହୁଏ । ନବଜାଗରଣ ଯୁଗ ପରେ ପରେ ଆସେ ଜ୍ଞାନଦୀପ୍ତିର ଯୁଗ ବା ଏଜେ ଅଫ୍ ଏନ୍‌ଲାଇଟେନ୍‌ମେଣ୍ଟ୍ । ନବଜାଗରଣ ଯୁଗରେ ଯେଉଁ ସାଂସ୍କୃତିକ ଜାଗୃତିର ଅଭ୍ୟୁଦୟ ହୋଇଥିଲା ସେଥିରୁ ବୈଜ୍ଞାନିକ ଚିନ୍ତାଧାରାର ବିକାଶ ହେଲା ଯାହାକୁ ଜ୍ଞାନଦୀପ୍ତିର ଯୁଗ କୁହାଯାଉଛି । ସପ୍ତଦଶ ଶତାବ୍ଦୀରୁ ବିଜ୍ଞାନର ଯେଉଁ ବିକାଶ ପର୍ବ ଆରମ୍ଭ ହେଲା ତାହା ଏହି ତିନି ଶହ ବର୍ଷ ଭିତରେ ବିଶ୍ୱର ରୂପରେଖ ପରିବର୍ତ୍ତନ କରିଦେଇଛି ।

ବିଜ୍ଞାନର ଆଦିପର୍ବଟି ଥିଲା ଏକ ସଂଘର୍ଷର ସମୟ । ଧର୍ମ ଯେଉଁ ବିଶ୍ୱଦୃଷ୍ଟି ଓ ତାତ୍ତ୍ୱିକ ପରିକଳ୍ପନାମାନ ସୃଷ୍ଟି କରିଥିଲା ବିଜ୍ଞାନ ସେସବୁକୁ ଆଇମା' କାହାଣୀ ବୋଲି ଅଭିହିତ କଲା । ପୃଥିବୀର ସୃଷ୍ଟି, ମଣିଷର ଉତ୍ପତ୍ତି, ସ୍ୱର୍ଗ, ନରକ, ମୁକ୍ତି, ମୋକ୍ଷ, ବିଚାରଦିବସ, ଆତ୍ମା, ଆତ୍ମାର ଅମରତ୍ୱ, ପୁନର୍ଜନ୍ମ ଇତ୍ୟାଦି ବହୁ-ଧାର୍ମିକ ବିଶ୍ୱାସଗୁଡିକ ଯେ ଆଧାରହୀନ ଏହା ବୈଜ୍ଞାନିକ ଚିନ୍ତନରେ ପ୍ରକାଶିତ ହେବାକୁ ଲାଗିଲା । ଯେଉଁ ବିଚାରବୋଧ ଆଧାରରେ ବିଜ୍ଞାନର ଦିଗନ୍ତ ବିସ୍ତାରିତ ହେବାକୁ ଲାଗିଲା ତାହାକୁ "ବୈଜ୍ଞାନିକ ପ୍ରକୃତିବାଦ" କୁହାଯାଉଛି । ପ୍ରତ୍ୟେକ ପ୍ରାକୃତିକ ଘଟଣା ପଶ୍ଚାତରେ କୌଣସି ଅତିପ୍ରାକୃତିକ କାରଣ

ନାହିଁ, ତାହା ପଶ୍ଚାତରେ କେବଳ ପ୍ରାକୃତିକ କାରଣ, ନିୟମ ବା ଏକରୂପତା ରହିଛି । ବୈଜ୍ଞାନିକ ଜ୍ଞାନ ଓ ସିଦ୍ଧାନ୍ତ ତଥ୍ୟ ଆଧାରିତ ଯାହା ପର୍ଯ୍ୟବେକ୍ଷଣ ଓ ପରୀକ୍ଷଣ ଆଧାରରେ ରୂପ ନେଇଥାଏ । ବିଜ୍ଞାନ ପ୍ରକୃତି ବା ସମାଜ ସଂପର୍କରେ ଯେଉଁ ଜ୍ଞାନ ଦିଏ ତାହା ତଥ୍ୟ ଆଧାରିତ ଓ ପ୍ରଗତିଶୀଳ । ବିଜ୍ଞାନ ଏକ ସାର୍ବଜନୀନ ପ୍ରଣାଳୀ ମାଧ୍ୟମରେ ଘଟଣାମାନଙ୍କୁ ବିଶ୍ଳେଷଣ କରିଥାଏ । ସେହି ପ୍ରଣାଳୀ ମୁକ୍ତ, ପର୍ଯ୍ୟବେକ୍ଷଣ-ପରୀକ୍ଷଣ ଆଧାରିତ ଓ ସ୍ୱସଂଶୋଧନାତ୍ମକ । ବିଜ୍ଞାନ କୌଣସି ସିଦ୍ଧାନ୍ତକୁ ପବିତ୍ର ବା ଚିରନ୍ତନ ବୋଲି ଗ୍ରହଣ କରେ ନାହିଁ । ନୂତନ ତଥ୍ୟ ଆଧାରରେ କୌଣସି ବୈଜ୍ଞାନିକ ସିଦ୍ଧାନ୍ତ ବା ନିୟମ ପରିବର୍ତ୍ତନଶୀଳ । ମୋଟ ଉପରେ କହିଲେ ବୈଜ୍ଞାନିକ ଜ୍ଞାନ ତଥ୍ୟାଧାରିତ, ମୁକ୍ତ, ପରୀକ୍ଷାସାପେକ୍ଷ, ପ୍ରଣାଳୀବଦ୍ଧ, ସଂଶୋଧନାତ୍ମକ ଓ ସାର୍ବଜନୀନ । ଏହା ସର୍ବଦା ପ୍ରଗତିଶୀଳ ଓ ଏହାର ପ୍ରଣାଳୀ ସାର୍ବଜନୀନ ।

ବିଜ୍ଞାନ ଚିନ୍ତାରାଜ୍ୟରେ ଯେଉଁ ବୈପ୍ଳବିକ ପରିବର୍ତ୍ତନର ସୂତ୍ରପାତ କଲା ତାହାର ଆଧାରରେ ପ୍ରକୃତିର ବହୁ ରହସ୍ୟ ଧୀରେ ଧୀରେ ଉନ୍ମୋଚିତ ହେବାକୁ ଲାଗିଲା । ବୈଜ୍ଞାନିକ ପ୍ରଣାଳୀ ଆଧାରରେ ବିଶାଳ ପ୍ରକୃତିର ବିଭିନ୍ନ କ୍ଷେତ୍ରକୁ ଅନୁଶୀଳନ କରାଯାଇପାରିଲା । ପ୍ରକୃତିର ବିଶାଳତା ଓ ଜଟିଳତା ପୃଷ୍ଠଭୂମିରେ ପ୍ରକୃତିର କେତେକ କ୍ଷେତ୍ରକୁ ବ୍ୟାଖ୍ୟା କରିବା ସମ୍ଭବ ହୋଇନାହିଁ, ବିଜ୍ଞାନ ନିଜର ସୀମିତତାକୁ ସ୍ୱୀକାର କରିଥାଏ । ତେବେ ବୈଜ୍ଞାନିକ ବ୍ୟାଖ୍ୟାନ ଓ ବିଚାରବୋଧରୁ ଏହା ସ୍ପଷ୍ଟ ହେବାକୁ ଲାଗିଲା ଯେ ପ୍ରକୃତିରେ ଅସଂଖ୍ୟ ରହସ୍ୟ ରହିଛି ଯାହା ଏବେ ବି ମଣିଷର ବୋଧଗମ୍ୟ ହୋଇପାରି ନାହିଁ । କିନ୍ତୁ କୌଣସି ପ୍ରାକୃତିକ ଘଟଣା ପଶ୍ଚାତରେ କୌଣସି ଆଧିଦୈବିକ, ଅତିପ୍ରାକୃତିକ ବା ସୁପରନାଚୁରାଲ୍ ଅଥବା ଦୈବୀ କାରଣ ନାହିଁ । ପୁନଶ୍ଚ ବୈଜ୍ଞାନିକ ପ୍ରଣାଳୀ ପ୍ରୟୋଗକରି ସାମାଜିକ ଜୀବନ ଓ ବ୍ୟବସ୍ଥାର କ୍ରମବିକାଶର ବ୍ୟାଖ୍ୟାନ ଭିତରୁ ନାନା ସମାଜ ବିଜ୍ଞାନର ଭିତ୍ତି ବୌଦ୍ଧିକ ସ୍ତରରେ ଗୃହୀତ ହେଲା । ସମାଜର ରାଜନୈତିକ, ଅର୍ଥନୈତିକ, ସାଂସ୍କୃତିକ ଓ ଶୈକ୍ଷିକ ବିକାଶର ଧାରାକୁ ବୈଜ୍ଞାନିକ ପ୍ରଣାଳୀ ସାହାଯ୍ୟରେ ବିଶ୍ଳେଷଣ କରାଯାଇ ଜ୍ଞାନର ଦିଗନ୍ତ ବିସ୍ତାରିତ ହୋଇଚାଲିଲା । ପ୍ରାକୃତିକ ବିଜ୍ଞାନ ଓ ସମାଜ-ବିଜ୍ଞାନ ଜ୍ଞାନର ଦିଗ୍‌ବଳୟକୁ ଯେପରି ବିସ୍ତାରିତ କରିଚାଲିଛନ୍ତି ତାହାର ପରିଣାମରୁ ସଭ୍ୟତାର ବିକାଶଧାରା ଆଶାତୀତ ଭାବରେ ବୃଦ୍ଧି ପାଇଥିବା ମନେହୁଏ ।

ବିଜ୍ଞାନର ଆଦିକାଳରେ ଏହାକୁ କୁହାଯାଉଥିଲା ପ୍ରାକୃତିକ ଦର୍ଶନ ଯେହେତୁ ଏହା ପ୍ରକୃତିର ରହସ୍ୟମାନଙ୍କୁ ଉନ୍ମୋଚିତ କରୁଥିଲା । ବିଜ୍ଞାନର ଯୁଗ ଆରମ୍ଭ ହେବାର ଦୁଇ ଶହ ବର୍ଷ ପରେ ଆସିଲା ପ୍ରଯୁକ୍ତିର ଯୁଗ । ବୈଜ୍ଞାନିକ ନିୟମ ଆଧାରରେ ବିଭିନ୍ନ

ପ୍ରଯୁକ୍ତିର ଭିତ୍ତି ପଡିଲା । ବିଜ୍ଞାନର ପ୍ରୟୋଗାତ୍ମକ କ୍ଷେତ୍ରରୁ ଯେଉଁ ପ୍ରଯୁକ୍ତିର ସମ୍ଭାର ଆରମ୍ଭ ହେଲା ତାହା ସଭ୍ୟତାର ରୂପରେଖକୁ ଧୀରେ ଧୀରେ ପରିବର୍ତ୍ତନ କରିବାକୁ ଲାଗିଲା । ବିଭିନ୍ନ କଳକାରଖାନାର ସ୍ଥାପନରୁ ଶିଳ୍ପ ବିପ୍ଳବ ଆସିଲା, ଗମନାଗମନ କ୍ଷେତ୍ରରେ ଅଭୂତପୂର୍ବ ଉନ୍ନତି ସାଧିତ ହେଲା ଓ ସଂଚାର ବିଦ୍ୟା ଆଶାତୀତ ସଫଳତା ହାସଲ କଲା । ବହୁ ମହାମାରୀ ରୋଗମାନଙ୍କର କାରଣ ନେଇ ଯେଉଁ ଗବେଷଣା ହେଲା, ସେଥିରୁ ରୋଗମାନଙ୍କର କାରଣ ବାହାରିଲା ଓ ରୋଗମାନଙ୍କର ଚିକିତ୍ସା ବିଷୟରେ ସ୍ପଷ୍ଟ ଜ୍ଞାନ ଆସିଲା । କ୍ରମବର୍ଦ୍ଧିଷ୍ଣୁ ଜନସଂଖ୍ୟାର ଖାଦ୍ୟାଭାବ ଦୂରୀକରଣ ପାଇଁ ବିଜ୍ଞାନ ସାହାଯ୍ୟରେ ଖାଦ୍ୟ ଉତ୍ପାଦନ ବହୁ ଗୁଣରେ ବୃଦ୍ଧି ପାଇପାରିଲା । ମହାମାରୀ ରୋଗମାନଙ୍କୁ ନିୟନ୍ତ୍ରଣ କରିବାରେ, ଦୁର୍ଭିକ୍ଷ ଜନିତ ପରିବେଶ ଦୂର କରିବାରେ, ପୃଥିବୀରୁ ଦୂରତ୍ୱ କମାଇବାରେ ଓ ସମଗ୍ର ପୃଥିବୀକୁ ଏକ ବିଶ୍ୱ-ଗ୍ରାମରେ ରୂପାନ୍ତରିତ କରିବାରେ ଆଧୁନିକ ବିଜ୍ଞାନ ଓ ପ୍ରଯୁକ୍ତିର ଅବଦାନ ଯେ ଅତୁଳନୀୟ ଏହା କୁହାଯାଇପାରେ । ମୋଟଉପରେ କହିବାକୁ ଗଲେ ବିଜ୍ଞାନର ଆରମ୍ଭ ପର୍ବରୁ ଏହି ଦୁଇ ତିନି ଶତାବ୍ଦୀ ମଧ୍ୟରେ ଏକ ନୂଆ ଦୁନିଆ ଯେ ଗଢି ଉଠିଛି ଏହା ନିଃସନ୍ଦେହ ମନେହୁଏ ।

ବିଜ୍ଞାନ ଜ୍ଞାନର ଦିଗନ୍ତକୁ ବିସ୍ତାର କରିବା ଓ ଏକ ନୂତନ ପୃଥିବୀକୁ ରୂପରେଖ ଦେବା ବ୍ୟତୀତ ଯେଉଁ ସାଂସ୍କୃତିକ ଓ ବୌଦ୍ଧିକ ଆଲୋଡନ ଆଣିଲା ତାହା ବହୁ ଅପବିଶ୍ୱାସ ଓ ଅହେତୁକ ଭାବନାମାନଙ୍କୁ ଦୂର କରିବାରେ ନିର୍ଣ୍ଣାୟକ ଭୂମିକା ନେଲା । ଧାର୍ମିକ ବିଶ୍ୱାସ ଆଧାରରେ ଯେଉଁ ପାରଲୌକିକ ଜୀବନବୋଧର ସଂସ୍କୃତି ବିଭିନ୍ନ ଧର୍ମଗୋଷ୍ଠୀ ଭିତରେ ଭିନ୍ନ ଭିନ୍ନ ଧାରାରେ ବିକଶିତ ହୋଇଥିଲା, ସେସବୁ ଯେ ନିଛକ କଳ୍ପନା ଓ ଅସତ୍ୟ ଏହା ବିଚାର ସ୍ତରରେ କ୍ରାନ୍ତିକାରୀ ଥିଲା । ପୂର୍ବନିର୍ଦ୍ଦିଷ୍ଟବାଦ, ଭାଗ୍ୟବାଦ, ଦୈବୀ କରୁଣା, ସ୍ୱର୍ଗପ୍ରାପ୍ତି, ଆତ୍ମାର ଅମରତ୍ୱ ଏହିପରି ଭାବନାମାନ ଯେଉଁ ତାତ୍ତ୍ୱିକ ଓ ରହସ୍ୟମୟ ପରିମଣ୍ଡଳ ସୃଷ୍ଟି କରିଥିଲେ ମଣିଷ ସେଥିରୁ ବୈଚାରିକ ସ୍ତରରେ ମୁକ୍ତ ହେବାକୁ ଲାଗିଲା । ଧର୍ମମାନଙ୍କର ତୁଳନାତ୍ମକ ଅନୁଶୀଳନରୁ ଧର୍ମମାନଙ୍କର ତାତ୍ତ୍ୱିକ ଅବବୋଧମାନ କିପରି ପରସ୍ପରବିରୋଧୀ ତାହାର ଚିତ୍ର ପ୍ରକାଶ ପାଇଲା । ଜ୍ଞାନବିଜ୍ଞାନର ବିକାଶ ପୂର୍ବରୁ ଧର୍ମମାନ ଯେଉଁ କେତେକ ପାରଲୌକିକ ଓ ସ୍ଥଳବିଶେଷରେ ଅମାନବିକ ଭାବଧାରା ପ୍ରତିଷ୍ଠା କରିଥିଲେ ତାହା ଧୀରେ ଧୀରେ ଅସତ୍ୟ ଓ ଆଧାରହୀନ ବୋଲି ଜଣାପଡିଲା । ସକଳ ବିକାଶ ଓ ପ୍ରଗତି ଯେ ମାନବିକ ପ୍ରଚେଷ୍ଟାର ପରିଣାମ ଏହା ଚିନ୍ତାରାଜ୍ୟରେ ନୂତନ ସଂସ୍କୃତିର ଅବତାରଣା କଲା । ଯେଉଁ ରାଷ୍ଟ୍ର ସମୂହ ବିକଶିତ ଓ ଯେଉଁଠି ଜୀବନର ଭୌତିକ ମାନ ଉନ୍ନତ ତାହା କୌଣସି ଦୈବୀ ଆଶୀର୍ବାଦରୁ ସମ୍ଭବ ହୋଇନାହିଁ, ତାହା ସମ୍ଭବ ହୋଇଛି ମାନବିକ ପ୍ରୟାସ,

ବିଜ୍ଞାନର ପ୍ରୟୋଗ ଓ ନାନା ସାମାଜିକ କାରଣରୁ । ଏହି ବିଚାରବୋଧ ସାମାଜିକ ଜୀବନଧାରାରେ ଯେ ଏକ ବଡ ସଂସ୍କାର ଏହା ହୁଏତ କୁହାଯାଇପାରେ ।

ସାମାଜିକ ଚେତନାକୁ ଉନ୍ନତ କରିବାରେ ଯେଉଁ ତୃତୀୟ ବିଚାରଧାରାଟି ପ୍ରମୁଖ ଅବଦାନ ଦେଇଛି ତାହା ହେଲା ଏକ ମାନବବାଦୀ ଜୀବନଦୃଷ୍ଟିର ବିକାଶ । ୟୁରୋପୀୟ ନବଜାଗରଣ ଓ ଜ୍ଞାନଦୀପ୍ତିର ଯୁଗରେ "ମାନବବାଦ" ଏକ ବଳିଷ୍ଠ ମୂଲ୍ୟବୋଧ ଭାବେ ବିକାଶଲାଭ କଲା । ପ୍ରତ୍ୟେକ ଧର୍ମଧାରାରେ ମାନବବାଦର କିଛି ଭାବନା ରହିଥିଲା, ତେବେ ତାହା ପାରଲୌକିକ ପ୍ରାପ୍ତି ପାଇଁ ଉଦ୍ଦିଷ୍ଟ ଥିଲା । କେତେକ ଧର୍ମରେ ଦୁସ୍ଥ ମଣିଷର ସେବାକୁ ଗୁରୁତ୍ୱ ଦିଆଯିବା ଓ ଅନ୍ୟ କେତେକ ଧର୍ମରେ ମାନବ ସେବାକୁ ଈଶ୍ୱର-ସେବା ବୋଲି ବିଚାର ପ୍ରକାଶ ପାଇଥିଲା । ତେବେ ବାସ୍ତବପକ୍ଷେ ଧର୍ମଗୋଷ୍ଠୀମାନଙ୍କ ମଧ୍ୟରେ ବହୁ ବିଦ୍ୱେଷ, ହିଂସା, ସାଂପ୍ରଦାୟିକ ତିକ୍ତତା ଓ ଧର୍ମ-ଯୁଦ୍ଧର କାହାଣୀ ସୁବିଦିତ । ଧର୍ମଗତ ଅସ୍ମିତାକୁ କେନ୍ଦ୍ରକରି ପୃଥିବୀ ନାନା ଭାବରେ ରକ୍ତରଞ୍ଜିତ ହେବା ଏକ ଐତିହାସିକ ଉପଲବ୍ଧି । ନବଜାଗରଣ ଯୁଗରେ ଯେଉଁ ମାନବବାଦୀ ଜୀବନଦର୍ଶନର ଉତ୍ପତ୍ତି ହେଲା ତାହାକୁ ସାଂପ୍ରତିକ ପରିଭାଷାରେ "ନିରପେକ୍ଷ ମାନବବାଦ" ବା ସେକୁଲାର ହ୍ୟୁମାନିଜମ୍ କୁହାଯାଇପାରେ । ଏହାନୁଯାୟୀ ମାନବ ସମାଜରେ ଯେକୌଣସି ପ୍ରକାରର ଭେଦଭାବ ଓ ଅନ୍ୟ ପ୍ରତି ନ୍ୟୂନଦୃଷ୍ଟି ଏକ ଅମାନବିକ ଭାବନା । ସବୁ ମଣିଷଙ୍କର ଜୀବନର ମୂଲ୍ୟ ରହିଛି ଓ ପ୍ରତ୍ୟେକ ବ୍ୟକ୍ତି ଏକ ସୁସ୍ଥ, ମର୍ଯ୍ୟାଦାଭିତ୍ତିକ ଜୀବନ ବଞ୍ଚିବା ତାର ଏକ ପ୍ରାକୃତିକ ଅଧିକାର । ପ୍ରତ୍ୟେକ ବ୍ୟକ୍ତି ଜାତି, ଧର୍ମ, ବର୍ଣ୍ଣ, ଲିଙ୍ଗ, ଜାତୀୟତା ଇତ୍ୟାଦି ନିର୍ବିଶେଷରେ ସମ୍ମାନର ସହ ବଞ୍ଚିବା, ନିଜ ସାମର୍ଥ୍ୟର ବିକାଶ କରାଇବାର ପରିବେଶ ପାଇବା, ଆଇନ୍ ଦୃଷ୍ଟିରେ ସମାନ ବିବେଚିତ ହେବା ଓ ନିଜ ଦେଶରେ ରାଜନୈତିକ ଅଧିକାର ଉପଭୋଗ କରିବା ମାନବବାଦର ବିସ୍ତାରିତ ଅର୍ଥ । ମାନବବାଦ ପୁନଶ୍ଚ ବ୍ୟକ୍ତି ସ୍ୱାଧୀନତା, ସମତା ଓ ଭ୍ରାତୃତ୍ୱଭାବକୁ ପ୍ରାଧାନ୍ୟ ଦେଇଥାଏ । ମଣିଷ ହିଁ ସବୁର ମାନଦଣ୍ଡ; ସକଳ ନୀତି, ଆଦର୍ଶ, ମୂଲ୍ୟବୋଧ, ଜୀବନଶୈଳୀ ମଣିଷକୁ କେନ୍ଦ୍ର କରି ବିକଶିତ ହୋଇଛି । ଏକ ସମ୍ବେଦନଶୀଳ ଜୀବନବୋଧ ଓ ଅନ୍ୟର ମର୍ଯ୍ୟାଦା ଓ ସ୍ୱାଭିମାନକୁ ସମ୍ମାନଦେବା ମାନବବାଦର ତାତ୍ପର୍ଯ୍ୟ । ମାନବବାଦର ସାମାଜିକ ତାତ୍ପର୍ଯ୍ୟ ହେଉଛି ଏକ ଭେଦଭାବମୁକ୍ତ, ସମତାଭିତ୍ତିକ ଓ ନ୍ୟାୟପୂର୍ଣ୍ଣ ସମାଜର ବିକାଶ ଘଟାଇବା । ଯୁଗ ଯୁଗ ଧରି ବିଭିନ୍ନ ସମାଜରେ ରହିଥିବା ଉଚ୍ଚ-ନୀଚ ଭେଦଭାବକୁ ଦୂରକରି ଏକ ସମତାଭିତ୍ତିକ ଓ ବ୍ୟକ୍ତିମର୍ଯ୍ୟାଦା-ଆଧାରିତ ସାମାଜିକ ସମ୍ବନ୍ଧ ସୃଷ୍ଟି କରିବା ମାନବବାଦର ଲକ୍ଷ୍ୟ ।

ବସ୍ତୁତଃ ମାନବବାଦ ଏକ ଜୀବନ-ଦର୍ଶନର ଭାବନା ଦେଇଥାଏ । ଏହି ଜୀବନ-ଦର୍ଶନ ଏହି ଜଗତକୁ ଗୁରୁତ୍ୱ ଦିଏ, ଏହି ସଂସାରର ସବୁ ମଣିଷଙ୍କର ଜୀବନକୁ ଉନ୍ନତ କରିବାକୁ ପ୍ରୟାସ କରେ, କୌଣସି ପାରଲୌକିକ ଜଗତର ସ୍ୱପ୍ନ ଦେଖାଏ ନାହିଁ । ସମତା, ସତ୍ୟବାଦିତା, ଅହିଂସା, ସମ୍ବେଦନଶୀଳତା, ନ୍ୟାୟପରାୟଣତା, ବ୍ୟକ୍ତି ମର୍ଯ୍ୟାଦାବୋଧ ଇତ୍ୟାଦି ମୂଲ୍ୟଚୟମାନ ମାନବବାଦର ଅନ୍ତର୍ନିହିତ ମୂଲ୍ୟ ଅଟେ । ତେବେ ଏହି ମୂଲ୍ୟଚୟମାନ ମାନବିକ ଅନୁଭୂତି ଓ ସୁସ୍ଥ ସାମାଜିକ ଜୀବନ ନେଇ ବିଚାରଶୀଳତାରୁ ଉଦ୍ଭବ ହୋଇଛି । କେତେକ ସମାଜରେ ରହିଥିବା ଉତ୍କଟ ଦାରିଦ୍ର୍ୟ, ବୈଷମ୍ୟ, ଜାତିଗତ ବା ଲିଙ୍ଗଗତ ଭେଦଭାବ, ସାଂପ୍ରଦାୟିକ ଦୃଷ୍ଟିଭଙ୍ଗୀ, ଶୋଷଣ ଇତ୍ୟାଦିକୁ ମାନବିକ ପ୍ରୟାସରେ ଦୂର କରାଯିବା ସମ୍ଭବ । ଏସବୁ ଗୁଣାତ୍ମକ ଜୀବନର ପରିପନ୍ଥୀ ଓ ବସ୍ତୁତଃ ମାନବବାଦର ପ୍ରତିକୂଳ ।

ମୋଟ ଉପରେ କହିଲେ ମାନବବାଦ ଏକ ମହତ୍ତର ଜୀବନବୋଧର ପ୍ରତୀକ ଓ ଏକ ସଂସ୍କାରିତ ଚେତନାର ପ୍ରତିଫଳନ । ଏହି ଜୀବନବୋଧର ଦିଗନ୍ତ ବିଭିନ୍ନ ସ୍ତରକୁ ପ୍ରସାରିତ ହେବା ସମ୍ଭବ । ରାଜନୈତିକ ସ୍ତରରେ ଗଣତାନ୍ତ୍ରିକ ମୂଲ୍ୟବୋଧ ମାନବବାଦର ଅଭିବ୍ୟକ୍ତି କହିଲେ ଅତ୍ୟୁକ୍ତି ହେବ ନାହିଁ । ଗଣତନ୍ତ୍ର କେବଳ ଏକ ରାଜନୈତିକ ବ୍ୟବସ୍ଥା ନୁହେଁ, ଏହା ଏକ ମୂଲ୍ୟବୋଧଭିତ୍ତିକ ଜୀବନଦୃଷ୍ଟି । ସେହିପରି ଏକ ଶୋଷଣମୁକ୍ତ ସାମ୍ୟସମାଜ ମାନବବାଦର ନିହିତ ଅର୍ଥନୈତିକ ଆଭିମୁଖ୍ୟ । ଅନ୍ୟ ସଂସ୍କୃତି, ଜୀବନଧାରା ଓ ବିଶ୍ୱାସବୋଧ ପ୍ରତି ସହନଶୀଳ ମନୋଭାବ ଏହାର ସାଂସ୍କୃତିକ ମହତ୍ତ୍ୱ । ଧର୍ମନିରପେକ୍ଷ ଦୃଷ୍ଟିଭଙ୍ଗୀ ମାନବବାଦର ଧାର୍ମିକ ତାତ୍ପର୍ଯ୍ୟ । ମୋଟ ଉପରେ ଏକ ସହନଶୀଳ, ଉଦାର, ସମ୍ବେଦନଶୀଳ ଓ ନୀତିନିଷ୍ଠ ଜୀବନବୋଧ ମାନବବାଦର ଅନ୍ତଃସ୍ୱର ।

ୟୁରୋପୀୟ ନବଜାଗରଣ ପରିଣାମରୁ ଆଧୁନିକ ବିଜ୍ଞାନ ଓ ମାନବବାଦର ଯେଉଁ ବୈଚାରିକ ଆଲୋଡନ ସୃଷ୍ଟି ହୋଇଥିଲା ଏହି ତିନି ଶହ ବର୍ଷ ଭିତରେ ତାହାର ଏକ ବିସ୍ତାରିତ ଚିତ୍ର ସଭ୍ୟତାର ଅଗ୍ରଗତିରେ ନିର୍ଣ୍ଣାୟକ ଭୂମିକା ନିର୍ବାହ କରିଛି । ସାଂପ୍ରତିକ ପରିସ୍ଥିତିରେ ସକଳ ଭୌତିକ ବିକାଶ ଓ ପ୍ରଗତିର ମୂଳ ସୂତ୍ର ହେଉଛି ବୈଜ୍ଞାନିକ ଜ୍ଞାନ । ବୈଜ୍ଞାନିକ କ୍ରିୟାଶୀଳତା ଯେଉଁ ଶିଖରକୁ ସ୍ପର୍ଶ କରିଛି ତାହାର ପରିଣତି ହେଉଛି ଆଧୁନିକ ସଭ୍ୟତା । ଆଧୁନିକ ଜୀବନଧାରାକୁ ବିଜ୍ଞାନ ଓ ତଦାଶ୍ରୟୀ ପ୍ରଯୁକ୍ତି ବ୍ୟତୀତ କଳ୍ପନା କରାଯାଇନପାରେ । ସେହିପରି ମାନବବାଦ ସାରା ବିଶ୍ୱରେ ଯେଉଁ ଆନ୍ତର୍ଜାତିକ ମନୋଭାବ, ମାନବିକ ଅଧିକାର ଓ ସାର୍ବଜନୀନ ମୂଲ୍ୟବୋଧର ବିକାଶ ପାଇଁ ପଥ ଦେଖାଇଛି ତାହା ମାନବଜାତିର ନୈତିକ ଉତ୍ତରଣର ସ୍ୱାକ୍ଷର ବହନ କରିବା ମନେହୁଏ । ଆମ ସଂସାରରେ

ଯାହା କିଛି ହିଂସା, ଭେଦଭାବ, ଶୋଷଣ, ବିଦ୍ୱେଷ ରହିଥିଲେ ମଧ୍ୟ ଅନ୍ତତଃ ବୈଚାରିକ ସ୍ତରରେ ତାହାର ଦୂରୀକରଣ ପାଇଁ ସଚେତନତା ଯେ ସୃଷ୍ଟି ହୋଇଛି ଏହା ନିଃସନ୍ଦେହ ମନେହୁଏ । ଏତଦ୍‌ବ୍ୟତୀତ ମାନବବାଦର ଏକ ଗୁରୁତ୍ୱପୂର୍ଣ୍ଣ ମହତ୍ତ୍ୱ ମଧ୍ୟ ରହିଛି । ବିଜ୍ଞାନ ଓ ପ୍ରଯୁକ୍ତି ନୀତି ବା ମୂଲ୍ୟବୋଧ ନିରପେକ୍ଷ । ଜ୍ଞାନକୁ ଭଲ ଲକ୍ଷ୍ୟରେ ବା ମନ୍ଦ ଉଦ୍ଦେଶ୍ୟରେ ବିନିଯୋଗ କରାଯାଇପାରେ । ଜ୍ଞାନବିଜ୍ଞାନକୁ ଯଦି ଧ୍ୱଂସାତ୍ମକ ଲକ୍ଷ୍ୟରେ ପ୍ରୟୋଗ କରାଯାଏ ତାହା ସଭ୍ୟତାର ଧ୍ୱଂସସାଧନ କରିପାରିବ । ସେଥିପାଇଁ ସୁସ୍ଥ ମାନବିକ ଚେତନାର ବିକାଶ ଏକ ଶାନ୍ତିପୂର୍ଣ୍ଣ ବିଶ୍ୱ ପାଇଁ ଅବଶ୍ୟମ୍ଭାବୀ ମନେହୁଏ । ବୁଦ୍ଧି ଯେପରି ଏକ ସାଧନ, ବିଜ୍ଞାନ ସେହିପରି ଏକ ସାଧନ । ବୁଦ୍ଧିକୁ ଭଲ ଦିଗରେ ବିନିଯୋଗ କରାଯାଇପାରେ କିମ୍ବା ଏକ ମନ୍ଦ ଲକ୍ଷ୍ୟ ପାଇଁ ପ୍ରୟୋଗ କରାଯାଇପାରେ । ଠିକ୍ ସେହିପରି ବିଜ୍ଞାନ ସହିତ ମାନବିକତାର ସଂଯୋଗ ନହେଲେ ବିଜ୍ଞାନ ସାମାଜିକ ଶ୍ରେୟ ସାଧନରେ ସଫଳ ହୋଇପାରିବ ନାହିଁ ।

ସାଂପ୍ରତିକ ସ୍ଥିତିରେ ଏକ ଉତ୍କର୍ଷ ବା ପ୍ରଗତିଶୀଳ ସମାଜର ପରିକଳ୍ପନା କଲାବେଳେ ଦୁଇଟି ବିଚାରବୋଧ ଅଧିକ ମହତ୍ତ୍ୱପୂର୍ଣ୍ଣ ମନେହୁଏ । ସେହି ଦୁଇଟି ଆଦର୍ଶ ହେଲା ବୈଜ୍ଞାନିକ ମନୋଭାବ ଓ ମାନବବାଦୀ ବିଚାରବୋଧ । ସାମାଜିକ ଜୀବନ ପ୍ରବାହରେ ଏହି ଦୁଇ ଭାବଧାରା ଯେତେ ଅଧିକ ପ୍ରତିଫଳିତ, ସମାଜ ସେତିକି ପ୍ରଗତିଶୀଳ । ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଓ ବିଜ୍ଞାନ ଦୁଇଟି ପୃଥକ୍ ଭାବନା । ଜଣେ ବିଜ୍ଞାନରେ ଉଚ୍ଚ ଶିକ୍ଷା ଲାଭ କରିଥିଲେ ମଧ୍ୟ ସେ ବାସ୍ତବ ଜୀବନରେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ପ୍ରତି ପ୍ରତିବଦ୍ଧ ନଥାଇପାରନ୍ତି । ଅପରପକ୍ଷରେ ଜଣେ ବିଜ୍ଞାନର ଛାତ୍ର ନହୋଇ ମଧ୍ୟ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ପୃଷ୍ଠପୋଷକ ହୋଇପାରନ୍ତି । ମୁକ୍ତମନ ପୋଷଣ କରିବା, ବୈଜ୍ଞାନିକ ପ୍ରଣାଳୀକୁ ଜ୍ଞାନର ସାଧନ ଭାବେ ସ୍ୱୀକାର କରିବା ଓ ଅହେତୁକ ବିଶ୍ୱାସରୁ ମୁକ୍ତ ରହିବାଦ୍ୱାରା ଜଣେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ପୃଷ୍ଠପୋଷକ ହୋଇପାରିବ । ସେହିପରି ଯେକୌଣସି ସମସ୍ୟାର ସମାଧାନ ପାଇଁ ମାନବିକ ପ୍ରୟାସ ଉପରେ ନିର୍ଭରଶୀଳ ହେବା ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ପରିଚାୟକ । ସଭ୍ୟତାର ଯାହା କିଛି ଉନ୍ନତି ବା ବିକାଶ ହୋଇଛି ତାହା ମଣିଷର ବୁଦ୍ଧି ବା ଉଦ୍ୟମ ଯୋଗୁ ସମ୍ଭବ ହୋଇଛି । କୌଣସି ଜ୍ଞାନ ବା ବିକାଶ ଆକାଶରୁ ଖସି ନାହିଁ ବା ଦିଅଁ ଦେବତାଙ୍କ ଆଶୀର୍ବାଦରୁ ହୋଇନାହିଁ । ମାନବବାଦୀ ବିଚାରବୋଧ ଭିତରେ ସାଧୁତା, ନାଗରିକ ଶୃଙ୍ଖଳାବୋଧ ଓ ଉଚ୍ଚ କର୍ମସଂସ୍କୃତି ଅଧିକ ମହତ୍ତ୍ୱପୂର୍ଣ୍ଣ ମନେହୁଏ । ଧାର୍ମିକ ଆବେଗ, ପାରଲୌକିକ ବିଶ୍ୱାସ, ପରମ୍ପରା ନାମରେ ନାନା କର୍ମକାଣ୍ଡ ପ୍ରତି ଶ୍ରଦ୍ଧା ଜୀବନର ଗୁଣାତ୍ମକ ଉତ୍କର୍ଷ ପାଇଁ ଅବଶ୍ୟମ୍ଭାବୀ ନୁହେଁ ବା ଆବଶ୍ୟକ ମଧ୍ୟ ନୁହେଁ । ବରଂ ସାଧୁତା, ସମାଜ ପ୍ରତି କର୍ତ୍ତବ୍ୟବୋଧ ଓ ଶୃଙ୍ଖଳା ଜ୍ଞାନ ସୁସ୍ଥ ସମାଜ ପାଇଁ ଅଧିକ ଗୁରୁତ୍ୱ ବହନ

କରେ । ସାମାଜିକ ଜୀବନ ପ୍ରବାହରେ ଦୁର୍ନୀତି, ଭ୍ରଷ୍ଟାଚାର, କର୍ତ୍ତବ୍ୟବୋଧ ପ୍ରତି ଉଦାସୀନତା ଓ ଅସାଧୁତା ଅଧିକ ପ୍ରକାଶିତ ହେଉଥିଲେ ଏହା ଏକ ପ୍ରଗତିଶୀଳ ସମାଜର ଚିତ୍ର ଦିଏ ନାହିଁ । ଯେଉଁ ସମାଜ ଯେତେ ଅଧିକ ପ୍ରଗତିଶୀଳ ସେହି ସମାଜ ସେତେ ସଂସ୍କାରିତ । ପରନ୍ତୁ ସାମାଜିକ ପରିବେଶରେ କୁସଂସ୍କାର, ପାରଲୌକିକ ଭାବଧାରା, ଅହେତୁକ ବିଶ୍ୱାସ, ଭେଦଭାବଜନିତ ମନୋଭାବ ଓ ଅସାଧୁତା ଅଧିକ ପ୍ରକାଶିତ ହେଉଥିଲେ ସମାଜ ଅଧିକ କ୍ଷୟଶୀଳ ହେବା ଏକ ଐତିହାସିକ ଉପଲବ୍ଧି । ତେବେ ଏହି ମାନଦଣ୍ଡରେ କୌଣସି ସମାଜକୁ ନିରଙ୍କୁଶ ଭାବେ ଏକ ପ୍ରଗତିଶୀଳ ସମାଜ ବା ନିରଙ୍କୁଶ ଭାବେ କ୍ଷୟଶୀଳ ସମାଜ କୁହାଯାଇ ନପାରେ । ବରଂ ପ୍ରଗତିଶୀଳତା ଓ କ୍ଷୟଶୀଳତା ଆପେକ୍ଷିକ ଭାବନା ଅଟେ । ଏକ ସମାଜ ଏକ କ୍ଷୟଶୀଳ ସମାଜ ତୁଳନାରେ ଅଧିକ ପ୍ରଗତିଶୀଳ ଓ ଅଧିକ ପ୍ରଗତିଶୀଳ ସମାଜ ତୁଳନାରେ କ୍ଷୟଶୀଳ ।

ବସ୍ତୁତଃ ସମାଜ-ସଂସ୍କାର ଏକ ବ୍ୟାପକ ପ୍ରସଙ୍ଗ ଓ କୌଣସି ସମାଜକୁ ନିରଙ୍କୁଶ ଭାବେ ଏକ ସଂସ୍କାରିତ ସମାଜ କୁହାଯାଇପାରିବ ନାହିଁ । ପ୍ରତ୍ୟେକ ସମାଜରେ କେତେକ କୁସଂସ୍କାର, ଅପବିଶ୍ୱାସ, ଅନ୍ଧସଂସ୍କାର ଓ ଅହେତୁକ ପରମ୍ପରା ରହିପାରେ । ଏ କ୍ଷେତ୍ରରେ ହୁଏତ ପରିଣାମଗତ ପାର୍ଥକ୍ୟ ଦୃଷ୍ଟିଗୋଚର ହୁଏ । ସାମାଜିକ ଚେତନାର ସ୍ତର ଉନ୍ନତ ହେଲେ, ସମାଜରୁ କୁସଂସ୍କାରର ପରିସର ସଙ୍କୁଚିତ ହୁଏ । ସାମାଜିକ ଚେତନାର ସ୍ତର ଉନ୍ନତ ହେବା ନାନାବିଧ କାରଣ ଉପରେ ନିର୍ଭର କରିଥାଏ । ଶିକ୍ଷାର ପ୍ରସାର, ସାଂସ୍କୃତିକ ପରିବେଶ, ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଉପରେ ପ୍ରାଧାନ୍ୟ, ଇହଲୌକିକ ଜୀବନଦୃଷ୍ଟି, ସମାଜ ପ୍ରତି ଉତ୍ତରଦାୟିତ୍ୱବୋଧ ଇତ୍ୟାଦି ଭାବନା ସମାଜରେ ବ୍ୟାପକ ଭିତ୍ତି ନେଲେ ସମାଜରୁ କୁସଂସ୍କାରର ପରିମାଣ ହ୍ରାସ ହୋଇଥାଏ । ସାମାଜିକ ପରିବର୍ତ୍ତନ ଏକ ନିରନ୍ତର ପ୍ରକ୍ରିୟା । ଏହି ପରିବର୍ତ୍ତନ ପ୍ରକ୍ରିୟା ମଧ୍ୟ ଦେଇ ନୂଆ ନୂଆ ପରିବେଶ ସୃଷ୍ଟି ହେଉଥାଏ ଓ ସାମାଜିକ ବିକାଶଧାରା ତାହାଦ୍ୱାରା ଅନେକାଂଶରେ ପ୍ରଭାବିତ ହେବା ଦେଖାଯାଏ । ସାମାଜିକ ପରିବର୍ତ୍ତନ ଦୁଇ ତିନି ପିଢି ଭିତରେ ସ୍ପଷ୍ଟ ଭାବରେ ପରିଲକ୍ଷିତ ହେବା ଏକ ସାଧାରଣ ଅନୁଭବ ।

ଯେକୌଣସି ରାଷ୍ଟ୍ରର ସାମାଜିକ ଇତିହାସକୁ ଅନୁଶୀଳନ କଲେ ସାମାଜିକ ବିକାଶଧାରାରେ ହୋଇଥିବା ସଂସ୍କାରବାଦୀ ପ୍ରୟାସର ଚିତ୍ର ଦୃଷ୍ଟିକୁ ଆସିଥାଏ । ପାଶ୍ଚାତ୍ୟ ଦେଶମାନଙ୍କରେ ୟୁରୋପୀୟ ନବଜାଗରଣ ଓ ଜ୍ଞାନଦୀପ୍ତି ଯୁଗର ଆଗମନରେ ବ୍ୟାପକ ପରିବର୍ତ୍ତନର ସୂତ୍ରପାତ ହୋଇଥିବା ଏକ ଐତିହାସିକ ସତ୍ୟ । ସଂପ୍ରତି ଗଣତାନ୍ତ୍ରିକ ଅଧିକାର, ନାରୀ ସ୍ୱାଧୀନତା, ରାଜତନ୍ତ୍ରର ବିଲୋପ, ଧର୍ମନିରପେକ୍ଷ ମୂଲ୍ୟବୋଧର ବିକାଶ ପ୍ରତି

ଯେଉଁ ସାର୍ବଜନୀନ ସ୍ୱୀକୃତି ରହିଛି ତାହା ଦୁଇ ତିନି ଶତାବ୍ଦୀ ତଳେ ସମ୍ଭବ ନଥିଲା । ଏ ପ୍ରତ୍ୟେକଟି ଭାବଧାରାର ପ୍ରତିଷ୍ଠା ପାଇଁ କେତେ କେତେ ଜନ ଆନ୍ଦୋଳନମାନ ସଂଘଟିତ ହୋଇଛି । ଏପରିକି ବିଜ୍ଞାନର ଆରମ୍ଭ ପର୍ବରେ ସତ୍ୟସନ୍ଧାନୀ କେତେ କେତେ ବୈଜ୍ଞାନିକଙ୍କୁ ବହୁ ସମାଲୋଚନା, ନିର୍ଯ୍ୟାତନା ସହିବାକୁ ହୋଇଛି ଓ ଏପରିକି ସତ୍ୟର ପ୍ରତିଷ୍ଠା କରିବାକୁ ଯାଇ ଶହୀଦ ହେବାକୁ ପଡିଛି । ବିଜ୍ଞାନକୁ ଅମୂଲ୍ୟ ଅବଦାନ ଦେଇଥିବା କେତେ କେତେ ପ୍ରତିଭାଧର ବୈଜ୍ଞାନିକଙ୍କୁ ଧାର୍ମିକ ରକ୍ଷଣଶୀଳତା ପାଇଁ ବନ୍ଦୀଜୀବନ ବିତାଇବାକୁ ହୋଇଛି । ଧାର୍ମିକ ବିଶ୍ୱାସ ଓ ବୈଜ୍ଞାନିକ ସିଦ୍ଧାନ୍ତକୁ ନେଇ ଯେଉଁ ଦ୍ୱନ୍ଦ୍ୱ ସୃଷ୍ଟି ହୋଇଛି ସେଥିରେ ଅନେକ ନିଷ୍ପାପ ଜୀବନର ଅଧିକାରୀ, ସତ୍ୟସନ୍ଧାନୀ ପ୍ରତିଭାଧର ବ୍ୟକ୍ତିମାନେ ବଳି ପଡିଛନ୍ତି । ତେବେ ସେହିମାନଙ୍କର ତ୍ୟାଗ, ଶହୀଦତ୍ୱ ଯୋଗୁ ସମାଜରେ ଗୁଣାତ୍ମକ ପରିବର୍ତ୍ତନ ଆସିଛି, ଜୀବନଦୃଷ୍ଟି ବଦଳିଛି ଓ ଚିନ୍ତା ଚେତନାରେ ଉତ୍ତରଣ ଘଟିଛି । ରକ୍ଷଣଶୀଳ ସମାଜ ପ୍ରଗତିଶୀଳ ସମାଜରେ ରୂପାନ୍ତରିତ ହେବାପାଇଁ ବହୁ କିଛି ତ୍ୟାଗ ଓ ମୂଲ୍ୟ ଯେ ଦେବାକୁ ହୋଇଛି ଏହା ଏକ ଐତିହାସିକ. ଉପଲବ୍ଧି ।

ଏହି ପୃଷ୍ଠଭୂମିରେ ଭାରତରେ ଓ ଓଡିଶାରେ ସମାଜ ସଂସ୍କାରର ଧାରା ବହୁ ବିରୋଧର ସମ୍ମୁଖୀନ ହୋଇଆସିଛି । ଏବେ ବି ଆମ ଜନଜୀବନରେ ମଧ୍ୟଯୁଗୀୟ ମନୋଭାବ, ଜାତିବାଦ, ସାମନ୍ତବାଦ, ଅହେତୁକ ପରମ୍ପରା, ଅନ୍ଧସଂସ୍କାର ଓ କୁସଂସ୍କାର ବହୁ ବ୍ୟାପକ ଭାବେ ରହିଛି । ଆମ ଦେଶର ସଭ୍ୟତା, ସଂସ୍କୃତି ଅତି ପ୍ରାଚୀନ । ଏକ ପ୍ରାଚୀନ ସଭ୍ୟତାରେ କିଛି ଜ୍ଞାନ, ବିଜ୍ଞାନର ବିକାଶ ହେବା ଏକ ସାଧାରଣ ବିଷୟ । ଯେକୌଣସି ପ୍ରାଚୀନ ସଭ୍ୟତାରେ ଧାର୍ମିକ ବିଶ୍ୱାସ ସାମାଜିକ ଜୀବନଧାରାକୁ ପ୍ରଭାବିତ କରିବା ସ୍ୱାଭାବିକ । ତେବେ ୟୁରୋପୀୟ ଦେଶମାନଙ୍କରେ ବିଜ୍ଞାନ ଓ ମାନବବାଦୀ ଜୀବନବୋଧର ଯେଉଁ ଧାରା ସୃଷ୍ଟି ହେଲା ଯାହାର ପରିଣାମରୁ ସେ ଦେଶମାନେ ଯଥେଷ୍ଟ ବିକଶିତ ହେଲେ, ଭାରତରେ ତାହା ନାନା କାରଣରୁ ସମ୍ଭବ ହେଲା ନାହିଁ । ଇଂରେଜ ଶାସନ ଭାରତକୁ ଆସିବାପରେ ବିଶ୍ୱବିଦ୍ୟାଳୟ ଶିକ୍ଷାର ପରିଣାମରୁ ଏକ ସୀମିତ ଅର୍ଥରେ ଭାରତରେ କିଛି ନବଜାଗରଣର ପରିବେଶ ଊନବିଂଶ ଶତାବ୍ଦୀର ଶେଷଭାଗରେ ସୃଷ୍ଟି ହୋଇଥିଲା । ତେବେ ସଂପ୍ରତି ଆମେ ଭାରତବର୍ଷର ଯେଉଁ ରାଜନୈତିକ ଭୂଭାଗ ଦେଖୁଛେ ବ୍ରିଟିଶ ଶାସନ ଭାରତବର୍ଷକୁ ଆସିବା ପୂର୍ବରୁ ସେପ୍ରକାର ସଂହତି ଦେଶରେ ନଥିଲା । ଭାରତବର୍ଷରେ ବହୁ ଭାଗରେ ସ୍ୱତନ୍ତ୍ର ରାଜତନ୍ତ୍ରମାନ ରହିଥିଲା ଓ ପ୍ରତ୍ୟେକ ରାଜା ନିଜ ଅଞ୍ଚଳରେ ସାର୍ବଭୌମ କ୍ଷମତାର ଅଧିକାରୀ ଥିଲେ । ବ୍ରିଟିଶ୍ ଶାସନ ଭାରତବର୍ଷକୁ ଆସିବା ପରେ ଆଜିର ଭାରତବର୍ଷ, ପାକିସ୍ତାନ୍, ବଙ୍ଗଳାଦେଶ, ସିଂହଳ, ବର୍ମା ଇତ୍ୟାଦି ଏହି ବୃହତ୍ ଉପମହାଦେଶକୁ ଏକ ଶାସନାଧୀନ କଲେ । ପରାଧୀନ ଭାରତରେ ଓ ଊନବିଂଶ

ଶତାବ୍ଦୀର ଆଦ୍ୟକାଳରେ ସମାଜ ସଂସ୍କାର କ୍ଷେତ୍ରରେ କିଛି ପଦକ୍ଷେପ ନିଆଯାଇଥିଲା । ବିଶେଷକରି ଭାରତବର୍ଷରେ ଥିବା କେତେକ ଜଘନ୍ୟ ପ୍ରଥାକୁ ବନ୍ଦ କରିବାକୁ କେତେକ ଭାରତୀୟ ସଂସ୍କାରକଙ୍କ ଭାବଧାରାକୁ ସରକାର ସମର୍ଥନ ଦେଇଥିଲେ । ସତୀଦାହ ପ୍ରଥା ପରି ଏକ ଜଘନ୍ୟ ଓ ଅମାନବିକ ପ୍ରଥାକୁ ବହୁ ବିରୋଧ ସତ୍ତ୍ୱେ ସରକାର ଆଇନଦ୍ୱାରା ନିଷିଦ୍ଧ କରିଥିଲେ । ରାଜା ରାମମୋହନ ରାୟଙ୍କଦ୍ୱାରା ପ୍ରତିଷ୍ଠିତ ବ୍ରହ୍ମସମାଜ ଓ ସ୍ୱାମୀ ଦୟାନନ୍ଦ ସରସ୍ୱତୀଙ୍କ ଦ୍ୱାରା ପ୍ରତିଷ୍ଠିତ ଆର୍ଯ୍ୟସମାଜ ଯେତେ ସୀମିତ ଅର୍ଥରେ ହେଲେ ବି କେତେକ ଜଘନ୍ୟ କୁସଂସ୍କାର ବିରୁଦ୍ଧରେ ସ୍ୱର ଉଠାଇଥିଲେ । ବିଶେଷକରି ବାଲ୍ୟବିବାହ ବନ୍ଦ କରିବା, ମହିଳାମାନଙ୍କ ପ୍ରତି ଥିବା ନାନା ସାମାଜିକ କଟକଣା ବିରୁଦ୍ଧରେ ସ୍ୱର ଉଠାଇବା, ଅସ୍ପୃଶ୍ୟତା ଦୂର କରିବା, ଶୂଦ୍ର ତଥା ଦଳିତମାନଙ୍କୁ ପଢ଼ିବା ପାଇଁ ଅଧିକାର ଦେବାପରି କେତେକ ସଂସ୍କାରବାଦୀ ଭାବନାର ଉଦ୍ରେକ ହୋଇଥିଲା । ଏହିପରି କେତେକ ଉକ୍ଟ ସାମାଜିକ ଅପସଂସ୍କୃତି ବା ସୋସିଆଲ ଇଭିଲ୍‌କୁ ଦୂରକରିବାକୁ ଊନବିଂଶ ଶତାବ୍ଦୀରେ ଯତ୍‌କିଞ୍ଚିତ୍ ପ୍ରୟାସ ହୋଇଥିଲା । ବିଶ୍ୱବିଦ୍ୟାଳୟ ଶିକ୍ଷାର ପରିବେଶ ଆସିବା ପରେ ଯେଉଁ ନବଶିକ୍ଷିତ ଗୋଷ୍ଠୀର ଉଦ୍ଭବ ହେଲା ତାହାର ପ୍ରଭାବରୁ ସାମାଜିକ ସଂସ୍କାର ଦିଗରେ କିଛି ସଚେତନତା ପ୍ରକାଶ ପାଇଲା ।

ବିଂଶଶତାବ୍ଦୀ ଆରମ୍ଭରୁ ଭାରତବର୍ଷରେ ରାଜନୈତିକ ସ୍ୱାଧୀନତା ପାଇଁ ଆନ୍ଦୋଳନ ଆରମ୍ଭ ହେଲା । ମହାତ୍ମା ଗାନ୍ଧୀଙ୍କ ଆବିର୍ଭାବ ସ୍ୱାଧୀନତା ଆନ୍ଦୋଳନକୁ ଏକ ନିର୍ଦ୍ଦିଷ୍ଟ ରୂପରେଖ ଦେଲା । ରାଜନୈତିକ ଆନ୍ଦୋଳନ ପୃଷ୍ଠଭୂମିରେ ସମାଜ ସଂସ୍କାର କ୍ଷେତ୍ରରେ କେତେକ ସଚେତନତା ପ୍ରକାଶ ପାଇଲା । କେତେକଙ୍କ ଅନୁଭବରେ ଆସିଲା ଯେ ରାଜନୈତିକ ଦାସତ୍ୱଠାରୁ ବଡ କଳଙ୍କ ହେଉଛି ସାମାଜିକ ଦାସତ୍ୱ । ସାମାଜିକ ଦାସତ୍ୱ ଦୂର ନହେଲେ ରାଜନୈତିକ ସ୍ୱାଧୀନତାର ବିଶେଷ ଅର୍ଥ ରହିବ ନାହିଁ । ବିଶେଷକରି ଅସ୍ପୃଶ୍ୟତା ଓ ସ୍ତରିକୃତ ବୈଷମ୍ୟ ଯାହା ଭାରତୀୟ ଜନଜୀବନର ନିଛକ ବାସ୍ତବତା ତାହା ଦୂର ନହେଲେ ଆମ ସମାଜର ଅଧୋଗତିରେ ଉନ୍ନତି ଆସିବା ସମ୍ଭବ ହେବ ନାହିଁ । ଉତ୍ତର ଭାରତରେ ବାବାସାହେବ ଆମ୍ବେଦକର ଓ ଦକ୍ଷିଣ ଭାରତରେ ପେରିୟାର ଓ ନାରାୟଣ ସ୍ୱାମୀ ଅସ୍ପୃଶ୍ୟତା ଦୂରୀକରଣ ସହ ଶୂଦ୍ର, ଦଳିତ ଓ ମହିଳାଙ୍କ ସାମାଜିକ ଉତ୍‌ଥାନ ପାଇଁ ବିଭିନ୍ନ ଆନ୍ଦୋଳନ ଜରିଆରେ ସମାଜ ସୁଧାରର ପଦକ୍ଷେପ ନେଲେ । ସେତେବେଳେ ଦଳିତମାନଙ୍କର ମନ୍ଦିର ରାସ୍ତାରେ ଚାଲିବା, ସର୍ବସାଧାରଣ ଅନୁଷ୍ଠାନକୁ ଆସିବା, ବିଦ୍ୟାଳୟରେ ନାମ ଲେଖାଇବା ଇତ୍ୟାଦି ବି ସମ୍ଭବ ନଥିଲା । ଭାରତବର୍ଷର ସାମାଜିକ କଳଙ୍କ, ଅସ୍ପୃଶ୍ୟତା ଇତ୍ୟାଦି ସୋସିଆଲ ଇଭିଲ ପ୍ରତି ଗାନ୍ଧୀଙ୍କର ଦୃଷ୍ଟି ବହୁ ପରେ ଆସିଲା । ରାଜନୈତିକ ସ୍ୱାଧୀନତା ପାଇଁ ଗାନ୍ଧୀ ଯେଉଁ ସମର୍ଥନ ଦେଶବାସୀଙ୍କଠାରୁ ପାଉଥିଲେ,

ଅସ୍ପୃଶ୍ୟତା ଦୂରୀକରଣ କ୍ଷେତ୍ରରେ ସେହି ସମର୍ଥନ ପାଉନଥିଲେ । ସେତେବେଳର କେତେକ ଐତିହାସିକ ଘଟଣା ଓ ବିଶେଷକରି ଆମ୍ବେଦକରଙ୍କ ସହ ପୁନା ଚୁକ୍ତି ପରେ ମହାତ୍ମା ଗାନ୍ଧୀ ଓ କଂଗ୍ରେସ ଅସ୍ପୃଶ୍ୟତା ଦୂରୀକରଣ ଓ ଦଳିତମାନଙ୍କର ସାମାଜିକ ଉତ୍‌ଥାନ ପାଇଁ କିଛି ପଦକ୍ଷେପ ନେଲେ । ମହାତ୍ମାଙ୍କ ପରି ଜଣେ ସର୍ବମାନ୍ୟ ଓ ଲୋକପ୍ରିୟ ନେତା ବିଂଶ ଶତାବ୍ଦୀର ତିରିଶ ଦଶକରେ ଯେତେବେଳେ ହରିଜନ ସେବକ ସଂଘ ପ୍ରତିଷ୍ଠାକରି ଅସ୍ପୃଶ୍ୟତା ଦୂରୀକରଣ ପାଇଁ ଓଡ଼ିଶାରେ ପଦଯାତ୍ରା କରୁଥିଲେ ସେତେବେଳେ କେତେକ ହିନ୍ଦୁବାଦୀ ରକ୍ଷଣଶୀଳ ସଙ୍ଗଠନ ତାଙ୍କୁ କଳାପତାକା ଦେଖାଇ ବିରୋଧ କରୁଥିଲେ । ସମାଜ ସଂସ୍କାର ଯେ ଏକ ଦୁରୂହ ବ୍ୟାପାର ଏହା ସହଜରେ ଅନୁମେୟ ।

ପରାଧୀନ ଭାରତବର୍ଷରେ ଅସ୍ପୃଶ୍ୟତା ଦୂରୀକରଣ, ବାଲ୍ୟବିବାହ ନିରାକରଣ, ବିଧବା ବିବାହ ପ୍ରଚଳନ, ଝିଅମାନଙ୍କର ଅଧ୍ୟୟନ, ଦଳିତମାନଙ୍କର ସର୍ବସାଧାରଣଙ୍କ କୂଅ, ପୋଖରୀ ବ୍ୟବହାର ଓ ମନ୍ଦିର ପ୍ରବେଶ ପରି କେତୋଟି କାର୍ଯ୍ୟକ୍ରମ ଭିତରେ "ସମାଜ ସଂସ୍କାର" ସୀମିତ ରହିଥିଲା । ସ୍ୱାଧୀନ ଭାରତରେ ଏସବୁ ସମସ୍ୟା ଅନେକଟା ଦୂର ହୋଇଥିବା ମନେହୁଏ । ତଥାପି ସ୍ୱାଧୀନତାର ଦୀର୍ଘ ସାତ ଦଶନ୍ଧି ପରେ ବି ଗ୍ରାମୀଣ ଜୀବନଧାରାରେ ଜାତିଆଣ ମାନସିକତା ଓ ଅସ୍ପୃଶ୍ୟତାର ପରିବେଶ ରହିଛି ଓ ଅନ୍ତର୍ଜାତି ବିବାହ ନାନା ଉତ୍ତେଜନା ସୃଷ୍ଟି କରୁଛି । ତେବେ ସମାଜ ସଂସ୍କାର ସାଂପ୍ରତିକ ପରିଭାଷାରେ ଏକ ବ୍ୟାପକ ଅର୍ଥରେ ବ୍ୟବହୃତ ହେଉଛି । ଏହା କେବଳ ଦଳିତମାନଙ୍କର ମାନବିକ ଅଧିକାର ଓ ମହିଳାମାନଙ୍କର ସ୍ୱାଭିମାନ ଭିତରେ ସୀମିତ ନାହିଁ ।

ଏକ ସଭ୍ୟ ସମାଜରେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଓ ମାନବବାଦୀ ବିଚାରବୋଧର ପ୍ରସାର ହେବା ଯଥାର୍ଥ ମନେହୁଏ । ସାମାଜିକ ଜୀବନ ପ୍ରବାହରେ ଯେଉଁସବୁ ଅବୈଜ୍ଞାନିକ ଭାବନା, କୁସଂସ୍କାର ଓ ଭେଦଭାବ ଜନିତ ମନୋଭାବ ରହିଛି ତାହାର ଦୂରୀକରଣ ବି ସମାଜ ସଂସ୍କାରର ଏକ ବ୍ୟାପକତର ଅର୍ଥ । ବୈଜ୍ଞାନିକ ମନୋଭାବ ଅଜ୍ଞତା ଓ ଅପବିଶ୍ୱାସ ଦୂର କରିବା କ୍ଷେତ୍ରରେ ଏକ ବଡ ଅବଲମ୍ବନ ମନେହୁଏ । ସେହିପରି ମାନବବାଦୀ ବିଚାରବୋଧର ବିକାଶଦ୍ୱାରା ସମାଜରେ ସମତା, ନ୍ୟାୟ ଓ ବ୍ୟକ୍ତି ମର୍ଯ୍ୟାଦାବୋଧର ଭାବନାକୁ ପ୍ରସାର କରାଯିବା ସମ୍ଭବ । ଅଜ୍ଞତା, କୁସଂସ୍କାର ଓ ସାମାଜିକ ଭେଦଭାବର ବିଲୋପ ପାଇଁ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଓ ମାନବବାଦୀ ବିଚାରବୋଧଜନିତ ସଚେତନତା ସମାଜରେ ଦୃଢ ଭିତ୍ତି ନେବା ଆବଶ୍ୟକ ।

ଆମ ସମାଜରେ ଏକବିଂଶ ଶତାବ୍ଦୀରେ ବି ଅନେକ ଅବୈଜ୍ଞାନିକ ଭାବନାର ପ୍ରାବଲ୍ୟ ରହିଛି । ଏବେବି କଳାଯାଦୁ, ଗୁଣିଗାରେଡି, ମନ୍ତ୍ରତନ୍ତ୍ରରେ ଅନେକ ଲୋକ ବିଶ୍ୱାସ

କରୁଛନ୍ତି । ରୋଗରୁ ଉପସମ ପାଇଁ ଚେଙ୍କ-ଚିକିତ୍ସା, ଦିଅଁ ଦେବତା ପାଖରେ ଛାଗ ବଳି, ଚୋର ଧରିବା ପାଇଁ ଖଟବୁଲା, କୁଲାବୁଲା ପରି ଅହେତୁକ ବିଶ୍ୱାସ ରହିଛି । ସମାଜର ତଳେ ପଡିଥିବା ବା ବିକାଶଠାରୁ ବହୁ ଦୂରରେ ଥିବା ଜନଗଣଙ୍କ ଭିତରେ ଏହିସବୁ ବିଶ୍ୱାସ ଶିକ୍ଷା ଓ ସଚେତନତା ଅଭାବରେ ରହିଆସିଛି । ତେବେ ସମାଜରେ ଶିକ୍ଷା, ପ୍ରତିଷ୍ଠା ଓ ପ୍ରଭାବ ଥିବା କିଛି ବ୍ୟକ୍ତି ବି ଅନ୍ୟ ପ୍ରକାରର କୁସଂସ୍କାରରେ ବିଶ୍ୱାସ କରନ୍ତି । କିଛି ବାବା ଓ ରହସ୍ୟମୟ ବ୍ୟକ୍ତିମାନଙ୍କର ଚମତ୍କାରିତା ବା ମିରାକେଲରେ ବି କିଛି ଲୋକ ଆସ୍ଥା ସ୍ଥାପନ କରନ୍ତି । କିଏ ଶୂନ୍ୟରୁ ବସ୍ତୁ ବାହାର କରୁଛନ୍ତି, କିଏ ମନ୍ତ୍ର ତନ୍ତ୍ର ବଳରେ ରୋଗ ଭଲ କରୁଛନ୍ତି, କିଏ ତାଙ୍କର ଶକ୍ତି ବଳରେ ଅସମ୍ଭବକୁ ସମ୍ଭବ କରିବାର ସାମର୍ଥ୍ୟ ରଖିଛନ୍ତି ଇତ୍ୟାଦି ବହୁ ବିଶ୍ୱାସରେ ଶିକ୍ଷିତ ଓ ପ୍ରଭାବଶାଳୀ ଲୋକମାନେ ବି ଗଭୀର ଆସ୍ଥା ରଖିବା ଦେଖାଯାଏ । କେଉଁ ଦିଅଁ ମୂର୍ତ୍ତିରେ ପାଣି ଢାଳିଲେ, କେଉଁଠି ଶୁଭ ବେଳାରେ ବୁଡ ପକାଇଲେ, କାହାର ପାଦ ଦର୍ଶନ କଲେ, କାହାର ଦଉଡିକୁ ଛୁଇଁଲେ ବା କେଉଁଠି ନଡିଆ ବାଡେଇଲେ ସମସ୍ତ ପ୍ରତିକୂଳ ପରିସ୍ଥିତିର ଯେ ପରିବର୍ତ୍ତନ ହୋଇଯିବ ଏହି ଭାବନା ସମାଜରେ ବ୍ୟାପକ ଭାବେ ରହିଛି । ବାସ୍ତୁ, ଫଳିତ ଜ୍ୟୋତିଷ, ହସ୍ତରେଖା, ସଂଖ୍ୟାତତ୍ତ୍ୱ ଇତ୍ୟାଦି ଅବୈଜ୍ଞାନିକ ଓ ଅହେତୁକ ଭାବନା ଉପରେ ଏବେବି ସମାଜରେ ବ୍ୟାପକ ବିଶ୍ୱାସ ରହିଛି । ଏପରିକି ଆମ ଦେଶର ଗଣମାଧ୍ୟମରେ ବି ଏସବୁର ପ୍ରସାର ହୁଏ । ଏସବୁ ପଶ୍ଚାତରେ ଯାହାସବୁ କାରଣ ଥାଉ ନା କାହିଁକି ଏହା ସାମାଜିକ ଅନଗ୍ରସରତାର ଏକ ମୁଖ୍ୟ କାରଣ ମନେହୁଏ ।

ଏହା ଏକ ସାଧାରଣ ମନସ୍ତତ୍ତ୍ୱ ଯେ ଯେତେବେଳେ ମଣିଷ ବୃହତ୍ତର ସମାଜ ଉପରେ ଆସ୍ଥା ରଖିପାରେ ନାହିଁ ଓ ପ୍ରତିକୂଳ ପରିସ୍ଥିତିର ସମ୍ମୁଖୀନ ହୁଏ ସେତେବେଳେ ଏକ ବିଚାରଶୀଳ ଦୃଷ୍ଟିଭଙ୍ଗୀ ଅଭାବରେ ମଣିଷ ଭାଗ୍ୟବାଦୀ ହେବା ଦେଖାଯାଏ । କେଉଁ ଦିଅଁ ଦେବତାଙ୍କ ଆଶୀର୍ବାଦ ମିଳିଲେ ହିଁ ସେ ଜୀବନର ପ୍ରତିକୂଳ ପରିସ୍ଥିତିକୁ ଅତିକ୍ରମ କରିପାରିବ ବୋଲି ମାନସିକତା ପୋଷଣ କରନ୍ତି । କିନ୍ତୁ ଏହା ଏକ ବାସ୍ତବ ଉପଲବ୍ଧି ଯେ ଦିଅଁ ଦେବତା ସବୁ ମଣିଷର କଳ୍ପନା । କେଉଁ କଳ୍ପିତ ଦିଅଁ ଦେବତା ମଣିଷ ସମାଜର ପ୍ରଗତିରେ ସହାୟକ ହୋଇନାହାନ୍ତି ବା ସେସବୁର କୌଣସି ଅସ୍ତିତ୍ୱ ହିଁ ନାହିଁ । ସମାଜର ସକଳ ପ୍ରଗତି କେବଳ ମାନବିକ ପ୍ରୟାସର ହିଁ ପରିଣାମ ଏହା ହେଉଛି ବାସ୍ତବତା । ଏକ ଆଦିମ ସ୍ଥିତିରୁ ବହୁ ପରିବର୍ତ୍ତନ ଓ ବିବର୍ତ୍ତନ ମଧ୍ୟ ଦେଇ ସଂସ୍କୃତି, ସଭ୍ୟତା, ଜ୍ଞାନବିଜ୍ଞାନ, ପ୍ରଯୁକ୍ତି, ନୀତିବୋଧ ଇତ୍ୟାଦିର ବିକାଶ ହୋଇଛି । ଏହି ବିକାଶ ପଶ୍ଚାତରେ କେବଳ ମାନବିକ ପ୍ରୟାସ ଓ ପ୍ରଚେଷ୍ଟା ହିଁ ନିର୍ଣ୍ଣାୟକ ହୋଇରହିଛି ।

ଉପସଂହାରରେ ଏହା କୁହାଯାଇପାରେ ଯେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଓ ମାନବବାଦୀ ଜୀବନବୋଧ ଏକ ସଂସ୍କାରିତ ଚେତନାର ଦୁଇଟି ପ୍ରଧାନ ଆଧାର । ସଂସ୍କାରିତ ଚେତନା ବ୍ୟକ୍ତିମାନସକୁ ସତ୍ୟସନ୍ଧାନୀ, ଅନୁସନ୍ଧିତ୍ସୁ ଓ ହୃଦୟବାନ ତଥା ସମ୍ବେଦନଶୀଳ କରିଥାଏ । ସାମାଜିକ ଜୀବନଧାରାରେ ସଂସ୍କାରିତ ମନୋଭାବ ଯେତେ ଅଧିକ ପ୍ରତିଫଳିତ ହୁଏ ତାହା ବ୍ୟକ୍ତି ଓ ଗୋଷ୍ଠୀଜୀବନକୁ ସେତେ ଗରିମାମୟ କରିଥାଏ । ସାମାଜିକ ଉତ୍କର୍ଷ ସାଧନ ପାଇଁ ଏହି ଜୀବନଦୃଷ୍ଟିର ପ୍ରସାର ସମ୍ଭବତଃ ଅବଶ୍ୟମ୍ଭାବୀ ମନେହୁଏ । ଅବଶ୍ୟ ସମାଜ କେବେହେଲେ ପରିପୂର୍ଣ୍ଣତା ହାସଲ କରିପାରିବ ନାହିଁ । ସବୁ ସମୟରେ ସମାଜରେ କେତେକ ସ୍ଖଳନ ଓ ସଙ୍କଟ ରହିବ ହିଁ ରହିବ । ତେବେ ଉତ୍କର୍ଷର ସୋପାନରେ ଅଗ୍ରଗାମୀ ହେବାକୁ ହେଲେ ବିଚାରଶୀଳତା ଓ ସମ୍ବେଦନଶୀଳତାକୁ ଦୁଇଟି ପ୍ରଧାନ ମୂଲ୍ୟବୋଧ ଭାବେ ଗ୍ରହଣ କରିବାକୁ ହେବ । ଏହି ଭାବଧାରା ଜୀବନ ପ୍ରବାହରେ ଓ ବୃହତ୍ତର ଜନଗୋଷ୍ଠୀରେ କିପରି ଅଧିକରୁ ଅଧିକ ଉପଲବ୍ଧ ହେବ ସେଥିପାଇଁ ନିଷ୍ପାପର ପ୍ରୟାସର ଉପଯୋଗିତା ରହିଛି । ଏକ ସୁସ୍ଥ ଓ ଶୋଭନୀୟ ସମାଜ ନିର୍ମାଣରେ ସଂସ୍କାରିତ ଜୀବନବୋଧ ଯେ ଏକ ନିର୍ଣ୍ଣୟକ ଭୂମିକ ନେଇପାରିବ, ଏହା ନିଃସନ୍ଦେହ ମନେହୁଏ ।



# ସଭ୍ୟତାର ବିକାଶ ଓ ମାନବୀୟ ସଙ୍କଟ

ବୈଜ୍ଞାନିକ ତଥ୍ୟ ଅନୁଯାୟୀ ଏକ ଆଦିମ ଅବସ୍ଥାରୁ ନାନା ବିକାଶ ଓ ବିବର୍ତ୍ତନ ମଧ୍ୟ ଦେଇ ମଣିଷ ସଭ୍ୟତାର କ୍ରମବିକାଶ ଘଟିଛି । ମଣିଷ ସଭ୍ୟତାର କିପରି ବିକାଶ ହୋଇଛି ତାହା ମଧ୍ୟ କେତେକାଂଶରେ କୁହେଳିକାଛନ୍ନ । ଯଦିବି କୁହାଯାଏ ଯେ କୃଷିର ଜ୍ଞାନଠାରୁ ମଣିଷ ସ୍ଥାୟୀ ଭାବରେ ଜୀବନ ନିର୍ବାହ କଲା ଓ ତାର ଯାଯାବର ଜୀବନର ପରିସମାପ୍ତି ଘଟିଲା, ତେବେ କୃଷିର ଜ୍ଞାନ କେବେ ହାସଲ ହେଲା ତାହା ନିର୍ଦ୍ଦିଷ୍ଟ ଭାବେ କହିବା ସମ୍ଭବ ନୁହେଁ । ବିଭିନ୍ନ ପ୍ରାଚୀନ ସଭ୍ୟତା ବିଭିନ୍ନ କାଳଖଣ୍ଡରେ ବିକଶିତ ହୋଇଥିବା ମନେହୁଏ । ସଭ୍ୟତାର ନିର୍ମାଣ ପୂର୍ବରୁ ମଣିଷ ପାଖରେ ମସ୍ତିଷ୍କ ଓ ବୁଦ୍ଧିର ବିକାଶ ହୋଇଛି, ବୁଦ୍ଧିର ବିକାଶପରେ ମଣିଷ ଅଗ୍ନିର ବ୍ୟବହାର ଶିଖିଛି, ବିହନ ବୁଣି କୃଷି ଆରମ୍ଭ କରିଛି, ସ୍ଥାୟୀ ଭାବରେ ଗୋଷ୍ଠୀ ଜୀବନ ଆରମ୍ଭ କରିଛି, କେତେକ ପଶୁକୁ ଗୃହରେ ପାଳନ କରିଛି, ନିଜକୁ ଖରା ବର୍ଷାରୁ ବା ହିଂସ୍ର ଜନ୍ତୁଙ୍କ ଆକ୍ରମଣରୁ ସୁରକ୍ଷା ପାଇଁ କିଛି ବାସଗୃହ ନିର୍ମାଣ କରିଛି ଇତ୍ୟାଦି ଘଟଣାମାନ ଘଟିଛି । ଏସବୁ ହୁଏତ ପାଗୈତିହାସିକ କାଳର ଘଟଣା । ତେବେ ଇତିହାସ କେବେଠାରୁ ଆରମ୍ଭ ହୋଇଛି ? କେତେକ ଐତିହାସିକ ଇତିହାସ ଆରମ୍ଭର କିଛି ମାନଦଣ୍ଡ ଦେଇଛନ୍ତି । ସେହି ମାନଦଣ୍ଡ ଅନୁଯାୟୀ ଯେବେଠାରୁ ପ୍ରସ୍ତର ଯୁଗର ଅବସାନ ଘଟିଛି ଓ ମଣିଷ ଧାତୁର ବ୍ୟବହାର ଶିକ୍ଷାକରିଛି ସେବେଠାରୁ ସଭ୍ୟତାର ବିକାଶ ଯାତ୍ରା ଆରମ୍ଭ ହୋଇଛି ଓ ସେହି ସମୟରୁ ଏକ ଧାରାବାହିକ ଇତିହାସ ମଧ୍ୟ କେତେକ ତଥ୍ୟକୁ ଆଧାରକରି ପରିକଳ୍ପନା କରାଯାଉଛି । ଏହାଛଡା ଯେବେଠାରୁ ମନର ଭାବ ଓ ଭାଷାକୁ ବ୍ୟକ୍ତ କରିବାପାଇଁ ଲିପି ଆବିଷ୍କାର ପ୍ରକ୍ରିୟା ଆରମ୍ଭ ହୋଇଛି ସେବେଠାରୁ ସଭ୍ୟତାର ବିକାଶ ଯାତ୍ରା ଆରମ୍ଭ ହୋଇଛି ବୋଲି ଏକ ମତ ରହିଛି । ଧାତୁର ବ୍ୟବହାର ଓ ଲିପି ଆବିଷ୍କାର ପ୍ରକ୍ରିୟା ଏହା ପ୍ରାୟତଃ ଖ୍ରୀ.ପୂ. ୩୫୦୦ ବର୍ଷ ବୋଲି ଐତିହାସିକମାନେ ପରିକଳ୍ପନା କରିଛନ୍ତି । ତେବେ ଏହି ସମୟଠାରୁ ଇତିହାସର କାଳ ଆରମ୍ଭ ବୋଲି ଧରାଗଲେ ତାର ପୂର୍ବର ସମୟ ହେଉଛି ପ୍ରାଗୈତିହାସିକ କାଳ ।

ହୁଏତ ପ୍ରାଗୈତିହାସିକ କାଳରୁ ମଣିଷର ସାମାଜିକ ଜୀବନ ଆରମ୍ଭ ହୋଇଛି ଓ ସେହି ସମୟ କାଳରେ ଅଗ୍ନିର ବ୍ୟବହାର, କୃଷିର କିଛି ଜ୍ଞାନ, ପଶୁପାଳନ ଜନିତ ସାମର୍ଥ୍ୟ ଇତ୍ୟାଦି ମଣିଷ ହାସଲ କରିଛି । କେତେକ ପ୍ରତ୍ନତାତ୍ତ୍ୱିକ ଅନୁଶୀଳନ ମାଧ୍ୟମରେ ପ୍ରାଗୈତିହାସିକ ଯୁଗର କାହାଣୀମାନଙ୍କୁ ପରିକଳ୍ପନା କରାଯାଉଛି । ପ୍ରାଗୈତିହାସିକ ଓ ଐତିହାସିକ କାଳ ଭିତରେ ଯେଉଁ ସୀମାରେଖା ଟଣାଯାଇଛି ସେ କ୍ଷେତ୍ରରେ ଧାତୁର ବ୍ୟବହାର ଓ ଲିପି-ଆବିଷ୍କାର ପ୍ରକ୍ରିୟାକୁ କେତେକ ଐତିହାସିକ ପ୍ରାଧାନ୍ୟ ଦେଇଛନ୍ତି ।

ପୃଥିବୀର ବିଭିନ୍ନ ଭୂଖଣ୍ଡରେ ସଭ୍ୟତାମାନଙ୍କର ବିକାଶ ହେବା ଇତିହାସର କାହାଣୀ । ପ୍ରାଚୀନ ସଭ୍ୟତାମାନଙ୍କ ବିଷୟରେ ଏବେ ବହୁ ଐତିହାସିକ ତଥ୍ୟ ଉପଲବ୍ଧ । ଭାରତ, ଚୀନ୍, ମିଶର, ରୋମ୍, ମେସୋପଟାମିଆ, ଗ୍ରୀସ୍, ଇସ୍ରାଏଲ ଇତ୍ୟାଦି ଭୂଖଣ୍ଡରେ ପ୍ରାଚୀନ ସଭ୍ୟତାମାନ ଗଢି ଉଠିଥିବା କାହାଣୀ ସୁବିଦିତ । ଏହି ପ୍ରତ୍ୟେକ ସଭ୍ୟତାରେ ଲୋକମାନଙ୍କର ଜୀବନଧାରା, ରାଜନୈତିକ ବ୍ୟବସ୍ଥା, ସାମାଜିକ ପରିବେଶ, ଧାର୍ମିକ ଉପଚାର ଓ ବିଶ୍ୱାସ, ସାଂସ୍କୃତିକ ଚେତନା ଇତ୍ୟାଦି ବିଷୟରେ ବହୁ ଗବେଷଣାମୂଳକ ତଥ୍ୟ ଜଣାପଡିଛି । ସଭ୍ୟତାର ଆରମ୍ଭ ପୂର୍ବରୁ ଆଜିର ଯୁଗ ପର୍ଯ୍ୟନ୍ତ ସବୁ ସମୟରେ ଜୀବନସହିତ କିଛି ସଙ୍କଟ ସଂଶ୍ଳିଷ୍ଟ ହୋଇରହିଛି । ସଭ୍ୟତାମାନ ଯେତେବେଳେ ଆଦିମ ସ୍ତରରେ ରହିଥିଲା ବା ସଂପ୍ରତି ଆମେ ଯେତେବେଳେ ଅତ୍ୟାଧୁନିକ ଯୁଗରେ ବାସକରୁଛେ ପ୍ରତ୍ୟେକ ସମୟରେ ଜୀବନଧାରା ସହ କେତେକ ସମସ୍ୟା, ସଙ୍କଟ ଓ ଆହ୍ୱାନ ରହିଆସିଛି ଓ ସମସ୍ୟାରହିତ ବିଶ୍ୱ କେବେହେଲେ ସମ୍ଭବ ହୋଇନାହିଁ । କେତେ କେତେ ସାଂସ୍କୃତିକ ଆଲୋଡନ ତଥା ଉଦ୍‌ଭାବନ ଓ ଆବିଷ୍କାର ସଭ୍ୟତାକୁ ଲମ୍ଫ ପ୍ରଦାନ କରିଛି, ଜୀବନର ସାଧାରଣ ମାନରେ ଉନ୍ନତି ଆସିଛି ତା ସତ୍ତ୍ୱେ ଆମର ସାମାଜିକ ଜୀବନରୁ ସଙ୍କଟ ଦୂର ହୋଇନାହିଁ । ସବୁ ସମୟରେ ଓ ସବୁ କାଳଖଣ୍ଡରେ ମଣିଷ ଜାତି ବିଭିନ୍ନ ଭୂଖଣ୍ଡରେ ବିଭିନ୍ନ ସମସ୍ୟା ଓ ସଙ୍କଟର ସମ୍ମୁଖୀନ ହୋଇଛି ।

ଏକ ଆଦିମ ସ୍ଥିତିରୁ ସଭ୍ୟତାର କ୍ରମବିକାଶ ପଶ୍ଚାତରେ ରହିଥିବା କେତେକ ମୌଳିକ କାରଣ ବିଷୟରେ ସମାଜବିଜ୍ଞାନୀମାନେ ସୂଚନା ଦେଇଥାନ୍ତି । ସେହି ପରିପ୍ରେକ୍ଷୀରେ ଚାରୋଟି ମୁଖ୍ୟ କାରଣର ଅବତାରଣା କରାଯାଇପାରେ । ପ୍ରଥମତଃ, ମଣିଷ ପାଖରେ ଭାଷା କହିବାର ସାମର୍ଥ୍ୟ ଥିବାରୁ ମଣିଷ ସଭ୍ୟତା ନିର୍ମାଣ କରିବାରେ ସମର୍ଥ ହୋଇଛି । ପୃଥିବୀରେ ବହୁ ଭାଷା ରହିଛି । ଯେହେତୁ ବିଭିନ୍ନ ଭୂଖଣ୍ଡରେ ମଣିଷର ଗୋଷ୍ଠୀ

ଜୀବନ ଆରମ୍ଭ ହୋଇଥିଲା, ବିଭିନ୍ନ ଗୋଷ୍ଠୀ ଭିତରେ ବିଭିନ୍ନ ଭାଷା ବିକଶିତ ହୋଇଥିଲା । ଭାଷା କହିବାର ସାମର୍ଥ୍ୟ ଯୋଗୁ ମଣିଷ ସମାଜରେ ଯାହାସବୁ ଜ୍ଞାନ, ସାହିତ୍ୟ, କଳାର ବିକାଶ ହେଲା ତାହା ଆଗାମୀ ପିଢି ପାଇଁ ସଞ୍ଚିତ ହୋଇପାରିଲା । ଏହି ପ୍ରକ୍ରିୟାରେ କ୍ରମବର୍ଦ୍ଧିଷ୍ଣୁ ଭାବେ ଜ୍ଞାନ, ବିଜ୍ଞାନର ବିକାଶ ସମ୍ଭବ ହୋଇପାରିଲା । ଦ୍ୱିତୀୟରେ ପ୍ରକୃତିରେ ଉପଲବ୍ଧ ହେଉଥିବା ବିଭିନ୍ନ ଉପାଦାନମାନଙ୍କୁ ନେଇ ମଣିଷ ବସ୍ତୁ ନିର୍ମାଣ କରିବାର ସାମର୍ଥ୍ୟ ଧୀରେ ଧୀରେ ହାସଲ କଲା । ଘରେ ଓ ବାହାରେ ଆମେ ଯେତେ ସବୁ ଉପକରଣ ବ୍ୟବହାର କରୁଛେ କିମ୍ବା ଯେତେ ସବୁ ଯାନବାହାନ, ରାସ୍ତାଘାଟ, ପଦାର୍ଥ ରହିଛି ସେସବୁ ମଣିଷ ହିଁ ବୁଦ୍ଧି ଖଟାଇ ନିର୍ମାଣ କରିଛି । ଖାଦ୍ୟ ଉତ୍ପାଦନଠାରୁ, ଗାଡିମଟର, ବେଶପୋଷାକ, ଯନ୍ତ୍ରପାତି, ବହିପତ୍ର ଅସଂଖ୍ୟ ବସ୍ତୁ ନିର୍ମାଣ କରିଛି । ଏସବୁ ଜୀବନଯାତ୍ରାକୁ ସୁଗମ ଓ ସରଳ କରିପାରିଛି । ତୃତୀୟରେ ମଣିଷ ପାଖରେ ଏକ ସାମାଜିକ ପ୍ରବୃତ୍ତି ରହିଛି । ମଣିଷ ବୁଦ୍ଧିମାନ, କିନ୍ତୁ ମଣିଷ ଶିଶୁ ସବୁଠାରୁ ବଡ ଅସହାୟ । ମଣିଷ ଶିଶୁ ମା, ବାପା, ପରିବାର, ସାହି, ସମାଜର ସହଯୋଗ ନ ପାଇଲେ ତିଷ୍ଠି ପାରିବ ନାହିଁ । ମଣିଷ ଭିତରେ ରହିଥିବା ସହଜାତ ସାମାଜିକ ପ୍ରବୃତ୍ତି ଯୋଗୁ କ୍ଷୁଦ୍ର ପାରିବାରିକ ଜୀବନରୁ ନାନା ଆନ୍ତର୍ଜାତିକ ସଙ୍ଗଠନମାନ ମଣିଷ ଗଠନ କରିଛି । ସମାଜ, ରାଷ୍ଟ୍ର, ଆନ୍ତର୍ଜାତିକ ସଂସ୍ଥା ମଣିଷର କ୍ଷୁଦ୍ର ଗୋଷ୍ଠୀ ଜୀବନରୁ ଧୀର ମନ୍ଥର ଗତିରେ ବିକଶିତ ହୋଇଛି । ଚତୁର୍ଥରେ ମଣିଷ ପାଖରେ ବିବର୍ତ୍ତନ ପ୍ରକ୍ରିୟାରେ ବୁଦ୍ଧି, ଚିନ୍ତାଧାରା, ବିଚାରଶୀଳତା ଇତ୍ୟାଦିର ବିକାଶ ହୋଇଛି । ବୁଦ୍ଧି ଓ ବିଚାରଶୀଳତାରୁ ମଣିଷ ନିଜ ଜୀବନର ମାନକୁ ଉନ୍ନତ କରିବାକୁ ସର୍ବଦା ପ୍ରୟାସ କରିଆସିଛି । ପ୍ରାକୃତିକ ପ୍ରତିକୂଳ ପରିସ୍ଥିତିକୁ ସମ୍ମୁଖୀନ ହୋଇ ଏକ ନିରାପଦ ଓ ସୁଖକର ଜୀବନ ବଞ୍ଚିବାକୁ ମଣିଷ ଉଦ୍ୟମ କରିଛି । ଏହି ପ୍ରକ୍ରିୟାରେ ନାନା ବୌଦ୍ଧିକ ଆଲୋଡନ ଆସିଛି ଓ ସଭ୍ୟତାର ଅଗ୍ରଗତି ଘଟିଛି । ଭାଷା କହିବାର ସାମର୍ଥ୍ୟ, ବସ୍ତୁନିର୍ମାଣ କରିବାର ଦକ୍ଷତା, ସାମାଜିକ ପ୍ରବୃତ୍ତି ଓ ବିଚାରଶୀଳ ଭାବେ ବୁଦ୍ଧି ପ୍ରୟୋଗ କରିବା ହେତୁ ଆଦିମ ସ୍ଥିତିରୁ ସମାଜ, ସଭ୍ୟତାର ଅଗ୍ରଗତି ଘଟିଛି ଓ ଆମେ ଆଜିର ସ୍ଥିତିକୁ ଆସିପାରିଛେ ।

ସଭ୍ୟତାମାନଙ୍କର ଐତିହାସିକ ଉତ୍ପତ୍ତି କାଳକୁ ଖ୍ରୀ.ପୂ. ୩୫୦୦ ଧରିଲେ ସେହିଦିନଠାରୁ ଆଜିର ସ୍ଥିତି ପର୍ଯ୍ୟନ୍ତ ସମୟକୁ ମୁଖ୍ୟତଃ ତିନୋଟି ଶ୍ରେଣୀରେ ବିଭକ୍ତ କରାଯାଏ । ପ୍ରଥମ ଅଢେଇ ହଜାର ବର୍ଷ ଭିତରେ ଗୋଷ୍ଠୀ ଜୀବନରୁ ଗ୍ରାମୀଣ ଜୀବନର ବିକାଶ ହୋଇଛି । ପାରିବାରିକ ଜୀବନ ଦୃଢ ଭିତ୍ତି ନେଇଛି । ବିଭିନ୍ନ ଦିଅଁ ଦେବତା

ଜନିତ ଧାର୍ମିକ ଆବେଗ ସୃଷ୍ଟି ହୋଇଛି । ବିଭିନ୍ନ ସଭ୍ୟତାରେ ସେହି ଯୁଗର ଲୋକମାନେ କେତେ କେତେ ଦିଅଁ ଦେବତାଙ୍କୁ ପରିକଳ୍ପନା କରିଛନ୍ତି । ଧୀରେ ଧୀରେ ବ୍ୟକ୍ତିଗତ ସମ୍ପତ୍ତିର ଭାବନା ଆସିଛି । ପୁରୁଷ ପ୍ରାଧାନ୍ୟତା ସୃଷ୍ଟି ହୋଇଛି । କେତେ କେତେ ପାରଲୌକିକ ଶକ୍ତି ବାହ୍ୟ ଜଗତର ଘଟଣାମାନଙ୍କୁ ନିୟନ୍ତ୍ରଣ କରିବାର କଳ୍ପନା ପ୍ରକାଶ ପାଇଛି । କିଛି କିଛି କର୍ମକାଣ୍ଡ ଓ କଳାର ଭାବନା ଆସିଛି । ଭାଷା କ୍ଷେତ୍ରରେ ଉନ୍ନତି ଆସିଛି ଓ ବିଭିନ୍ନ ସଭ୍ୟତାରେ ରାଜନୈତିକ ଚିନ୍ତା ମଧ୍ୟ ଦେଇ ରାଜତନ୍ତ୍ରର ବିଚାର ବ୍ୟକ୍ତ ହୋଇଛି । ତେବେ ଯେହେତୁ ଏହି ସମୟରେ ବିଶେଷ ଚିନ୍ତା ଚେତନାରେ ବିକାଶ ହୋଇନାହିଁ, ବିଭିନ୍ନ ଦିଅଁ ଦେବତାର କଳ୍ପନା, ପଶୁବଳି, ନରବଳି ଇତ୍ୟାଦି କର୍ମକାଣ୍ଡମାନ ସୃଷ୍ଟି ହୋଇଛି ।

ଖ୍ରୀ.ପୂ. ଏକ ହଜାର ଠାରୁ ଖ୍ରୀଷ୍ଟାବ୍ଦ ପନ୍ଦର ଶହ ଏହି ଅଢେଇ ହଜାର ବର୍ଷ ଭିତରେ ବିଭିନ୍ନ ସଭ୍ୟତାରେ କେତେ କେତେ ଆଲୋଡନ ସୃଷ୍ଟି ହୋଇଛି । ଖ୍ରୀ.ପୂ. ଏକ ହଜାର ବର୍ଷ ପରଠାରୁ ବିଭିନ୍ନ ସଭ୍ୟତାରେ ବଡ ବଡ ସାଂସ୍କୃତିକ ଆଲୋଡନମାନ ଆସିଛି । ସାଂପ୍ରତିକ ପରିଭାଷାରେ ଯାହାକୁ "ଧର୍ମ" କୁହାଯାଉଛି, ତାହା ଥିଲା ବିଭିନ୍ନ ସଭ୍ୟତାର ଗୋଟିଏ ଗୋଟିଏ ବଡ ସାଂସ୍କୃତିକ ଜାଗରଣ । ସେହି ଜାଗରଣ ଏକ ଭୂଖଣ୍ଡର ସଂସ୍କୃତି, ଜୀବନବୋଧ, ପରମ୍ପରା, ନୀତି-ନୈତିକତା, ସାମାଜିକ ସମ୍ବନ୍ଧ ଇତ୍ୟାଦିକୁ ଗଭୀର ଭାବେ ପ୍ରଭାବିତ କରିଛି । ପ୍ରାକ୍-ଧର୍ମୀୟ ସମାଜରୁ ଧର୍ମୀୟ ସମାଜର ବିକାଶ ସାଂସ୍କୃତିକ ଉତ୍ତରଣର ନବ ଦିଗନ୍ତ ସୃଷ୍ଟି କରିଛି । ପରିଣାମ ସ୍ୱରୂପ ଏକ ଜନଗୋଷ୍ଠୀ ଭିତରେ ସାଂସ୍କୃତିକ ସଂହତି ସୃଷ୍ଟି ହୋଇଛି, ଜୀବନର ନୂତନ ଅର୍ଥ ପରିକଳ୍ପନା କରାଯାଇଛି ଓ ନୈତିକ ଚିନ୍ତା-ଚେତନା ଧାର୍ମିକ ମାନଦଣ୍ଡରୁ ଦୃଢ ଭିତ୍ତି ନେଇଛି । ଖ୍ରୀ.ପୂ. ଷଷ୍ଠ ଶତାବ୍ଦୀରେ ପର୍ଶିଆ ନାମକ ଏକ ଭୂଖଣ୍ଡରେ ଜୋରାଷ୍ଟରଙ୍କ ଆବିର୍ଭାବରୁ ପାର୍ଶୀଧର୍ମର ବିକାଶ ହୋଇଛି । ଏକ ଏକେଶ୍ୱରବାଦୀ ଧର୍ମ ଭାବେ ଏହା ଈଶ୍ୱରଙ୍କୁ ସର୍ବଶକ୍ତିମାନ୍ ଓ ସର୍ବଜ୍ଞାତା ଭାବେ ପରିକଳ୍ପନା କରିଛି ଓ ତାଙ୍କୁ ଅହୁର ମଜଦା ଭାବେ ନାମକରଣ କରିଛି ଯାହାର ଅର୍ଥ ଯେ ସର୍ବଜ୍ଞ ଓ ସର୍ବଶକ୍ତିମାନ୍ । ଅନ୍ୟ ଏକ ଭୂଖଣ୍ଡରେ ମୋଜେସ୍ ନାମରେ ଜଣେ ପୈଗମ୍ବର ବା ପ୍ରଫେଟ୍‌ଙ୍କର ଆବିର୍ଭାବ ହୋଇଛି ଓ ସେ ଯେଉଁ ସାଂସ୍କୃତିକ ଜାଗରଣ ଆଣିଛନ୍ତି ତାହାକୁ ଇହୁଦୀ ଧର୍ମ କୁହାଯାଉଛି । ଇହୁଦୀ ଧର୍ମ ବି ଏକ ଏକେଶ୍ୱରବାଦୀ ଧର୍ମ ଓ ଈଶ୍ୱରଙ୍କୁ ଜିହୋଓ୍ୱା କୁହାଯାଉଛି । ଈଶ୍ୱର ଜଣେ ବ୍ୟକ୍ତି ତେବେ ସେ ସର୍ବଜ୍ଞ, ସର୍ବଶକ୍ତିମାନ ଓ କରୁଣାମୟ । ସେ ସବୁ କିଛିକୁ ସୃଷ୍ଟି କରିଛନ୍ତି । ଈଶ୍ୱର ସ୍ୱୟଂ ପବିତ୍ର ଓ ମନୁଷ୍ୟ ପବିତ୍ର

ହେଉ ବୋଲି ଈଶ୍ୱର ସର୍ବଦା ଆଶା କରିଛନ୍ତି । ଏହି ସମୟରେ ଅନ୍ୟ ଏକ ଭୌଗୋଳିକ ଭୂଖଣ୍ଡ ଚୀନ୍‌ରେ କନ୍‌ଫୁସିଅସ୍ ଓ ଲାଓସେଙ୍କର ଆବିର୍ଭାବ ଏକ ବଡ ସାଂସ୍କୃତିକ ଜାଗରଣ ପାଇଁ ପରିବେଶ ସୃଷ୍ଟି କରିଛି । ଏକ ନୈତିକ ଜୀବନବୋଧକୁ କନ୍‌ଫୁସିଅସ୍ ଓ ଲାଓସେ ବହୁ ଗୁରୁତ୍ୱ ଦେଇଛନ୍ତି ଓ ସେମାନଙ୍କର ବିଚାର ଆଧାରରେ ଟାଓଇଜିମ୍ ସୃଷ୍ଟି ହୋଇଛି । ସେହି ଖ୍ରୀ.ପୂ. ଏକହଜାର ବର୍ଷ ପରେ ଆଜିର ଭାରତ ଭୂଖଣ୍ଡରେ ଉପନିଷଦ୍, ବ୍ରହ୍ମସୂତ୍ର, ଗୀତାର ରଚନା ହୋଇଛି ଓ ସେସବୁର ବିଚାରବୋଧ ହିନ୍ଦୁଧର୍ମରେ ପ୍ରମୁଖ ଭୂମିକା ନେଇଛି । ଭାରତ ଭୂଖଣ୍ଡରେ ମହାବୀର ଓ ଗୌତମ ବୁଦ୍ଧଙ୍କର ଆବିର୍ଭାବ ଦୁଇଟି ପୃଥକ୍ ସାଂସ୍କୃତିକ ବିଚାରଧାରାକୁ ଜନ୍ମ ଦେଇଛି । ଜୈନଧର୍ମ ଓ ବୌଦ୍ଧଧର୍ମରେ ଈଶ୍ୱରଙ୍କ ବିଷୟରେ କିଛି ଉଲ୍ଲେଖ ନାହିଁ, କିନ୍ତୁ ନୀତିପୂର୍ଣ୍ଣ ମହତ୍ତର ଜୀବନ ପାଇଁ ବହୁ ପ୍ରେରଣା ରହିଛି । ଏହି ପ୍ରତ୍ୟେକ ବ୍ୟକ୍ତି ନିଜ ନିଜ ଭୂଖଣ୍ଡରେ କେତେକ ନୂତନ ବିଚାରବୋଧର ଅବତାରଣା କରି ଯେଉଁ ସାଂସ୍କୃତିକ ଆଲୋଡନର ସୂତ୍ରପାତ କରିଛନ୍ତି ତାହା ଜନଜୀବନ ପାଇଁ ମାର୍ଗଦର୍ଶକ ହୋଇପାରିଛି । ସେହିପରି ଭିନ୍ନ ଏକ ଭୌଗୋଳିକ ଭୂଖଣ୍ଡରେ ଯୀଶୁଖ୍ରୀଷ୍ଟଙ୍କର ଆବିର୍ଭାବକୁ ଆଧାର କରି ଯେଉଁ ସାଂସ୍କୃତିକ ଆଲୋଡନ ଆସିଛି ତାହାକୁ ଖ୍ରୀଷ୍ଟଧର୍ମ କୁହାଯାଉଛି । ଖ୍ରୀଷ୍ଟଧର୍ମ ବି ଏକ ଏକେଶ୍ୱରବାଦୀ ଧର୍ମ ଓ ଈଶ୍ୱରଙ୍କୁ ଏକ ପରମ ବ୍ୟକ୍ତିସତ୍ତା ଭାବେ ଏଥିରେ ଗ୍ରହଣ କରାଯାଇଛି । ଈଶ୍ୱର ସର୍ବଜ୍ଞ, ସର୍ବଶକ୍ତିମାନ୍, ମହାନ୍ କାରୁଣିକ ଓ ପବିତ୍ର ବୋଲି ଏଥିରେ କଳ୍ପନା କରାଯାଇଛି । ଖ୍ରୀଷ୍ଟାବ୍ଦ ଷଷ୍ଠ ଶତାବ୍ଦୀରେ ଆରବ ଭୂଖଣ୍ଡରେ ମହମ୍ମଦଙ୍କର ଆବିର୍ଭାବ ଏକ ସାମାଜିକ କ୍ରାନ୍ତିର ସୂତ୍ରପାତ କରିଛି । ଏହି ପ୍ରତ୍ୟେକ ବ୍ୟକ୍ତି ଇତିହାସର ମଣିଷ ଯେଉଁମାନେ ନିର୍ଦ୍ଦିଷ୍ଟ ଭୌଗୋଳିକ ଭୂଖଣ୍ଡରେ ସାମାଜିକ ଆଲୋଡନ ସୃଷ୍ଟି କରିବାରେ ପଥପ୍ରଦର୍ଶକ ହୋଇଛନ୍ତି । ବହୁ ଦେବଦେବୀଙ୍କର ପୂଜାରୁ ଏକେଶ୍ୱରବାଦରେ ବିଶ୍ୱାସ ଚିନ୍ତାଧାରା କ୍ଷେତ୍ରରେ ବଡ ଜାଗରଣ ଆଣିପାରିଛି । ଏହି ପ୍ରତ୍ୟେକ ଆଲୋଡନ ଏକ ସାମାଜିକ କ୍ରାନ୍ତି ଭାବେ ନିଜର ପ୍ରଭାବ ସୃଷ୍ଟି କରି ଭିନ୍ନ ଭିନ୍ନ ଭୌଗୋଳିକ ଭୂଖଣ୍ଡରେ ସାମାଜିକ ଓ ସାଂସ୍କୃତିକ ଜାଗରଣମାନ ସୃଷ୍ଟି କରିବାରେ ସଫଳ ହୋଇଛନ୍ତି ।

ଖ୍ରୀ.ପୂ. ଏକହଜାର ବର୍ଷଠାରୁ ବିଭିନ୍ନ ସଭ୍ୟତାରେ ଯେଉଁ ଆଧ୍ୟାତ୍ମିକ ଓ ସାଂସ୍କୃତିକ ଆଲୋଡନମାନ ସୃଷ୍ଟି ହୋଇଛି ସେସବୁ ପରେ ଆନୁଷ୍ଠାନିକ ଧର୍ମରେ ରୂପାନ୍ତରିତ ହୋଇଛନ୍ତି । ପ୍ରତ୍ୟେକ ସାଂସ୍କୃତିକ ଆଲୋଡନ କାଳକ୍ରମେ ବୃହତ୍ତର ଅଞ୍ଚଳକୁ ପରିବ୍ୟାପ୍ତ ହୋଇ ଏକ ଜନଗୋଷ୍ଠୀରେ ସାଂସ୍କୃତିକ ସଂହତି ସୃଷ୍ଟି କରିଛି । ସେ ସମୟରେ ସଭ୍ୟତା ସଭ୍ୟତା ଭିତରେ ଆଦାନ ପ୍ରଦାନର ଅବକାଶ ନଥିଲା ଓ ଗୋଟିଏ ଭୂଖଣ୍ଡର ଜନଗଣ

ଅନ୍ୟ ଭୂଖଣ୍ଡ ବିଷୟରେ ଅଜ୍ଞ ରହିଥିଲେ । ପୃଥିବୀ ନଦୀ, ସମୁଦ୍ର, ପର୍ବତ, ପାହାଡ, ମରୁଭୂମି ଇତ୍ୟାଦି ପ୍ରାକୃତିକ ପ୍ରତିବନ୍ଧକ ଯୋଗୁ ଭାଗ ଭାଗ ହୋଇ ରହିଥିଲା । ଗୋଟିଏ ଭୂଖଣ୍ଡରେ ଯେଉଁ ସଭ୍ୟତା ଓ ସାଂସ୍କୃତିକ ଭାବଧାରା ସୃଷ୍ଟି ହୋଇଥିଲା ତାହା ଅନ୍ୟ ଭୂଖଣ୍ଡଠାରୁ ପୃଥକ୍ ରହିଥିଲା । ପୃଥିବୀପୃଷ୍ଠରେ ଯେପରି ବିଭିନ୍ନ ସଭ୍ୟତାମାନ ସୃଷ୍ଟି ହୋଇଥିଲା ସେହିପରି ବିଭିନ୍ନ ଭାଷା, ଧାର୍ମିକ ପରମ୍ପରା, ସାଂସ୍କୃତିକ ଆଲୋଡନ ଇତ୍ୟାଦି ମଧ୍ୟ ରୂପରେଖ ନେଇଥିଲା । ତେବେ ସାଂସ୍କୃତିକ ଓ ଧାର୍ମିକ କ୍ରିୟାଶୀଳତା ମଧ୍ୟ ଦେଇ ବିଶ୍ୱର ଉତ୍ପତ୍ତି, ଜୀବନର ଅନ୍ତିମ ଲକ୍ଷ୍ୟ, ନୈତିକ ଜୀବନବୋଧ, ଜନ୍ମ-ମୃତ୍ୟୁର ରହସ୍ୟ ଇତ୍ୟାଦି ଭାବନାମାନଙ୍କୁ ନେଇ ନାନା ପ୍ରକାରର କାଳ୍ପନିକ ଚିତ୍ର ପ୍ରକାଶ ପାଇଥିଲା । ଏହା ସହ ବିଭିନ୍ନ ଧାର୍ମିକ ବିଧିବିଧାନ, କର୍ମକାଣ୍ଡ ଓ କିଛି ମହତ୍ତର ଆବେଗ ଏକ ବୃହତ୍ତର ଜନଗୋଷ୍ଠୀରେ ସାଂସ୍କୃତିକ ସଂହତି ସୃଷ୍ଟି କରିଥିଲା । ପ୍ରତ୍ୟେକ ସଭ୍ୟତାରେ ଧର୍ମ ଏକ ଆନୁଷ୍ଠାନିକ ଭିତ୍ତି ନେଇ ଜନଜୀବନକୁ ଗଭୀର ଭାବେ ପ୍ରଭାବିତ କରିବାକୁ ଲାଗିଲା । ପ୍ରତ୍ୟେକ ଧର୍ମଗୋଷ୍ଠୀ ନିଜ ଧର୍ମଗ୍ରନ୍ଥର ବାଣୀକୁ ପବିତ୍ର ଓ ଈଶ୍ୱରଦତ୍ତ ଜ୍ଞାନ ବୋଲି ବିଚାର କଲେ । ଆତ୍ମା, ଆତ୍ମାର ଅମରତ୍ୱ, ସ୍ୱର୍ଗ, ନରକ, ବିଚାର ଦିବସ, ମୁକ୍ତି, ମୋକ୍ଷ ଇତ୍ୟାଦି ପ୍ରସଙ୍ଗ ନେଇ ପ୍ରତ୍ୟେକ ଧର୍ମ ନିଜର ବିଶ୍ୱାସ ଓ ଭାବମଣ୍ଡଳ ସୃଷ୍ଟି କରିବାକୁ ଲାଗିଲେ । ଯେଉଁସବୁ ଘଟଣାକୁ ନିରପେକ୍ଷ ଭାବେ ଐତିହାସିକ ମାନଦଣ୍ଡରୁ ବ୍ୟାଖ୍ୟା କରାଯିବା ସମ୍ଭବ ସେସବୁକୁ ଈଶ୍ୱରୀୟ ଅନୁଜ୍ଞା ଓ ଦୈବୀବିଧାନ ଭାବେ ପରିକଳ୍ପନା କରାଗଲା । ରାଜତନ୍ତ୍ର ଏହି ଯୁଗରେ ବିକଶିତ ହୋଇଥିଲା ଓ ରାଜା ଈଶ୍ୱରଙ୍କ ପ୍ରତିନିଧି ବୋଲି କିଛି ପରିକଳ୍ପନା ବିଭିନ୍ନ ସଭ୍ୟତାରେ ପ୍ରକଟ ହୋଇଥିଲା । ଧର୍ମର ଗଭୀର ପ୍ରଭାବ ସମାଜ ଉପରେ ରହିଥିଲା ଓ ସମାଜର ପ୍ରତ୍ୟେକ ସ୍ତର ଧାର୍ମିକ ଭାବାବେଗଦ୍ୱାରା ନିୟନ୍ତ୍ରିତ ହେଉଥିଲା । ସକଳ ନୀତି, ନୈତିକତା ଓ ଜୀବନର ମୂଲ୍ୟ ଧର୍ମକୈନ୍ଦ୍ରିକ ହୋଇ ରହିଥିଲା । ପ୍ରାୟତଃ ସାମନ୍ତବାଦର ଗଭୀର ପ୍ରଭାବ ରହିଥିଲା ଓ ପ୍ରତ୍ୟେକ ସମାଜରେ ସାମନ୍ତଗୋଷ୍ଠୀ ଓ ପୂଜକଗୋଷ୍ଠୀ ସବୁଠାରୁ ଅଧିକ କ୍ଷମତାଶାଳୀ ହୋଇ ରହିଥିଲେ । ମୋଟଉପରେ ସକଳ ନୀତି, ନୈତିକତା, ରାଜନୀତି, ଶିକ୍ଷା ଓ ଜୀବନବୋଧ ପ୍ରତ୍ୟେକ ସ୍ତରରେ ଧର୍ମର ଗଭୀର ପ୍ରଭାବ ରହିଥିଲା ଓ ଏସବୁ ଧର୍ମଭାବନାଦ୍ୱାରା ନିୟନ୍ତ୍ରିତ ହେଉଥିଲା । ପଞ୍ଚଦଶ ଶତାବ୍ଦୀ ପର୍ଯ୍ୟନ୍ତ ସମୟକୁ କୁହାଯାଉଥିଲା ମଧ୍ୟଯୁଗ । ବିଭିନ୍ନ ଭୂଖଣ୍ଡରେ ଯେଉଁ ସାଂସ୍କୃତିକ ଜାଗରଣମାନ କୌଣସି କ୍ରାନ୍ତିକାରୀ ଚିନ୍ତକଙ୍କ ବିଚାରବୋଧକୁ ନେଇ ସୃଷ୍ଟି ହୋଇଥିଲା, କାଳକ୍ରମେ ସେସବୁ ଆନୁଷ୍ଠାନିକ ଧର୍ମରେ ରୂପାନ୍ତରିତ ହେଲା ଓ ପ୍ରତ୍ୟେକ ଧର୍ମ ଏକ

ଭୂଖଣ୍ଡର ସାଂସ୍କୃତିକ ଜୀବନଧାରାର ଅବିଚ୍ଛେଦ୍ୟ ଅଙ୍ଗ ହୋଇଉଠିଲା । ପ୍ରତ୍ୟେକ ଧର୍ମ ଶହ ଶହ ବର୍ଷର ସାଂସ୍କୃତିକ ବିକାଶଧାରାରେ ନାନା କାହାଣୀ, କିମ୍ବଦନ୍ତୀ, ସାହିତ୍ୟ, କଳା, ସଙ୍ଗୀତ, ପୂଜାସ୍ଥଳ ଇତ୍ୟାଦିକୁ ନେଇ ପରିପୁଷ୍ଟ ହେବାକୁ ଲାଗିଲା ଓ ଏପରିକି ପ୍ରତ୍ୟେକ ଧର୍ମଗୋଷ୍ଠୀ ଭିତରେ କେତେକ ବିଭାଜନ ମଧ୍ୟ ସୃଷ୍ଟି ହେଲା । ମୋଟଉପରେ ମଧ୍ୟଯୁଗ ଥିଲା ଧର୍ମୀୟ ପ୍ରଭାବ ଓ ଧର୍ମୀୟ କ୍ରିୟାଶୀଳତାର ସମୟ ଓ ଏହି ସମୟରେ ସମାଜର ପ୍ରତ୍ୟେକ କ୍ଷେତ୍ର ଧର୍ମକୈନ୍ଦ୍ରିକ ଆଦର୍ଶରେ ପ୍ରଭାବିତ ହୋଇଥିଲା ।

ପଞ୍ଚଦଶ ଶତାବ୍ଦୀରେ ୟୁରୋପରେ ଏକ ବଳିଷ୍ଠ ସାଂସ୍କୃତିକ ଜାଗରଣ ସୃଷ୍ଟି ହେଲା ଯାହାକୁ ନବଜାଗରଣ ବା ରିନାସାଁ କୁହାଯାଉଛି । ପଞ୍ଚଦଶ ଶତାବ୍ଦୀର ମଧ୍ୟଭାଗରୁ ସପ୍ତଦଶ ଶତାବ୍ଦୀର ଶେଷଭାଗ ପର୍ଯ୍ୟନ୍ତ ଏହି ଅଢେଇ ଶହ ବର୍ଷ ଭିତରେ ଏକ ବଡ ସାଂସ୍କୃତିକ ଆଲୋଡନ ସୃଷ୍ଟି ହେଲା ଯେଉଁଥିରୁ ଦୁଇଟି ବୌଦ୍ଧିକ ଧାରା ଉଦ୍ଭବ ହେଲା । ଏହି ଦୁଇଟି ଧାରା ହେଉଛି ଜ୍ଞାନଦୀପ୍ତିର ଯୁଗ ଓ ମାନବବାଦର ଯୁଗ.। ସପ୍ତଦଶ ଶତାବ୍ଦୀ ଆରମ୍ଭରୁ ବିଜ୍ଞାନର ବିକାଶ ପର୍ବ ଆରମ୍ଭ ହେଲା । ମାନବ ସଭ୍ୟତାର କାହାଣୀ ବହୁ ପ୍ରାଚୀନ ହେଲେ ବି ଆଧୁନିକ ବିଜ୍ଞାନ ମାତ୍ର ତିନି ଚାରି ଶତାବ୍ଦୀ ତଳେ ଆରମ୍ଭ ହୋଇଥିଲା । ବିଜ୍ଞାନର ଆଦିକାଳଟି ଥିଲା ଏକ ସଂଘର୍ଷର ସମୟ । ବିଜ୍ଞାନ ଯେଉଁସବୁ ଜ୍ଞାନର ସୂତ୍ରପାତ କଲା ତାହା ଥିଲା ଧାର୍ମିକ ବିଶ୍ୱାସର ପରିପନ୍ଥୀ । ସୁତରାଂ ବିଜ୍ଞାନ ଓ ଧର୍ମ ଭିତରେ ଯେଉଁ ଦ୍ୱନ୍ଦ୍ୱ ସୃଷ୍ଟି ହେଲା, ତାର ପରିଣାମରୁ କେତେକ ପ୍ରବୀଣ ବୈଜ୍ଞାନିକଙ୍କୁ କାଠଗଡାରେ ଛିଡା ହେବାକୁ ପଡିଲା ଓ ଏପରିକି ଶହୀଦ ହେବାକୁ ହେଲା । କେଉଁ ଈଶ୍ୱର ପୃଥିବୀକୁ ମାତ୍ର କେତୋଟି ଦିନରେ ସୃଷ୍ଟି କରିନାହାନ୍ତି, ପୃଥିବୀ ଶହ ଶହ କୋଟି ବର୍ଷ ତଳୁ ସୃଷ୍ଟି ହୋଇ ନାନା ଭୌତିକ ଓ ଜୈବିକ ପରିବର୍ତ୍ତନ ମଧ୍ୟ ଦେଇ ଆଜିର ସ୍ଥିତିକୁ ଆସିଛି । ସେହିପରି ମଣିଷକୁ ଈଶ୍ୱର ତାଙ୍କ ସ୍ୱରୂପରେ ସୃଷ୍ଟି କରିନାହାନ୍ତି, କୋଟି କୋଟି ବର୍ଷର ଜୈବିକ ବିବର୍ତ୍ତନ ମଧ୍ୟ ଦେଇ ଓ କେତେ କେତେ ସ୍ତର ଦେଇ ଆଜିର ମଣିଷ ସମାଜ ଧରାପୃଷ୍ଠରେ ଉଦ୍ଭବ ହୋଇଛି । ସୂର୍ଯ୍ୟ ଘୂର୍ଣ୍ଣାୟମାନ ନୁହେଁ ବରଂ ସ୍ଥିର ଓ ପୃଥିବୀ ତଥା ଅନ୍ୟାନ୍ୟ ଗ୍ରହସକଳ ସୂର୍ଯ୍ୟ ଚାରିପଟେ ଘୂର୍ଣ୍ଣାୟମାନ । ସ୍ୱର୍ଗ, ନରକ ଇତ୍ୟାଦି କେଉଁଠି ହେଲେ ନାହିଁ । ଏସବୁ ବୈଜ୍ଞାନିକ ଭାବନା ସହ ଧର୍ମକୈନ୍ଦ୍ରିକ ବିଚାରର ଦ୍ୱନ୍ଦ୍ୱ ସୃଷ୍ଟି ହେଲା । ଧର୍ମଗ୍ରନ୍ଥର ଭାବନା ଯାହା ଈଶ୍ୱରଦତ୍ତ ଜ୍ଞାନ ବୋଲି ବିଶ୍ୱାସ ରହିଥିଲା ତାହା ଯେ ମିଥ୍ୟା ହୋଇପାରେ ଏହା ଧର୍ମର ରକ୍ଷଣଶୀଳ ବ୍ୟକ୍ତିମାନେ ଗ୍ରହଣ କରିପାରୁନଥିଲେ । ସୁତରାଂ

ଅନେକ ସତ୍ୟାନ୍ୱେଷୀ ମୁକ୍ତଚିନ୍ତକ ଓ ବୈଜ୍ଞାନିକଙ୍କୁ ନାନା ନିର୍ଯ୍ୟାତନା ସହିବାକୁ ପଡିଛି, ବନ୍ଦୀ ଜୀବନ ବିତାଇବାକୁ ହୋଇଛି ଓ ଏପରିକି ମୃତ୍ୟୁଦଣ୍ଡ ମିଳିଛି । ମାନବ ସଭ୍ୟତାକୁ ଯୁଗାନ୍ତକାରୀ ଅବଦାନ ଦେଇଥିବା ଓ ଜ୍ଞାନବିଜ୍ଞାନର ବିକାଶରେ ପଥପ୍ରଦର୍ଶକ ହୋଇଥିବା ବୈଜ୍ଞାନିକ, ମୁକ୍ତଚିନ୍ତକ ଓ ହେତୁବାଦୀମାନଙ୍କୁ କିପରି ଯନ୍ତ୍ରଣା ଭୋଗିବାକୁ ହୋଇଛି ତାହାର କାହାଣୀ ବଡ ମର୍ମାନ୍ତିକ ।

ନବଜାଗରଣ ପ୍ରଭାବରେ ଯେଉଁ ଜ୍ଞାନଦୀପ୍ତିର ଯୁଗ ଆସିଲା ସେଥିରୁ ଆଧୁନିକ ବିଜ୍ଞାନ ଜନ୍ମ ନେଲା ଓ ଏହି ତିନି ଚାରି ଶତାବ୍ଦୀ ଭିତରେ ବିଜ୍ଞାନ ଏକ ନୂଆ ପୃଥିବୀ ଗଢିବାରେ ସଫଳ ହୋଇପାରିଛି । ବୈଜ୍ଞାନିକ ଜ୍ଞାନର ବିକାଶ ପଶ୍ଚାତରେ ଦୁଇଟି ମୌଳିକ ଭାବନା ରହିଥିବା ମନେହୁଏ ଯାହାକୁ ଆଧାରକରି ବିଜ୍ଞାନର ବିକାଶ ଯାତ୍ରା ଅଗ୍ରଗତି କରିଛି । ପ୍ରଥମ ଭାବନାଟି ହେଉଛି ବୈଜ୍ଞାନିକ ପ୍ରକୃତିବାଦ । ଏହି ଭାବନାନୁଯାୟୀ କୌଣସି ପାରଲୌକିକ ଶକ୍ତି ଜଗତର ଘଟଣା ପ୍ରବାହକୁ ପ୍ରଭାବିତ କରିବାର କୌଣସି ତଥ୍ୟଭିତ୍ତିକ ପ୍ରମାଣ ନାହିଁ । ଜଗତରେ ଯାହା କିଛି ରହିଛି ବା ପ୍ରକୃତିରେ ଯାହା କିଛି ଘଟେ ସେସବୁକୁ ପ୍ରାକୃତିକ ନିୟମ, ପ୍ରାକୃତିକ ଏକରୂପତା ଓ କାର୍ଯ୍ୟ-କାରଣ ଶୃଙ୍ଖଳା ଭିତରେ ବ୍ୟାଖ୍ୟା କରିବା ସମ୍ଭବ । ପ୍ରକୃତିର ବିଶାଳତା ଓ ଜଟିଳତା ଯୋଗୁ ପ୍ରକୃତିରେ ବହୁ ରହସ୍ୟ ରହିଛି ଯାହା ଆମ ଜ୍ଞାନର ପରିସର ଭିତରେ ବ୍ୟାଖ୍ୟା କରିବା ସମ୍ଭବ ହୋଇନାହିଁ । କିନ୍ତୁ ପ୍ରକୃତିରେ ବା ପ୍ରାକୃତିକ ଘଟଣା ପଶ୍ଚାତରେ କୌଣସି ପାରଲୌକିକ ବା ସୁପରନାଚୁରାଲ କାରଣ ନାହିଁ । ଏହି ବିଚାରବୋଧ ହିଁ ବୈଜ୍ଞାନିକ ଜ୍ଞାନର ବିକାଶ ପାଇଁ ନିର୍ଣ୍ଣାୟକ ହୋଇଛି । ଦ୍ୱିତୀୟ ଭାବନାଟି ହେଉଛି ଏକ ସାର୍ବଜନୀନ ପ୍ରଣାଳୀ । ବୈଜ୍ଞାନିକ ଜ୍ଞାନର ଆଧାର ହେଉଛି ପର୍ଯ୍ୟବେକ୍ଷଣ-ପରୀକ୍ଷଣ । କୌଣସି ବିଷୟକୁ ବ୍ୟାଖ୍ୟା କରିବାପାଇଁ ଆବଶ୍ୟକ ବେଳେ ସମ୍ଭାବ୍ୟ କାରଣକୁ କଳ୍ପନା କରାଯାଏ ଯାହାକୁ 'ପ୍ରକଳ୍ପ' କୁହାଯାଏ । ପ୍ରକଳ୍ପମାନଙ୍କର ପରୀକ୍ଷା ବା ସତ୍ୟାପନ ପରେ ସମ୍ଭାବ୍ୟ ପ୍ରକଳ୍ପକୁ ସ୍ୱୀକାର କରାଯାଏ ବା ତାହାକୁ ଦୂରକରି ନୂତନ ପ୍ରକଳ୍ପକୁ ଅନୁମାନ କରାଯାଏ । ପର୍ଯ୍ୟବେକ୍ଷଣ-ପରୀକ୍ଷଣ, ପ୍ରକଳ୍ପ ପ୍ରଣୟନ, ପ୍ରକଳ୍ପର ସତ୍ୟାସତ୍ୟ ନିରୂପଣ ଓ ସାମାନ୍ୟୀକରଣ ହିଁ ହେଉଛି ବୈଜ୍ଞାନିକ ପ୍ରଣାଳୀର ମୂଳସୂତ୍ର ଯାହାକୁ ଆଧାର ଭାବେ ନେଇ ବୈଜ୍ଞାନିକ ଜ୍ଞାନ ହାସଲ କରାଯାଏ । ବୈଜ୍ଞାନିକ ଜ୍ଞାନ ସର୍ବଦା ତଥ୍ୟ ଆଧାରିତ, ପରୀକ୍ଷା ସାପେକ୍ଷ ଓ ପ୍ରଗତିଶୀଳ । କୌଣସି ବୈଜ୍ଞାନିକ ନିଜର ସିଦ୍ଧାନ୍ତକୁ ଚିରନ୍ତନ, ଶାଶ୍ୱତ ବା ଅଲଂଘନୀୟ ବୋଲି ଦାବି କରନ୍ତି

ନାହିଁ । କାରଣ ନୂତନ ତଥ୍ୟ ଆଧାରରେ ବୈଜ୍ଞାନିକ ଜ୍ଞାନ ପରିବର୍ତ୍ତନଶୀଳ ଓ ବୈଜ୍ଞାନିକ ପ୍ରଣାଳୀ ଆଧାରରେ ସ୍ୱସଂଶୋଧନାତ୍ମକ । ମୋଟଉପରେ କହିଲେ ବୈଜ୍ଞାନିକ ଜ୍ଞାନ ପ୍ରଣାଳୀବଦ୍ଧ, ତଥ୍ୟାଧାରିତ, ପ୍ରଗତିଶୀଳ, ପରୀକ୍ଷା-ସାପେକ୍ଷ, ପରିବର୍ତ୍ତନଶୀଳ, ସ୍ୱସଂଶୋଧନାତ୍ମକ ଓ ସାର୍ବଜନୀନ ।

ସଂପ୍ରତି ଯାହାକୁ ବିଜ୍ଞାନ କୁହାଯାଉଛି ଗୋଟିଏ ସମୟରେ ତାହାକୁ 'ପ୍ରାକୃତିକ ଦର୍ଶନ' କୁହାଯାଉଥିଲା । ଏକ ସମୟରେ ବିଶ୍ୱାସ ଥିଲା ଯେ ଦର୍ଶନ ବିଶ୍ୱର ରହସ୍ୟ, ଜୀବନର ଲକ୍ଷ୍ୟ, ସର୍ବୋତ୍ତମ ସତ୍ତାର ସ୍ୱରୂପ ଇତ୍ୟାଦି ପ୍ରସଙ୍ଗକୁ ବ୍ୟାଖ୍ୟା କରିବ । ଯେତେବେଳେ ବିଶାଳ ପ୍ରକୃତିକୁ ବ୍ୟାଖ୍ୟା କରିବାର ଭାବନା ଆସିଲା ତାହାକୁ କୁହାଗଲା 'ପ୍ରାକୃତିକ ଦର୍ଶନ' । ତେବେ ବିଜ୍ଞାନର ଯୁଗ ଆସିବାର ବହୁ ପରେ ଆସିଲା ପ୍ରଯୁକ୍ତିର ଯୁଗ । ବିଜ୍ଞାନର ସିଦ୍ଧାନ୍ତମାନଙ୍କୁ ପ୍ରୟୋଗ କରି ବିଭିନ୍ନ ଯନ୍ତ୍ର ଓ ଉପକରଣ ନିର୍ମାଣ କରାଯାଇପାରିବ ଯାହା ଜୀବନ ପାଇଁ ଉପଯୋଗୀ । ବିଜ୍ଞାନର ଯେତେବେଳେ ଏକ ପ୍ରୟୋଗାତ୍ମକ ଦିଗ ବିଷୟରେ ଜ୍ଞାନ ସୃଷ୍ଟି ହେଲା, ସେତେବେଳେ ପ୍ରାକୃତିକ ଦର୍ଶନକୁ ବିଜ୍ଞାନ କୁହାଗଲା ଓ ବିଜ୍ଞାନର ପ୍ରୟୋଗାତ୍ମକ କ୍ଷେତ୍ରକୁ ପ୍ରଯୁକ୍ତି କୁହାଗଲା । ବାଷ୍ପଚାଳିତ ଇଂଜିନ୍, ପ୍ରିଣ୍ଟିଂପ୍ରେସ୍, ରେଳଯାତ୍ରାର ପ୍ରଯୁକ୍ତି, ବିଜୁଳିର ବ୍ୟବହାର ଇତ୍ୟାଦି ସଭ୍ୟତାର ରୂପରେଖ ବଦଳାଇବାରେ ପ୍ରମୁଖ ଭୂମିକା ନେଇପାରିଲେ । ମାତ୍ର ଶହେ ଦୁଇ ଶହ ବର୍ଷ ଭିତରେ ଗମନାଗମନ କ୍ଷେତ୍ରରେ ଯୁଗାନ୍ତକାରୀ ସାଫଲ୍ୟ, ବହୁ ମହାମାରୀ ରୋଗର ନିୟନ୍ତ୍ରଣ, ରେଡିଓ, ଟେଲିଭିଜନର ଉଦ୍ଭାବନ, ଶରୀରରେ ଅଙ୍ଗ ପ୍ରତିରୋପଣ, ମହାକାଶ ଯାତ୍ରା ପରି ଯେଉଁସବୁ ପ୍ରଯୁକ୍ତିର ବିକାଶ ହୋଇଛି ତାହା ସଭ୍ୟତାର ରୂପରେଖ ପରିବର୍ତ୍ତନ କରିପାରିଛି । ସପ୍ତଦଶ ଶତାବ୍ଦୀ ଆରମ୍ଭରୁ ଆରମ୍ଭ ହୋଇଥିବା ବିଜ୍ଞାନ ଓ ଅଷ୍ଟାଦଶ ଶତାବ୍ଦୀର ଶେଷ ଭାଗରୁ ଆରମ୍ଭ ହୋଇଥିବା ପ୍ରାଯୁକ୍ତିକ ଜ୍ଞାନ ମାନବ ସଭ୍ୟତାର ଭୌତିକ ବିକାଶରେ ନିର୍ଣ୍ଣାୟକ ଭୂମିକା ନେଇଥିବା ମନେହୁଏ ।

ବିଜ୍ଞାନ ଜ୍ଞାନର ଦିଗନ୍ତକୁ ବିସ୍ତାର କରିଚାଲିଲା । ଏକ ସାର୍ବଜନୀନ ପ୍ରଣାଳୀ ପ୍ରୟୋଗକରି ପ୍ରକୃତିକୁ ଅଧ୍ୟୟନ କରି ପ୍ରାକୃତିକ ବିଜ୍ଞାନ ଓ ମାନବ ସମାଜକୁ ଅନୁଶୀଳନ କରି ସାମାଜିକ ବିଜ୍ଞାନ ଜ୍ଞାନର ଦିଗ୍‌ବଳୟକୁ ବ୍ୟାପକ କରିବା ଏକ ସାଧାରଣ ଉପଲବ୍ଧି । ବୈଜ୍ଞାନିକ ପ୍ରଣାଳୀ ହିଁ ସକଳ ବସ୍ତୁନିଷ୍ଠ ଜ୍ଞାନର ମୂଳଭିତ୍ତି ଯାହାଦ୍ୱାରା ସତ୍ୟର ଉନ୍ମୋଚନ ସମ୍ଭବ ।

ୟୁରୋପୀୟ ନବଜାଗରଣର ଦ୍ୱିତୀୟ ପରିଣାମଟି ଥିଲା ମାନବବାଦର ପ୍ରତିଷ୍ଠା । ମାନବବାଦ ଏକ ମହତ୍ତର ଜୀବନଦର୍ଶନ ଯାହା ମଣିଷର ମହତ୍ତ୍ୱ ପ୍ରତି ଦୃଷ୍ଟି ଆକର୍ଷଣ କରିଥାଏ । ମଣିଷ ସମାଜର ଇତିହାସରେ ରହି ଆସିଥିବା ନାନା ପ୍ରକାରର ଭେଦଭାବ, ହିଂସା, କ୍ରୂରତା, ଅମାନବିକତା, ଶୋଷଣ ଓ ଅନ୍ୟାୟ ବିରୁଦ୍ଧରେ ଏହା ଥିଲା ଏକ ପ୍ରତିବାଦ । ସଭ୍ୟତାର ଇତିହାସରେ ଯେତେ ଯୁଦ୍ଧ, ବିଭୀଷିକା, ଅତ୍ୟାଚାର ଓ ଦମନଲୀଳାର କାହାଣୀ ରହିଛି ତାହା ଯେପରି ମର୍ମାନ୍ତିକ ସେହିପରି ଦୁର୍ଭାଗ୍ୟଜନକ । ପ୍ରକୃତି ମଣିଷ ସମାଜ ପାଇଁ ଯେତେ ଦୁଃଖ ଓ ଯନ୍ତ୍ରଣା ସୃଷ୍ଟି କରିନାହିଁ, ମାନବିକ କ୍ରୂରତା ଓ ଅତ୍ୟାଚାର ତାପେକ୍ଷା ଅଧିକ ଦୁଃଖର ପରିବେଶ ସୃଷ୍ଟି କରିଛି । ବାତ୍ୟା, ବନ୍ୟା, ଭୂକମ୍ପ ପରି ପ୍ରାକୃତିକ ବିପର୍ଯ୍ୟୟ କେଉଁ କେଉଁ ଭୂଖଣ୍ଡରେ ବେଳେ ବେଳେ ଧ୍ୱଂସର ତାଣ୍ଡବ ସୃଷ୍ଟି କରିଛି, ତେବେ ମଣିଷ ପୁଣି ନିଜର ବୁଦ୍ଧି ଓ ଶ୍ରମ ଖଟାଇ ଉଜୁଡା ସଂସାରକୁ ଗଢିବା ପାଇଁ ଚେଷ୍ଟା କରିଛି । ତେବେ ମାନବିକ କ୍ରୂରତା ମଣିଷ ପାଇଁ ଅଧିକ ଦୁଃଖ ଯନ୍ତ୍ରଣାର ପରିବେଶ ସୃଷ୍ଟି କରିଛି । ବିଭିନ୍ନ ସଭ୍ୟତାରେ କେତେ କେତେ ଭେଦଭାବ ଯୋଗୁ ଅଗଣିତ ମଣିଷ ନାନା ଶୋଷଣର ଶରବ୍ୟ ହୋଇଛନ୍ତି । ଅଧିକାଂଶ ସଭ୍ୟତାରେ ଲିଙ୍ଗଭେଦଜନିତ କାରଣରୁ ଯୁଗ ଯୁଗ ଧରି ମହିଳାମାନେ ନାନା ଭାବରେ ଶୋଷିତ ଓ ଅତ୍ୟାଚାରିତ ହୋଇଆସିଛନ୍ତି । ରଙ୍ଗଭେଦଜନିତ କାରଣରୁ ଲକ୍ଷ ଲକ୍ଷ ନିଗ୍ରୋ ଦାସତ୍ୱର ଶିକାର ହୋଇଛନ୍ତି । ଜାତିଭେଦ ଯୋଗୁ ଭାରତବର୍ଷରେ ଦଳିତ ଓ ଶୂଦ୍ରମାନେ ସର୍ବନିମ୍ନ ମାନବିକ ଅଧିକାରରୁ ବଞ୍ଚିତ ହୋଇ ରହିଛନ୍ତି । କେତେ କେତେ ସାଂପ୍ରଦାୟିକ ଭେଦଭାବ ଯୋଗୁ ଅଗଣିତ ମଣିଷଙ୍କର ସଂସାର ଉଚ୍ଛନ୍ନ ହୋଇଯାଇଛି ଓ ସେମାନଙ୍କର ସମସ୍ତ ସ୍ୱପ୍ନ ମାଟିରେ ମିଶିଯାଇଛି । ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ନାଜିମାନେ ଷାଠିଏ ଲକ୍ଷ ଇହୁଦୀମାନଙ୍କୁ ଅମାନୁଷିକ ଭାବେ ହତ୍ୟା କରିଛନ୍ତି । ଏହି ମାନବିକ କ୍ରୂରତା ବିରୁଦ୍ଧରେ ମାନବବାଦ ଏକ ନୂତନ ଚେତନାର ସୂତ୍ରପାତ କରିଥାଏ । ହିଂସା, ପ୍ରତିହିଂସା, ଘୃଣା, ଅସହିଷ୍ଣୁତା ଇତ୍ୟାଦିକୁ ଦୂର କରି ମାନବିକ ସଂପ୍ରୀତି ଓ ଭ୍ରାତୃତ୍ୱର ଭାବନାକୁ ମାନବବାଦ ପ୍ରାଧାନ୍ୟ ଦେଇଥାଏ । ମାନବବାଦ ଅନୁଯାୟୀ ପ୍ରତ୍ୟେକ ବ୍ୟକ୍ତିର ଜୀବନର ମୂଲ୍ୟ ରହିଛି । ପ୍ରତ୍ୟେକ ବ୍ୟକ୍ତି ଜାତି, ଧର୍ମ, ବର୍ଣ୍ଣ, ଲିଙ୍ଗ, ଜାତୀୟତା ନିର୍ବିଶେଷରେ ମର୍ଯ୍ୟାଦାପୂର୍ଣ୍ଣ ଜୀବନ ଅତିବାହିତ କରିବା ତାହାର ଏକ ପ୍ରାକୃତିକ ଅଧିକାର । ପ୍ରତ୍ୟେକ ମଣିଷର ଆବେଗ, ଅନୁଭବ ଓ ଉପଲବ୍ଧିର ମହତ୍ତ୍ୱ ରହିଛି । ସଭ୍ୟତାର ଇତିହାସରେ ମାନବବାଦର ଯେଉଁ ବିଚାରବୋଧ ଆସିଛି ତାହା ଏକ ବଡ ସାଂସ୍କୃତିକ ଉତ୍ତରଣ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ମାନବବାଦୀ ଜୀବନବୋଧର ଯେଉଁ କ୍ଷୀଣ ଧାରାଟି ନବଜାଗରଣ ଯୁଗରେ ସୃଷ୍ଟି ହୋଇଥିଲା ତାହାର ପ୍ରଭାବ ଧୀରେ ଧୀରେ ବହୁ କ୍ଷେତ୍ରରେ ଅନୁଭୂତ ହେଲା । ରାଜନୈତିକ ସ୍ତରରେ ରାଜତନ୍ତ୍ର ଓ ସାମାଜିକ ସ୍ତରରେ ସାମନ୍ତବାଦ ବିରୁଦ୍ଧରେ କେତେକ ଦେଶରେ ବିପ୍ଳବର ସ୍ୱର ଉଠିଲା । ସମତା, ବ୍ୟକ୍ତି ସ୍ୱାଧୀନତା ଓ ଭ୍ରାତୃତ୍ୱ ଭାବ ସାମାଜିକ ଆଦର୍ଶ ଭାବେ କେତେକ ଦେଶରେ ସ୍ୱୀକୃତ ହେଲା । ଗଣତନ୍ତ୍ର ରାଜନୈତିକ ସ୍ତରରେ ଆଦର୍ଶ ହେଲା । ଶିଳ୍ପବିପ୍ଳବ ପରବର୍ତ୍ତୀ ଯୁଗରେ ସାମ୍ରାଜ୍ୟବାଦ ଓ ପୁଞ୍ଜିବାଦୀ ଶୋଷଣର ଯେଉଁ ଧାରା ସୃଷ୍ଟି ହୋଇଥିଲା ତାହା ବିରୁଦ୍ଧରେ ସାମାଜିକ ଚେତନା ଜାଗ୍ରତ ହେଲା । ସମାଜବାଦ, ସମତାଭିତ୍ତିକ ସମାଜ ଓ ଜନମଙ୍ଗଳକାରୀ ଆଦର୍ଶ ପ୍ରତ୍ୟେକ ରାଷ୍ଟ୍ରର ଆଭିମୁଖ୍ୟ ହେବାକୁ ଲାଗିଲା । ସାମାଜିକ ଭେଦଭାବ, ଅନ୍ୟାୟ ଓ ଶୋଷଣ ଯେ ମାନବିକତା-ବିରୋଧୀ ଏହି ବିଚାରଧାରା ଧୀରେ ଧୀରେ ସାର୍ବଜନୀନ ହେବାକୁ ଲାଗିଲା । ମାନବିକ ଅଧିକାର ନେଇ ଯେଉଁ ବିଶ୍ୱ ଘୋଷଣାନାମାଟି ଜାତିସଂଘରେ ୧୯୪୮ରେ ଗୃହୀତ ହେଲା ସେଥିରେ ଏକ ଭେଦଭାବରହିତ, ଭ୍ରାତୃତ୍ୱପୂର୍ଣ୍ଣ ବିଶ୍ୱ ମାନବସମାଜର ପ୍ରତିଷ୍ଠାକୁ ଆମର ଲକ୍ଷ୍ୟ ଭାବରେ ଗ୍ରହଣ କରାଗଲା । ସେହି ଘୋଷଣାନାମାର ପ୍ରଥମ ଧାରାରେ କୁହାଯାଇଛି- "ସବୁ ମଣିଷ ସମାନ ମର୍ଯ୍ୟାଦା ଓ ଅଧିକାର ନେଇ ଜନ୍ମ ହୋଇଛନ୍ତି । ପ୍ରତ୍ୟେକ ବ୍ୟକ୍ତି ଭିତରେ ବିଚାରବୋଧ ଓ ବିବେକ ରହିଛି । ପ୍ରତ୍ୟେକ ବ୍ୟକ୍ତି ଏକ ଭ୍ରାତୃତ୍ୱ ଦୃଷ୍ଟିରେ ଅନ୍ୟମାନଙ୍କୁ ଦେଖିବା ଆବଶ୍ୟକ ।" ତିରିଶ ଧାରା ବିଶିଷ୍ଟ ଏହି ଘୋଷଣାନାମାଟି ମାନବବାଦୀ ଜୀବନବୋଧର ଏକ ଉତ୍କୃଷ୍ଟ ଅଭିବ୍ୟକ୍ତି କହିଲେ ଅତ୍ୟୁକ୍ତି ହେବ ନାହିଁ । ସ୍ୱାଧୀନତା, ସାମାଜିକ ନ୍ୟାୟ, ଆତ୍ମମର୍ଯ୍ୟାଦା, ଶାନ୍ତିପୂର୍ଣ୍ଣ ସହାବସ୍ଥାନ ଓ ଗଣତାନ୍ତ୍ରିକ ଜୀବନବୋଧକୁ ଆମର ଈପ୍ସିତ ଆଦର୍ଶ ଭାବେ ସ୍ୱୀକୃତି ଦିଆଯାଇଛି । ମାନବବାଦୀ ଭାବନା କ୍ଷେତ୍ରରେ ଏହି ଘୋଷଣାନାମାଟି ଆମ ସୂକ୍ଷ୍ମ ବିବେକବୋଧର ଏକ ପ୍ରତିଫଳନ କହିଲେ ଅତ୍ୟୁକ୍ତି ହେବ ନାହିଁ । ଏହି ଲକ୍ଷ୍ୟ ହାସଲ ପାଇଁ ଆମକୁ ବହୁ ଦୂର ଯିବାକୁ ଅଛି, ତେବେ ଏହା ଯେ ବିଶ୍ୱ ସ୍ତରରେ ଆମର ଆଦର୍ଶ ତାହା ବି ସଭ୍ୟ ଜୀବନବୋଧର ଏକ ବଡ ଉପଲବ୍ଧି ।

ମାନବ ସଭ୍ୟତା କେତେ କେତେ ସ୍ତର ଓ ସୋପାନ ମଧ୍ୟ ଦେଇ ଏକ ଆଦିମ ସ୍ଥିତିରୁ ଆଜିର ସ୍ଥିତିକୁ ଆସିଛି । ସଭ୍ୟତା ଯେଉଁ ସୋପାନରେ ଥିଲେ ବି ମଣିଷ ସମାଜ ସର୍ବଦା କେତେକ ସଙ୍କଟ ଦେଇ ଗତିକରି ଆସିଛି । ସଭ୍ୟତାର ସଙ୍କଟ କ୍ଷେତ୍ରରେ ବିଭିନ୍ନ କାଳଖଣ୍ଡରେ ନାନା ମାନବିକ ସମସ୍ୟାର ଅବତାରଣା କରାଯାଇପାରେ । ତେବେ ଏଠାରେ

କେତେକ ସାଧାରଣ ସଙ୍କଟର ସୂଚନା ଦେବା ଆମର ଲକ୍ଷ୍ୟ । ସଭ୍ୟତା ଯେଉଁ ସ୍ଥିତିରେ ଥିଲେ ବି ଏହି ସଙ୍କଟମାନ ସବୁ ସ୍ଥିତିରେ ରହିଆସିଛି ବୋଲି ଏକ ଦାର୍ଶନିକ ମତ ରହିଛି । ପ୍ରଥମରେ କୁହାଯାଏ ଯେ ସୀମିତ ସମ୍ବଳ ମଣିଷ ପାଇଁ ସର୍ବଦା ସମସ୍ୟା ସୃଷ୍ଟି କରିଆସିଛି । ସବୁ ସମୟରେ କିଛି ବ୍ୟକ୍ତି ଜୀବନର ଆବଶ୍ୟକତାଠାରୁ ବଞ୍ଚିତ ହୋଇରହିବା ଏକ ବଡ ବିଡମ୍ବନା । ଅଠର ଶହ ମସିହା ବେଳକୁ ପୃଥିବୀର ଲୋକସଂଖ୍ୟା ଥିଲା ଶହେ କୋଟି, ଶହେ ବର୍ଷ ପରେ ତାହା ବୃଦ୍ଧି ପାଇ ହେଲା ଶହେ ଷାଠିଏ କୋଟି ଓ ଦୁଇ ହଜାର ମସିହାରେ ପୃଥିବୀର ଲୋକସଂଖ୍ୟା ହୋଇଛି ସାତଶହ କୋଟିରୁ ଅଧିକ । ପୃଥିବୀରେ ଯେତେବେଳେ ମାତ୍ର ଶହେ କୋଟି ଲୋକ ଥିଲେ ସେତେବେଳେ କିଛି ଲୋକ କେତେକ ଭୂଖଣ୍ଡରେ ଦୁର୍ଭିକ୍ଷ ଜନିତ କାରଣରୁ ବା ଖାଦ୍ୟାଭାବ ଯୋଗୁ ମୃତ୍ୟୁବରଣ କରୁଥିଲେ । ଏବେ ଜ୍ଞାନବିଜ୍ଞାନର ପ୍ରଭୂତ ବିକାଶ ଓ ଗମନାଗମନର ଉନ୍ନତି ସତ୍ତ୍ୱେ ପୃଥିବୀର କେତେକ ଦେଶରେ ଉତ୍କଟ ଦାରିଦ୍ର୍ୟ ରହିଛି ଓ ତୃତୀୟ ବିଶ୍ୱର ରାଷ୍ଟ୍ରମାନଙ୍କରେ ଅନେକ ଲୋକ ଅବମାନବୀୟ ସ୍ତରରେ ଜୀବନ ନିର୍ବାହ କରୁଛନ୍ତି । ଜୀବନର ସର୍ବନିମ୍ନ ଆବଶ୍ୟକତା ପୂରଣ କରିବା କିଛି ଲୋକଙ୍କ ପାଇଁ ସମ୍ଭବ ହେଉ ନାହିଁ । ଏଥିପାଇଁ ସୀମିତ ସମ୍ବଳକୁ ଦାୟୀ କରାଯାଉଛି । ସଭ୍ୟତା ଯେଉଁ ସ୍ଥିତିରେ ଥିଲେ ବି ଆମର ଦୁଃଖ ଓ ଅଶାନ୍ତି ପାଇଁ ସୀମିତ ଜ୍ଞାନକୁ ଦାୟୀ କରାଯାଏ । ପ୍ରକୃତି ସଂପର୍କରେ ଆମର ଜ୍ଞାନ କୌଶଳ ଯେତେ ବୃଦ୍ଧି ହେଲେ ମଧ୍ୟ ଆମର ଦୁଃଖଦୁର୍ଦ୍ଦଶା ପାଇଁ ଆମର ସୀମିତ ଜ୍ଞାନକୁ କାରଣ ଭାବେ ନିଆଯାଏ । ସେହିପରି ସୀମିତ ବିଚାରଶୀଳତା ବା ଲିମିଟେଡ୍ ରେସନାଲଟିକୁ ଆମର ଏକ ଅନ୍ତର୍ନିହିତ ଦୁର୍ବଳତା ବୋଲି ଗ୍ରହଣ କରାଯାଏ । ମଣିଷ ଏକ ବିଚାରଶୀଳ ପ୍ରାଣୀ ବୋଲି ଜଣେ ଦାର୍ଶନିକ ମଣିଷର ସଂଜ୍ଞା ଦେଇଥିଲେ । ଏହା ସତ୍ତ୍ୱେ ଆମ ଚତୁଃପାର୍ଶ୍ୱରେ ବହୁ କୁସଂସ୍କାର, ଅପବିଶ୍ୱାସ, ରୂଢ଼ିବାଦୀ ଧାରଣା ଓ ଅହେତୁକ ଭାବନାମାନ ସର୍ବଦା ରହିଆସିଛି । ଆମର ବିଚାରହୀନତା ଓ ଅହେତୁକ ଆଚରଣ ପାଇଁ ମଣିଷ ସମାଜରେ ବହୁ ଦୁଃଖଦୁର୍ଦ୍ଦଶାର ପରିବେଶ ଓ ସ୍ଥିତି ରହିଛି । ଯଦି ବିଚାରଶୀଳତା ଓ ବିବେକବୋଧ ପ୍ରତ୍ୟେକ ସ୍ତରରେ ପ୍ରକଟିତ ହୋଇପାରନ୍ତା, ସମ୍ଭବତଃ ବହୁ ମାନବୀୟ ସମସ୍ୟାର ସମାଧାନ ସହଜରେ ହୋଇପାରନ୍ତା । ସୀମିତ ସମ୍ବଳ, ସୀମିତ ଜ୍ଞାନ, ସୀମିତ ବିଚାରଶୀଳତା ସହିତ ସୀମିତ ସମ୍ବେଦନଶୀଳତା ମାନବୀୟ ସଙ୍କଟର ଅନ୍ୟ ଏକ ଦିଗନ୍ତ । ସଭ୍ୟତା ଯେତେ ଆଗକୁ ଗଲେ ବି ମଣିଷ ସମାଜରୁ ହିଂସା, କ୍ରୂରତା, ଅସହିଷ୍ଣୁତା ଓ ଅମାନବିକତାର ବିଲୟ ହୋଇପାରୁ ନାହିଁ । ସନ୍ତ୍ରାସବାଦ, ସାଂପ୍ରଦାୟିକତାବାଦ ଓ ଅନ୍ୟ ପ୍ରତି ବିଦ୍ୱେଷ ସମାଜରେ

ବିଭିନ୍ନ ଭାବରେ ବ୍ୟକ୍ତ ହେବାରେ ଲାଗିଛି । ଇତିହାସର ସବୁ କାଳଖଣ୍ଡରେ ଓ ସବୁ ସ୍ଥିତିରେ ଏହିସବୁ ସଙ୍କଟ ମାନବ ସମାଜରେ ରହିଆସିଛି ଯାହା ଅନେକାଂଶରେ ଆମ ଦୁଃଖ ଦୁର୍ଦ୍ଦଶାର କାରଣ ବୋଲି ଗ୍ରହଣ କରାଯାଇଛି ।

ଏହି ସବୁ ସଙ୍କଟ ବ୍ୟତୀତ ପ୍ରତ୍ୟେକ କାଳଖଣ୍ଡରେ ମଣିଷ ସମାଜ କେତେକ ନିର୍ଦ୍ଦିଷ୍ଟ ସଙ୍କଟର ବି ସମ୍ମୁଖୀନ ହେବା ଏକ ଆନୁଭବିକ ସତ୍ୟ । ସାଂପ୍ରତିକ ସମୟରେ ସେହିପରି କେତେକ ସଙ୍କଟ ହେଉଛି ଜନସଂଖ୍ୟାର ବିସ୍ଫୋରଣ, ଅନିୟନ୍ତ୍ରିତ ପ୍ରଯୁକ୍ତି ଓ ଅର୍ଥନୈତିକ ବୈଷମ୍ୟ । ଏତଦ୍‌ବ୍ୟତୀତ ପରିବେଶ ପ୍ରଦୂଷଣ ଓ ଭୂମଣ୍ଡଳୀୟ ଉତ୍ତପ୍ତୀକରଣ ଏକ ଜଟିଳ ସମସ୍ୟା ଭାବେ ବିଶ୍ୱ ସମ୍ମୁଖରେ ଦେଖାଦେଇଛି । ବୈଜ୍ଞାନିକ ଜ୍ଞାନର ଅପପ୍ରୟୋଗ କରାଯାଇ ଆଣବିକ ଅସ୍ତ୍ରନିର୍ମାଣ ଏକ ବିଚାରହୀନ କାର୍ଯ୍ୟ ବୋଲି କୁହାଯାଉଛି । ଏହିସବୁ ସ୍ଥିତିର ମୁକାବିଲା ପାଇଁ ମାନବବାଦର ପ୍ରସାରକୁ କେତେକ ଦାର୍ଶନିକ ଓ ଶାନ୍ତିପ୍ରିୟ ବୁଦ୍ଧିଜୀବୀ ବିଶ୍ୱ ସ୍ତରରେ ପ୍ରାଧାନ୍ୟ ଦେଉଛନ୍ତି । ଏହି ପୃଷ୍ଠଭୂମିରେ ଏକ ନୂତନ ଚିନ୍ତା "ଭୂମଣ୍ଡଳୀୟ ମାନବବାଦ"ର ପରିକଳ୍ପନା ନେଇ ଚର୍ଚ୍ଚା ହେଉଛି । ଆମ ସୌରମଣ୍ଡଳରେ କେବଳ ପୃଥିବୀ ରୂପକ ଗ୍ରହରେ ମାନବ-ସଭ୍ୟତାର ବିକାଶ ହୋଉଛି ଓ ଅନ୍ୟ କୌଣସି ଗ୍ରହମଣ୍ଡଳରେ ସଭ୍ୟତା ଥିବାର ସାମାନ୍ୟ ପ୍ରମାଣ ଆମ ପାଖରେ ନାହିଁ । ସୁତରାଂ ପୃଥିବୀପୃଷ୍ଠରେ ସବୁଦିନ ପାଇଁ ମାନବ ସଭ୍ୟତା କିପରି ତିଷ୍ଠି ରହିବ ଏହି ପ୍ରକାରର ଏକ ନୈତିକ ଉତ୍ତରଦାୟିତ୍ୱର ପ୍ରଶ୍ନ ଆସୁଛି । ଆଗକୁ ପୃଥିବୀପୃଷ୍ଠର ଉତ୍ତାପ ଯେପରି ଅଧିକ ବୃଦ୍ଧି ନହୁଏ ଓ ପୃଥିବୀର ପରିବେଶ ପ୍ରଦୂଷିତ ନହୁଏ ସେଥିପ୍ରତି ଆନ୍ତର୍ଜାତିକ ସ୍ତରରେ କିଛି ସଚେତନତା ପ୍ରକାଶ ପାଇବାରେ ଲାଗିଛି । ଯଦି ପୃଥିବୀର ବାୟୁମଣ୍ଡଳର ଉତ୍ତାପ ବୃଦ୍ଧି ପାଏ ତେବେ ତାହା ପୃଥିବୀର ପରିବେଶରେ ଭୟଙ୍କର ପରିଣାମ ସୃଷ୍ଟି କରିବ ଓ ଆମର ସ୍ଥିତି ହୁଏତ ବିପନ୍ନ ହେବ । ଏହି ପରିସ୍ଥିତିର ସମ୍ମୁଖୀନ ହେବା ପାଇଁ ବିଜ୍ଞାନ ଓ ପ୍ରଯୁକ୍ତିର ବିଚାରଶୀଳ ପ୍ରୟୋଗ କରିବା ଓ ଏହାର ଯେପରି ଅପପ୍ରୟୋଗ ନହୁଏ ସେଥିପ୍ରତି ଧ୍ୟାନ ଦେବା ଆଜିର ଏକ ବଡ ଆହ୍ୱାନ । ଆମର ପରିବେଶର ସୁରକ୍ଷା କରିବା ଓ ବିଜ୍ଞାନର ଅପପ୍ରୟୋଗକୁ ପରିହାର କରିବା ଆମର ଏକ ନୈତିକ ଦାୟିତ୍ୱ । ଆମେ ଆମର ଆଗାମୀ ବଂଶଧରମାନଙ୍କ ପାଇଁ ଏକ ସମସ୍ୟାବହୁଳ ଓ ପ୍ରଦୂଷିତ ଭୂମଣ୍ଡଳ ଛାଡିଯିବା ଏକ ମାନବିକତା-ବିରୋଧୀ କାର୍ଯ୍ୟ ହେବ ।

ସାଂପ୍ରତିକ ସ୍ଥିତିରେ ମଣିଷ ସମାଜ ଯେଉଁ ସମସ୍ୟା ଓ ସଙ୍କଟର ସମ୍ମୁଖୀନ ହେଉଛି ତାହା ଗୋଟିଏ ରାଷ୍ଟ୍ର ବା କେତୋଟି ରାଷ୍ଟ୍ରଦ୍ୱାରା ସମାଧାନ ହୋଇପାରିବ ନାହିଁ । ସମଗ୍ର ବିଶ୍ୱ ସ୍ତରରେ ଏଥିପାଇଁ ଗମ୍ଭୀର ସଂପୃକ୍ତି ପ୍ରକାଶ ନପାଇଲେ ମାନବଜାତିର ଭବିଷ୍ୟତ ଅନ୍ଧକାରମୟ ହେବ । ଏହି ଉପଲବ୍ଧିରୁ କେତେକ ମାନବହିତୈଷୀ ଦାର୍ଶନିକ ଓ ରାଷ୍ଟ୍ରନୀତିଜ୍ଞ ଆନ୍ତର୍ଜାତିକ ମନୋଭାବର ବିକାଶ କରାଇ ବିଶ୍ୱସରକାରର ପରିକଳ୍ପନା କରୁଛନ୍ତି । ପୃଥିବୀପୃଷ୍ଠରୁ ଯୁଦ୍ଧ, ଆଣବିକ ଅସ୍ତ୍ରନିର୍ମାଣ ଜନିତ ପ୍ରତିଯୋଗିତାର ବିଲୋପ ଓ ବିଶ୍ୱରୁ ଦାରିଦ୍ର୍ୟ ଦୂରୀକରଣ ପାଇଁ ମାନବବାଦ ଓ ଆନ୍ତର୍ଜାତିକ ଚେତନାର ବିକାଶ ଅବଶ୍ୟମ୍ଭାବୀ ମନେହୁଏ । ବିଜ୍ଞାନ ଏକ ସୁଖପ୍ରଦ ଜୀବନ ବଞ୍ଚିବା ପାଇଁ ଓ ଜୀବନର ଗୁଣାତ୍ମକ ମାନରେ ଉନ୍ନତିସାଧନ ପାଇଁ ଆମକୁ ବହୁ ସାଧନ ଯୋଗାଇ ପାରିଛି । ଜ୍ଞାନର ଉପଯୁକ୍ତ ବିନିଯୋଗ ସହ ସମ୍ବେଦନଶୀଳ ଜୀବନଦୃଷ୍ଟି ସାର୍ବଜନୀନ ଭିତ୍ତି ନେଇପାରିଲେ ପୃଥିବୀର ଦୃଶପଟରେ ସକାରାତ୍ମକ ପରିବର୍ତ୍ତନ ଆସିପାରିବ । ଏକ ଆଦିମ ସ୍ତରରୁ ଆରମ୍ଭ ହୋଇଥିବା ଯାତ୍ରା ଏକ ପ୍ରୀତିମୟ ଓ ଭ୍ରାତୃତ୍ୱପୂର୍ଣ୍ଣ ମାନବ ସମାଜର ବିକାଶରେ ସହାୟକ ହେବ । ମଣିଷ ପାଖରେ ଯେଉଁ ବୁଦ୍ଧି ଓ ବିଚାରଶୀଳତାର ବିକାଶ ହୋଇଛି ତାହା ସକଳ ସଙ୍କଟକୁ ପ୍ରତିହତ କରି ଏକ ଉତ୍ତମ, ନ୍ୟାୟପୂର୍ଣ୍ଣ ଓ ପ୍ରୀତିପୂର୍ଣ୍ଣ ମାନବସମାଜର ବିକାଶ ଦିଗରେ ସହାୟକ ହୋଇପାରିବ । ଜ୍ଞାନର ବିକାଶ ସହ ମାନବବାଦର ବିକାଶ ଏଥିପାଇଁ ଅବଶ୍ୟମ୍ଭାବୀ ମନେହୁଏ ।



# ମାନବିକତାର ସ୍ୱର

ସଂସାର ଯେପରି ବୈଚିତ୍ର୍ୟମୟ, ମାନବିକ ସ୍ୱଭାବ ମଧ୍ୟ ସେହିପରି କିଛିଟା ରହସ୍ୟମୟ । ସାଧାରଣ ଅନୁଭବରେ ଏହା ଦେଖାଯାଏ ଯେ ସମାଜରେ କିଛି ବ୍ୟକ୍ତି ବେଶ୍ ନୀତିମାନ, ଉଦାର ଓ ସମ୍ବେଦନଶୀଳ, ଅଥଚ ଅନ୍ୟ କେତେକ ବ୍ୟକ୍ତି କୁଟିଳ, ସ୍ୱାର୍ଥପର ଓ ସମ୍ବେଦନହୀନ । କେତେକ ବ୍ୟକ୍ତି ଦରଦୀ, ଅନ୍ୟର ଦୁଃଖ କଷ୍ଟରେ ବିଗଳିତ ହୋଇଥାନ୍ତି ଓ କେବେ କାହାର ଅନିଷ୍ଟ ସାଧନ କରନ୍ତି ନାହିଁ । ଅନ୍ୟପକ୍ଷରେ ସମାଜରେ ଏପରି କେତେକ ବ୍ୟକ୍ତି ରହିଛନ୍ତି ଯେଉଁମାନେ ନିଜର ସ୍ୱାର୍ଥ ସାଧନ ପାଇଁ ଯାହା କିଛି କରିପାରନ୍ତି ଓ ଅନ୍ୟକୁ କଷ୍ଟ ଦେଇ ସୁଖ ଅନୁଭବ କରନ୍ତି । ମାନବିକ ସ୍ୱଭାବରେ ଏହି ଯେଉଁ ଭିନ୍ନତା ପରିଲକ୍ଷିତ ହୁଏ ତାକୁ ବ୍ୟାଖ୍ୟା କରିବା ସହଜ ମନେହୁଏ ନାହିଁ । ସେହିପରି ସଭ୍ୟତାର ଆରମ୍ଭ ସମୟରୁ ସମାଜରେ କେତେ କେତେ ହିଂସା, ଯୁଦ୍ଧ, ନାନା ମନୁଷ୍ୟକୃତ କ୍ରୂରତା ଇତ୍ୟାଦି ମଧ୍ୟ ପରିଲକ୍ଷିତ ହୁଏ । ସଭ୍ୟତା ଯେତେବେଳେ ଆଦିମ ସ୍ତରରେ ରହିଥିଲା କିମ୍ବା ଆଜି ଯେତେବେଳେ ମାନବ ସଭ୍ୟତା ବିକାଶର ଶିଖରକୁ ଯାଇପାରିଛି ଏହି ଦୀର୍ଘ ବ୍ୟବଧାନ ଭିତରେ ମନୁଷ୍ୟ ସ୍ୱଭାବରେ ବିଶେଷ ପରିବର୍ତ୍ତନ ହେବା ଦେଖାଯାଏ ନାହିଁ । ପୁନଶ୍ଚ ସବୁ ସମୟରେ ମନୁଷ୍ୟ ସମାଜ କିଛି ନା କିଛି ସଂକଟର ସମ୍ମୁଖୀନ ହୋଇଆସିଛି । ତେବେ ଗୋଟିଏ ସମୟରେ ପ୍ରାକୃତିକ ବିପର୍ଯ୍ୟୟ ବା ରୋଗବାଧକ ପରିସ୍ଥିତିରେ ମଣିଷ ଅସହାୟ ହୋଇ ମୃତ୍ୟୁବରଣ କରୁଥିଲା । ପ୍ରାକୃତିକ ଦୁର୍ବିପାକ କିମ୍ବା କୌଣସି ମହାମାରୀ ଆସିଲେ ନିଜକୁ ରକ୍ଷାକରିବା ସମ୍ଭବ ନ ଥିଲା । କିନ୍ତୁ ସଭ୍ୟତାର ଅଗ୍ରଗତି ସହ ଜ୍ଞାନବିଜ୍ଞାନର ବିକାଶ ହେଲା ଓ ପ୍ରକୃତି ବା ରୋଗବାଧକ ସଂପର୍କୀୟ ଜ୍ଞାନ ମଣିଷକୁ ଶକ୍ତିଶାଳୀ କରିପାରିଲା । ଯେକୌଣସି ପ୍ରତିକୂଳ ପରିସ୍ଥିତିର ସମ୍ମୁଖୀନ ହେବାର ଅନେକ ଶକ୍ତି, ସାମର୍ଥ୍ୟ ଏବେ ମନୁଷ୍ୟ ହାସଲ କରିପାରିଲାଣି । ଏହାର ପରିଣାମରୁ ଜୀବନ ଅଧିକ ସୁଖମୟ ହେବାର ପରିବେଶ ଏବେ ରହିପାରିଛି । ଜ୍ଞାନବିଜ୍ଞାନର ବିକାଶ ହେବା, ନୂଆ ନୂଆ ପ୍ରଯୁକ୍ତିର ଉଦ୍‌ଭାବନ ହେବା, ସାମାଜିକ ଅନୁଷ୍ଠାନମାନ ଦୃଢ଼ ଭିତ୍ତି ନେବା, ଶିକ୍ଷାର ପ୍ରସାର ଘଟିବା ଇତ୍ୟାଦି କାରଣରୁ ସମାଜ ଏବେ ଅଧିକ ବ୍ୟବସ୍ଥିତ ହେବା ଏକ ସାଧାରଣ ଉପଲବ୍ଧି । ତେବେ ଏସବୁ ସତ୍ତ୍ୱେ ମାନବିକ ସ୍ୱଭାବ ଓ ଚରିତ୍ରରେ କେତେ

ପରିବର୍ତ୍ତନ ଘଟିଛି ? ଜ୍ଞାନବିଜ୍ଞାନର ବିକାଶ ମଣିଷକୁ ନୀତିମାନ ଓ ସମ୍ବେଦନଶୀଳ କରୁଛି ନା ଅନୈତିକ ଓ ସ୍ୱାର୍ଥପର କରୁଛି ? ଅତୀତରେ ମାନବ ସମାଜରେ ଯେଉଁପ୍ରକାରର ଈର୍ଷା, ସ୍ୱାର୍ଥପରତା, କ୍ରୂରତା ଇତ୍ୟାଦି ମନ୍ଦ ଗୁଣର ପ୍ରଭାବ ରହିଥିଲା ସଂପ୍ରତି ସଭ୍ୟତାର ଏତେ ବିକାଶ ସତ୍ତ୍ୱେ ମଧ୍ୟ ମାନବ ସ୍ୱଭାବରେ ସେହି ସେହି ମନ୍ଦ ଗୁଣର ପ୍ରାବଲ୍ୟ ରହିଛି । ମାନବ ସମାଜରେ ଯେତେ ଯେତେ ଦୁଃଖ, ଦୁର୍ଦ୍ଦଶା ରହିଛି ତାହା ପଶ୍ଚାତ୍‌ରେ ଯେତିକି ପ୍ରାକୃତିକ କାରଣ ରହିଛି ସମ୍ଭବତଃ ତା ଅପେକ୍ଷା ଅଧିକ ମାନବୀୟ କାରଣ ରହିଛି । ପ୍ରକୃତି ମଣିଷର ଦୁଃଖ ଦୁର୍ଦ୍ଦଶା ପାଇଁ ଯେତିକି ଦାୟୀ, ମାନବକୃତ ହିଂସା, ଯୁଦ୍ଧ, ଶୋଷଣ, ଅତ୍ୟାଚାର ଓ ଅନ୍ୟାୟ ମଧ୍ୟ ସେତିକି ଦାୟୀ । ଆମର ଜ୍ଞାନ, କୌଶଳଦ୍ୱାରା ପ୍ରାକୃତିକ ପ୍ରତିକୂଳ ସ୍ଥିତିକୁ ମୁକାବିଲା କରିବା କ୍ଷେତ୍ରରେ ଆମେ ଅନେକାଂଶରେ ସମର୍ଥ ହୋଇ ପାରିଲେଣି, ତେବେ ମାନବକୃତ ଅନ୍ୟାୟକୁ ନିୟନ୍ତ୍ରଣ କରିବାରେ ସଫଳତା ମିଳିପାରି ନାହିଁ । ବହୁ ଅତୀତରୁ ମାନବ-ଦରଦୀ ବ୍ୟକ୍ତିମାନେ ଏକ ଶାନ୍ତିପୂର୍ଣ୍ଣ ଓ ପ୍ରୀତିପୂର୍ଣ୍ଣ ବିଶ୍ୱର କେତେ କେତେ ପରିକଳ୍ପନା ପ୍ରକାଶ କରିଆସିଛନ୍ତି । ସବୁ ସଭ୍ୟତାରେ କିଛି ମାନବହିତୈଷୀ ବ୍ୟକ୍ତି ଏକ ପ୍ରୀତିଭରା ସୁନ୍ଦର ବିଶ୍ୱର ପରିକଳ୍ପନା କରିଛନ୍ତି । ସମାଜରୁ ସକଳ ଅନ୍ୟାୟ, ଶୋଷଣ ଓ ହିଂସା ଦୂରକରିବାକୁ ସେମାନେ କେତେ କେତେ ଆନ୍ତରିକତା ବ୍ୟକ୍ତ କରିଛନ୍ତି । ସେହି ସବୁ ଭାବନା ଦେଇ ସଭ୍ୟ ମୂଲ୍ୟବୋଧମାନ ସମାଜରେ ବିକାଶ ଲାଭ କରିବା ଦେଖାଯାଏ । ସେଥିରେ ମାନବିକତାର ଯେଉଁ ସ୍ୱର ନିହିତ ରହିଛି ତାହା ସଭ୍ୟ ଦୃଷ୍ଟିଭଙ୍ଗୀ ଓ ସମ୍ବେଦନଶୀଳ ଜୀବନବୋଧର ପ୍ରସାରରେ ପ୍ରେରଣା ଯୋଗାଇଛି । ସେହି ସ୍ୱର ଭିତରେ ଜୀବନର ନୈତିକ ଉତ୍ତରଣର କିଛି ବାର୍ତ୍ତା ନିହିତ ରହିଛି । ଏହି ସମ୍ବନ୍ଧରେ ସାମାନ୍ୟ ଆଲୋଚନା ଏହି ପ୍ରବନ୍ଧଟିର ଲକ୍ଷ୍ୟ । ତେବେ ସେହି ସ୍ୱରର ପରିଧି ଏତେ ବିସ୍ତୃତ ଯେ ତାହାର ଏକ ବିସ୍ତାରିତ ଚିତ୍ର ଦେବା ସମ୍ଭବ ନୁହେଁ । ଏଠାରେ କେବଳ କେତେକ ସାଧାରଣ ଦିଗନ୍ତର ସଂକ୍ଷିପ୍ତ ସୂଚନା ଦିଆଯାଇପାରେ ।

ସାଂପ୍ରତିକ ପରିଭାଷାରେ ହିନ୍ଦୁଧର୍ମ, ବୌଦ୍ଧଧର୍ମ, ଖ୍ରୀଷ୍ଟଧର୍ମ, ଇସ୍‌ଲାମଧର୍ମ ଇତ୍ୟାଦି କହିଲେ "ଧର୍ମ"ର ଯେଉଁ ଅର୍ଥ ପ୍ରକାଶ ପାଉଛି, ତାହା ଏକ ସାଂସ୍କୃତିକ ନବଜାଗରଣ ଭାବେ ବିଭିନ୍ନ ଭୌଗୋଳିକ ଭୂଖଣ୍ଡରେ ଉଦ୍‌ଭବ ହୋଇଥିଲା । ଜୀବନର ଏକ ସୁନିର୍ଦ୍ଦିଷ୍ଟ ଲକ୍ଷ୍ୟ ନିରୂପଣ କରିବା, ବହୁଦେବବାଦରୁ ଏକେଶ୍ୱରବାଦର ଭାବନା ଦେବା, କେତେକ ନୈତିକ ମୂଲ୍ୟଚୟକୁ ପ୍ରାଧାନ୍ୟ ଦେବା ଓ ଏକ ଜନଗଣଙ୍କ ମଧ୍ୟରେ ସାମାଜିକ ସଂହତି ସ୍ଥାପନ କରିବାରେ ଅଧିକାଂଶ ଧର୍ମର ଗୁରୁତ୍ୱପୂର୍ଣ୍ଣ ଅବଦାନ ରହିଥିଲା । ଆରମ୍ଭରେ ଧର୍ମ ଥିଲା ଏକ ସାଂସ୍କୃତିକ ପ୍ରବାହ ଯାହା ପରେ ଏକ ବୃହତ୍ତର ଜନଗୋଷ୍ଠୀକୁ ପ୍ରସାରିତ ହୋଇ ଏକ ଭୂଖଣ୍ଡର ଜନଗଣଙ୍କ ମଧ୍ୟରେ ସାମାଜିକ ଐକ୍ୟ ସ୍ଥାପନ କରିଥିଲା । ପ୍ରତ୍ୟେକ

ଧର୍ମକୁ ଆଧାରକରି ଯେଉଁ ବିପୁଳ ସାହିତ୍ୟ ସୃଷ୍ଟି ହେଲା ସେଥିରେ ମାନବବାଦୀ ଜୀବନବୋଧର କେତେକ ଝଲକ ରହିଥିବା ଦୃଷ୍ଟିଗୋଚର ହୁଏ । ଭାରତ ଭୂଖଣ୍ଡରେ ଲେଖା ଯାଇଥିବା ବିଭିନ୍ନ ଧର୍ମଗ୍ରନ୍ଥ, ପୌରାଣିକ କାହାଣୀରେ ଏହି ବାର୍ତ୍ତା ରହିଛି । ପଞ୍ଚତନ୍ତ୍ରରେ କୁହାଯାଇଛି "ବସୁଧୈବ କୁଟୁମ୍ବକମ୍" ଅର୍ଥାତ୍ ସମଗ୍ର ବିଶ୍ୱ ଏକ ପରିବାର । ଏକ ବୈଦିକ ଶାସ୍ତ୍ରରେ ଉଲ୍ଲେଖ ରହିଛି "ସମସ୍ତେ ସୁଖରେ ରୁହନ୍ତୁ, ସମସ୍ତେ ନୀରୋଗ ରୁହନ୍ତୁ, ସମସ୍ତଙ୍କର ମଂଗଳ ହେଉ ଓ କେହି ବି ଦୁଃଖରେ ନ ରହନ୍ତୁ" । ଖ୍ରୀଷ୍ଟଧର୍ମର ପବିତ୍ର ଗ୍ରନ୍ଥ ବାଇବେଲରେ ପ୍ରେମ ଓ ସେବା ପାଇଁ ଅନେକ ବାର୍ତ୍ତା ରହିଛି । ଇସ୍‌ଲାମ ଧର୍ମର ପବିତ୍ର ଗ୍ରନ୍ଥ କୋରାନରେ ମଧ୍ୟ ବିଶ୍ୱ ଭ୍ରାତୃତ୍ୱର ଭାବନା ବହୁ ସ୍ଥାନରେ ବ୍ୟକ୍ତ ହୋଇଛି । ବୌଦ୍ଧ ଧର୍ମର ଅଷ୍ଟାଙ୍ଗ ମାର୍ଗ, ଜୈନଧର୍ମର ସଦାଚାର ନିୟମ ଓ ଶିଖ ଧର୍ମର ପଞ୍ଚ ପ୍ରାର୍ଥନା କ୍ଷେତ୍ରରେ ମହତ୍ତର ଜୀବନବୋଧର ସୁନ୍ଦର ବାର୍ତ୍ତା ରହିଛି । ବ୍ୟକ୍ତି ଓ ଗୋଷ୍ଠୀ ଜୀବନକୁ ନୈତିକ ଓ ମାନବବାଦୀ ଆଦର୍ଶରେ ପ୍ରଭାବିତ କରିବା ପାଇଁ ପ୍ରାଚୀନ ଧର୍ମଗ୍ରନ୍ଥ, ସାହିତ୍ୟ ଓ କେତେକ କାହାଣୀରେ ସୁନ୍ଦର ପ୍ରେରଣାମାନ ରହିବା ଦେଖାଯାଏ ।

ପ୍ରତ୍ୟେକ ଧର୍ମର କେତେକ ନୈତିକ ଓ ସମ୍ବେଦନଶୀଳ ଆବେଦନ ସତ୍ତ୍ୱେ ପ୍ରତ୍ୟେକ ଧର୍ମ ଗୋଷ୍ଠୀରେ ରୂଢ଼ିବାଦ ଓ ସାଂପ୍ରଦାୟିକତାବାଦର ପ୍ରାବଲ୍ୟ ରହିଛି । ରୂଢ଼ିବାଦ ଜ୍ଞାନବିଜ୍ଞାନର ବିକାଶରେ ସର୍ବଦା ଅନ୍ତରାୟ ହୋଇଆସିଛି । ପ୍ରତ୍ୟେକ ଧର୍ମଗୋଷ୍ଠୀ ନିଜ ଧର୍ମଗ୍ରନ୍ଥର ବାଣୀକୁ ଶାଶ୍ୱତ ଓ ଚିରନ୍ତନ ବୋଲି ବିଶ୍ୱାସ କରିବାର ପରିଣାମରୁ ବିଜ୍ଞାନର ଆଦିପର୍ବରେ ଧର୍ମ ଓ ବୈଜ୍ଞାନିକ ସିଦ୍ଧାନ୍ତ ଭିତରେ ଦ୍ୱନ୍ଦ୍ୱ ସୃଷ୍ଟି ହୋଇଛି । ଏହି କାରଣରୁ କେତେ କେତେ ପ୍ରତିଭାବାନ ସତ୍ୟାନ୍ୱେଷୀ ବୈଜ୍ଞାନିକଙ୍କୁ କାଠଗଡ଼ାରେ ଛିଡ଼ା ହେବାକୁ ପଡ଼ିଛି ଓ ଏପରିକି ଶହୀଦ ହେବାକୁ ହୋଇଛି । ସେହିପରି ଧର୍ମକୁ ଆଧାରକରି ସାଂପ୍ରଦାୟିକତାର ବିକାଶ ହୋଇଛି । ଗୋଟିଏ ଧର୍ମଗୋଷ୍ଠୀ ଯେତେବେଳେ ଅନ୍ୟ ଧର୍ମଗୋଷ୍ଠୀ ପ୍ରତି ବିଦ୍ୱେଷ ଓ ଘୃଣାର ଭାବ ପୋଷଣ କରେ ସେତେବେଳେ ସାଂପ୍ରଦାୟିକ ମନୋଭାବର ଉଦ୍‌ଭବ ହୁଏ । ସାଂପ୍ରଦାୟିକତାବାଦୀମାନେ ଆପଣା ଆପଣାର ଈଶ୍ୱରମାନଙ୍କୁ ସଂକୀର୍ଣ୍ଣ କରିଦେଇ ସଂସାରରେ ନାନା ଅନ୍ୟାୟ ଓ ଅଧର୍ମର ଝଡ଼ ସୃଷ୍ଟି କରିଛନ୍ତି । ବିଶ୍ୱ ଇତିହାସରେ ଧର୍ମକୁ ଆଧାର କରି କେତେ କେତେ ଯୁଦ୍ଧ, ବିଭୀଷିକା ଓ ବର୍ବରତା ସୃଷ୍ଟି ହୋଇଛି । ସାଂପ୍ରଦାୟିକ ବିଦ୍ୱେଷରୁ ରାଷ୍ଟ୍ରର ବିଭାଜନ ଘଟିଛି, ସାମାଜିକ ଜୀବନରେ ଅସହିଷ୍ଣୁତାର ପରିବେଶ ଆସିଛି ଓ ସନ୍ତ୍ରାସବାଦ ମୁଣ୍ଡ ଟେକିଛି । ଏହା ସହିତ ଧର୍ମୀୟ ପୃଷ୍ଠପୋଷକତାରେ ରାଜତନ୍ତ୍ର ଓ ସାମନ୍ତବାଦ ଦୃଢ଼ ହୋଇଛି । ରାଜତନ୍ତ୍ର ଜନିତ ଏକଛତ୍ରବାଦ, ସାମନ୍ତବାଦ ଓ ସାଂପ୍ରଦାୟିକତାବାଦ ମାନବବାଦର ପରିପନ୍ଥୀ ହୋଇଛନ୍ତି ।

ପଞ୍ଚଦଶ ଶତାବ୍ଦୀରୁ ୟୁରୋପରେ ଯେଉଁ ନବଜାଗରଣ ଓ ଜ୍ଞାନଦୀପ୍ତିର ଆଲୋଡ଼ନ ଆସିଲା ତାହା ସଭ୍ୟତାର ଇତିହାସରେ ଏକ ଉଲ୍ଲେଖନୀୟ ଘଟଣା ଥିଲା । ଏହାର ପରିଣାମରୁ ଦୁଇଟି ବୌଦ୍ଧିକ ଧାରାର ଉଦ୍‌ଭବ ହେଲା ଯାହା ସଭ୍ୟତାର ବିକାଶ କ୍ଷେତ୍ରରେ ବେଶ୍ ଗୁରୁତ୍ୱପୂର୍ଣ୍ଣ ମନେହୁଏ । ପ୍ରଥମ ଧାରାଟି ହେଉଛି ଆଧୁନିକ ବିଜ୍ଞାନର ଆରମ୍ଭ ଓ ଦ୍ୱିତୀୟଟି ହେଉଛି ମାନବବାଦୀ ଚେତନାର କ୍ରମବିକାଶ । ମାନବବାଦୀ ଚେତନାର କ୍ରମବିକାଶ ରାଜନୈତିକ, ଅର୍ଥନୈତିକ ଓ ସାଂସ୍କୃତିକ ସ୍ତରକୁ ମଧ୍ୟ ପ୍ରସାରିତ ହୋଇଛି । ରାଜନୈତିକ ସ୍ତରରେ ଗଣତାନ୍ତ୍ରିକ ବିଚାରାଦର୍ଶ ଚିନ୍ତାରାଜ୍ୟରେ ଆଲୋଡ଼ନ ସୃଷ୍ଟିକରିଛି । ଗଣତନ୍ତ୍ର ଏକ ରାଜନୈତିକ ଆଦର୍ଶ ହେବା ସହ ଏକ ସାମାଜିକ ମୂଲ୍ୟବୋଧ ଭାବରେ ଜନଜୀବନରେ ଗୁଣାତ୍ମକ ପରିବର୍ତ୍ତନ ପାଇଁ ସାଧନ ହୋଇଛି । ଅର୍ଥନୈତିକ ସ୍ତରରେ ମାନବବାଦୀ ଦୃଷ୍ଟିଭଙ୍ଗୀ ଏକ ସମତାଭିତ୍ତିକ ସମାଜ ପାଇଁ ପ୍ରେରଣା ସୃଷ୍ଟିକରିଛି । ପୁଂଜିବାଦ, ସାମନ୍ତବାଦ ଓ ସାମ୍ରାଜ୍ୟବାଦ ବିରୁଦ୍ଧରେ ମାନବବାଦୀ ଦୃଷ୍ଟିଭଙ୍ଗୀ ଆଲୋଡ଼ନ ଆଣିବାରେ ସହାୟକ ହୋଇଛି । ଅନେକ ସାଂସ୍କୃତିକ ପରିବର୍ତ୍ତନ ଆଣିବାରେ ଓ ଜୀବନଧର୍ମୀ ମୂଲ୍ୟବୋଧର ବିକାଶରେ ମାନବବାଦ ବହୁ ପ୍ରେରଣା ଯୋଗାଇଛି । ସାହିତ୍ୟ କ୍ଷେତ୍ରରେ ମଧ୍ୟ ମାନବବାଦୀ ଜୀବନଦୃଷ୍ଟି ଅଧିକରୁ ଅଧିକ ପ୍ରତିଫଳିତ ହେବାକୁ ଲାଗିଲା । ଏକ ସମୟରେ ପ୍ରକୃତି, ଭକ୍ତି ଓ ଶୃଂଗାର ସାହିତ୍ୟ ସୃଜନର ମୁଖ୍ୟ ଆଧାର ଥିଲା । ତେବେ କାଳକ୍ରମେ ସାଧାରଣ ମଣିଷର ହସ, କାନ୍ଦ, ସୁଖ, ଦୁଃଖ, ସ୍ୱପ୍ନ ଓ ଜୀବନ ଯନ୍ତ୍ରଣା ସାହିତ୍ୟର ପ୍ରଧାନ ଆଧାର ହେଲା । ସାମାଜିକ ଜୀବନର ବାସ୍ତବତା ଓ ଅନ୍ୟାୟ ବିରୁଦ୍ଧରେ ମାନବିକତାର ସ୍ୱର ମଧ୍ୟ ଶାଣିତ ହେବାକୁ ଲାଗିଲା । ଏପରିକି ଏହାର ସ୍ୱର ଜୀବନର ଆଦର୍ଶ କ୍ଷେତ୍ରରେ ପଥ ପ୍ରଦର୍ଶକ ଓ ପ୍ରେରଣାଦାୟକ ହେଲା । ଏଠାରେ ଗୋଟିଏ-ଦୁଇଟି ଉଦାହରଣ ଦିଆଯାଇପାରେ । ନରସୀ ମେହେତାଙ୍କର ଏକ କବିତାର ଭାବାର୍ଥ ମହାତ୍ମା ଗାନ୍ଧୀଙ୍କର ଆଦର୍ଶ ହେବା ସୁବିଦିତ । ସେହି କବିତାର ଭାବାର୍ଥ ଥିଲା "ଯେ ଅପରର ପୀଡ଼ାକୁ ହୃଦୟଙ୍ଗମ କରିପାରେ ଓ ଅନ୍ୟର ଦୁଃଖର ପ୍ରତିକାର ପାଇଁ ସହାନୁଭୂତିର ହାତ ପ୍ରସାରିତ କରିଥାଏ ଓ ସେଥିପାଇଁ ମନରେ ସାମାନ୍ୟତମ ଅହଙ୍କାର ରଖେ ନାହିଁ ସେ ହିଁ ଜଣେ ମହତ୍ ଜନ ।" "ବୈଷ୍ଣବ ଜନୋ ତୋ ତେନେ କହିୟେ" - ନାମରେ ଏହି ଭଜନଟି ଗାନ୍ଧୀଙ୍କର ଅତି ପ୍ରିୟ ଥିଲା । ସେହିପରି ଭୀମ ଭୋଇଙ୍କର ହୃଦୟସ୍ପର୍ଶୀ ମାର୍ମିକ କବିତା "ପ୍ରାଣୀଙ୍କ ଆରତ ଦୁଃଖ ଅପ୍ରମିତ" ଓଡ଼ିଶାରେ ଅତ୍ୟନ୍ତ ଜନପ୍ରିୟ । କବିତାର ଭାବାର୍ଥ ଥିଲା - ମୁଁ ପଛେ ନରକକୁ ଯାଏ, କିନ୍ତୁ ମଣିଷ ସମାଜର ଦୁଃଖ ଦୂର ହେଉ- ଏହା ହିଁ ମୋର କାମନା" । କେବଳ କବିତା କ୍ଷେତ୍ରରେ ନୁହେଁ, ସାହିତ୍ୟର ଅନ୍ୟାନ୍ୟ ବିଭାଗ ଗଳ୍ପ, ଉପନ୍ୟାସ, ନାଟକ ଇତ୍ୟାଦି କ୍ଷେତ୍ରରେ ମାନବବାଦୀ ଚେତନାର ପ୍ରତିଫଳନ ବିଶ୍ୱ

ସାହିତ୍ୟରେ ପ୍ରତିଫଳିତ ହେବାକୁ ଲାଗିଲା । ଏପରିକି ସାହିତ୍ୟରେ ପ୍ରତିଫଳିତ ହୋଇଥିବା ମାନବବାଦୀ ସ୍ୱର ସମାଜରୁ ଅନ୍ୟାୟ ଓ ଭେଦଭାବ ଦୂର କରିବା ପାଇଁ କେତେକ ରାଷ୍ଟ୍ରରେ ସାମାଜିକ କ୍ରାନ୍ତି ପାଇଁ ପ୍ରେରଣା ଯୋଗାଇଥିଲା । ଯେଉଁ ସାହିତ୍ୟ ସୃଜନ ଭିତରେ ମାନବବାଦୀ ଆଦର୍ଶ ଓ ଉତ୍ତୁଙ୍ଗ ହୃଦୟବତ୍ତାର ପ୍ରତିଫଳନ ଯେତେ ଅଧିକ ହେଲା ତାହା କାଳଜୟୀ ହେଲା ।

ସଭ୍ୟତାର ବଡ଼ ବିଡ଼ମ୍ବନା ଯେ ମଣିଷ ସମାଜରେ ସବୁ ଶତାବ୍ଦୀରେ ଯୁଦ୍ଧ, ନାନା ମାନବକୃତ ବିଭୀଷିକା ଓ କ୍ରୂରତା ରହିଆସିଛି । ଆଧୁନିକ ବିଜ୍ଞାନ ଓ ପ୍ରଯୁକ୍ତି ମନୁଷ୍ୟକୁ ଅନେକ ଶକ୍ତିଶାଳୀ କରିପାରିଛି, ହେଲେ ମଣିଷର ହୃଦୟକୁ ମାନବିକତାର ସ୍ପନ୍ଦନରେ ସଂକ୍ରମିତ କରିପାରି ନାହିଁ । ତେବେ ବିଂଶଶତାବ୍ଦୀର ମଧ୍ୟଭାଗରେ ଦୁଇଟି ବିଶ୍ୱଯୁଦ୍ଧ ବିଶ୍ୱ ଇତିହାସରେ ଦୁଇଟି କଳଙ୍କିତ ଘଟଣା । ଯୁଦ୍ଧରେ ଲକ୍ଷ ଲକ୍ଷ ଲୋକ ମୃତ୍ୟୁବରଣ କରିବା, ଲକ୍ଷ ଲକ୍ଷ ଲୋକ ବିକଳାଙ୍ଗ ହୋଇଯିବା ଓ ଷାଠିଏ ଲକ୍ଷ ଜିଉଙ୍କୁ ଅମାନୁଷିକ ଭାବରେ ଗ୍ୟାସ ଚାମ୍ବର ଭିତରେ ମାରିବା ମାନବୀୟ ବର୍ବରତାର ଚିତ୍ର ଦେଇଥାଏ । ବିଜ୍ଞାନର ବିକାଶ ଓ ବିଶ୍ୱଯୁଦ୍ଧର ପ୍ରେକ୍ଷାପଟରେ ଏହି ଉପଲବ୍ଧି ହୋଇଥିଲା ଯେ ଯଦି କୌଣସି କାରଣରୁ ପୃଥିବୀରେ ତୃତୀୟ ବିଶ୍ୱଯୁଦ୍ଧ ହୁଏ, ତେବେ ଏହା ସଭ୍ୟତାର ମୃତ୍ୟୁଘଣ୍ଟି ବଜାଇବ । ବିଭିନ୍ନ ଦେଶର ରାଷ୍ଟ୍ରନୀତିଜ୍ଞ, ମାନବହିତୈଷୀ ଦାର୍ଶନିକ ଓ ବହୁ ବୈଜ୍ଞାନିକ ଯୁଦ୍ଧରହିତ ବିଶ୍ୱ ଓ ଯେକୌଣସି ସମସ୍ୟାର ଶାନ୍ତିପୂର୍ଣ୍ଣ ସମାଧାନ ପାଇଁ ଗମ୍ଭୀର ଉତ୍କଣ୍ଠା ବ୍ୟକ୍ତ କରିଥିଲେ । ବସ୍ତୁତଃ ଜାତିସଂଘର ପ୍ରତିଷ୍ଠା ମାନବ ସଭ୍ୟତାର ଇତିହାସରେ ଏକ ଉଲ୍ଲେଖନୀୟ ଘଟଣା ଥିଲା । ଆଣବିକ ନିରସ୍ତ୍ରୀକରଣ, ରାଷ୍ଟ୍ର-ରାଷ୍ଟ୍ର ମଧ୍ୟରେ ରହିଥିବା ବିବାଦର ଶାନ୍ତିପୂର୍ଣ୍ଣ ସମାଧାନ ଓ ନାନା ମାନବିକ ସମସ୍ୟାର ସମାଧାନ ପାଇଁ ପନ୍ଥା ନିର୍ଦ୍ଧାରଣ ଜାତିସଂଘର ମୁଖ୍ୟ ଆଭିମୁଖ୍ୟ ରହିଥିଲା । ତେବେ ମାନବିକ ଅଧିକାର ନେଇ ବିଶ୍ୱଘୋଷଣା ମାନବବାଦ ପ୍ରସାର କ୍ଷେତ୍ରରେ ଏକ ଉଲ୍ଲେଖନୀୟ ପଦକ୍ଷେପ ଥିଲା । ପୃଥିବୀର ବିଭିନ୍ନ ଦେଶରେ ଓ କେତେକ ସମାଜରେ ଯେଉଁ ଭେଦଭାବ ଓ ସାମାଜିକ ବୈଷମ୍ୟ ରହି ଆସିଥିଲା ତାହାର ଦୂରୀକରଣ ପାଇଁ ବିଶ୍ୱସ୍ତରରେ ସଚେତନତା ପ୍ରକାଶ ପାଇଲା । ମାନବିକ ଅଧିକାରର ବିଶ୍ୱଜନୀନ ଘୋଷଣାନାମାଟି ବ୍ୟକ୍ତି ସ୍ୱାଧୀନତା, ସମତା ଓ ମର୍ଯ୍ୟାଦା କ୍ଷେତ୍ରରେ ଏକ ସାର୍ବଜନୀନ ଚିତ୍ର ପ୍ରଦାନ କରିଥାଏ । ଏହି ଘୋଷଣାନାମାର ପ୍ରଥମ ଧାରାଟିରେ କୁହାଯାଇଛି "ସବୁ ଶିଶୁ ସମାନ ଅଧିକାର, ସ୍ୱାଧୀନତା ଓ ମର୍ଯ୍ୟାଦା ନେଇ ଜନ୍ମ ହୋଇଛନ୍ତି । ପ୍ରତ୍ୟେକ ମନୁଷ୍ୟ ଭିତରେ ବିବେକବୋଧ ଓ ଚିନ୍ତାକରିବାର ସାମାର୍ଥ୍ୟ ରହିଛି । ସୁତରାଂ ସମସ୍ତେ ଅନ୍ୟ ପ୍ରତି ଭ୍ରାତୃତ୍ୱର ମନୋଭାବ ପୋଷଣ କରିବା ଆବଶ୍ୟକ ।" ପ୍ରତ୍ୟେକ ବ୍ୟକ୍ତି ମର୍ଯ୍ୟାଦାର ସହ ବଂଚିବା, ନାଗରିକ ଅଧିକାର ଉପଭୋଗ କରିବା ଓ

କୌଣସି ଭେଦଭାବର ଶିକାର ନହେବା ତାର ଏକ ପ୍ରାକୃତିକ ଅଧିକାର । ପ୍ରତ୍ୟେକ ବ୍ୟକ୍ତି ଯେପରି ନିଜର ସାମର୍ଥ୍ୟ ବିକାଶ କରିବାକୁ ସୁଯୋଗ ପାଇବ, ଶିକ୍ଷାରୁ ବଂଚିତ ହେବ ନାହିଁ, ନାଗରିକ ଭାବରେ ନିଜ ଦେଶର ରାଜନୈତିକ, ଅର୍ଥନୈତିକ ଓ ସାଂସ୍କୃତିକ ଅଧିକାର ଉପଭୋଗ କରିବ ଓ ଆତ୍ମସମ୍ମାନର ସହ ବଂଚିବାର ପରିବେଶ ପାଇବ ଏହାକୁ ପ୍ରତ୍ୟେକ ରାଷ୍ଟ୍ର ପ୍ରାଧାନ୍ୟ ଦେବେ । ଯୁଗଯୁଗ ଧରି ସଭ୍ୟତାର ଇତିହାସରେ ରହି ଆସିଥିବା ଜାତିଭେଦ, ବର୍ଣ୍ଣଭେଦ, ଲିଙ୍ଗଭେଦ ଇତ୍ୟାଦି ବୈଷମ୍ୟକୁ ଦୂର କରିବା ପାଇଁ ଏଥିରେ ଯେଉଁ ମାନବିକ ଆବେଦନ ରହିଛି ତାହା ମାନବବାଦୀ ଜୀବନବୋଧର ଏକ ସୁନ୍ଦର ଚିତ୍ର ଦେଇଥାଏ । ଶିଶୁମାନଙ୍କ କ୍ଷେତ୍ରରେ ବାଳଶ୍ରମିକ ପ୍ରଥାର ଉଚ୍ଛେଦ, ଶିଶୁମାନଙ୍କର ଯତ୍ନ ଓ ସୁରକ୍ଷା, ଶାରୀରିକ ଦଣ୍ଡ ନିଷେଧ ଇତ୍ୟାଦିକୁ ଶିଶୁ ଅଧିକାର କ୍ଷେତ୍ରରେ ସ୍ଥାନିତ କରାଯାଇଛି । ବିଭିନ୍ନ ସାଂସ୍କୃତିକ କାରଣରୁ ମହିଳାମାନେ କେତେକ ସମାଜରେ ଯେପରି ପାରିବାରିକ ହିଂସା, ଯୌନ ନିର୍ଯ୍ୟାତନା ଓ ବିଭିନ୍ନ ଶୋଷଣର ଶିକାର ହେଉଛନ୍ତି ତାହାକୁ ଦୂର କରି ସେମାନଙ୍କୁ ସମ୍ମାନର ସହ ବଂଚିବାକୁ ମାନବିକ ଅଧିକାରର ଘୋଷଣା ନାମାରେ ଚିନ୍ତା ବ୍ୟକ୍ତ କରାଯାଇଛି । ମୋଟ ଉପରେ ମାନବିକ ମର୍ଯ୍ୟାଦା, ସ୍ୱାଧୀନତା, ସମତା, ଭ୍ରାତୃତ୍ୱଭାବ, ଆଇନର ଶାସନ ଓ ଗଣତାନ୍ତ୍ରିକ ଜୀବନଶୈଳୀକୁ ମାନବିକ ଅଧିକାରର ବିଶ୍ୱ ଘୋଷଣାନାମାରେ ପ୍ରାଧାନ୍ୟ ଦିଆଯାଇଛି । ଜାତି, ଧର୍ମ, ବର୍ଣ୍ଣ, ଲିଙ୍ଗ, ଭାଷା, ରାଷ୍ଟ୍ରୀୟତା, ସଂପ୍ରଦାୟ ଇତ୍ୟାଦି ନିର୍ବିଶେଷରେ ପ୍ରତ୍ୟେକ ବ୍ୟକ୍ତି ଯେପରି ଆତ୍ମସମ୍ମାନର ସହ ଜୀବନ ବଂଚିପାରିବ ଏହି ଭାବଧାରା ଏହି ଘୋଷଣାନାମାରେ ପ୍ରତିଫଳିତ ହୋଇଛି । ସମଗ୍ର ବିଶ୍ୱରେ ମାନବବାଦୀ ଚେତନାକୁ ଏକ ବାସ୍ତବ ରୂପରେଖ ଦେବାରେ ଏହି ଘୋଷଣାନାମାଟି ଯେ ଏକ ଯୁଗାନ୍ତକାରୀ ଦଲିଲ ଏହାକୁ ଅସ୍ୱୀକାର କରାଯାଇ ପାରିବ ନାହିଁ ।

ଗୋଟିଏ ସମୟରେ ନିଜର ଭାଷା, ଧର୍ମ, ଜାତୀୟତା ବା ଜାତିଗତ (racial) ଅସ୍ମିତାକୁ ନେଇ ସମାଜରେ ଏକ ଆବେଗିକ ବନ୍ଧନ ଦୃଢ଼ ରହିଥିଲା । ଏହା ହିଁ ଜୀବନବୋଧର ଆଦର୍ଶ ଥିଲା । ଏସବୁ ଭାବପ୍ରବଣତା ବ୍ୟକ୍ତି ଓ ଗୋଷ୍ଠୀ ଚେତନାକୁ ଗଭୀର ଭାବରେ କବଳିତ କରିରଖିଥିଲା । କିନ୍ତୁ ବିଶ୍ୱଦୃଷ୍ଟି ଓ ମାନବିକତାର ଆବେଦନ କାଳକ୍ରମେ ବିଶ୍ୱସ୍ତରରେ ଅଧିକ ଗୃହୀତ ହେବାର ପରିବେଶ ସୃଷ୍ଟି ହେବାରେ ଲାଗିଛି । ଏକ ଆନ୍ତର୍ଜାତିକ ଚେତନା ଓ ସାର୍ବଜନୀନ ଜୀବନଦୃଷ୍ଟି ମାନବିକ ମହାନୁଭବତାର ଯେଉଁ ଚିତ୍ର ଦେଉଛି ତାହା ପ୍ରତି ଅଧିକ ସ୍ୱୀକୃତି ପ୍ରକାଶ ପାଉଛି । ଉନବିଂଶ ଶତାବ୍ଦୀରୁ ବିଶ୍ୱରେ କେତେକ ଆନ୍ତର୍ଜାତିକ ସଂଗଠନମାନ ସୃଷ୍ଟି ହୋଇ ମାନବିକତାର ଆଦର୍ଶ ପ୍ରଚାର କରିଛନ୍ତି । ଖ୍ରୀଷ୍ଟିୟାନ ମିସନାରି ଓ କେତେକ ମାନବଦରଦୀ ବ୍ୟକ୍ତି ଦୁଃସ୍ଥ ମଣିଷର ସେବାରେ ନିଜ

ଜୀବନକୁ ଉତ୍ସର୍ଗ କରି ମାନବିକତାର ଆଦର୍ଶ ବାର୍ତ୍ତାବହ ହୋଇଛନ୍ତି । ରେଡକ୍ରସ୍ ପରି ଅନୁଷ୍ଠାନମାନ ଯୁଦ୍ଧ ସମୟରେ ଆହତ ସୈନିକମାନଙ୍କୁ ସେବା ଦେଇଛନ୍ତି ଓ ଅନ୍ୟ ସମୟରେ ସ୍ୱାସ୍ଥ୍ୟ ସେବା ଯୋଗାଇବା ଓ ବିପର୍ଯ୍ୟୟ ମୁକାବିଲା ପାଇଁ ସମଗ୍ର ପୃଥିବୀରେ ଆଦର୍ଶ ସୃଷ୍ଟି କରିଛନ୍ତି । ସବୁ ସଭ୍ୟତାରେ ମାନବଦରଦୀ ବ୍ୟକ୍ତିମାନେ ରହିଛନ୍ତି ଓ ସମଗ୍ର ପୃଥିବୀରୁ ଦୁଃଖ, ଦାରିଦ୍ର୍ୟ ଓ ବୈଷମ୍ୟ ଦୂରକରିବା ପାଇଁ ଉତ୍ସର୍ଗୀକୃତ ଭାବେ କାର୍ଯ୍ୟ କରୁଛନ୍ତି । କେଉଁଠି କିଛି ପ୍ରାକୃତିକ ବିପର୍ଯ୍ୟୟ ସୃଷ୍ଟି ହେଲେ ସମଗ୍ର ପୃଥିବୀରୁ ସହାନୁଭୂତିର ହାତ ପ୍ରସାରିତ ହୋଇପାରୁଛି । ଏପରିକି ବିଶ୍ୱ ରାଷ୍ଟ୍ରର ପରିକଳ୍ପନା ନେଇ ସଚେତନତା ସୃଷ୍ଟି ହେବାରେ ଲାଗିଛି । ଅନେକ ମାନବହିତୈଷୀ ବ୍ୟକ୍ତି, ବିଶ୍ୱ ନିରସ୍ତ୍ରୀକରଣର ବାର୍ତ୍ତା ପ୍ରଚାର କରୁଛନ୍ତି । ପ୍ରତ୍ୟେକ ରାଷ୍ଟ୍ର ପ୍ରତିରକ୍ଷା କ୍ଷେତ୍ରରେ ଯେଉଁ ଅର୍ଥ ବ୍ୟୟ କରୁଛି ତାହା ଯଦି ସମାଜ ମଂଗଳ ଲକ୍ଷ୍ୟରେ ବ୍ୟୟ ହେବ, ତେବେ ତୃତୀୟ ବିଶ୍ୱର ରାଷ୍ଟ୍ରମାନଙ୍କରୁ ସକଳ ଦାରିଦ୍ର୍ୟ ଦୂର ହୋଇପାରିବ । ଅନ୍ତତଃ, ବିଚାର ସ୍ତରରେ ଏହି ଯେଉଁ ସବୁ ପରିକଳ୍ପନା ପ୍ରକାଶ ପାଉଛି ତାହା ବାସ୍ତବରେ କାର୍ଯ୍ୟକାରୀ ହେଲେ ମାନବ ସମୁଦାୟର ଯେ ପୁନର୍ଜନ୍ମ ଘଟିବ ଏହା ଆଶା କରାଯାଉଛି । ଏସବୁ ଭାବନା ଭିତରେ ମାନବିକତାର ସ୍ୱର ଯେ ନିହିତ ରହିଛି ଏହା ନିଃସନ୍ଦେହ ମନେହୁଏ ।

ଅତୀତରେ ଫ୍ୟାସିଜିମ୍, ଧର୍ମୋନ୍ମାଦଜନିତ କ୍ରୂରତା (ଫାନାଟିସିଜମ୍), ସାମନ୍ତବାଦ (ଫିଉଡାଲିଜିମ୍) ଓ ମୌଳବାଦ (ଫଣ୍ଡାମେଣ୍ଟାଲିଜିମ୍) ଆମ ସଂସାରରେ ଅନେକ ଅମାନବିକତାର ଝଡ଼ ସୃଷ୍ଟିକରିଛି । ମଣିଷ ନିଜର ବୁଦ୍ଧି ଓ ବିବେକର ସହାୟତାରେ ଏସବୁ ଆହ୍ୱାନକୁ ଦୂର କରିପାରିଛି । କେତେ କେତେ ମାନବକୃତ ଶୋଷଣ ଓ ଅମାନବିକତା ଦ୍ୱାରା ଅନେକ ମଣିଷ ଶୋଷିତ, ନିର୍ଯ୍ୟାତିତ ଓ ଅତ୍ୟାଚାରିତ ହୋଇଛନ୍ତି । ପ୍ରାଜ୍ଞ ଦାର୍ଶନିକମାନେ ଜଣେ ମଣିଷ ଆଉ ଜଣେ ମଣିଷକୁ କେଉଁ ଦୃଷ୍ଟିରେ ଦେଖିବା ଉଚିତ ଏହି ପ୍ରଶ୍ନ ସର୍ବଦା ଉଠାଇଛନ୍ତି । ବିଜ୍ଞାନ ପ୍ରକୃତି ଉପରେ କ୍ରମବର୍ଦ୍ଧିଷ୍ଣୁଭାବେ ବିଜୟ ହାସଲ କରିବାକୁ ସମର୍ଥ ହେଉଛି । କିନ୍ତୁ ଜୀବନରେ ସଭ୍ୟ ଓ ମାନବିକ ମହତ୍ତ୍ୱଗୁଡ଼ିକ ବିକଶିତ ନ ହେଲେ ସକଳ ଭୌତିକ ବିକାଶ ସତ୍ତ୍ୱେ ଜୀବନର ଗୁଣାତ୍ମକ ମାନରେ ଯେ ଅଭିବୃଦ୍ଧି ଘଟିବ ନାହିଁ ଏହା ହିଁ ଏକ ସାଧାରଣ ଉପଲବ୍ଧି । ମାନବିକତା, ନୈତିକତା ଓ ସମ୍ବେଦନଶୀଳତା ସଭ୍ୟ ଜୀବନଧାରା ପାଇଁ ଅବଶ୍ୟମ୍ଭାବୀ ମନେହୁଏ । ଜୀବନଶ୍ରଦ୍ଧାର ଏହି ଉପଲବ୍ଧି ମନୁଷ୍ୟକୁ ମନୁଷ୍ୟୋଚିତ ମୂଲ୍ୟ ପ୍ରଦାନ କରିଥାଏ । ବିଚାରଶୀଳତା, ସମ୍ବେଦନଶୀଳତା ଓ ନୀତିବୋଧ ଜୀବନଶ୍ରଦ୍ଧାର ଆଦର୍ଶ ନ ହେଲେ ଜୀବନର ଗୁଣାତ୍ମକ ମାନରେ ଉତ୍କର୍ଷ ଆସିପାରେ ନାହିଁ । ମଣିଷ ହାତରେ ଅମାପ ଜ୍ଞାନ, ସାଧନ ଓ ପ୍ରଯୁକ୍ତି ଥାଇ ମଧ୍ୟ ଜୀବନ ଶ୍ରଦ୍ଧାର ଅଭାବରେ ସାମୂହିକ ଜୀବନ ବିପର୍ଯ୍ୟୟର ସମ୍ମୁଖୀନ

ହୋଇଥାଏ । ମାନବ ସଭ୍ୟତାର ଇତିହାସ ଅନେକ ବର୍ଣ୍ଣାଢ୍ୟଯୁକ୍ତ । ତେବେ ଅତୀତରେ ନାନା କାରଣରୁ ମଣିଷ ସମାଜ ଭାଗ ଭାଗ ହୋଇ ରହିଆସିଛି । ଆଧୁନିକ ବିଜ୍ଞାନ ଓ ପ୍ରଯୁକ୍ତି ପୃଥିବୀକୁ ଏକ ଏକକରେ ବା ବିଶ୍ୱଗ୍ରାମରେ ପରିଣତ କରିବାର ସମ୍ଭାବନା ସୃଷ୍ଟି କରିପାରିଛି । ପ୍ରଯୁକ୍ତି ବାହ୍ୟିକ ସ୍ତରରେ ଏକତ୍ୱ ସୃଷ୍ଟି କରିଛି, ମାନବିକତାବୋଧ ମନୁଷ୍ୟ ସମୁଦାୟ ଭିତରେ ହୃଦୟର ଏକତ୍ୱ ସୃଷ୍ଟି କରିପାରିବ । ମାନବ ସମୂହକୁ ଏକ ଅବିଭାଜିତ ଓ ଅବିଚ୍ଛେଦ୍ୟ ସମାଜ ରୂପେ ଗଠନ କରିବା କ୍ଷେତ୍ରରେ ମାନବବାଦ ହିଁ ପ୍ରେରଣାର ଉତ୍ସ ହୋଇ ପାରିବ । ଏହାଦ୍ୱାରା ସଭ୍ୟତାରୁ ସକଳ ଭେଦଭାବ, ଦୌରାତ୍ମ୍ୟ ଓ ସନ୍ତ୍ରାସବାଦର ବିଲୋପ ହେବା ସମ୍ଭବ ହେବ ।

ସାଂପ୍ରତିକ ସ୍ଥିତିରେ ମାନବ ସଭ୍ୟତା ଏପରି ଏକ ଆହ୍ୱାନର ସମ୍ମୁଖୀନ ହେବାକୁ ଯାଉଛି ଯାହାର ପରିଣାମ ଆମର ଭବିଷ୍ୟତ ବଂଶଧରମାନଙ୍କ ପ୍ରତି ମରଣାନ୍ତକ ପରିସ୍ଥିତି ସୃଷ୍ଟିକରିବ । ନାନା କାରଣରୁ ପୃଥିବୀର ପରିବେଶ ଏପରି ପ୍ରଦୂଷିତ ହୋଇଚାଲିଛି ଯାହା ଭବିଷ୍ୟତରେ ମନୁଷ୍ୟର ସ୍ଥିତି ପାଇଁ ଭୟାନକ ହେବ । ଜଳବାୟୁରେ ପରିବର୍ତ୍ତନ, ବିଶ୍ୱର ତାପମାତ୍ରା ବୃଦ୍ଧି ଓ ବାୟୁମଣ୍ଡଳ ଊର୍ଦ୍ଧ୍ୱରେ ଥିବା ଓଜନ ସ୍ତରରେ ଗର୍ତ୍ତ ପୃଥିବୀରେ ଜୀବ ଜଗତର ଅସ୍ତିତ୍ୱ ପାଇଁ ମହାବିପଦ ସୃଷ୍ଟି କରିବ । ଏଥିପାଇଁ ସମଗ୍ର ବିଶ୍ୱରେ ଆଶଙ୍କା ସୃଷ୍ଟି ହେବାରେ ଲାଗିଛି । ଏହି ପରିସ୍ଥିତିର ମୁକାବିଲା ରାଷ୍ଟ୍ରୀୟ ସ୍ତରରେ ହେବା ସମ୍ଭବ ନୁହେଁ, ବରଂ ଏଥିପାଇଁ ସମଗ୍ର ମାନବ ସମାଜ ସଚେତନ ହେବା ଆବଶ୍ୟକ । ସମଗ୍ର ମାନବ ସମାଜ ତରଫରୁ ଏହାର ପ୍ରତିକାର ପାଇଁ ସଚେତନତା ପ୍ରକାଶ ନପାଇଲେ ଜୀବଜଗତ ସମ୍ଭବତଃ ତିଷ୍ଠି ରହିପାରିବ ନାହିଁ । ଏହି ପୃଷ୍ଠଭୂମିରେ ବିଂଶଶତାବ୍ଦୀର ଶେଷ ଭାଗରୁ କେତେକ ମାନବହିତୈଷୀ ପରିବେଶ ବିଜ୍ଞାନୀ ଓ ଦାର୍ଶନିକ "ଗ୍ରହମଣ୍ଡଳୀୟ ମାନବବାଦ" (planetary humanism) ନାମରେ ଏକ ବିଚାରାଦର୍ଶ ବ୍ୟକ୍ତ କରିବାରେ ଲାଗିଛନ୍ତି । ଏହି ଭାବନାନୁଯାୟୀ ଆମ ସୌରମଣ୍ଡଳରେ ପୃଥିବୀ ରୂପକ ଗ୍ରହରେ ଜୀବନସତ୍ତାର ସ୍ଥିତି ରହିଛି ଓ ଏଠାରେ ମାନବ ସଭ୍ୟତା ଗଢ଼ି ଉଠିଛି । ସମ୍ଭବତଃ ଅନ୍ୟ କୌଣସି ଗ୍ରହରେ ଜୀବଜଗତ ବା ସଭ୍ୟତା ଥିବାର କିଛି ପ୍ରମାଣ ନାହିଁ । ଆମ ଗ୍ରହ ପୃଥିବୀପୃଷ୍ଠରେ ରହିଥିବା ପ୍ରାଣୀଜଗତ ଓ ମାନବ ସଭ୍ୟତାକୁ ଚିରଦିନ ପାଇଁ ସୁରକ୍ଷିତ ରଖିବା ଆମର ଏକ ନୈତିକ କର୍ତ୍ତବ୍ୟ । ଆମର ଆଗାମୀ ବଂଶଧରମାନେ ଯେପରି ଭବିଷ୍ୟତରେ ବଂଚିରହିବେ ଓ ଧ୍ୱଂସର ସମ୍ମୁଖୀନ ହେବେ ନାହିଁ ସେଥିପାଇଁ ଆମେ ଉତ୍ତରଦାୟୀ । ସୁତରାଂ ଆମର ପରିବେଶ କିପରି ଧ୍ୱଂସାଭିମୁଖୀ ନହୋଇ ନିଜର ସନ୍ତୁଳନ ରକ୍ଷା କରିପାରିବ ସେ କ୍ଷେତ୍ରରେ ଆମେ ପୃଥିବୀର ଜନଗଣ ସଚେତନ ହେବା ଆବଶ୍ୟକ । ପୃଥିବୀର ପରିବେଶ ଓ ଆଗାମୀ

ବଂଶଧରମାନଙ୍କ ପ୍ରତି ଆମର କର୍ତ୍ତବ୍ୟ ଓ ଉତ୍ତରଦାୟିତ୍ୱ-ବୋଧକୁ ସେମାନେ ଗ୍ରହମଣ୍ଡଳୀୟ ମାନବବାଦ କହୁଛନ୍ତି ।

ବିଶ୍ୱରେ ଶାନ୍ତିପୂର୍ଣ୍ଣ ସହାବସ୍ଥାନ ପାଇଁ ଏକ ବାୟୁମଣ୍ଡଳ ସୃଷ୍ଟି କରିବା ପାଇଁ ଜାତିସଂଘର ଉଦ୍ୟମ ସହ ଆମର ସ୍ୱର ସମ୍ମିଳିତ ହେବା ଆବଶ୍ୟକ । ସଂସ୍କୃତି-ସଂସ୍କୃତି, ରାଷ୍ଟ୍ର-ରାଷ୍ଟ୍ର ଓ ଧର୍ମ-ଧର୍ମ ଭିତରେ ଯାହା ବି କିଛି ମତଭେଦ ରହିଛି କିମ୍ବା ସମାଜରେ ଯେଉଁ ସବୁ ଭେଦଭାବ ରହିଆସିଛି ତାହାର ଦୂରୀକରଣ ସାଂପ୍ରତିକ ପରିସ୍ଥିତିରେ ଆମର ବଡ଼ କର୍ତ୍ତବ୍ୟ । ନିରନ୍ତର ବିକାଶ, ସାମାଜିକ ସମତା ଓ ଶାନ୍ତିପୂର୍ଣ୍ଣ ସହାବସ୍ଥାନ ପାଇଁ ମାନବବାଦୀ ଜୀବନବୋଧର ପ୍ରସାର ଅବଶ୍ୟମ୍ଭାବୀ ମନେହୁଏ । ଏକ ପ୍ରୀତିପୂର୍ଣ୍ଣ ବିଶ୍ୱ ଓ ଭେଦଭାବରହିତ ମାନବ ସମାଜକୁ ଲକ୍ଷ୍ୟ ଭାବରେ ନେଇ ସେଥିପାଇଁ ବ୍ୟକ୍ତି, ରାଷ୍ଟ୍ର ଓ ଅନ୍ତଃରାଷ୍ଟ୍ରୀୟ ସ୍ତରରେ ପ୍ରୟାସ ଦରକାର । ଯେଉଁ ପର୍ଯ୍ୟନ୍ତ ରାଷ୍ଟ୍ରୀୟତାର ଆବେଗ ରହିଛି ସେ କ୍ଷେତ୍ରରେ ଏକ ଅନ୍ତଃରାଷ୍ଟ୍ରୀୟ ଓ ବିଶ୍ୱୈକଭାବ ଚେତନାର ବିକାଶକୁ ପ୍ରାଧାନ୍ୟ ଦିଆଯିବା ଏକ ବଡ଼ ଆବଶ୍ୟକତା ମନେହୁଏ । ସଂପ୍ରତି ଜଗତୀକରଣ ବିଷୟରେ ଅନେକ କଥା କୁହାଯାଉଛି । ତେବେ ଜଗତୀକରଣ ଅନ୍ତଃରାଷ୍ଟ୍ରୀୟ ବାଣିଜ୍ୟ ଭିତରେ ସୀମାବଦ୍ଧ ହେଉଥିବା ମନେହୁଏ । ବରଂ ଏହାକୁ ଏକ ସାର୍ବଜନୀନ ଆଦର୍ଶ ଓ ମାନବହିତୈଷୀ ବିଶ୍ୱୈକଭାବରେ ରୂପାନ୍ତରିତ କରିବା ଆବଶ୍ୟକ । ସାର୍ବଜନୀନତା ଓ ବିଶ୍ୱୈକଦୃଷ୍ଟି ମାନବବାଦୀ ଜୀବନବୋଧର ଅନ୍ତଃସ୍ୱର ମନେହୁଏ ।

ଉପସଂହାରରେ ସଭ୍ୟତା ଆରମ୍ଭରୁ ଆଜି ପର୍ଯ୍ୟନ୍ତ କିଛି ମହତ୍ତ୍ୱାକାଂକ୍ଷୀ ବ୍ୟକ୍ତି ମାନବବାଦର ବାର୍ତ୍ତା ଦେଇଆସିଛନ୍ତି । କେତେ କେତେ ଯୁଦ୍ଧ, ବିଭୀଷିକା, ଅନ୍ୟାୟ, ଭେଦଭାବ ଓ ଅମାନବିକତା ଭିତରେ ମାନବିକତାର ସ୍ୱର ଗୁଂଜରିତ ହୋଇଆସିଛି । ବହୁ ଅତୀତରେ ଜଣେ ପ୍ରାଚୀନ ଗ୍ରୀକ୍ ଦାର୍ଶନିକ ମତ ଦେଇଥିଲେ ଯେ "ମଣିଷ ହେଉଛି ସବୁର ମାନଦଣ୍ଡ" । ପ୍ରୋଟାଗୋରାସଙ୍କର ଏହି ଉକ୍ତିର ସାଂପ୍ରତିକ ତାତ୍ପର୍ଯ୍ୟ ହେଉଛି ଯେ ମନୁଷ୍ୟ ହିଁ ତାର ପ୍ରୟାସ ଓ ସମ୍ବେଦନ ଆଧାରରେ ଦେଶ ଦୁନିଆକୁ ସୁନ୍ଦର ଓ ମହତ୍ତର କରିପାରିବ । ମାନବିକ ଶ୍ରେୟ ଓ ସୌହାର୍ଦ୍ଦ୍ୟ କେବଳ ମାନବିକ ଉଦ୍ୟମରେ ସଫଳ ହୋଇପାରିବ । ଯେଉଁମାନେ ନିଜର ସୃଜନ, ସ୍ୱପ୍ନ ଓ ସଂକଳ୍ପଦ୍ୱାରା ମାନବିକତାର ଆଦର୍ଶ ସୃଷ୍ଟି କରିଛନ୍ତି ସେମାନେ ସଭ୍ୟତାର ଆଲୋକ ବର୍ତ୍ତିକା । ମାନବିକତାର ସ୍ୱର ଆମ ଜୀବନଧାରାରେ, ସମ୍ବନ୍ଧ କ୍ଷେତ୍ରରେ, କର୍ମ ଓ ସ୍ୱପ୍ନରେ ଯେତେ ଅଧିକ ଗୁଂଜରିତ ହେବ ଜୀବନର ନୈତିକ ଉତ୍ତରଣ ସେତେ ଅଧିକ ହେବ । ମାନବ ସମୁଦାୟର ଚେତନାମଣ୍ଡଳରେ ଏହା ସବୁଦିନ ପାଇଁ ପ୍ରେରଣାଦାୟୀ ଆଦର୍ଶ ହୋଇ ରହିବ ।



# ବିନୋଦ କାନୁନଗୋ : ଏକ ଅମ୍ଳାନ ପ୍ରତିଭା

ସ୍ୱାଧୀନତା ସଂଗ୍ରାମୀ ଓ ଜ୍ଞାନମଣ୍ଡଳ ପ୍ରଣେତା ପଦ୍ମଶ୍ରୀ ବିନୋଦ କାନୁନଗୋ (୧୯୧୨-୧୯୯୦) ଏକ ବହୁମୁଖୀ ପ୍ରତିଭା । ତାଙ୍କ ବ୍ୟକ୍ତିତ୍ୱର ବହୁ ଦିଗନ୍ତ ରହିଛି । ଓଡ଼ିଶାର ସାଧାରଣ ଜୀବନରେ ସେ ବହୁ ସ୍ୱାକ୍ଷର ରଖି ଯାଇଛନ୍ତି । ସେ ଯେପରି ଥିଲେ ସ୍ୱାଧୀନତା ସଂଗ୍ରାମୀ, ରଚନାତ୍ମକ କର୍ମୀ ସେହିପରି ଥିଲେ ସମାଜ ସଂସ୍କାରକ ଓ ମାନବବାଦୀ ଆଦର୍ଶର ପ୍ରବକ୍ତା । ସ୍ୱାଧୀନ ଭାରତର ପ୍ରଥମ ନିର୍ବାଚନରେ ସେ ବି ଏକ ରାଜନୈତିକ ଦଳ ତରଫରୁ ପ୍ରତିଦ୍ୱନ୍ଦିତା କରି ହାରି ଯାଇଥିଲେ । ହୁଏତ ନିର୍ବାଚନରେ ଜିତିଥିଲେ ତାଙ୍କ ଜୀବନର ଗତିପଥ ଭିନ୍ନ ହୋଇଥାନ୍ତା । ନିର୍ବାଚନରେ ହାରିବା ଦ୍ୱାରା ଓ ଅନ୍ୟାନ୍ୟ କାରଣରୁ ସେ ସକ୍ରିୟ ରାଜନୀତିରେ ଆଗ୍ରହୀ ହେଲେ ନାହିଁ । ତେବେ ତାଙ୍କ ବ୍ୟକ୍ତିତ୍ୱର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଦିଗ ହେଉଛି ତାଙ୍କର ସ୍ରଷ୍ଟା-ଜୀବନ । ଜଣେ ସୃଜନଶୀଳ ଲେଖକ, ପ୍ରାବନ୍ଧିକ ଓ ଜ୍ଞାନମଣ୍ଡଳର ପ୍ରଣେତା ଭାବେ ତାଙ୍କ ସ୍ରଷ୍ଟା ଜୀବନର ପରିଧି ଯେତିକି ବ୍ୟାପକ ସେତିକି ଗମ୍ଭୀର । ତାଙ୍କ ବ୍ୟକ୍ତିତ୍ୱର ପ୍ରତ୍ୟେକଟି ଦିଗନ୍ତ ଉପରେ ବିସ୍ତୃତ ଆଲୋଚନା କରାଯାଇପାରେ । ତେବେ ଶଂସିତ ପ୍ରବନ୍ଧଟିରେ ତାଙ୍କ ବ୍ୟକ୍ତିତ୍ୱର ଦୁଇଟି ଦିଗ ଉପରେ ସାମାନ୍ୟ ଆଲୋଚନା ଆମର ଲକ୍ଷ୍ୟ । ପ୍ରଥମ ଦିଗଟି ହେଉଛି ତାଙ୍କ ମାନବବାଦୀ ଦୃଷ୍ଟିଭଙ୍ଗୀ ବା ତାଙ୍କ ଭିତରେ ଥିବା ସଂସ୍କାରିତ ଚେତନା । ଦ୍ୱିତୀୟ ଦିଗଟି ହେଉଛି ତାଙ୍କର ସ୍ରଷ୍ଟା ଜୀବନ ବା ଜ୍ଞାନମଣ୍ଡଳ ରଚନା ପାଇଁ ତାଙ୍କର ସାଧନା । ଏହି ପ୍ରତ୍ୟେକ ଦିଗଟିର ବିସ୍ତୃତି ବ୍ୟାପକ ଓ ସେ ବିଷୟରେ ଏକ ପୂର୍ଣ୍ଣାଙ୍ଗ ଚିତ୍ର ଏଠାରେ ପ୍ରଦାନ କରିବା ସମ୍ଭବ ନୁହେଁ । ତେବେ ତାଙ୍କ ଜୀବନର ଘଟଣାବଳୀରୁ କେତୋଟି ଦୃଷ୍ଟାନ୍ତ ନେଇ ତାଙ୍କ ମାନବବାଦୀ ଜୀବନଦୃଷ୍ଟି ଓ ଜ୍ଞାନ ସାଧନା ପ୍ରତି ତାଙ୍କର ଉତ୍ସର୍ଗୀକୃତ ଜୀବନ ବିଷୟରେ କିଂଚିତ ସୂଚନା ଦେବାକୁ ଏଠାରେ ଲକ୍ଷ୍ୟ ରଖାଯାଇଛି ।

ସେତେବେଳର ସାମାଜିକ ଦୃଶ୍ୟପଟରେ ଜାତୀୟ କଂଗ୍ରେସ ଓ ତାହାର ସର୍ବମାନ୍ୟ ନେତା ମହାତ୍ମା ଗାନ୍ଧୀଙ୍କ ଦୃଷ୍ଟିରେ ଦୁଇଟି ବଡ଼ ଆହ୍ୱାନ ଥିଲା । ନାନା ଜାତୀୟ ସମସ୍ୟା ଭିତରୁ ଦୁଇଟି ସମସ୍ୟା ଉପରେ ଗାନ୍ଧୀ ଓ କଂଗ୍ରେସ ଅଧିକ ପ୍ରାଧାନ୍ୟ ଦେଉଥିବା ମନେହୁଏ ।

ପ୍ରଥମଟି ହେଉଛି ଦେଶର ରାଜନୈତିକ ପରାଧୀନତା ଓ ଦ୍ୱିତୀୟଟି ହେଉଛି ଭାରତୀୟ ସମାଜର ଅସ୍ପୃଶ୍ୟତା । ଦେଶରେ ଦାରିଦ୍ର୍ୟ, ନିରକ୍ଷରତା, ସାମନ୍ତବାଦୀ ଶୋଷଣ ଇତ୍ୟାଦି ସମସ୍ୟାର ନିରାକରଣ ପାଇଁ ରାଜନୈତିକ ସ୍ୱାଧୀନତାକୁ ପ୍ରାଧାନ୍ୟ ଦିଆଯାଉଥିଲା । ସେତେବେଳେର ସ୍ୱପ୍ନ ଥିଲା ଯେ ଦେଶର ସ୍ୱାଧୀନତା ମିଳିଲେ ଦେଶରୁ ଦାରିଦ୍ର୍ୟ, ନିରକ୍ଷରତା ଇତ୍ୟାଦି ଅଚିରେ ଦୂର ହୋଇପାରିବ । ସୁତରାଂ ଭାରତରୁ ବ୍ରିଟିଶ ସାମ୍ରାଜ୍ୟବାଦକୁ ହଟାଇବା ପାଇଁ ଗାନ୍ଧୀ ଯେଉଁ ଆହ୍ୱାନ ଓ କାର୍ଯ୍ୟକ୍ରମର ସୂତ୍ରପାତ କରିଥିଲେ ସେଥିରେ ପ୍ରଭାବିତ ହୋଇ ହଜାର ହଜାର ଯୁବକ, କିଶୋର ବ୍ୟକ୍ତିଗତ ଜୀବନର ଆଶା, ସ୍ୱପ୍ନକୁ ଏଡ଼ାଇ ଯାଇ ସ୍ୱାଧୀନତା ଆନ୍ଦୋଳନରେ ଝାସ ଦେଇଥିଲେ । ୧୯୩୦ ମସିହା ଥିଲା ଲବଣ ସତ୍ୟାଗ୍ରହର ବର୍ଷ । ଗାନ୍ଧୀଙ୍କ ଲବଣ ସତ୍ୟାଗ୍ରହ ସାରା ଦେଶରେ ଅପୂର୍ବ ଜାଗରଣ ସୃଷ୍ଟି କରିଥିଲା । ୧୯୩୦ ମସିହାରେ କଟକ କଲେଜିଏଟ୍ ସ୍କୁଲରେ ଦଶମ ଶ୍ରେଣୀରେ ପଢୁଥିବା ବିନୋଦ କାନୁନଗୋ ନିଜର ସୁନିଶ୍ଚିତ ଭବିଷ୍ୟତକୁ ଜଳାଞ୍ଜଳି ଦେଇ ସ୍ୱାଧୀନତା ଆନ୍ଦୋଳନରେ ସାମିଲ ହୋଇଥିଲେ । ଏହିଠାରୁ ତାଙ୍କ ଜୀବନର ଗତିଧାରା ଏକ ଭିନ୍ନ ଦିଗ ନେଇଥିଲା । ଭାରତୀୟ ସମାଜର ଆଉ ଏକ ବଡ଼ ଦୁର୍ଗତି ବା କଳଙ୍କ ଥିଲା ହିନ୍ଦୁ ସମାଜର ଭେଦଭାବମୂଳକ ଜାତିପ୍ରଥା ଓ ତା ସହିତ ସମ୍ପୃକ୍ତ ଅସ୍ପୃଶ୍ୟତା । ତେବେ ଏହି ସମସ୍ୟାର ଜଟିଳତା ଓ ଗଭୀରତା ବହୁପରେ କଂଗ୍ରେସ ଓ ଗାନ୍ଧୀଙ୍କର ଦୃଷ୍ଟି ଆକର୍ଷଣ କରିଥିଲା । ଲବଣ ସତ୍ୟାଗ୍ରହ ଶେଷ ପର୍ଯ୍ୟନ୍ତ ଅସ୍ପୃଶ୍ୟତା ଜନିତ ସମସ୍ୟାଟିକୁ ଗାନ୍ଧୀ ଗମ୍ଭୀରତାର ସହ ବିଚାର କରି ନଥିଲେ । ଏଠାରେ ଦୁଇଟି ଐତିହାସିକ ଘଟଣାର ଅବତାରଣା କରାଯାଇପାରେ, ଯାହା କଂଗ୍ରେସ ଓ ଗାନ୍ଧୀଙ୍କର ବିଚାରରେ ଆଲୋଡନ ଆଣିଥିଲା ।

କେରଳ ପ୍ରଦେଶରେ ଭାଇକମ ଥିଲା ଏକ ରାଜ୍ୟ, ଯେଉଁଠି ଜଣେ ରାଜା ଶାସନ କରୁଥିଲେ । ସେତେବେଳର ସାମାଜିକ ପରମ୍ପରାରେ ଦଳିତମାନେ କେବଳ ଯେ ଅସ୍ପୃଶ୍ୟ ଥିଲେ ତାହା ନୁହେଁ, ସେମାନେ କେତେକ ଜାଗାରେ ସର୍ବସାଧାରଣ ରାସ୍ତାରେ ବି ଚାଲିବାର ସୁଯୋଗ ପାଉ ନଥିଲେ । ଭାଇକମ୍ ଟାଉନର ସର୍ବ ସାଧାରଣ ମନ୍ଦିର ଥିବା ରାସ୍ତାରେ ଦଳିତମାନେ ଚାଲିବାର ଅଧିକାର ପାଇଁ ସ୍ଥାନୀୟ ଶିକ୍ଷିତ ଓ ପ୍ରଗତିଶୀଳ ଲୋକମାନେ ଆନ୍ଦୋଳନ ଆରମ୍ଭ କରିଥିଲେ । ଏହାଥିଲା ୧୯୨୪ ମସିହାର ଘଟଣା । ସେମାନେ ଗିରଫ ହୋଇଯିବା ପରେ ତାମିଲନାଡୁର ବିଶିଷ୍ଟ ସଂସ୍କାରକ ଓ ଆତ୍ମ-ମର୍ଯ୍ୟାଦା ଆନ୍ଦୋଳନର ପ୍ରବକ୍ତା ଇ.ଭି.ରାମସ୍ୱାମୀ ପେରିୟାର ଆନ୍ଦୋଳନର ନେତୃତ୍ୱ ନେଲେ । ଶହ ଶହ ଲୋକ ମାସ ମାସ ଧରି ଖରା, ବର୍ଷାକୁ ଭୃକ୍ଷେପ ନ କରି ଏହି ସର୍ବନିମ୍ନ ମାନବିକ ଅଧିକାର ପାଇଁ ସତ୍ୟାଗ୍ରହ ଆରମ୍ଭ କଲେ । ପ୍ରତିଦିନ ସଭା, ଶୋଭାଯାତ୍ରା,

ଧାରଣା ଜନିତ ଆନ୍ଦୋଳନ କିଛି ମାସ ଧରି ଚାଲିବା ପରେ କେତେକ ବ୍ୟକ୍ତି ଏଥିରେ ମହାତ୍ମାଗାନ୍ଧୀଙ୍କର ସହଯୋଗ ବି ଚାହିଁଲେ । ତେବେ ପେରିୟାରଙ୍କର ବଳିଷ୍ଠ ନେତୃତ୍ୱ, ରାଜାଙ୍କର ମୃତ୍ୟୁ ଓ ଅନ୍ୟାନ୍ୟ ଘଟଣାର ସମ୍ମିଳିତ ପ୍ରବାହରୁ ଏହି ଆନ୍ଦୋଳନ ସଫଳ ହେଲା ଓ ଦଳିତମାନେ ମନ୍ଦିର ଥିବା ରାସ୍ତାରେ ଚାଲିବାର ସୁଯୋଗ ପାଇଲେ । ତେବେ ଆନ୍ଦୋଳନକାରୀମାନଙ୍କୁ ଏଥିପାଇଁ ବହୁ କଷ୍ଟ ଓ ତ୍ୟାଗ ସ୍ୱୀକାର କରିବାକୁ ପଡ଼ିଥିଲା ।

ଦ୍ୱିତୀୟ ଘଟଣାଟି ହେଉଛି ମହାରାଷ୍ଟ୍ରର କୋଲାବ ଜିଲ୍ଲାର ମାହାଡଠାରେ ଅନୁଷ୍ଠିତ ପ୍ରଥମ ଦଳିତ ସମ୍ମିଳନୀ । ଭାରତୀୟ ସମାଜ ସଂସ୍କାର ଇତିହାସରେ ୧୯,୨୦ ମାର୍ଚ୍ଚ ୧୯୨୭ରେ ଅନୁସୂଚିତ ଜାତି ବା ଦଳିତ ସମାଜର ପ୍ରଥମ ସମ୍ମିଳନୀ ଏକ ଉଲ୍ଲେଖନୀୟ ଘଟଣା । ବାବା ସାହେବ ଆମ୍ବେଦକରଙ୍କ ନେତୃତ୍ୱରେ ମହାରାଷ୍ଟ୍ରର ଦଶହଜାର ଦରିଦ୍ର, ଅର୍ଦ୍ଧଭୁକ୍ତ ଦଳିତ ଲୋକମାନଙ୍କର ଏକ ଦୁଇ ଦିନିଆଁ ସମ୍ମିଳନୀ ବହୁ କଷ୍ଟରେ ଆୟୋଜିତ ହୋଇଥିଲା । ଯୁଗ ଯୁଗ ଧରି ମାନବିକ ଅଧିକାରରୁ ବଂଚିତ ହୋଇ ଦୟନୀୟ ସ୍ଥିତିରେ ଓ ଉପମାନବୀୟ ସ୍ତରରେ ଜୀବନ ବଂଚୁଥିବା ଜନଗଣଙ୍କୁ ଆମ୍ବେଦକର ଶିକ୍ଷା ଲାଭ ପାଇଁ, ନିଜର ମାନବିକ ଅଧିକାର ପାଇଁ ସଂଗଠିତ ହୋଇ ଆନ୍ଦୋଳନ କରିବାକୁ ଆହ୍ୱାନ ଦେଇଥିଲେ । ସଭାରେ ନିଷ୍ପତ୍ତି ହେଲା ଯେ ସମ୍ମିଳନୀ ଶେଷ ଦିନରେ ସେମାନେ ହିନ୍ଦୁ ଜାତିପ୍ରଥା ଓ ଅସ୍ପୃଶ୍ୟତାକୁ ଲୋପ କରିବାକୁ ସ୍ଥାନୀୟ ଏକ ସର୍ବସାଧାରଣ ପୁଷ୍କରିଣୀକୁ ଯାଇ ସେଠାରୁ ଜଳପାନ କରିବେ । ଫଳରେ ସେମାନେ ଶାନ୍ତିପୂର୍ଣ୍ଣଭାବେ ଶୋଭାଯାତ୍ରାରେ ଚୌଦ୍ୱାର ଜଳାଶୟକୁ ଆସି ସେଠାରେ ହାତର ଆଞ୍ଜୁଳାରେ ପାଣି ପିଇଥିଲେ । ଏହାପରେ ସେମାନେ ସମ୍ମିଳନୀ ସ୍ଥଳକୁ ଫେରି ଖାଦ୍ୟ ଖାଇ ନିଜ ଗ୍ରାମକୁ ଫେରିବାକୁ ପ୍ରସ୍ତୁତ ହେଉଥିବା ବେଳେ ହଠାତ୍ ଶହ ଶହ ଲୋକ ଠେଙ୍ଗା ବାଡ଼ି ଧରି ସେମାନଙ୍କୁ ଆକ୍ରମଣ କଲେ । କିଛି ଲୋକ ପ୍ରଚାର କରିଦେଲେ ଯେ ଦଳିତମାନେ ଜଳାଶୟରୁ ପାଣି ପିଇ ମନ୍ଦିର ଭିତରେ ପ୍ରବେଶ କରି ହିନ୍ଦୁଧର୍ମକୁ ନଷ୍ଟ କରିଦେବେ । ଏଥିରେ ତଥାକଥିତ ଉଚ୍ଚଜାତିର ଲୋକମାନେ ଉତ୍କ୍ଷିପ୍ତ ହୋଇ ଠେଙ୍ଗା ବାଡ଼ି ଧରି ଦଳିତ ମାନଙ୍କର ସମ୍ମିଳନୀକୁ ଆକ୍ରମଣ କଲେ । ଘଟଣାଟି କଣ ଦଳିତମାନେ ଜାଣିବା ପୂର୍ବରୁ ଆକ୍ରମଣକାରୀମାନେ ସେମାନଙ୍କ ସମ୍ମିଳନୀ ପେଣ୍ଡାଲକୁ ଭାଙ୍ଗିଦେଲେ, ସେମାନଙ୍କ ପାଇଁ ରନ୍ଧା ଯାଇଥିବା ଖାଦ୍ୟକୁ ନଷ୍ଟ କରିଦେଲେ ଓ ସମ୍ମିଳନୀକୁ ଆସିଥିବା ଅନେକ ଲୋକଙ୍କୁ ମାଡ଼ ମାରି କ୍ଷତ ବିକ୍ଷତ କରିଦେଲେ । ପୁଲିସ ଘଟଣାସ୍ଥଳକୁ ଆସିବା ପୂର୍ବରୁ ଏସବୁ ଘଟି ଯାଇଥିଲା । ତେବେ ଘଟଣା ଏହିଠାରେ ସରିଲା ନାହିଁ । ଉଚ୍ଚ ଜାତିର ଲୋକମାନେ ସଂଗଠିତ ହୋଇ ଚୌଦ୍ୱାର ପୁଷ୍କରିଣୀ ଦଳିତଙ୍କ ଯୋଗୁଁ ଅପବିତ୍ର ହୋଇଥିବା ଯୋଗୁଁ ତାକୁ ପବିତ୍ରୀକରଣ କରିବାକୁ

ଚାହିଁଲେ । ଫଳରେ ଶହେଟି କଳସୀରେ ଗୋମୂତ୍ର, ଗୋବର, ଗଙ୍ଗାଜଳ, କ୍ଷୀର, ଦହିର ମିଶ୍ରଣ ନେଇ ଏକ ଉତ୍ସବ କରି ମନ୍ତ୍ରପାଠ ଦ୍ୱାରା ଜଳାଶୟକୁ ପବିତ୍ର କରାଗଲା । ଦଳିତମାନଙ୍କୁ ଧମକ ଦିଆଗଲା ଯେ ଯଦି ସେମାନେ ଭବିଷ୍ୟତରେ କେବେ ଏପରି କରିବାକୁ ସାହସ କରିବେ, ତେବେ ଭୟଙ୍କର ପରିଣତିର ସମ୍ମୁଖୀନ ହେବେ । କେଉଁଠି ଯଦି ଦଳିତମାନେ ବିକ୍ଷୋଭ ବା ପ୍ରତିବାଦ କରିବେ, ତେବେ ତାଙ୍କୁ ଉପଯୁକ୍ତ ଶିକ୍ଷା ଦେବାକୁ ଗାଁକୁ ଗାଁକୁ ସମ୍ବାଦ ପଠାଗଲା । ଏହି ଘଟଣାକୁ ନେଇ ସେତେବେଳର ଦଳିତ ନେତାମାନେ ଓ ସମ୍ବାଦପତ୍ରମାନେ ମତ ଦେଇଥିଲେ ଯେ ଯେଉଁ ଦେଶର ଲୋକମାନେ ନିଜ ଦେଶର ଲୋକଙ୍କୁ ସର୍ବନିମ୍ନ ମାନବିକ ଅଧିକାରରୁ ବଂଚିତ କରୁଛନ୍ତି ସେମାନେ ସ୍ୱାଧୀନତା ଲାଭ କରିବାକୁ କେତେ ଦୂର ଯୋଗ୍ୟ ?

୧୯୨୪ରେ ଭାଇକମ ଆନ୍ଦୋଳନ ଓ ୧୯୨୭ର ଦଳିତ ସମ୍ମିଳନୀର ଘଟଣା ପରେ ଭାରତୀୟ ହିନ୍ଦୁ ସମାଜର ଜାତିଆଣ ମନୋଭାବ ଯେ ଏକ ଗମ୍ଭୀର ସମସ୍ୟା ଏହା ଗାନ୍ଧୀ ଓ କଂଗ୍ରେସର ଦୃଷ୍ଟି ଆକର୍ଷଣ କରିଥିଲା । ଏହି ସାମାଜିକ ପ୍ରଥାର ଗୁରୁତ୍ୱ ଓ ଗମ୍ଭୀରତାକୁ ଅନୁଭବ କରି ବର୍ଣ୍ଣବ୍ୟବସ୍ଥାକୁ ସମର୍ଥନ କରି ଆସିଥିବା ଗାନ୍ଧୀ ୧୯୩୩ରେ ଏହି ସମସ୍ୟା ପ୍ରତି ନିଜର ସମ୍ପୃକ୍ତି ପ୍ରକାଶ କଲେ । ପରିଣାମତଃ ସେ ହରିଜନ ସେବକ ସଂଘ ଗଠନ କରି ଅମୃତଲାଲ ଭି. ଠକ୍‌କରକୁ ଏହାର ଦାୟିତ୍ୱ ଦେଲେ । ଅସ୍ପୃଶ୍ୟତା ଦୂର କରିବାକୁ ସାମାଜିକ ଚେତନା ସୃଷ୍ଟି କରିବା ପାଇଁ ଗାନ୍ଧୀ କେତେକ ରାଜ୍ୟରେ ପଦଯାତ୍ରା କଲେ । ଏହି କାର୍ଯ୍ୟକ୍ରମରେ ୧୯୩୪ ମେ ମାସରେ ଗାନ୍ଧୀ ପୁରୀଠାରୁ ଭଦ୍ରକ ପର୍ଯ୍ୟନ୍ତ ଯେଉଁ ପଦଯାତ୍ରା କରିଥିଲେ ତାହାକୁ 'ଓଡ଼ିଶାରେ ଗାନ୍ଧୀଙ୍କ ହରିଜନ ପଦଯାତ୍ରା' କୁହାଯାଏ । ଅସ୍ପୃଶ୍ୟତା ଦୂରୀକରଣ ପାଇଁ ପଦଯାତ୍ରା ସମୟରେ ଗାନ୍ଧୀଙ୍କ ସ୍ତରର ବ୍ୟକ୍ତିଙ୍କୁ ବି ରକ୍ଷଣଶୀଳ ଲୋକମାନେ କେତେକ ସ୍ଥାନରେ କଳାପତାକା ଦେଖାଇଛନ୍ତି । କଟକ କାଠଯୋଡ଼ି ନଦୀକୂଳରେ ଗାନ୍ଧୀଙ୍କ ସଭାରେ ନିଜକୁ ସନାତନୀ ହିନ୍ଦୁ କହୁଥିବା ଶ୍ରୀ ଲାଲନାଥ ଓ ତାଙ୍କ ସହଯୋଗୀମାନେ କଳାପତାକା ଦେଖାଇବା ବିନୋଦ କାନୁନଗୋ ବି ତାଙ୍କ ଆତ୍ମଜୀବନୀରେ ଉଲ୍ଲେଖ କରିଛନ୍ତି । (ଋଣ ପରିଶୋଧ, ପୃଷ୍ଠା ୧୪) । ଲାଲନାଥ ଓ ତାଙ୍କ ଗୋଷ୍ଠୀର ଦାବିଥିଲା ଯେ ଅସ୍ପୃଶ୍ୟତା ହିନ୍ଦୁ ଧର୍ମସମ୍ମତ ଓ ଅସ୍ପୃଶ୍ୟତା ଦୂରହେବା ଏକ ଧର୍ମବିରୋଧୀ କାର୍ଯ୍ୟ ।

ବିନୋଦ କାନୁନଗୋଙ୍କ ବିଷୟରେ ଲେଖିବାକୁ ଯାଇ ଭାରତୀୟ ସମାଜର ଏକ ଅମାନବିକ ବ୍ୟବସ୍ଥାର ସୂଚନା ଦେବା ହୁଏତ ପାଠକମାନଙ୍କୁ କିଛିଟା ଅସଙ୍ଗତ ମନେ ହୋଇପାରେ । ଏହା ଉଲ୍ଲେଖ କରିବାର ଉଦ୍ଦେଶ୍ୟ ହେଉଛି ଏହି ସାମାଜିକ ପ୍ରଥା

ବିରୁଦ୍ଧରେ କାନୁନଗୋ କିପରି ପ୍ରୟାସ କରିଛନ୍ତି ଓ ମାନବିକ ମର୍ଯ୍ୟାଦା ପ୍ରତି ତାଙ୍କର ପ୍ରତିବଦ୍ଧତା ବ୍ୟକ୍ତି କରି ଆସିଛନ୍ତି । ସେହି ପୃଷ୍ଠଭୂମିଟିକୁ ଦର୍ଶାଇବାକୁ ଯାଇ ଏହା ଏଠାରେ ଉଲ୍ଲେଖ କରିଛି । ଭାରତୀୟ ଜନଜୀବନରେ ଜାତିପ୍ରଥା, ସାମାଜିକ ଭେଦଭାବ, ଅସ୍ପୃଶ୍ୟତା ଓ ସାମନ୍ତବାଦୀ ମାନସିକତା କେତେ ଉତ୍କଟ ହୋଇ ରହିଥିଲା ତାହା ଯେକୌଣସି ରାଜ୍ୟର ସାମାଜିକ ଇତିହାସକୁ ଅଧ୍ୟୟନ କଲେ ଜଣାଯାଏ । ବିଂଶ ଶତାବ୍ଦୀର ତିରିଶ / ଚାଳିଶ ଦଶକରେ ଓଡ଼ିଶାରେ ଅସ୍ପୃଶ୍ୟତା ବି ବେଶ୍ ଉତ୍କଟ ରହିଥିଲା । ଓଡ଼ିଶାର ଜନଜୀବନରେ ଅସ୍ପୃଶ୍ୟତା ଓ ଜାତିମାନସିକତା କିପରି ଥିଲା ତାହାର ଦୁଇଟି ଦୃଷ୍ଟାନ୍ତ ମଧ୍ୟ ଏଠାରେ ସଂକ୍ଷେପରେ ଉଲ୍ଲେଖ କରୁଛି । ଓଡ଼ିଶା ହାଇକୋର୍ଟର ବରିଷ୍ଠ ଆଇନଜୀବୀ ୰ଗଙ୍ଗାଧର ରଥ ତାଙ୍କ ଆତ୍ମଜୀବନୀ "ଭୁଲି ନାହିଁ"ରେ ତାଙ୍କ ଛାତ୍ର ଜୀବନର ଏକ ଘଟଣା ଉଲ୍ଲେଖ କରିଛନ୍ତି । ଜଗତସିଂହପୁର ଠାରେ ସେ ସ୍କୁଲ ଛାତ୍ର ଥିବା ବେଳେ କେତେକ ଗାନ୍ଧୀବାଦୀ ସ୍ୱାଧୀନତା ସଂଗ୍ରାମୀ ଦଳିତ ପିଲାମାନଙ୍କୁ ଆଣି ସ୍କୁଲରେ ନାମ ଲେଖାଇ ପଢ଼ାଇବାକୁ ଉଦ୍ୟମ କଲେ । ଏହାକୁ ସ୍ଥାନୀୟ ଲୋକମାନେ ଆଦୌ ଗ୍ରହଣ କରିପାରିଲେ ନାହିଁ । ଯେତେବେଳେ ଉଚ୍ଚ ଜାତିର ଲୋକମାନେ ଦଳିତ ପିଲାମାନେ ସ୍କୁଲରେ ପଢ଼ିବା ନେଇ ଭୟଙ୍କର ବିରୋଧ କଲେ, ସ୍କୁଲ ବାହାରେ ଦଳିତମାନଙ୍କ ପାଇଁ ଗୋଟିଏ ସ୍ୱତନ୍ତ୍ର ଚାଳଘର ତିଆରି କରି ସେମାନଙ୍କୁ ପଢ଼ାଇବାକୁ ଉଦ୍ୟମ ହେଲା । ଦଳିତ ପିଲା ସ୍କୁଲକୁ ଆସିଲେ ଓ ସ୍ୱାଧୀନତା ସଂଗ୍ରାମୀ ସେମାନଙ୍କୁ ନିୟମିତ ପଢ଼ାଇଲେ । ମାତ୍ର ଖୁବ୍ ଅଳ୍ପଦିନ ଭିତରେ ଉଚ୍ଚଜାତିର ଲୋକମାନେ ସ୍କୁଲଟିକୁ ପୋଡ଼ିଦେଇ ପୂରା ନଷ୍ଟ କରିଦେଲେ । ଓଡ଼ିଶାରେ ଏକ ସଚେତନ ଅଞ୍ଚଳ ଜଗତସିଂହପୁରରେ ଏହି ଘଟଣା ସ୍ୱାଧୀନତା ପୂର୍ବରୁ ଚାଳିଶ ଦଶକରେ ଘଟିଥିଲା ।

ବିଶିଷ୍ଟ ଗାନ୍ଧୀବାଦୀ ଭୂଦାନକର୍ମୀ ଶ୍ରୀ ନିଶାକର ଦାସ ତାଙ୍କ ଆତ୍ମଜୀବନୀ "ଖରସୁଆଁରୁ କୁଳାବିରା"ରେ ଯାଜପୁର ଜିଲ୍ଲାର ତାଙ୍କ ଗ୍ରାମର ଏକ ଘଟଣା ଉଲ୍ଲେଖ କରିଛନ୍ତି । ତାଙ୍କ ଗ୍ରାମ ପାଖର ଜନୈକ ବ୍ୟକ୍ତି କଲିକତାର ଝୋଟକଳରେ ଶ୍ରମିକ ଭାବେ କାମ କରୁଥାନ୍ତି । ତାଙ୍କ ପୁଅ ମାଟ୍ରିକ ପରୀକ୍ଷା ଦେଇ ତାଙ୍କର ଜଣେ ବନ୍ଧୁ ଘରକୁ ଆସୁଥାନ୍ତି । ସେ ଖଣ୍ଡିଏ ପରିଷ୍କାର ଧୋତି ପିନ୍ଧି, ଚଦର ପକାଇ ଛତାଟିଏ ଧରି ଗାଁ ଦାଣ୍ଡରେ ଗଲାବେଳେ ଗାଁର ଜମିଦାରଙ୍କ ଦୃଷ୍ଟି ଆକର୍ଷଣ କଲେ । ଜଣେ ଅପରିଚିତ ଯୁବକକୁ ଗାଁ ଦାଣ୍ଡରେ ଦେଖି ଜମିଦାର ସେ କିଏ ବୋଲି ଜାଣିବାକୁ ଚାହିଁଲେ । ଜମିଦାରଙ୍କ ଲୋକମାନେ ଖବର ଦେଲେ ଯେ ସେ ନିକଟ ଗ୍ରାମର କଣ୍ଡରା ସାହିର ପିଲା । ଏହା ଜାଣିଲା ପରେ ଜମିଦାରଙ୍କ ରାଗର ସୀମା ରହିଲା ନାହିଁ । ଜଣେ କଣ୍ଡରା ଦଳିତ ଜାତିର ପିଲା ଜମିଦାରଙ୍କ ଦାଣ୍ଡରେ

ପରିଷ୍କାର ଲୁଗା ପିନ୍ଧି ଛତା ଧରି ଯିବା ଜମିଦାରଙ୍କ ପ୍ରତି ଘୋର ଅପମାନ ବୋଲି ସେ ମନେକଲେ । ସେହି ଯୁବକର ଔଦ୍ଧତ୍ୟ ପାଇଁ ତାଙ୍କୁ ଡାକିଆଣି ଜମିଦାର ବାଡ଼େଇଲେ, ତାଙ୍କର ଲୁଗା ଚିରିଦେଲେ, ଛତା ଭାଙ୍ଗିଦେଲେ ଓ ଏକ ଛିଣ୍ଡା ମଇଳା ଲୁଗା ପିନ୍ଧି ଯିବାକୁ ବାଧ କଲେ । ନିରୀହ ଯୁବକଟି ମାଡ଼ ଓ ଅପମାନ ନେଇ ସେଠାରୁ ଗଲେ । ଜମିଦାର ମାନଙ୍କର ଅନ୍ୟାୟ ଓ ଅତ୍ୟାଚାର ବିରୁଦ୍ଧରେ ପ୍ରତିବାଦ କରିବାର ସାମାନ୍ୟ ସାହସ ସେ ଯୁଗରେ ନ ଥିଲା । ଗଙ୍ଗାଧର ରଥ ଓ ନିଶାକର ଦାସ ସେମାନଙ୍କ ଆତ୍ମଜୀବନୀରେ ଯେଉଁ ଘଟଣା ଲେଖିଛନ୍ତି ତାହା କୌଣସି ବ୍ୟତିକ୍ରମ ଜନିତ ଏକକ ଘଟଣା ନୁହେଁ । ମୋଟା ମୋଟି ଭାବେ ଦଳିତମାନଙ୍କ ପ୍ରତି ସାମାଜିକ ଦୃଷ୍ଟିଭଙ୍ଗୀ ଏହିପରି ଅମାନବିକ ରହିଥିବାର ପରିବେଶ ସାରା ଦେଶରେ ରହିଥିଲା ।

ଘଟଣାକ୍ରମେ ଜାତୀୟ ସ୍ତରରେ ବିଂଶ ଶତାବ୍ଦୀର ଚାଳିଶ ଦଶକରେ ହରିଜନ ସେବକ ସଂଘର ପ୍ରତିଷ୍ଠା ପରେ ଓଡ଼ିଶାରେ ତାହାର ଦାୟିତ୍ୱ ଆଚାର୍ଯ୍ୟ ହରିହରଙ୍କୁ ଦିଆଗଲା । ଆଚାର୍ଯ୍ୟ ହରିହର ହରିଜନ ସେବକସଂଘରେ ପୂରା ସମୟ କାମ କରିବା ପାଇଁ ଯେଉଁ ଦୁଇଜଣ କର୍ମୀଙ୍କୁ ବାଛିଥିଲେ ସେମାନେ ଥିଲେ ବିନୋଦ କାନୁନଗୋ ଓ ବାଞ୍ଛାନିଧି ପଟ୍ଟନାୟକ । ହରିଜନ ସେବକ ସଂଘର କର୍ମୀଭାବେ ବିନୋଦ ସଂପୃକ୍ତ ହେବା ପୂର୍ବରୁ ସେ ଦଳିତ ଲୋକଙ୍କର ସମସ୍ୟା, ଦାରିଦ୍ର୍ୟ, ସେମାନଙ୍କ ପ୍ରତି ହୋଇ ଆସୁଥିବା ଅମାନବିକ ବ୍ୟବହାର ବିଷୟରେ ବେଶ୍ ସଚେତନ ଥିଲେ । ଗାନ୍ଧୀଙ୍କ ହରିଜନ ପଦଯାତ୍ରା ସମୟରେ ସେ ଗାନ୍ଧୀଙ୍କ ସହ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ରହିଥିଲେ । ଗାନ୍ଧୀଙ୍କର ପ୍ରତ୍ୟେକ ଦିନର ଭାଷଣ, କର୍ମୀମାନଙ୍କ ସହ ଆଲୋଚନା, ବିଭିନ୍ନ ପ୍ରଶ୍ନର ଉତ୍ତରକୁ ସେ ଲିପିବଦ୍ଧ କରି ତାହାର ବିବରଣୀ ସମାଜକୁ ପଠାଉଥିଲେ । ସମାଜ ତରଫରୁ ତାଙ୍କୁ ଯେହେତୁ ଏହି ଦାୟିତ୍ୱ ଦିଆଯାଇଥିଲା ସେ ଯେଉଁ ବିବରଣୀ ପଠାଉଥିଲେ ତାହା ସମାଜରେ ପ୍ରକାଶ ପାଉଥିଲା ଓ ପରେ "ବାପୁଜୀଙ୍କ ଉତ୍କଳରେ ପଦଯାତ୍ରା" ନାମରେ ପ୍ରକାଶିତ ହୋଇଥିଲା ।

ବିନୋଦଙ୍କ ଭିତରେ ଏକ ସମ୍ବେଦନଶୀଳ ହୃଦୟ ରହିଥିଲା । ଅସ୍ପୃଶ୍ୟତା ଓ ଭେଦଭାବ ମୂଳକ ମାନସିକତାର ସେ ଘୋର ବିରୋଧୀ ଥିଲେ । ପ୍ରତ୍ୟେକ ବ୍ୟକ୍ତିର ଆତ୍ମ ସମ୍ମାନ ଓ ମାନବିକ ମର୍ଯ୍ୟାଦାକୁ ସେ ସର୍ବଦା ଗୁରୁତ୍ୱ ଦେଇ ଆସିଥିଲେ । ସେ ତାଙ୍କର ଅଭିନବ ଆତ୍ମଜୀବନୀ ମୂଳକ ପୁସ୍ତକ "ଋଣ ପରିଶୋଧ"ରେ ତିନିଜଣ ଦଳିତ ମହିଳାଙ୍କ ପ୍ରତି ତାଙ୍କ ଅନ୍ତରର ଯେଉଁ କୃତଜ୍ଞତା ପ୍ରକାଶ କରିଛନ୍ତି ତାହା ତାଙ୍କ ସଂସ୍କାରବାଦୀ ଓ ମାନବବାଦୀ ଦୃଷ୍ଟିଭଙ୍ଗୀର ଯଥେଷ୍ଟ ପରିଚୟ ଦିଏ । ଏଠାରେ ସେହି ଘଟଣାମାନଙ୍କୁ ସାମାନ୍ୟ ସୂଚନା ଦିଆଯାଇପାରେ ।

ଗୋପବନ୍ଧୁ ଚୌଧୁରୀ ଓ ରମାଦେବୀ ଗାଁରେ ରଚନାତ୍ମକ କାର୍ଯ୍ୟ କରିବାକୁ ବରୀରେ ରହୁଥାନ୍ତି । ବିନୋଦ ଯାଇ ବରୀରେ ୧୯୩୩ରୁ ପାଞ୍ଚ ବର୍ଷ ପର୍ଯ୍ୟନ୍ତ ରହି ବିଭିନ୍ନ କୁଟୀର ଶିଳ୍ପ, ଶିକ୍ଷାର ପ୍ରସାର, ଅସ୍ପୃଶ୍ୟତାର ବିଲୋପ ଇତ୍ୟାଦି ରଚନାତ୍ମକ କାର୍ଯ୍ୟରେ ବ୍ରତୀ ହେଲେ । ଘଟଣାକ୍ରମେ ସେଠାରେ ଜଣେ ଦଳିତ ମହିଳା "କ୍ଷେତ୍ରବାସୀ ମା"ଙ୍କ ସହିତ ତାଙ୍କର ସଂପର୍କ ବେଶ୍ ନିବିଡ଼ ହୋଇଥିଲା । ଏକଦା ସେଠାରେ ଥିବା ଏକ ଜଳାଶୟରେ ସେ ଗାଧୋଉଥାନ୍ତି । ଅଳ୍ପ ଦୂରରେ ଅନ୍ୟ ଏକ ତୁଠରେ କ୍ଷେତ୍ରବାସୀ ମା ତାଙ୍କ ତିନିବର୍ଷର ନାତୁଣୀକୁ ନେଇ ଗାଧୋଉଥାନ୍ତି । କୁନି ଝିଅଟି ପାଣିରେ ଖେଳୁଥାଏ ଓ ବିନୋଦ ବାବୁଙ୍କ ଆଡ଼କୁ ପାଣି ପକାଉଥାଏ । ଏହା ଦେଖି ତା'ର ଜେଜେମା ନାତୁଣୀକୁ ଚଟକଣା ମାରିଲେ । ବାବୁଙ୍କ ଉପରେ ଅସ୍ପୃଶ୍ୟ ଝିଅର ପାଣି ପଡ଼ିଲେ ସେ ଗାଳି ଶୁଣିବ ଭାବି ଏହା କରିଥିଲେ । ଏହାପରେ ବିନୋଦ ବାବୁ ଯାଇ ଟିକି ଝିଅଟିକୁ କାନ୍ଧରେ ବସାଇ ଧରିଲେ । ଏହି ଘଟଣାଟିରେ ବୁଢ଼ୀ ଆଶ୍ଚର୍ଯ୍ୟ ହୋଇଗଲେ । ଏହା ପରଠୁ ତାଙ୍କର କ୍ଷେତ୍ରବାସୀ ମା'ଙ୍କ ସହ ସମ୍ପର୍କ ନିବିଡ଼ ହୋଇଗଲା । ପରେ ଅସ୍ପୃଶ୍ୟତା ନିବାରଣ ପାଇଁ ବିନୋଦ ଦଳିତ ବସ୍ତିରେ ଯାଇ ରହିବାକୁ ସ୍ଥିର କଲେ । ସେ ତାଙ୍କ ସାହିରେ ଯାଇ ରହିବେ ଏହା ଶୁଣି କ୍ଷେତ୍ରବାସୀଙ୍କ ମା' ତାଙ୍କ ପିଲାଙ୍କୁ ଲଗାଇ ତାଙ୍କ ପାଇଁ ପିଣ୍ଡା ଓ ବଖରାଟିଏ ଘର କରିଦେଲେ ଓ ବିନୋଦ ଯାଇ ସେହି ଘରେ ରହିଲେ । କିଛିଦିନ ହାତରେ ରୋଷେଇ କରି ଖାଇବା ପରେ ସେ ନିଷ୍ପତ୍ତି କଲେ ଯେ ସେ କ୍ଷେତ୍ରବାସୀଙ୍କ ପରିବାରରେ ଖାଇବେ, ଫଳରେ ରୋଷେଇ କରିବାର ଝଞ୍ଜଟ ରହିବ ନାହିଁ । ସେମାନଙ୍କର ବାରଣ ସତ୍ତ୍ୱେ ବିନୋଦ ତାଙ୍କ ପରିବାରରେ ଖାଇବାକୁ ଜିଦ୍ ଧରିଲେ ଓ ତାହାହିଁ ହେଲା । କ୍ଷେତ୍ରବାସୀ ଯିଏ ବିନୋଦଙ୍କ ଠାରୁ ସାମାନ୍ୟ ବଡ଼ ଥିଲେ, ତାଙ୍କ ମା' ବିନୋଦଙ୍କୁ ପୁଅ ଭଳି ସ୍ନେହ ଓ ଯତ୍ନ କଲେ । ବରୀରେ ତାଙ୍କରି ପରିବାରରେ ଚାରିବର୍ଷ ରହି ଖାଇ ସେ ନୀରବରେ ଏକ ସାମାଜିକ କ୍ରାନ୍ତି ଦିଗରେ ଅଗ୍ରଦୂତ ହୋଇଥିଲେ । ତାଙ୍କରି ପ୍ରେରଣାରେ ଦଳିତ ସାହିର ଅନେକ ଯୁବକ ସ୍ୱାଧୀନତା ଆନ୍ଦୋଳନରେ ଅଂଶ ଗ୍ରହଣ କଲେ, ଖଦୀ ପିନ୍ଧିଲେ ଓ ଗାନ୍ଧୀଙ୍କ ମୂଲ୍ୟବୋଧ ପ୍ରତି ଉତ୍ସର୍ଗୀକୃତ ହୋଇଗଲେ । ବିନୋଦଙ୍କ ନିଜ ଭାଷାରେ "ମୁଁ ବରୀରେ ଗୋଟିଏ ମା' ପାଇ ଯାଇଥିଲି, ଯଦିଓ ସେ ମୋର ଜନ୍ମକଲା ମା' ନୁହେଁ ।" (ଋଣ ପରିଶୋଧ, ପୃଷ୍ଠା ୩୭୨) ।

ବିନୋଦ କାନୁନଗୋ ମାମୁଁ ଘରେ ରହି ପ୍ରାଥମିକ ବିଦ୍ୟାଳୟରେ ପଢ଼ିବା ବେଳେ ତାଙ୍କ ପିଲାଦିନର ଏକ ସ୍ମୃତି ବ୍ୟକ୍ତ କରିଛନ୍ତି । ସେ କେତେକ ସାଥୀଙ୍କ ସହ କଣ୍ଡରା ସାହିକୁ ଯାଆନ୍ତି । ସେହି ସାହିରେ ପାଲୁଣୀ ମା'ଙ୍କ ଘର ଆଗରେ ଗୋଟିଏ

କୋଳି ଗଛ ଥାଏ । ସେ କୋଳି ବହୁତ ସ୍ୱାଦ ଓ ବଡ଼ ବଡ଼ । ତେବେ ସମସ୍ୟା ହୁଏ ଯେ ସେ ଗଛ ଚଢ଼ି କୋଳି ଖାଇପାରନ୍ତି ନାହିଁ । ତଳେ ପଡ଼ିଥିବା କୋଳି ଖାଇବେ ନାହିଁ, କାରଣ କଣ୍ଡରା-ଛୁଆଁ ପାଣି ତଳେ ପଡ଼ିଥିବ ବା ଅଛୁଆଁ ଲୋକଙ୍କ ପାଦର ଧୂଳି ନିଶ୍ଚୟ ସେଠାରେ ଥିବ । ଯେ ଗଛରେ ଚଢ଼ି ପାରନ୍ତି ତାଙ୍କୁ କାକୁତି ବିନତି ହୋଇ ଅନୁନୟ ପରେ ସେ କେତୋଟି କୋଳି ଏମାନଙ୍କ କାନିକୁ ପକାନ୍ତି । ପିଲାଙ୍କର ଏହି ବିକଳ ଅବସ୍ଥା ଦେଖି ପାଲୁଣୀ ମା'ଙ୍କୁ କଷ୍ଟ ଲାଗିଲା । ତେଣୁ ପିଲାଏ ଆସିବା ପୂର୍ବରୁ କୋଳିଗଛ ତଳେ ଏକ ବଡ଼ ଜାଗାକୁ ସେ ଗୋବର ପକାଇ ଲିପିଦେବେ ଓ ସେହି ଲିପା ଜାଗାକୁ କେହି ନ ଯିବାପାଇଁ କଣ୍ଡରା ପିଲାମାନଙ୍କୁ ବାରଣ କରିଥିବେ । ସେହି ଲିପା ସ୍ଥାନରେ କୋଳି ପଡ଼ିଲେ ବା ଝଡ଼ିଲେ ପିଲାମାନେ ଖାଇପାରିବେ । ଜଣେ ଗଛରେ ଚଢ଼ି କୋଳି ଗଛର ଡାଳକୁ ହଲାଇବେ, ଯେଉଁ କୋଳିଗୁଡ଼ିକ ଗୋବର ଲିପା ଜାଗାରେ ପଡ଼ିବ ତାକୁ ଗୋଟେଇ ପିଲାମାନେ ପାଚିଆଏ ଲେଖା କୋଳି ସଂଗ୍ରହ କରି ଫେରନ୍ତି । ଏଥିରେ ପାଲୁଣୀ ମା' ବେଶ୍ ଆନନ୍ଦ ଅନୁଭବ କରନ୍ତି । ବିନୋଦ ମାମୁଁ ଘର ଗ୍ରାମ ନାଗଣପୁର ଛାଡ଼ିବା ପରେ ସେଠାକୁ ଜୀବନରେ ଅଳ୍ପ କେତେ ଥର ଯାଇଛନ୍ତି । ଯେତେବେଳେ ସେଠାକୁ ଯାଇଛନ୍ତି ପାଲୁଣୀ ମା'ଙ୍କ ଘରଆଡ଼େ ଯାଆନ୍ତି, ଭାବନ୍ତି ତାହା ତାଙ୍କ ପାଇଁ ଏକ ତୀର୍ଥସ୍ଥାନ । ନାଗଣପୁରରେ ଅସ୍ପୃଶ୍ୟତାର ବିକଟ ରୂପକୁ ସେ ପିଲାବେଳେ ଯାହା ଦେଖିଛନ୍ତି ତାହା ତାଙ୍କ ସ୍ମୃତିରେ ଅମଳିନ ଥାଏ । ଭାବନ୍ତି ଗୋଟିଏ ପଟେ ମନୁଷ୍ୟକୁ ମନୁଷ୍ୟର ସାମାଜିକ ଘୃଣା, ଅପମାନ ଓ ଲାଞ୍ଛନା । ଅନ୍ୟ ପକ୍ଷରେ ଯେଉଁମାନେ ଏଭଳି ଘୃଣା କରୁଛନ୍ତି ସେହିମାନଙ୍କ ପିଲାଙ୍କ ପାଇଁ ପାଲୁଣୀ ମା'ର ଅନ୍ତରରେ ଏତେ ସ୍ନେହ, ଦରଦ ଓ ଆଦର । ଏହି ଘଟଣାକୁ ମନେ ପକାଇ ସେ ପାଲୁଣୀ ମା'ର ଘରକୁ ଏକ ତୀର୍ଥସ୍ଥାନ ବୋଲି କହିଛନ୍ତି । (ଋଣ ପରିଶୋଧ, ପୃ.୬୧)

ବିନୋଦ ତାଙ୍କ ନିଜ ଗ୍ରାମ ମଲ୍ଲୀପୁରର ଜଣେ ଦଳିତ ମହିଳା 'ଶୋବି ବାଉରାଣୀ'ଙ୍କ ପ୍ରତି 'ଋଣ ପରିଶୋଧ'ରେ ତାଙ୍କର କୃତଜ୍ଞତା ଜ୍ଞାପନ କରିଛନ୍ତି । ସେ ପିଲାଟି ବେଳୁ ପାଠ ପଢ଼ିବା ପାଇଁ ନିଜ ମାମୁଁଘରେ ରହିଥିଲେ । ମାମୁଁଙ୍କ ସାଥିରେ ପରେ ଆସି କଟକରେ ଷଷ୍ଠ ଶ୍ରେଣୀରୁ ପଢ଼ିଲେ । ଘଟଣାକ୍ରମେ ଅଠାଇଶି ବର୍ଷ ପରେ ନିଜ ଗ୍ରାମ ମଲ୍ଲୀପୁରରେ ନିଜର ବିବାହ ପରେ ୧୯୪୫ରୁ ୧୯୫୩ ପର୍ଯ୍ୟନ୍ତ ରହିଲେ । ସେହି ସମୟରେ ବାଉରୀ ସାହିର ଶୋବି ବାଉରାଣୀ ତାଙ୍କର ଅତିପ୍ରିୟ ହୋଇ ଉଠିଥିଲେ । ବିନୋଦଙ୍କ ଜନ୍ମବେଳେ ସେ ତାଙ୍କର ନାହି କାଟିଥିଲେ ଓ ତାଙ୍କ ମା'ଙ୍କର ଲୁଗାପଟା ଧୋଇଥିଲେ । ସେ ଏହି କାମ ଗାଁରେ କରନ୍ତି । ବିନୋଦଙ୍କ ପିଲାମାନେ ଗାଁରେ ଜନ୍ମ

ହେବାବେଳେ ଅନ୍ତୁଡ଼ି ଶାଳରେ ଶୋବି ରହି ସେବା ଦେଇଛନ୍ତି । ସେମାନଙ୍କର ଗଦା ଗଦା ମଇଳା ଲୁଗା ଧୋଇଛନ୍ତି । ବିନୋଦ ଗ୍ରାମରେ ରହୁଥିବା ବେଳେ ତାଙ୍କ ସଂଗରେ ବିଲରେ ସେ କାମ କରନ୍ତି ଓ ଶୋବି ବିନୋଦଙ୍କୁ 'ତୁ' କହନ୍ତି । ଏପରିକି ତାଙ୍କର ପିଲାମାନେ ୧୯୬୨ ପର୍ଯ୍ୟନ୍ତ ଗାଁରେ ରହୁଥିବା ବେଳେ ଶୋବି ତାଙ୍କ ପରିବାରର ସଭ୍ୟ ପାଲଟି ଯାଇଛନ୍ତି । ୧୯୭୦ରେ ବିନୋଦ ଗ୍ରାମକୁ ଥରେ ଯିବାବେଳେ ଶୁଣିଲେ ଶୋବି ମୃତ୍ୟୁ ଶଯ୍ୟାରେ, ସେ ଆଉ ବିଛଣାରୁ ଉଠି ପାରୁନାହାନ୍ତି । ସେ ତାଙ୍କ ଘରକୁ ଗଲେ, ତାଙ୍କ ପାଦ ପାଖରେ ବସି ତାଙ୍କ ପାଦ ଆଉଁଷି ଦେଲେ । ବିନୋଦଙ୍କୁ ନିଜ ପାଖରେ ପାଇ ସେ ତାଙ୍କ ହାତକୁ ଧରି ଆବେଗରେ ଆଖିରୁ ଲୁହ ଗଡ଼ାଇଲେ । ତାଙ୍କ ଘରୁ ବିଦାୟ ନେଇ ଆସିବା ବେଳେ ସେ ବାଉରୀ ସାହିରେ କହିଥିଲେ ଶୋବିଙ୍କର ଶେଷ ଅବସ୍ଥା ଦେଖିଲେ ତାଙ୍କୁ ଖବର ଦେବାକୁ, ଫଳରେ ସେ ତାଙ୍କୁ କାନ୍ଧରେ ଶ୍ମଶାନକୁ ନେବେ । କିନ୍ତୁ ସେ ସୁଯୋଗ ତାଙ୍କର ହେଲାନାହିଁ । ଶୋବିଙ୍କ ମୃତ୍ୟୁ ଖବର କଟକକୁ ଆସିବା ବେଳକୁ ସେ କଟକରେ ନ ଥିଲେ । ଜଣେ ସ୍ନେହମୟୀ ଦଳିତ ମହିଳାଙ୍କ ବିଷୟରେ ଲେଖିଲା ବେଳେ ବିନୋଦଙ୍କ ଆଖିରୁ ଲୁହ ଝରିଛି । ତାଙ୍କ ପ୍ରାଣର ଆବେଗ ଜାଣିବା ପାଇଁ ତାଙ୍କ ବହିରୁ କେତୋଟି ଧାଡ଼ି ଉଦ୍ଧାର କରୁଛି ।

"ଶୋବି ବାଉରାଣୀ ଆମ ଗାଆଁରେ କେତେ ପିଲାଙ୍କର ନାହି କାଟିଛି, ଅନ୍ତୁଡ଼ିଶାଳର ଗଦା ଗଦା ଲୁଗା ନଇରେ ସଫା କରିଛି । ସେ ସବୁ କାମ ସେ କାହିଁକି କଲା ବୋଲି ବୋଧହୁଏ ମଲା ପର୍ଯ୍ୟନ୍ତ ଅଛୁଆଁ ହୋଇ ରହିଗଲା । ଗାନ୍ଧୀଙ୍କ ତପସ୍ୟା, ତାଙ୍କ ସାଧନା, ଆମ ମାନଙ୍କର ସବୁ ଉଦ୍ୟମ, ସବୁ ଯୁକ୍ତି ଶୋବି ବାଉରାଣୀକୁ କେବେ ହେଲେ 'କେବଳ ଶୋବି'କରି ଦେଇ ପାରିଲା ନାହିଁ । ତେବେ ଏତିକି ସାନ୍ତ୍ୱନା ଯେ ତାହାର ନାତି, ଅଣନାତିମାନେ ଏବେ ଟିକିଏ ମୁଣ୍ଡଟେକି ଚାଲିଲେଣି । ସେଦିନ ସେହି ଶୋବିର ଅଣନାତି ସୁଦାମ କଟକର ପୁଲିସ ସାହେବ ଶ୍ରୀ ଅନାଦି ସାହୁଙ୍କ ଆଗରେ କେତେ ଜଣ କରଣଙ୍କର ହରିଜନଙ୍କ ଉପରେ ଅତ୍ୟାଚାର ସମ୍ପର୍କରେ ଯେମିତି କହିଲା ସମସ୍ତେ ଶୁଣି ଆଶ୍ଚର୍ଯ୍ୟ ହୋଇଗଲେ । ପରେ ମୁଁ ଶୁଣିଲି । ବିଚାରିଲି ତାହା ହେଲେ ଶୋବି ବାଉରାଣୀ ମରିନାହିଁ । ଆମେ ସବୁ ମରିଛୁ । ଅସ୍ପୃଶ୍ୟତା ରୂପକ ରାକ୍ଷସୀକୁ ମାରିବା ପାଇଁ ଆମର ଆଉ ସାହସ ହେଉନାହିଁ ।" (ଋଣ ପରିଶୋଧ, ପୃଷ୍ଠା-୪୧) ।

ଗୋଟିଏ ସାମାଜିକ ସମସ୍ୟା ପ୍ରତି ବିନୋଦଙ୍କ ପ୍ରାଣର ବ୍ୟାକୁଳତା ଏଥିରୁ ଧରିହୁଏ । ଅସ୍ପୃଶ୍ୟତା ରୂପୀ କଳଙ୍କ ଭାରତୀୟ ସମାଜରେ ଯୁଗ ଯୁଗ ଧରି ରହିବା ଏକ ଐତିହାସିକ ଘଟଣା । ତେବେ ଯେଉଁମାନେ ଅସ୍ପୃଶ୍ୟତାରେ ବିଶ୍ୱାସ କରୁଥିଲେ ସେମାନେ

ଯେ ମନ୍ଦଲୋକ ବା ସେମାନଙ୍କର ସାମାଜିକ ଚରିତ୍ର ଅନୈତିକ ଏହା କୁହାଯାଇ ପାରିବ ନାହିଁ । ବରଂ ସେମାନେ କେତେକ ଆଧାରହୀନ ବିଶ୍ୱାସକୁ ଗ୍ରହଣ କରିନେବା ହେତୁ ସେମାନେ ଏହି ପ୍ରଥାର ଅନିଷ୍ଟକର ଦିଗ ଉପରେ ଚିନ୍ତା କରିପାରନ୍ତି ନାହିଁ । ରକ୍ଷଣଶୀଳ ଜାତିବାଦୀ ଲୋକଙ୍କର ଧାରଣା ଯେ, ଦଳିତମାନେ ଅପବିତ୍ର ଓ ସେମାନଙ୍କୁ ଛୁଇଁଲେ କାୟା ଅପବିତ୍ର ହୋଇଯିବ । ଏହି ବିଶ୍ୱାସ ଓ ଏହା ସହିତ ଯୁଗ ଯୁଗର ପରମ୍ପରା ଓ ରକ୍ଷଣଶୀଳ ଧାର୍ମିକ ମାନସିକତାର ସମ୍ମିଳିତ ପ୍ରଭାବରୁ ସମାଜର ଅନେକ ବ୍ୟକ୍ତି ଏହି ପ୍ରଥାକୁ ଗ୍ରହଣ କରିଆସିଛନ୍ତି । ଏହା ପଶ୍ଚାତର ଅମାନବିକ ଦିଗଟି ବିଷୟରେ ସେମାନେ ଚିନ୍ତା ପ୍ରକଟ କରିପାରନ୍ତି ନାହିଁ । ବରଂ ବହୁ ସମୟରେ ଏକ ବିଚାରହୀନ ଆବେଗରେ ପରିଚାଳିତ ହୋଇ ଏକ ଅନ୍ୟାୟ ଓ ଅନୈତିକ ବ୍ୟବସ୍ଥାକୁ ସେମାନେ ବିଶ୍ୱାସ କରନ୍ତି । ବିନୋଦ ନିଜ ବିଚାରରେ ଓ ବାସ୍ତବ ଜୀବନର ଆଚରଣରେ ଏହି ସାମାଜିକ ମନ୍ଦ ବ୍ୟବସ୍ଥା ବିରୁଦ୍ଧରେ ସର୍ବଦା ସ୍ୱର ଉତ୍ତୋଳନ କରି ଆସିଛନ୍ତି ।

ତିନି ଜଣ ଦଳିତ ମହିଳାଙ୍କ ପ୍ରତି ସେ ତାଙ୍କ ହୃଦୟର ଯେଉଁ ଆବେଗଭରା କୃତଜ୍ଞତା ଜଣାଇଛନ୍ତି ସେଥିରୁ ତାଙ୍କର ମାନବିକ ଦୃଷ୍ଟି ଓ ସମ୍ବେଦନଶୀଳ ହୃଦୟର ବଡ଼ ପରିଚୟ ମିଳିଥାଏ । ଭାରତୀୟ ହିନ୍ଦୁ ସମାଜର ଯେଉଁ ବର୍ବର ପ୍ରଥା ଯୁଗ ଯୁଗ ଧରି ସାଧାରଣ ଜୀବନକୁ କଳଙ୍କିତ ଓ ଦୂଷିତ କରି ରଖିଛି ତାହା ତାଙ୍କ ମନରେ ଗଭୀର ଆଘାତ ସୃଷ୍ଟି କରିଛି । ଏକ ସମତାଭିତ୍ତିକ ଓ ଭେଦଭାବରହିତ ସମାଜର ସ୍ୱପ୍ନ ଦେଖିଥିବା ଜଣେ ବିଗଳିତ ବ୍ୟକ୍ତିଙ୍କର ପ୍ରାଣର ବେଦନା ତାଙ୍କ ବକ୍ତବ୍ୟରୁ ବେଶ୍ ଅନୁଭବ କରିହୁଏ । ନିଜର ସମସ୍ତ ସୁରକ୍ଷିତ ଭବିଷ୍ୟତକୁ ପାଦରେ ଠେଲି ଦେଇ କିଶୋର ବୟସରୁ ପାଠଛାଡ଼ି ଦେଶର ଆହ୍ୱାନରେ ସ୍ୱାଧୀନତା ଆନ୍ଦୋଳନରେ ଝାସ ଦେଇଥିଲେ । ଭାବିଥିଲେ ବ୍ରିଟିଶ ସାମ୍ରାଜ୍ୟବାଦ ଭାରତରୁ ଅପସରି ଯିବା ସହ ସମାଜରୁ ଦାରିଦ୍ର୍ୟ, ଭେଦଭାବ, ଜାତିଆଣ ଉଚ୍ଚ ନୀଚ ବ୍ୟବସ୍ଥା ମଧ୍ୟ ଦୂର ହୋଇଯିବ । ତେବେ ସ୍ୱାଧୀନ ଭାରତରେ ଯେତେବେଳେ ସେ ଭେଦଭାବ, ଅନ୍ୟାୟ, ଦୁର୍ନୀତି ଓ ଜାତିବାଦ ଦେଖନ୍ତି ତାହା ତାଙ୍କ ପ୍ରାଣକୁ ଗଭୀର ଆଲୋଡ଼ିତ କରେ । ବିନୋଦଙ୍କ ସ୍ତରର ବ୍ୟକ୍ତି ସମାଜର ଅପାଠୁଆ, ଅନାମଧେୟ ଦଳିତ ମହିଳାଙ୍କ ପାଖରେ କୃତଜ୍ଞତା ପ୍ରକାଶ କରିବା ତାଙ୍କ ମହାନୁଭବତାର ପରିଚୟ ଦିଏ । ସମତାଭିତ୍ତିକ ସମାଜ ଓ ଜୀବନରେ ମହତ୍ତର ମୂଲ୍ୟବୋଧ ପ୍ରତି ତାଙ୍କ ପ୍ରାଣର ଅନୁରାଗକୁ ଯେକୌଣସି ପାଠକ ତାଙ୍କ ଆତ୍ମଜୀବନୀ "ପାଠ ପଢେ ପଢେ ଅପାଠୁଆ" ଓ "ଋଣ ପରିଶୋଧ"ରୁ ଅନୁଭବ କରିପାରିବ ।

ବିନୋଦ କାନୁନଗୋଙ୍କର ସ୍ରଷ୍ଟା -ଜୀବନ ବିଷୟରେ ଏବେ କିଛି ଆଲୋଚନା କରିବା । ପୂର୍ବରୁ ସୂଚନା ଦିଆଯାଇଛି ଯେ ସେ ଦଶମ ଶ୍ରେଣୀରେ ପଢୁଥିବା ବେଳେ ପାଠ ଛାଡ଼ି ସ୍ୱାଧୀନତା ଆନ୍ଦୋଳନରେ ବ୍ରତୀ ହୋଇଥିଲେ । ସେ ବିଦ୍ୟାଳୟ ଛାଡ଼ିଥିଲେ, କିନ୍ତୁ ପାଠ ଛାଡ଼ି ନଥିଲେ । ବରଂ ସାମ୍ବାଦିକତା ଭିତରେ, ବହୁ ବିଶିଷ୍ଟ ବ୍ୟକ୍ତିଙ୍କ ସଂସ୍ପର୍ଶରେ ଆସି, ଗାନ୍ଧୀଙ୍କ ସହ ପ୍ରତ୍ୟକ୍ଷ ଭାବେ ସଂଶ୍ଳିଷ୍ଟ ହୋଇ ଜେଲ ଜୀବନରେ ସେ ନିଜର ଚିନ୍ତାର ଦିଗ୍‌ବଳୟକୁ ବିସ୍ତାର କରି ପାରିଥିଲେ । ଜୀବନର ବହୁ ବାସ୍ତବ ଅନୁଭୂତି, ଅନୁଶୀଳନ ଓ ଅନୁସନ୍ଧିତ୍ସା ଭିତରେ ତାଙ୍କ ଜୀବନ ହୋଇ ଉଠିଥିଲା ଏକ ବିଶ୍ୱବିଦ୍ୟାଳୟ । ବିଶିଷ୍ଟ ଋଷୀୟ ଲେଖକ ମାକ୍‌ସିମ ଗର୍କୀ (୧୮୬୮-୧୯୩୬) ତାଙ୍କ ଆତ୍ମ-ଜୀବନୀର ନାମ ରଖିଥିଲେ "ମୋ ବିଶ୍ୱବିଦ୍ୟାଳୟ" । ମାକ୍‌ସିମ ଗର୍କୀ ଆଠବର୍ଷ ବୟସରେ ନିଜର ବାପା ମା'ଙ୍କୁ ହରାଇ ଦାରିଦ୍ର୍ୟ ଭିତରେ ପଢ଼ିପାରି ନଥିଲେ । ତାଙ୍କର ଆନୁଷ୍ଠାନିକ ଶିକ୍ଷା ନ ଥିଲା ତେବେ ତାଙ୍କର ପ୍ରୟାସ, ପ୍ରତିଭା ଓ ସାହିତ୍ୟିକ ସୃଜନଶୀଳତା ତାଙ୍କୁ ଋଷୀୟ ସାହିତ୍ୟର ଜଣେ ମହାନ ସ୍ରଷ୍ଟାର ସ୍ୱୀକୃତି ଆଣି ଦେଇଥିଲା । ବିନୋଦ କାନୁନଗୋ ଗର୍କୀଙ୍କ ସହିତ ତୁଳନୀୟ । ଆନୁଷ୍ଠାନିକ ବା ବିଶ୍ୱବିଦ୍ୟାଳୟ ଶିକ୍ଷା ନ ଥିଲେ ବି ସେ ଥିଲେ ଜ୍ଞାନ-ତପସ୍ୱୀ । ମୁକ୍ତ ମନ, ଜ୍ଞାନ ପ୍ରତି ଉତ୍ସୁକତା ଓ ଅଧ୍ୟବସାୟ ପ୍ରତି ଐକାନ୍ତିକ ନିଷ୍ଠା ତାଙ୍କ ଜୀବନର ବୈଶିଷ୍ଟ୍ୟ । ବ୍ରହ୍ମପୁର ଜେଲ ଓ ପାଟଣା କ୍ୟାମ୍ପ ଜେଲରେ ଯେଉଁ ବର୍ଷଗୁଡ଼ିକ ସେ ବନ୍ଦୀ ହୋଇ ରହିଥିଲେ ସେଠାରେ ସେ ବହୁ ବିଷୟ ଅଧ୍ୟୟନ କରୁଥିଲେ, ଜ୍ଞାନୀ ସହବନ୍ଦୀଙ୍କ ସହ ନାନା ବିଷୟ ଆଲୋଚନା କରି ସନ୍ଦେହ ମୋଚନ କରୁଥିଲେ । ଜେଲ ଜୀବନ ପରେ ଗ୍ରାମରେ ରହି ରଚନାତ୍ମକ କାର୍ଯ୍ୟ ମାଧ୍ୟମରେ ସମାଜରେ ଗୁଣାତ୍ମକ ପରିବର୍ତ୍ତନ ପାଇଁ ପ୍ରୟାସ କରୁଥିବା ଭିତରେ ସେ ଏକ ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତି ନେଲେ । ଏକଦା ୧୯୩୦ରେ ସେ କିଶୋର ବୟସରେ ନିଷ୍ପତ୍ତି କଲେ ଯେ ପାଠଛାଡ଼ି ସ୍ୱାଧୀନତା ଆନ୍ଦୋଳନରେ ସକ୍ରିୟ ଅଂଶ ଗ୍ରହଣ କରିବେ । ତେଇଶି ବର୍ଷ ପରେ ପୁଣି ଏକ ନିଷ୍ପତ୍ତି କଲେ ଯେ ସେ ଗାଁ ଛାଡ଼ି କଟକ ଆସିବେ ଓ ଓଡ଼ିଆ ଭାଷାରେ ଜ୍ଞାନମଣ୍ଡଳ ପ୍ରଣୟନ ପାଇଁ ପ୍ରୟାସ କରିବେ । ଏହିପରି ଏକ ବୌଦ୍ଧିକ ଦୁଃସାହସିକ କାର୍ଯ୍ୟରେ ହାତ ଦେବାକୁ ସ୍ଥିର କରି ସେ କଟକ ୧୯୫୪ ଆରମ୍ଭରେ ଚାଲି ଆସିଲେ । ସେତେବେଳେ ରେଭେନ୍‌ସା କଲେଜର କନିକା ଲାଇବ୍ରେରୀ ଥିଲା ଓଡ଼ିଶାର ସର୍ବଶ୍ରେଷ୍ଠ ପୁସ୍ତକାଗାର । ସେଠାରେ ଯାଇ ପଢ଼ିବାର ସୁଯୋଗ ନେଲେ । ମାନବ ଜ୍ଞାନର ଯେତେ ଯେତେ ବିଭାଗ ରହିଛି ସବୁ ବିଷୟରେ କିଛି କିଛି ପଢ଼ିବାକୁ ଉଦ୍ୟମ କଲେ । ବର୍ଷ ବର୍ଷ ଧରି କନିକା ଲାଇବ୍ରେରୀର ରେଫରେନ୍ସ ବିଭାଗରେ ଧ୍ୟାନନିଷ୍ଠ ହୋଇ ପଢ଼ିବାର ପ୍ରୟାସ ଭିତରେ ତାଙ୍କର ଜ୍ଞାନର

ପରିସର ଖୁବ୍ ପ୍ରସାରିତ ହୋଇ ଚାଲିଲା । ବିଶେଷକରି ଇଂରାଜୀ ଭାଷାରେ ରହିଥିବା ନାନା ଏନସାଇକ୍ଲୋପେଡ଼ିଆକୁ ଗମ୍ଭୀରତାର ସହ ଅନୁଶୀଳନ କଲେ । ଏନସାଇକ୍ଲୋପେଡ଼ିଆ ଅଫ୍ ବ୍ରିଟାନିକା, ଆମେରିକାନା, ସାଇନସ, ରିଲିଜିଅନ୍ ଏଣ୍ଡ ଏଥିକ୍ସ୍, ସୋସିଏଲ ସାଇନ୍ସ୍ ଗ୍ରନ୍ଥ ଗୁଡ଼ିକର ପଠନ ଭିତରୁ ମଣିଷ ଜ୍ଞାନର ସକଳ ଦିଗ ବିଷୟରେ ଏକ ସାଧାରଣ ଧାରଣା ଆଣି ପାରିଲେ । ଏହା ସହିତ ୧୪ ଖଣ୍ଡରେ ସମ୍ପାଦିତ ଅକ୍ସଫୋର୍ଡ ଶବ୍ଦକୋଷକୁ ମଧ୍ୟ ଅନୁଶୀଳନ କରିବାକୁ ଲାଗିଲେ । ବର୍ଷ ପରେ ବର୍ଷ ଅଭିଧାନ ଗୁଡ଼ିକୁ ପଢ଼ି ଶବ୍ଦମାନଙ୍କର ଇତିହାସ ଓ ସେମାନଙ୍କର ବିଭିନ୍ନ ପ୍ରୟୋଗ ଗୁଡ଼ିକ ଦେଖି ଚମକ୍ରୃତ ହେଉଥିଲେ । ବିଭିନ୍ନ ଏସ୍‌ସାଇକ୍ଲୋପେଡ଼ିଆ, ଅଭିଧାନ ଓ ବହୁ ବିଶିଷ୍ଟ କୃତି ଗୁଡ଼ିକର ଅନୁଶୀଳନ ଭିତରେ ଜ୍ଞାନର ଯେତେ ଯେତେ ବିଭାଗ ରହିଛି ସବୁ ବିଭାଗ ବିଷୟରେ ସାଧାରଣ ଭାବେ ନିଜର ଧାରଣା କିଛି ଆଣିପାରିଲେ । ବର୍ଷ ବର୍ଷ ଧରି ଦିନକୁ ପନ୍ଦର, ଷୋହଳ ଘଣ୍ଟା ଲେଖାଏଁ ପଢ଼ି ଓଡ଼ିଆ ଭାଷାରେ ଜ୍ଞାନମଣ୍ଡଳ ଲେଖିବାକୁ ନିଜକୁ ପ୍ରସ୍ତୁତ କଲେ ।

ପୃଥିବୀର ଯେକୌଣସି ଉନ୍ନତ ଭାଷାରେ ଏନ୍‌ସାଇକ୍ଲୋପେଡିଆ ବା ଜ୍ଞାନମଣ୍ଡଳ ପାଇଁ ଉଦ୍ୟମ ହୋଇଛି । ଗୋଟିଏ ଭାଷାର ଅଭିଧାନ ଭିତରୁ ଯେପରି ସେହି ଭାଷାର ଶବ୍ଦ ଗୁଡ଼ିକର ଅର୍ଥ ଜାଣିହୁଏ, ସେହିପରି ଜ୍ଞାନମଣ୍ଡଳ ଭିତରୁ ଜ୍ଞାନର ଯେକୌଣସି ବିଭାଗର କୌଣସି ବିଷୟ ଉପରେ ସାଧାରଣ ଧାରଣା କରିହୁଏ । କୌଣସି ଶବ୍ଦର ଅର୍ଥ ଜାଣିବାକୁ ଯେପରି ଡିକ୍‌ସିନାରି ବା ଅଭିଧାନ ଦେଖିବାକୁ ହୁଏ, ସେହିପରି କୌଣସି ବିଷୟରେ ସାଧାରଣ ଧାରଣା ଆଣିବାକୁ ଏନ୍‌ସାଇକ୍ଲୋପେଡିଆ ଦେଖିବାକୁ ହୁଏ । ଯେଉଁ ଭାଷା ଯେତେ ଉନ୍ନତ ବା ଜ୍ଞାନ ବିଜ୍ଞାନର ପ୍ରସାର ପାଇଁ ଉପଯୁକ୍ତ ମାଧ୍ୟମ, ସେହି ଭାଷାରେ ବିଭିନ୍ନ ବିଷୟର ଏନ୍‌ସାଇକ୍ଲୋପେଡ଼ିଆ ଉପଲବ୍ଧ । ଇଂରାଜୀ ଭାଷାର ଏନ୍‌ସାଇକ୍ଲୋପେଡ଼ିଆ ବ୍ରିଟାନିକା ୧୭୭୧ ମସିହାରେ ପ୍ରଥମେ ତିନି ଖଣ୍ଡରେ ପ୍ରକାଶ ପାଇଥିଲା । ସମ୍ଭବତଃ ଇଂରାଜୀ ଭାଷାର ଏନ୍‌ସାଇକ୍ଲୋପେଡ଼ିଆ ପୂର୍ବରୁ ଫରାସୀ ଭାଷାରେ ପ୍ରଥମେ ଏନ୍‌ସାଇକ୍ଲୋପେଡ଼ିଆ ପ୍ରକାଶ ପାଇଥିଲା । ଜ୍ଞାନର କ୍ରମବିକାଶ ଯେପରି ହୋଇଚାଲିଛି, ସେଥିରେ ଏକ ନିରନ୍ତର ପ୍ରକ୍ରିୟା ଭାବେ ଏନସାଇକ୍ଲୋପେଡ଼ିଆ ପ୍ରତ୍ୟେକଟି ନୂଆ ସଂସ୍କରଣରେ ନୂଆ ନୂଆ ବିଷୟ ସ୍ଥାନିତ ହେଉଛି । ଏବେ ଏନସାଇକ୍ଲୋପେଡ଼ିଆ ବ୍ରିଟାନିକାରେ ବିଭିନ୍ନ ବିଷୟର ପ୍ରବୀଣ ବ୍ୟକ୍ତିମାନେ ସଂଶ୍ଳିଷ୍ଟ ହୋଇ ତାହାକୁ ଋଦ୍ଧିମନ୍ତ କରିଚାଲିଛନ୍ତି । ଇତିହାସ, ଭୂଗୋଳ ମନସ୍ତତ୍ତ୍ୱ, ନୃତତ୍ତ୍ୱ, ଅର୍ଥନୀତି, ଦର୍ଶନ, ଚିକିତ୍ସା ବିଜ୍ଞାନ,ପଦାର୍ଥ ବିଜ୍ଞାନ, ରସାୟନ ବିଜ୍ଞାନ, କୃଷି ବିଜ୍ଞାନ, ସ୍ଥାପତ୍ୟ, ସାହିତ୍ୟ, କଳା

ଏହିପରି ଜ୍ଞାନର ପ୍ରତ୍ୟେକ ବିଭାଗର ଧୂରୀଣ ବ୍ୟକ୍ତିମାନେ ନିଜ ନିଜ ବିଷୟର ମୌଳିକ ଭାବନା, ପ୍ରତ୍ୟୟ ଗୁଡ଼ିକ ଉପରେ ନିର୍ଭରଯୋଗ୍ୟ ଧାରଣା ପାଠକମାନଙ୍କୁ ଦେବାକୁ ପ୍ରୟାସ କରି ଆସୁଛନ୍ତି । ବ୍ରିଟାନିକାରେ ସମ୍ଭବତଃ ପଚାଶ ହଜାର ବିଷୟ ଉପରେ ପ୍ରବୀଣ ବ୍ୟକ୍ତିମାନଙ୍କ ଦ୍ୱାରା ତଥ୍ୟଭିତ୍ତିକ ନିର୍ଭରଯୋଗ୍ୟ ଜ୍ଞାନର ବିବରଣୀ ରହିଛି । ଜ୍ଞାନ ବିଜ୍ଞାନର ବିକାଶ ସହିତ ପ୍ରତ୍ୟେକ ବୌଦ୍ଧିକ ବିଷୟ ଉପରେ ସ୍ୱତନ୍ତ୍ର ଏନସାଇକ୍ଲୋପେଡିଆମାନ ବି ଉପଲବ୍ଧ ହୋଇପାରୁଛି । ଦର୍ଶନ, ପଦାର୍ଥ ବିଜ୍ଞାନ, ଚିକିତ୍ସା ବିଜ୍ଞାନ ଇତ୍ୟାଦି ଯେକୌଣସି ବିଷୟରେ ସ୍ୱତନ୍ତ୍ର ଏନସାଇକ୍ଲୋପେଡ଼ିଆମାନ ଏବେ ଇଂରାଜୀ ଭାଷାରେ ବା ପୃଥିବୀର ଉନ୍ନତ ଭାଷାମାନଙ୍କରେ ମିଳିପାରୁଛି । ମୋଟ ଉପରେ ଜ୍ଞାନର ଇତିହାସ ହିଁ ହେଉଛି ଏନ୍‌ସାଇକ୍ଲୋପେଡ଼ିଆ ବା ଜ୍ଞାନମଣ୍ଡଳ । ଏଥିପାଇଁ ବହୁ ବିଶେଷଜ୍ଞ ସମ୍ପୃକ୍ତ ହେଉଛନ୍ତି ଓ ପ୍ରାୟତଃ ବିଭିନ୍ନ ବିଶ୍ୱବିଦ୍ୟାଳୟମାନଙ୍କର ସଂଗଠିତ ଉଦ୍ୟମରେ କୋଟି କୋଟି ଟଙ୍କା ବ୍ୟୟରେ ଜ୍ଞାନମଣ୍ଡଳ ସମ୍ପାଦିତ ହୋଇଆସୁଛି ।

ଜଣେ ବ୍ୟକ୍ତିଙ୍କ ବ୍ୟକ୍ତିଗତ ଉଦ୍ୟମରେ ଜ୍ଞାନମଣ୍ଡଳ ଲେଖାଯିବା ଓ ସମ୍ପାଦିତ ହେବା ଏକ ଅଭିନବ ପ୍ରୟାସ । ତେବେ ଏହିଠାରେ ବିନୋଦ କାନୁନଗୋଙ୍କର ବୈଶିଷ୍ଟ୍ୟ ହେଉଛି ଯେ ସେ ବର୍ଷ ବର୍ଷ ଧରି ଏକନିଷ୍ଠ ସାଧନା ଦ୍ୱାରା ଜ୍ଞାନ ବିଜ୍ଞାନର ପ୍ରତ୍ୟେକ ବିଭାଗରେ ଓଡ଼ିଶାର ଜଣେ ସାଧାରର ପାଠକକୁ ଯେକୌଣସି ବିଷୟରେ ଅ ଆ କ ଖ ଜଣାଇବାକୁ ପ୍ରୟାସ କରିଛନ୍ତି । ବିଭିନ୍ନ ବିଷୟର ଅନୁଶୀଳନ ସହ ବିଭିନ୍ନ ପତ୍ର ପତ୍ରିକା, ସମ୍ବାଦପତ୍ରରୁ ଉପାଦେୟ ଅଂଶମାନଙ୍କୁ ସଂଗ୍ରହ କରି ହଜାର ହଜାର ଫାଇଲରେ ତାହାକୁ ସଜାଡ଼ି ରଖିଛନ୍ତି । କୌଣସି ବିଷୟରେ କିଛି ସାଧାରଣ ଧାରଣା ଜଣେ ପାଠକକୁ ଦେବାକୁ ପ୍ରୟାସ ଭିତରେ ଯେପରି କିଛି ତଥ୍ୟଗତ ତ୍ରୁଟି ବା ପ୍ରତ୍ୟୟଗତ ଭ୍ରମ ନ ରୁହେ ଏହା ପ୍ରତି ଯଥେଷ୍ଟ ଧ୍ୟାନ ଦେବାକୁ ପ୍ରୟାସ କରିଛନ୍ତି । ବିଶେଷକରି ବିଜ୍ଞାନର ବିଷୟ ଗୁଡ଼ିକୁ ଲେଖିବା ବେଳେ ଯେପରି କୌଣସି ଭୁଲ୍ ନ ରହେ ସେଥିପାଇଁ ସେ ବହୁ ଯତ୍ନଶୀଳ ହୋଇଛନ୍ତି ।

ଓଡ଼ିଆ ଭାଷାକୁ ଜ୍ଞାନ ବିଜ୍ଞାନର ଭାଷା କରିବାରେ ବିନୋଦ ବାବୁଙ୍କର ପ୍ରୟାସ ସମ୍ଭବତଃ ଯୁଗାନ୍ତକାରୀ । ସାହିତ୍ୟ ସୃଷ୍ଟି ପାଇଁ ବା ଭାବ ବିନିମୟ କରିବା ପାଇଁ ଗୋଟିଏ ଭାଷା ଉଦ୍ଦିଷ୍ଟ ହେବା ଯଥେଷ୍ଟ ନୁହେଁ । ଏହା ଯେ କୌଣସି ବୌଦ୍ଧିକ ବିଷୟକୁ ବୁଝାଇବାକୁ ମାଧ୍ୟମ ହେଉଥିବା ଆବଶ୍ୟକ । ଇଂରାଜୀ ଭାଷା ଯେକୌଣସି ବିଷୟକୁ ବୁଝାଇବାର ମାଧ୍ୟମ ହେବା ପଛରେ ନାନା ଐତିହାସିକ କାରଣ ରହିଛି । ଇଂରେଜମାନେ ସାମ୍ରାଜ୍ୟବାଦ ବିସ୍ତାର କରିବାକୁ ଯାଇ ପୃଥିବୀର ବିଭିନ୍ନ ସ୍ଥାନର ଭାଷାମାନଙ୍କରୁ ବହୁ ଶବ୍ଦ ଆଣି ଇଂରାଜୀ ଭାଷାରେ ମିଶାଇଛନ୍ତି । ହଜାର ହଜାର ବିଦେଶୀ ଶବ୍ଦକୁ ଆଣି ଇଂରାଜୀ ଭାଷାରେ ଏପରି

ମିଶାଇ ଦିଆଯାଇଛି ଯେ ସେଗୁଡ଼ିକ କାଳକ୍ରମେ ଇଂରାଜୀ ଭାଷାର ଅଂଶବିଶେଷ ହୋଇ ଯାଇଛନ୍ତି । ଜ୍ଞାନ ବିଜ୍ଞାନର ଯେତିକି ବିକାଶ ହେଉଛି, ବିଭିନ୍ନ କ୍ଷେତ୍ରରେ ନୂଆ ନୂଆ ଜ୍ଞାନ ପ୍ରକାଶ ପାଉଛି । ସେ ସବୁକୁ ବୁଝାଇବା ପାଇଁ ଭାଷା ସମର୍ଥ ହେବାକୁ ହେଲେ ନୂଆ ନୂଆ ଶବ୍ଦ ଭାଷାରେ ସୃଷ୍ଟି କରିବାକୁ ହେବ ବା ଅନ୍ୟ ଭାଷାରୁ ଗ୍ରହଣ କରିବାକୁ ହେବ । ଭାଷା ପ୍ରସାରଣଶୀଳ ଓ ନମନୀୟ ହେଲେ ଯାଇ ଏହାର ସାମର୍ଥ୍ୟ ବୃଦ୍ଧିପାଇବ ଓ ଏହା ଜ୍ଞାନର ଯେକୌଣସି କ୍ଷେତ୍ରକୁ ବୁଝାଇବା ପାଇଁ ବୈଷୟିକ ପରିଭାଷା ଓ ଶବ୍ଦ ସମ୍ଭାର ସୃଷ୍ଟି କରିପାରିବ । ଏହି ଦୃଷ୍ଟିରୁ ଦେଖିଲେ ବିନୋଦ ଓଡ଼ିଆ ଭାଷାକୁ ସମୃଦ୍ଧ କରିବା ପାଇଁ ପ୍ରୟାସ କରିଛନ୍ତି । ପଦାର୍ଥ ବିଜ୍ଞାନର ଅଣୁ ପରମାଣୁକୁ ବୁଝାଇବା ପାଇଁ ବା ଚିକିତ୍ସା ବିଜ୍ଞାନର ବିଷୟ ରକ୍ତ, ହୃତପିଣ୍ଡକୁ ବୁଝାଇବା ପାଇଁ ସେ ଓଡ଼ିଆଭାଷାକୁ ମାଧ୍ୟମ କରି ସେସବୁକୁ ଅତି ସରଳ, ସାବଲୀଳ ଓ ସୁନ୍ଦର ବୋଧଗମ୍ୟ ଭାଷାରେ ବ୍ୟକ୍ତ କରି ପାରିଛନ୍ତି । ଭାଷା ସମୃଦ୍ଧ ହେବାକୁ ହେଲେ ଜ୍ଞାନର ସବୁ ବିଭାଗ ଉପରେ ପୁସ୍ତକ ଲେଖାଯିବା ଦରକାର ଓ ତା ସହିତ ବହୁ ଗୁଣାତ୍ମକ ପୁସ୍ତକ ଭାଷାରେ ଅନୁବାଦିତ ହେବା ଆବଶ୍ୟକ । ତଦ୍ୱାରା କାଳକ୍ରମେ ଭାଷା ଭିତରକୁ ନାନା ନୂଆ ନୂଆ ଶବ୍ଦ ଆସିପାରିବ । ଏହି ଦୃଷ୍ଟିରୁ ବିଚାର କଲେ ଜ୍ଞାନମଣ୍ଡଳ ରଚନା କରିବାକୁ ଯାଇ ସେ ଓଡ଼ିଆ ଭାଷାକୁ ସମୃଦ୍ଧ କରିବା ସହ ଏହା ଯେ ଜ୍ଞାନ ବିଜ୍ଞାନର ଭାଷା ହୋଇପାରିବ ସେଥିରେ ପଥ ପ୍ରଦର୍ଶକ ହୋଇଛନ୍ତି ।

୧୯୫୪ ଆରମ୍ଭରୁ ଜ୍ଞାନମଣ୍ଡଳ କାର୍ଯ୍ୟରେ ସେ ନିଜକୁ ନିୟୋଜିତ ରଖିଲେ । ପ୍ରଥମ ଜ୍ଞାନମଣ୍ଡଳ ଖଣ୍ଡଟି ୧୯୬୦ ଡିସେମ୍ବର ୨ ତାରିଖରେ ଡ. ହରେକୃଷ୍ଣ ମହତାବଙ୍କ ଦ୍ୱାରା ଉନ୍ମୋଚିତ ହୋଇଥିଲା । ଲକ୍ଷ୍ୟ ରଖିଥିଲେ ଓଡ଼ିଆରେ ୬୦ ଖଣ୍ଡରେ ଜ୍ଞାନମଣ୍ଡଳ କାର୍ଯ୍ୟ ସମାପ୍ତ କରିବେ । ତା ସହିତ ସୁଖପାଠ୍ୟ ୩୬୫ ଖଣ୍ଡ ବହି ଲେଖିବେ, ଯାହାକୁ ଯେକୌଣସି ସାକ୍ଷର ବ୍ୟକ୍ତି ପଢ଼ି ବୁଝିପାରିବେ । ଏତଦ୍‌ବ୍ୟତୀତ ଚିଲଡ୍ରେନ୍‌ସ ଏନସାଇକ୍ଲୋପେଡିଆ ମଧ୍ୟ କିଶୋର ଛାତ୍ର ଛାତ୍ରୀଙ୍କ ପାଇଁ ପ୍ରସ୍ତୁତ କରିବେ । ଆଜିର ଜ୍ଞାନର ବିସ୍ଫୋରଣ ଯୁଗରେ ଜ୍ଞାନର ଯେକୌଣସି କ୍ଷେତ୍ରରେ ଏତେ ବିଶେଷତା ବା ସ୍ପେସାଲାଇଜେସନ ହେଉଛି ଯେ ଜଣେ ଉଚ୍ଚ ଶିକ୍ଷିତ ବ୍ୟକ୍ତି ନିଜ ପରିସର ବାହାରେ ଜାଣିବାର ଅବକାଶ ରହୁନାହିଁ । ଚିକିତ୍ସା ବିଜ୍ଞାନର କୌଣସି କ୍ଷେତ୍ରରେ ବିଶେଷତା ଅର୍ଜନ କରିଥିବା ବ୍ୟକ୍ତି ଇତିହାସ, ଦର୍ଶନ, ନୃତତ୍ତ୍ୱ, ବିଷୟରେ ଜାଣିବାର ଅବକାଶ ରହୁନାହିଁ । କିମ୍ବା ଦର୍ଶନ ପଢ଼ିଥିବା ଜଣେ ବ୍ୟକ୍ତି ଭୂଗୋଳ, ଅର୍ଥନୀତି, ପଦାର୍ଥ ବିଜ୍ଞାନ ବିଷୟରେ ଜାଣିବାକୁ ସମର୍ଥ ହେଉନାହିଁ । ସୁତରାଂ ଜ୍ଞାନର ଯେତେ ଯେତେ କ୍ଷେତ୍ର ବା ବିଭାଗ ରହିଛି ସେସବୁ ବିଷୟରେ ସାଧାରଣ ଧାରଣା ପାଇବା ପରି କିଛି ବହି ରହିଲେ ତାହା

ସାଧାରଣ ପାଠକ ଓ ଏପରିକି ଉଚ୍ଚ ଶିକ୍ଷା ପ୍ରାପ୍ତ ଲୋକମାନଙ୍କର ଆବଶ୍ୟକତାକୁ ପୂରଣ କରିପାରିବ । ବସ୍ତୁତଃ ଜ୍ଞାନର କିପରି ସମାଜୀକରଣ ହୋଇ ପାରିବ ସେପାଇଁ ସେ ଗଂଭୀର ଭାବରେ ଚିନ୍ତା ପ୍ରକଟ କରିଥିଲେ । ଏହି ପରିପ୍ରେକ୍ଷୀରେ ସେ ଯେପରି ସରଳ ଓ ସାବଲୀଳ ଭାଷାରେ ଜଟିଳ ଓ ବୈଷୟିକ ଭାବନା ଗୁଡ଼ିକୁ ବହି ଆକାରରେ ଲେଖି ଯାଇଛନ୍ତି ତାହା ତାଙ୍କର ସୃଜନଶୀଳତାର ସ୍ୱାକ୍ଷର ବହନ କରେ । ଏହା ସହିତ ସେ ସେହି ବହିମାନଙ୍କର ନାମ ଏତେ ମନଛୁଆଁ ଭାଷାରେ ବ୍ୟକ୍ତ କରିଛନ୍ତି ଯାହା ଯେକୌଣସି ଜଣେ ସାଧାରଣ ପାଠକର ଦୃଷ୍ଟି ଆକର୍ଷଣ କରିବ । ଉଦାହରଣ ସ୍ୱରୂପ ଶରୀରରେ ରକ୍ତ ସଂଚାଳନକୁ ବୁଝାଇବା ପାଇଁ ବହିର ନାମ 'ଚଳନ୍ତା ରାଇଜର ଅମୁହାଁ ନଈ', ମଣିଷର ଦାନ୍ତ ବିଷୟକୁ ବୁଝାଇବା ପାଇଁ ବହିର ନାମ 'ଶରୀର ଦୁର୍ଗର ବତିଶ ପ୍ରହରୀ', ଅଣୁ ପରମାଣୁକୁ ବୁଝାଇବା ପାଇଁ ବହିର ନାମ 'ତିନିଖଣ୍ଡ କାଉଁରୀ ହାଡ', ସୂର୍ଯ୍ୟ ବିଷୟର ବହିଟିର ନାମ 'ସେ ଚୁଲି କେବେ ଲିଭିବ ନାହିଁ', ମହୁଚାଷ ବିଷୟକ ବହିର ନାମ 'ମିଠାଇ ଦେହରେ ଲାଗିଲା ଡେଣା', ଇତ୍ୟାଦି ଇତ୍ୟାଦି । ସମସ୍ତ ଆବଶ୍ୟକୀୟ ତଥ୍ୟଗତ ବିବରଣୀ ସହ ଏହି ସଂକ୍ରାନ୍ତୀୟ ବହିଗୁଡ଼ିକ ଯେପରି ସୁଖପାଠ୍ୟ ସେହିପରି ଉତ୍ସାହଜନକ ଓ କୌତୂହଳପ୍ରଦ । ଏକ ଅଭିନବ ଆତ୍ମସମୀକ୍ଷା ମୂଳକ ପୁସ୍ତକ "ଋଣ ପରିଶୋଧ" ପରି ବହୁ ଉପାଦେୟ ପୁସ୍ତକ ବି ଲେଖି ଯାଇଛନ୍ତି । ସେହିପରି ସେ ବହୁ ବିଶିଷ୍ଟ ବ୍ୟକ୍ତିଙ୍କର ଜୀବନୀ ମଧ୍ୟ ଲେଖିଛନ୍ତି । ଓଡ଼ିଶାର ଓ ଭାରତର ବହୁ ଖ୍ୟାତି ସମ୍ପନ୍ନ ବ୍ୟକ୍ତିମାନଙ୍କର ଯେଉଁ ଜୀବନୀ ଗୁଡ଼ିକୁ ସେ ଲେଖି ଯାଇଛନ୍ତି ତାହା ପଢ଼ିଲେ ଜଣେ ବ୍ୟକ୍ତିଙ୍କର ଜୀବନ, ସମାଜ ପ୍ରତି ଅବଦାନ, ସାଧନା ଓ ମହତ୍ତ୍ୱର ଭାବନା ବିଷୟରେ ଜଣେ ପାଠକ ସମ୍ୟକ ଧାରଣା ଲାଭ କରିପାରିବ । ତେବେ ତାଙ୍କ ପ୍ରସ୍ତାବିତ ୩୬୫ ଖଣ୍ଡ ପୁସ୍ତକ ମଧ୍ୟରୁ ପାଖାପାଖି ୧୦୦ଖଣ୍ଡ ସେ ଲେଖିବାକୁ ସମର୍ଥ ହୋଇଛନ୍ତି । ଏହା ସହିତ ୬୦ ଖଣ୍ଡରେ ଜ୍ଞାନମଣ୍ଡଳକୁ ଲେଖିବାକୁ ଲକ୍ଷ୍ୟ ରଖିଥିଲେ ବି ୪୦ ଖଣ୍ଡ ସେ ସମାପ୍ତ କରିପାରିଛନ୍ତି । ତେବେ ଅବଶିଷ୍ଟ ବିଷୟ ପାଇଁ ସେ ଆବଶ୍ୟକୀୟ ତଥ୍ୟ, ସବିଶେଷ ବିବରଣୀ ହଜାର ହଜାର ଫାଇଲ କରି ସଂରକ୍ଷଣ କରି ଯାଇଛନ୍ତି । ଗୋଟିଏ ଫାଇଲରେ ଗୋଟିଏ ପ୍ରସଙ୍ଗ ଉପରେ ବହୁ ବ୍ୟକ୍ତିଙ୍କର ଉପାଦେୟ ଲେଖା, ଶହ ଶହ ରେଫରେନ୍ସକୁ ସୁସଂଯୋଜିତ କରି ସେ ସଜାଡ଼ି ରଖିଛନ୍ତି । ସେହି ଫାଇଲ ମାନଙ୍କରେ ଏତିକି ତଥ୍ୟ ଓ ରେଫରେନ୍ସ ରହିଛି ଯେ କୌଣସି ପ୍ରସଙ୍ଗ ଯଥା ମହାକାଶ ଯାତ୍ରା, ହୃତପିଣ୍ଡ ରୋପଣ, ମଣିଷର ମସ୍ତିଷ୍କ, ମାଛ ଚାଷ ଇତ୍ୟାଦି ପ୍ରତ୍ୟେକ ବିଷୟରେ ଆବଶ୍ୟକୀୟ ଚିତ୍ର ସହ ଏକ ବଡ଼ ବହି ଲେଖାଯାଇ ପାରିବ । ବିଜ୍ଞାନ ସମ୍ମତ ଧାରାରେ ଜ୍ଞାନକୁ ଶୃଙ୍ଖଳିତ ଓ ସଂଗଠିତ କରି ରଖିବାକୁ ହଜାର ହଜାର ଫାଇଲ ଭିତରେ ତଥ୍ୟ ସମ୍ଭାରକୁ ସଜାଡ଼ି ରଖିଛନ୍ତି । ଏହା ସହିତ ଜ୍ଞାନର କ୍ରମବର୍ଦ୍ଧିଷ୍ଣୁ ବିକାଶ ଧାରାରେ ନୂତନ

ଆବିଷ୍କାର ଓ ତଥ୍ୟକୁ ଫାଇଲରେ ରଖିଛନ୍ତି ଯେପରିକି ପରବର୍ତ୍ତୀ ପରିବର୍ଦ୍ଧିତ ସଂସ୍କରଣରେ ତାହାକୁ ସ୍ଥାନିତ କରିହେବ । ବିନୋଦ କାନୁନଗୋ ତାଙ୍କ ଆତ୍ମଜୀବନୀରେ ତାଙ୍କ ଦୁଇ ଗୁରୁଙ୍କ କଥା କହିଛନ୍ତି - ସେମାନେ ହେଲେ 'ପୁସ୍ତକ' ଓ 'ଫାଇଲ' । ସେ ନିଜେ ଲେଖିଛନ୍ତି ଯେ ୨୦ ହଜାର ବିଷୟ ଉପରେ ଲେଖିବାକୁ ସେ ସେତିକି ସଂଖ୍ୟକ ଫାଇଲ କରି ତଥ୍ୟ, ବିଭିନ୍ନ ବିବରଣୀ ଓ ଆବଶ୍ୟକୀୟ ଉପାଦାନ ରଖିଛନ୍ତି । ତେବେ ସେ ଏହା ମଧ୍ୟ ସ୍ୱୀକାର କରିଛନ୍ତି ଯେ ବିଭିନ୍ନ ପ୍ରସଙ୍ଗ ଉପରେ ତାଙ୍କ ପାଖରେ ଯେତିକି ତଥ୍ୟ ଓ ଉପାଦାନ ରହିଛି ତାର କୋଡ଼ିଏ ଭାଗରୁ ଭାଗେ ମଧ୍ୟ ସେ ନିଜ ଜୀବନ କାଳ ଭିତରେ ବିନିଯୋଗ କରିପାରିବେ ନାହିଁ ।

ବିନୋଦ ବାବୁ ପ୍ରାୟ ୩୬ ବର୍ଷ ଧରି ଜ୍ଞାନମଣ୍ଡଳ ଓ ଅନ୍ୟାନ୍ୟ ପୁସ୍ତକ ରଚନାରେ ଜୀବନର ଶେଷ ପର୍ଯ୍ୟନ୍ତ କାମ କରିଛନ୍ତି । ସେ ଏହି କାମ ଆରମ୍ଭ କଲାବେଳେ ଏକ ପ୍ରକାର ନିଃସ୍ୱ ଥିଲେ କହିଲେ ଅତ୍ୟୁକ୍ତି ହେବନାହିଁ । ଜ୍ଞାନମଣ୍ଡଳ ଛାପିବା, ବିକ୍ରି କରିବାରେ ବହୁ ଆର୍ଥିକ ଦୁର୍ଗତିର ସମ୍ମୁଖୀନ ହୋଇଛନ୍ତି । ତାଙ୍କର ପ୍ରଜ୍ଞା ଓ ପ୍ରତିଭାକୁ ଯଦି ପାଠ୍ୟ ପୁସ୍ତକ ପ୍ରଣୟନ ପାଇଁ ନିୟୋଜିତ କରିଥାନ୍ତେ, ତେବେ ହୁଏତ ସେ ବହୁ ଅର୍ଥର ଅଧିକାରୀ ହୋଇଥାନ୍ତେ । କିନ୍ତୁ ଏସବୁ ପ୍ରଲୋଭନରୁ ମୁକ୍ତ ରହି ସେ ଓଡ଼ିଆ ଭାଷାକୁ ଜ୍ଞାନ ବିଜ୍ଞାନର ଭାଷା ଭାବେ ସମୃଦ୍ଧ କରିବାକୁ ଯେପରି ପ୍ରୟାସ କରିଛନ୍ତି ତାହାଦ୍ୱାରା ଓଡ଼ିଆ ଜାତି ତାଙ୍କ ପାଖରେ ଋଣୀ ହୋଇ ଯାଇଛି । ତାଙ୍କ "ଋଣ ପରିଶୋଧ" ବହିରେ ସେ ଜୀବନରେ ଯାହାଠାରୁ ଯତ୍‌କିଞ୍ଚିତ୍ ସାହାଯ୍ୟ ଓ ସହଯୋଗ ପାଇଛନ୍ତି ତାଙ୍କ ପ୍ରତି କୃତଜ୍ଞତା ପ୍ରକାଶ କରିଛନ୍ତି । କିନ୍ତୁ ସେ ଯେଉଁଭଳି ଜ୍ଞାନର ସମାଜୀକରଣ କରି ସାମାନ୍ୟ ପାଠ ପଢ଼ିଥିବା ଅପାଠୁଆ ମଣିଷ ପାଖରେ ଜ୍ଞାନର ଦିଗନ୍ତକୁ ବିସ୍ତାର କରି ଦେଇଛନ୍ତି ସେଥିପାଇଁ ସେ ଏକ ଜାତିକୁ ତାଙ୍କ ପାଖରେ ଋଣୀ କରିଛନ୍ତି । ସୁଖର କଥା ତାଙ୍କର କେତେକ ବହି ହିନ୍ଦୀ ଓ ଅନ୍ୟାନ୍ୟ ଭାରତୀୟ ଭାଷାମାନଙ୍କରେ ଅନୂଦିତ ହୋଇଛି । ତାଙ୍କର ନିଷ୍ଠା, ସାଧନା ଓ ରଚନା ଜାତୀୟ ସ୍ତରରେ ସ୍ୱୀକୃତି ଲାଭ କରିଛି ।

ଏକ ଜାତିର ବିକାଶର ଆଧାର କ'ଣ ପ୍ରଶ୍ନଟିକୁ ନାନା ଦିଗରୁ ବିଚାର କରାଯାଇପାରେ । ତେବେ ଗୋଟିଏ ମତ ହେଉଛି ଜ୍ଞାନ ଓ ମାନବିକ ଉତ୍କର୍ଷ ହିଁ ଜାତିର ବିକାଶର ମୌଳିକ ଆଧାର । ଯେତେବେଳେ ଜ୍ଞାନର ପ୍ରଶ୍ନ ଆସେ ସେତେବେଳେ ଗୋଟିଏ ଜାତିର ଭାଷା ଓ ସେହି ଭାଷାର ଜ୍ଞାନ ଭଣ୍ଡାରର ପ୍ରସଙ୍ଗ ଆସିଥାଏ । ଉନ୍ନତ ମାନର ପୁସ୍ତକ ହିଁ ଜ୍ଞାନ ବିକାଶର ଗୋଟିଏ ବଡ଼ ଉପାଦାନ । ଉଚ୍ଚମାନର ପୁସ୍ତକ ଓ ଜର୍ଣ୍ଣାଲମାନଙ୍କର ଗବେଷଣା ଲବ୍ଧ ଜ୍ଞାନ ହିଁ ଜ୍ଞାନ, ବିକାଶର ମୂଳ ସ୍ରୋତ ବୋଲି ଗ୍ରହଣ

କରାଯାଏ । ଉପାଦେୟ ପୁସ୍ତକ ଅଭାବରେ ଭଗବାନ୍ ନୀରବ, ନ୍ୟାୟ ସୁପ୍ତ, ବିଜ୍ଞାନର ଗତି ରୁଦ୍ଧ, ଦର୍ଶନ ପଙ୍ଗୁ, ବିଦ୍ୟା ମୂକ - ଅନ୍ୟ ସବୁ କିଛି ଅନ୍ଧକାର ଗର୍ଭରେ ସଂପୂର୍ଣ୍ଣ ଅସ୍ପଷ୍ଟ - ଏହି ବିଚାରବୋଧ ବି ବିନୋଦଙ୍କ ସ୍ରଷ୍ଟା-ଜୀବନ ପାଇଁ ପ୍ରେରଣାର ଉତ୍ସ ହୋଇଛି ବୋଲି ସେ ସ୍ୱୀକାର କରିଛନ୍ତି । (ପାଠ ପଢ଼େ ପଢ଼େ ଅପାଠୁଆ - ପୃଷ୍ଠା ୩୦୦) ଗୋଟିଏ ପଟେ ଜ୍ଞାନ ପିପାସା ଓ ଅନ୍ୟ ପଟେ ମାନବବାଦୀ ଜୀବନଦୃଷ୍ଟି ବିନୋଦଙ୍କ ବ୍ୟକ୍ତିତ୍ୱର ବୈଶିଷ୍ଟ୍ୟ । ସେ ଥିଲେ ଜ୍ଞାନ ତପସ୍ୱୀ ଓ ବ୍ୟକ୍ତିଗତ ଦୃଷ୍ଟିଭଙ୍ଗୀରେ ଜଣେ ମାନବ ଦରଦୀ ସମ୍ବେଦନଶୀଳ ମଣିଷ । ଜଣେ ଜଣେ ବ୍ୟକ୍ତିଙ୍କର ସାଧନା ଓ ନୀତିନିଷ୍ଠତା ସମାଜର ଗୁଣାତ୍ମକ ବିକାଶରେ ନିର୍ଣ୍ଣାୟକ ହୋଇଥାଏ । ବିନୋଦ କାନୁନଗୋ ଓଡ଼ିଆ ଭାଷା ସାହିତ୍ୟକୁ ଓ ସାଧାରଣ ଜୀବନ ପ୍ରବାହକୁ ଯେଉଁ ଅବଦାନ ଦେଇଛନ୍ତି ତାହା ସମୟର ବେଳାଭୂମିରେ ଯେ ବହୁଦିନ ଧରି ଅକ୍ଷୁର୍ଣ୍ଣ ରହିବ ଏହା ନିଃସନ୍ଦେହ ମନେ ହୁଏ ।



# ସ୍ମୃତିରେ ଚିତ୍ତଭାଇ

ସ୍ୱାଧୀନତାସଂଗ୍ରାମୀ, ସୁଲେଖକ, ସମାଜସେବୀ, ଶିକ୍ଷାବିତ୍, ବୁଦ୍ଧିଜୀବୀ ଓ ମାନବବାଦୀ ଚିନ୍ତାନାୟକ ଭାବେ ଚିତ୍ତରଞ୍ଜନ ଦାସ (୧୯୨୩-୨୦୧୧) ଏକ ଅନନ୍ୟ ବ୍ୟକ୍ତିତ୍ୱ । ଓଡ଼ିଶାର ଲେଖକ, ବୁଦ୍ଧିଜୀବୀ ଓ ସାଧାରଣ ସ୍ତରରେ ସେ ବେଶ୍ ସୁପରିଚିତ । ଜଣେ ଉଚ୍ଚକୋଟୀର ପ୍ରାବନ୍ଧିକ, ସ୍ତମ୍ଭକାର, ଅନୁବାଦକ ଓ ଜୀବନୀ ଲେଖକ ଭାବରେ ତାଙ୍କର ଏକ ସ୍ୱତନ୍ତ୍ର ପରିଚୟ ରହିଛି । ଗୁଣାତ୍ମକ ଓ ପରିମାଣାତ୍ମକ କୃତି ଦୃଷ୍ଟିରୁ ଓଡ଼ିଶାରେ ତାଙ୍କର ସ୍ଥାନ ଅଦ୍ୱିତୀୟ । ସେ ବହୁ ଭାଷାରେ ପଣ୍ଡିତ ଓ ପୃଥିବୀର ବିଭିନ୍ନ ଦେଶ ଭ୍ରମଣ କରି ନାନା ଦେଶର ସାହିତ୍ୟ, ସଭ୍ୟତା, ଦର୍ଶନ ଓ ସାମାଜିକ ଜୀବନ ଉପରେ ସେ ବହୁ ଅନୁଭୂତି ସଂପନ୍ନ । ଦର୍ଶନ, ସାହିତ୍ୟ, ଶିକ୍ଷା ଓ ମନୋବିଜ୍ଞାନ କ୍ଷେତ୍ରରେ ତାଙ୍କର ଅଧ୍ୟୟନ ବେଶ୍ ଗଭୀର । ତାଙ୍କ ଲିଖନଭଙ୍ଗୀର ସୌନ୍ଦର୍ଯ୍ୟ ଓଡ଼ିଆ ଭାଷାରେ ସ୍ୱତନ୍ତ୍ର । ତାଙ୍କ ସୃଜନାତ୍ମକ ପରିଧି ବହୁ ବିସ୍ତାରିତ ଓ ପରିବ୍ୟାପ୍ତ । ତାଙ୍କର ବୁଦ୍ଧିଦୀପ୍ତ ପାଣ୍ଡିତ୍ୟ, ଉଦାର ମାନବିକତା ଓ ସହୃଦୟତାର ଆଶ୍ଳେଷ ଯୋଗୁଁ ସେ ଓଡ଼ିଶାରେ "ଚିତ୍ତଭାଇ" ଭାବେ ପରିଚିତ । ଜଣେ ଯେତେ କନିଷ୍ଠ ହେଲେ ବି କେହି ତାଙ୍କୁ ସାର୍ କୁହନ୍ତି ନାହିଁ, ସମସ୍ତଙ୍କର ଆଦରର ସେ "ଚିତ୍ତଭାଇ" । ଜୀବନର ସକଳ ସମ୍ବନ୍ଧ, ସ୍ନେହ, ଅନୁରାଗ ଦେଇ ସେ ଅନ୍ୟକୁ ଏପରି ଆପଣାର କରିନିଅନ୍ତି ଯେ ସେ ସମସ୍ତଙ୍କର ଆପଣାର ହୋଇଉଠନ୍ତି । ଅତି ସାଧାରଣ ଜୀବନ, ସମସ୍ତଙ୍କ ପ୍ରତି ମାନବସୁଲଭ ଆତ୍ମୀୟତା ଭିତରୁ ତାଙ୍କ ମଣିଷପଣିଆର ପରିଚୟ ମିଳିଥାଏ । ତେବେ ତାଙ୍କର ପ୍ରଜ୍ଞା, ପାଣ୍ଡିତ୍ୟ ଓ ପ୍ରତିଭା ଅସାଧାରଣ କହିଲେ ଅତ୍ୟୁକ୍ତି ହେବ ନାହିଁ । ତାଙ୍କର କୃତି, ସାହିତ୍ୟିକ ଅବଦାନ ବା ଚିନ୍ତାମାନସ ଉପରେ ଗ୍ରନ୍ଥ ଲେଖାଯାଇ ପାରିବ । ମୋର ବିଶ୍ୱାସ ତାଙ୍କର ଅବଦାନର ଦିଗନ୍ତ ଏତେ ପରିବ୍ୟାପ୍ତ ଯେ ତାଙ୍କ ଉପରେ ଉପଯୁକ୍ତ ଗବେଷଣା ଏ ପର୍ଯ୍ୟନ୍ତ ହୋଇ ନାହିଁ । ଗୋଟିଏ କ୍ଷୁଦ୍ର ପ୍ରବନ୍ଧର ପରିସୀମା ଭିତରେ ତାଙ୍କ ଅବଦାନର ମୂଲ୍ୟାୟନ ସମ୍ଭବ ନୁହେଁ । ତାଙ୍କ ରଚିତ ସମସ୍ତ କୃତିମାନଙ୍କୁ ପଢ଼ିବା ମଧ୍ୟ ମୋ ଦ୍ୱାରା ସମ୍ଭବ ହୋଇପାରି ନାହିଁ । ତେଣୁ ତାଙ୍କ ସଂପର୍କରେ ଏକ ଅନୁଶୀଳନାତ୍ମକ ବ୍ୟାଖ୍ୟାନ ଦେବା ମୋର ସାଧ୍ୟାତୀତ । ଏହି ଲେଖାଟିରେ ମୋର

ତାଙ୍କ ସହ ପରିଚୟ ଓ ସଂପର୍କ ନେଇ ସାମାନ୍ୟ ସୂଚନା ଦେବା ସହ ମୁଁ ପଢ଼ିଥିବା ତାଙ୍କର କିଛି କୃତି ଉପରେ ସଂକ୍ଷିପ୍ତ ମତ ଉପସ୍ଥାପନ କରିବାକୁ ଲକ୍ଷ୍ୟ ରଖିଛି ।

ଚିତ୍ତଭାଇଙ୍କୁ ଦେଖିବାର ବହୁ ପୂର୍ବରୁ ମୁଁ ତାଙ୍କ ବିଷୟରେ ଜାଣିବାର ଅବକାଶ ପାଇଥିଲି । ଆମ ଗ୍ରାମ ଢେଙ୍କାନାଳ ଜିଲ୍ଲାର ଭୁବନ ସହ ତାଙ୍କ ପରିବାରର ସଂପର୍କ ନିବିଡ଼ ଥିଲା । ଚିତ୍ତଭାଇଙ୍କର ବଡ଼ ଭାଇ ଡାକ୍ତର ଭାଗବତ ଦାସ ଭୁବନରେ କିଛି ବର୍ଷ ଡାକ୍ତର ରହିଥିଲେ । ଚିତ୍ତଭାଇ ସେହି ଅବସରରେ ଭୁବନ ଆସିଥିବା ମୁଁ ଶୁଣିଛି । ମୁଁ ଅଷ୍ଟମ ଶ୍ରେଣୀରେ ପଢୁଥିବା ବେଳେ ୧୯୬୩ରେ ପ୍ରଥମେ ତାଙ୍କର ଏକ ବହି "ଡେନମାର୍କ ଚିଠି" ପଢ଼ିବାର ସୁଯୋଗ ପାଇଥିଲି । ଏହି ବହିଟି ପଢ଼ିବା ପରେ ମାନସିକ ସ୍ତରରେ ମୋର ତାଙ୍କ ସହ ପରିଚୟ ହୋଇଥିଲା । ଏହାର କିଛି ବର୍ଷ ପରେ ମୁଁ ରେଭେନ୍‌ସା କଲେଜରେ ବି.ଏ. ପଢୁଥିବା ସମୟରେ ପୂର୍ବ ଛାତ୍ରାବାସରେ ୧୯୬୯ ରେ ତାଙ୍କର ଏକ ଭାଷଣ ଶୁଣିବାର ଅବକାଶ ପାଇଥିଲି । ସେହି ଭାଷଣରେ ମୁଁ ଗଭୀର ପ୍ରଭାବିତ ହୋଇଥିଲି । ତାପରେ ବି.ଏ. ପାସ୍‌କରି ମୁଁ ଉତ୍କଳ ବିଶ୍ୱବିଦ୍ୟାଳୟରେ ଦର୍ଶନଶାସ୍ତ୍ରରେ ଏମ.ଏ. ପଢ଼ିଲି । ୧୯୭୨ ମସିହାରେ ଶ୍ରୀଅରବିନ୍ଦଙ୍କ ଜନ୍ମଶତବାର୍ଷିକୀ ଉପଲକ୍ଷେ ରେଭେନ୍‌ସା କଲେଜ ପରିସରରେ ଶ୍ରୀଅରବିନ୍ଦଙ୍କ ଉପରେ ଏକ ଚାରିଦିନିଆ ସମ୍ମିଳନୀ ହୋଇଥିଲା । ପଣ୍ଡିଚେରୀ ଶ୍ରୀଅରବିନ୍ଦ ଆଶ୍ରମର କେତେକ ବିଶିଷ୍ଟ ବ୍ୟକ୍ତି ଓ କିଛି ପ୍ରବୀଣ ଦର୍ଶନ ଅଧ୍ୟାପକ ଶ୍ରୀଅରବିନ୍ଦଙ୍କ ଦର୍ଶନ ଉପରେ ଆଲୋଚନା ପାଇଁ ଏହି ସମ୍ମିଳନୀରେ ଯୋଗଦେଇଥାନ୍ତି । ମୁଁ ବାଣୀବିହାରରୁ ଆସି ସେହି ସମ୍ମିଳନୀରେ ଯୋଗ ଦେଇଥିଲି । ଅଧିକାଂଶ ବକ୍ତା ଇଂରାଜୀରେ ଆଲୋଚନା କରୁଥାନ୍ତି । ଦିନଯାକର ଆଲୋଚନା ପରେ ଚିତ୍ତଭାଇ ସବୁ ବକ୍ତାଙ୍କ ଭାଷଣର ସାରାଂଶ ଓଡ଼ିଆରେ ବୁଝାଉଥାନ୍ତି । ଦିନବେଳେ ଆଲୋଚନା ଅବସରରେ କିଛି ପ୍ରଶ୍ନୋତ୍ତର ହେଉଥାଏ । ମୁଁ ଭାଷଣମାନଙ୍କୁ ଶୁଣୁଥାଏ ଓ ନୋଟ୍ କରୁଥାଏ । ଯେଉଁଠି କିଛି ବୁଝିପାରୁ ନଥାଏ ତାକୁ ମୁଁ ଲେଖି ରଖୁଥାଏ ଓ ପ୍ରଶ୍ନୋତ୍ତର ସମୟରେ ପଚାରୁଥାଏ । ଏହି କାରଣରୁ ଚିତ୍ତଭାଇଙ୍କର ମୁଁ ଦୃଷ୍ଟି ଆକର୍ଷଣ କରିଥିଲି ଓ ସେ ମୋ ସହ କଥା ହେଉଥିଲେ । ମୋର ପରିଚୟ ପାଇବା ପରେ ମୋତେ ସେ ସ୍ନେହରେ ଆପଣାର କରିନେଲେ । ମୁଁ ସେତେବେଳେ ଏମ.ଏ. ଶ୍ରେଣୀର ଛାତ୍ର ଥାଏ । ଏହି ସାମାନ୍ୟ ପରିଚୟରୁ ଧୀରେ ଧୀରେ ତାଙ୍କ ସହ ସଂପର୍କ ନିବିଡ଼ ହେବାକୁ ଲାଗିଲା । ମୁଁ ୧୯୭୪ ରେ ଅଧ୍ୟାପନା ବୃତ୍ତିରେ ଯୋଗ ଦେଲି । କଲେଜରେ ଅଧ୍ୟାପକ ହେବା ପରେ ବିଭିନ୍ନ ସମୟରେ ମୁଁ ଅବକାଶ ପାଇଲେ ତାଙ୍କୁ କଲେଜମାନଙ୍କୁ ଆମନ୍ତ୍ରଣ କରିବାର ସୁଯୋଗ ନେଉଥିଲି । ସେ ମଧ୍ୟ ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ରର ବା କୌଣସି ସାଂସ୍କୃତିକ କାର୍ଯ୍ୟକ୍ରମରେ

ଯୋଗ ଦେବାକୁ ମୁଁ ଥିବା ସହରକୁ ଯାଉଥିଲେ ମୋତେ ଜଣାଉଥିଲେ । ୧୯୭୬ରେ କଟକର "ଦି ୟୁନିଭର୍ସ"ଠାରେ ବୌଦ୍ଧ ଧର୍ମ ଓ ଜୈନଧର୍ମ ଉପରେ ହୋଇଥିବା ଆନ୍ତର୍ଜାତିକ ସମ୍ମିଳନୀରେ ନିବନ୍ଧଟିଏ ଉପସ୍ଥାପନ କରିବାକୁ ସେ ମୋତେ ଲେଖିଥିଲେ ଓ ମୁଁ ତାଙ୍କର ନିର୍ଦ୍ଦେଶକୁ ରକ୍ଷା କରିଥିଲି । କୌଣସି ପତ୍ର ପତ୍ରିକା ବା ସମ୍ବାଦପତ୍ରରେ ମୋର କିଛି ଲେଖା ଦେଖିଲେ ସେ ଉତ୍ସାହ ଓ ପ୍ରେରଣା ଦେଇ ମୋତେ ପତ୍ର ଲେଖୁଥିଲେ । ଏପରିକି ମୋର ଅନୁରୋଧ କ୍ରମେ ସେ ମୋ ଗାଁ ଭୁବନକୁ ଆସି ଆମ. ମେଳରେ ଦୁଇ ତିନି ଦିନ ରହି ଆମକୁ ଶ୍ରୀଅରବିନ୍ଦଙ୍କ ଦର୍ଶନ ଉପରେ କେତେ କଥା ବୁଝାଇଥିଲେ । ତାଙ୍କ ସହିତ ମୋର ଯୋଗାଯୋଗ ରହିଥିଲା ଓ ମଝିରେ ମଝିରେ ତାଙ୍କୁ ସାକ୍ଷାତ କରିବାର ସୁଯୋଗ ନେଉଥିଲି । ସେ ଥିଲେ ଏକ ଚଳନ୍ତି ଏନ୍‌ସାଇକ୍ଲୋପେଡିଆ; କୌଣସି ବିଷୟରେ ତାଙ୍କ ପାଖରୁ କିଛି ବୁଝିବାକୁ ଚାହିଁଲେ ସେ ତାହା ବୁଝାଇଦେବା ସହ ସେ ସଂପର୍କୀୟ ଲେଖା ବା ପୁସ୍ତକର ସୂଚନା ଦେଉଥିଲେ । ଏତେ ଅନୁଭୂତି, ଜ୍ଞାନ ଓ ପାଣ୍ଡିତ୍ୟର ଅଧିକାରୀ ହୋଇ ମଧ୍ୟ ସେ ଯେଉଁ ସ୍ଥାନକୁ ଯାଉଥିଲେ, ସାଧାରଣ ଭାବେ ପରିବାର ଭିତରେ ରହିବାକୁ ଭଲ ପାଉଥିଲେ । କୌଣସି ପ୍ରକାରର ବିଳାସ ବା ଅୟସର ସେ ସଂପୂର୍ଣ୍ଣ ପରିପନ୍ଥୀ ଥିଲେ ।

ବୟସ ବୃଦ୍ଧି ପାଇବା ସହ ହେତୁବାଦ ମୋତେ ଅଧିକ ଆକୃଷ୍ଟ କଲା । ହେତୁବାଦ ବା ଆନୁଷଙ୍ଗିକ ବିଷୟ ଉପରେ ମୁଁ ସାମାନ୍ୟ କିଛି ଲେଖା ଲେଖି ପାଇଁ ପ୍ରୟାସ କଲି । ମୋ ଜାଣିବାରେ ଚିତ୍ତଭାଇ ହେତୁବାଦୀ ନ ଥିଲେ, ଯଦିବା ତର୍କଶୀଳତା ଓ ବିଚାରଶୀଳତା ଉପରେ ସେ ବହୁ ପ୍ରାଧାନ୍ୟ ଦେଉଥିଲେ । କେତେକ କ୍ଷେତ୍ରରେ ତାଙ୍କ ସହ ମୋର କିଛି ମତାନ୍ତର ହେଉଥିଲା ଓ ବେଳେବେଳେ ମୁଁ ତାଙ୍କୁ ସମାଲୋଚନା ବି କରୁଥିଲି । ତେବେ ତାଙ୍କର ସ୍ନେହ, ଶ୍ରଦ୍ଧା ଓ ଆନ୍ତରିକତା ମୋ ପାଇଁ ଅତୁଟ ରହିଥିଲା । ବହୁ କ୍ଷେତ୍ରରେ ମୁଁ ତାଙ୍କ ବିଶାଳ ହୃଦୟବତ୍ତାର ପରିଚୟ ଲାଭ କରିଛି । ଏହି ପରିପ୍ରେକ୍ଷୀରେ ମୁଁ ଦୁଇଟି ଘଟଣା ବ୍ୟକ୍ତ କରୁଛି । ତାଙ୍କ ଲିଖିତ "ରୋହିତର ଡାଏରୀ" ସିରିଜର ଷୋଡ଼ଶ ଖଣ୍ଡଟି ସେ ମୋତେ ଉତ୍ସର୍ଗ କରିବା ମୋ ପ୍ରତି ତାଙ୍କ ଆନ୍ତରିକତାର ସୂଚନା ଦିଏ । ସେ ବହିଟି ମୁଁ ପାଇବା ପରେ ଅଭିଭୂତ ହେଲି ଯେ ତାଙ୍କ ସ୍ତରର ଜଣେ ଯଶସ୍ୱୀ ଲେଖକ ମୋ ପ୍ରତି ଏତେ ଶ୍ରଦ୍ଧାଶୀଳ ।

ଚିତ୍ତଭାଇଙ୍କ ଅବଦାନ ଓ ପ୍ରୟାସ ଯୋଗୁଁ କଟକର "ଦି ୟୁନିଭର୍ସ" ଆନୁକୂଲ୍ୟରେ "ବିଶ୍ୱନୀଡ଼ ବକ୍ତୃତା" ଅନୁଷ୍ଠିତ ହେଉଥିଲା । ବିଶ୍ୱନୀଡ଼ ବକ୍ତୃତା ଅବସରରେ ଜଣେ ଦୁଇଟି ବିଷୟରେ ଲିଖିତ ପ୍ରବନ୍ଧ ଉପସ୍ଥାପନ କରିବେ ଓ ଏହା ଉପରେ ଭଲ

ଆଲୋଚନା ହେବ । ଚିତ୍ତଭାଇ ସେଠାରେ ନୀରବ ଦର୍ଶକ ଭାବରେ ବସିରହି ସବୁ ଆଲୋଚନା ଶୁଣିବେ କିନ୍ତୁ ନିଜେ କିଛି ବକ୍ତବ୍ୟ ରଖିବେ ନାହିଁ । ୧୯୯୯ ବର୍ଷ ବିଶ୍ୱନୀଡ଼ ବକ୍ତୃତା ଦେବା ପାଇଁ ଚିତ୍ତଭାଇ ମୋ ନାମ ସ୍ଥିର କଲେ ଓ ଗିରିଜା ଭୂଷଣ ପଟ୍ଟନାୟକ ମୋତେ ପତ୍ର ଲେଖି ଲେଖା ପ୍ରସ୍ତୁତ କରିବାକୁ ଜଣାଇଲେ । ଚିତ୍ତଭାଇ ବି ମୋ ପାଇଁ ବିଷୟ ସ୍ଥିର କଲେ, ତେବେ ତାଙ୍କ ସହ ପରାମର୍ଶ କରିବା ପରେ ବିଷୟ ଦୁଇଟି ସ୍ଥିର ହେଲା - (୧) ବିଚାରର ବିଜୟ ଯାତ୍ରା (୨) ମାନବିକ ଦୃଷ୍ଟି । ଲେଖା ଦୁଇଟି ମୁଁ ପୂର୍ବରୁ ପ୍ରସ୍ତୁତକରି ପଠାଇଲି ଓ ଗିରିଜାବାବୁ ତାକୁ ଛାପି ସେ ଦିନ ଏହା ସଭାରେ ବିତରଣ କଲେ । ମୋର ଉପସ୍ଥାପନ ପରେ ସେ ଦିନର ଆଲୋଚନା ବେଶ୍ ସରଗରମ ହୋଇଥିଲା । ସଭାରେ ଅନେକ ଜ୍ଞାନୀ ଓ ଗୁଣୀ ବ୍ୟକ୍ତି ଥିଲେ ଓ କେତେକ ମୋ ଲେଖା ଉପରେ ବିଶ୍ଳେଷଣାତ୍ମକ ବକ୍ତବ୍ୟ ରଖିଥିଲେ । ପରେ ଦି. ୟୁନିଭର୍ସ ତରଫରୁ ଏହି ନିବନ୍ଧ ଦୁଇଟି ସହ ମୋର ଅନ୍ୟ କିଛି ଅନୁବାଦ ଲେଖାକୁ ମିଶାଇ "ଧର୍ମର ଊର୍ଦ୍ଧ୍ୱରେ" ବହିଟିଏ ପ୍ରକାଶ କରାଯାଇଛି । ଏଥିରେ ଚିତ୍ତଭାଇଙ୍କର ମୁଖ୍ୟ ଅବଦାନ ରହିଥିଲା ।

ମୁଁ ୨୦୦୭ରେ ଅବସର ନେଲି ଓ ସେତେବେଳେ ଭୁବନେଶ୍ୱରରେ ରହୁଥିଲି । ଚିତ୍ତଭାଇଙ୍କ ବାପୁଜୀ ନଗର ଘରେ ପ୍ରତିମାସରେ ଏକ ଆଲୋଚନା ଚକ୍ର ହେଉଥାଏ । ମୁଁ ସେଥିରେ ଯୋଗ ଦେଉଥିଲି । ସେଥିରେ ଯୋଗଦେବା ଅବସରରେ ସେହି ଆଲୋଚନା ଚକ୍ରରେ ସମସ୍ତଙ୍କୁ ଭାଗ ନେବା ପାଇଁ ଚିତ୍ତଭାଇ ବାଧ୍ୟ କରୁଥିଲେ । ସବୁ ବିଷୟ ଶୁଣିବାପରେ ସେ ନିଜର ସୁଚିନ୍ତିତ ମତ ରଖୁଥିଲେ । "ମାନବୀୟ ସଙ୍କଟ" ଉପରେ କହିବାକୁ ସେ ମୋତେ ଏକ ମାସରେ ନିର୍ଦ୍ଦେଶ ଦେଇଥିଲେ ଓ ମୁଁ ପ୍ରସ୍ତୁତ ହୋଇ ତାହା ଉପସ୍ଥାପନ କରିଥିଲି । ସେ ଅସୁସ୍ଥ ହେବା ପର୍ଯ୍ୟନ୍ତ ଏହି ମାସିକ ବୈଠକ ଅନୁଷ୍ଠିତ ହେଉଥିଲା । ନିୟମିତ ଲେଖାଲେଖି କରିବାକୁ ସେ ମୋତେ ପ୍ରେରଣା ଦେଉଥିଲେ ଓ ନିୟମିତ ସ୍ତମ୍ଭ ଲେଖିବା ପାଇଁ ମୁଁ ତାଙ୍କଠାରୁ ଅଭିନିବେଶ ପାଇଥିଲି । ମୁଁ ତାଙ୍କ ଦ୍ୱାରା ପ୍ରଭାବିତ ହୋଇ ୨୦୧୦ରୁ ସମ୍ବାଦପତ୍ର "ପ୍ରଗତିବାଦୀ"ରେ ସ୍ତମ୍ଭ ଲେଖୁଛି । ସେ ବଂଚିଥିବା ବେଳେ ପ୍ରଗତିବାଦୀ ବା ଅନ୍ୟ ସମ୍ବାଦପତ୍ରରେ ମୋର ଲେଖା ଦେଖିଲେ ଲେଖା ଉପରେ ତାଙ୍କର ସୁଚିନ୍ତିତ ମନ୍ତବ୍ୟ ଫୋନଦ୍ୱାରା ଜଣାଉଥିଲେ ବା ସାକ୍ଷାତରେ ମୋତେ କହୁଥିଲେ । ଚିତ୍ତଭାଇଙ୍କର ଦେହାନ୍ତ ୨୦୧୧ରେ ହେଲା ଓ ଜୀବନର ଶେଷ ସମୟରେ ସେ କଳିଙ୍ଗ ହସ୍ପିଟାଲରେ ଚିକିତ୍ସିତ ହେଉଥିଲେ, ତାଙ୍କ ଦେହାନ୍ତ ଅଗଣିତ ଗୁଣଗ୍ରାହୀ ପାଠକ, ଛାତ୍ର, ସହଯୋଗୀମାନଙ୍କ ପ୍ରାଣରେ ବହୁ କଷ୍ଟ ଦେଇଥିଲା । ତାଙ୍କର ଯେଉଁ ରାଶି ରାଶି ଲେଖା ଓ ବହିମାନ ରହିଛି ତାଙ୍କ ଲେଖା ପଢ଼ିବା ବେଳେ ସେ ସ୍ମୃତିରେ

ଜୀବନ୍ତ ହୋଇ ଉଠନ୍ତି । ଜଣେ ଯେ ଜୀବନକାଳ ଭିତରେ ଏତେ ପୁସ୍ତକ (ପାଖାପାଖି ୨୪୦ଖଣ୍ଡ) ଲେଖିପାରିଛନ୍ତି ଏହା ମୋ ପାଇଁ ଏକ ଆଶ୍ଚର୍ଯ୍ୟର ବିଷୟ । ତାଙ୍କ ପରି ସ୍ରଷ୍ଟା ପ୍ରକୃତରେ ବିରଳ । ସେ ଯେତିକି ପୁସ୍ତକର ଅନୁବାଦ ଓଡ଼ିଆ ଭାଷାରେ କରିଛନ୍ତି ଓ ଯେତିକି ନିଜେ ଲେଖିଛନ୍ତି, ତାହା ତାଙ୍କ ସୃଜନ, ପ୍ରତିଭା ଓ ସାମାର୍ଥ୍ୟର ସୂଚନା ଦିଏ । ଏହି ଯଶସ୍ୱୀ ଲେଖକ ଓଡ଼ିଆ ଭାଷା ଓ ପ୍ରବନ୍ଧ ସାହିତ୍ୟକୁ ଯେପରି ଋଦ୍ଧିମନ୍ତ କରିଛନ୍ତି ତାହା ପ୍ରକୃତରେ ଏକ ଆଶ୍ଚର୍ଯ୍ୟର ବିଷୟ । ତାଙ୍କୁ ହୃଦୟଭରା ବିନମ୍ର ଶ୍ରଦ୍ଧାଞ୍ଜଳି ।

ଚିତ୍ତଭାଇଙ୍କ ବ୍ୟକ୍ତିତ୍ୱ ବହୁ ବିଭବ-ମଣ୍ଡିତ । ତେବେ ତାଙ୍କ ବ୍ୟକ୍ତିତ୍ୱର ତିନୋଟି ଦିଗ ଥିଲା ମୋ ପାଇଁ ଆକର୍ଷଣୀୟ । ପ୍ରଥମରେ ସେ ଜୀବନସାରା ଜଣେ ଶିକ୍ଷକ ହୋଇ ରହିବାକୁ ଚେଷ୍ଟା କରିଛନ୍ତି, ଅର୍ଥାତ୍ ତାଙ୍କ ଜୀବନ ହେଉଛି ଜଣେ ଶିକ୍ଷକର ଜୀବନ । ଜଣେ ଶିକ୍ଷକ ଜୀବନ ସାରା ଜିଜ୍ଞାସୁ ହୋଇ ରହେ । ଅଧ୍ୟୟନ ଓ ଅନୁଭବ ମାଧ୍ୟମରେ ସେ ନିଜ ଜୀବନର ବୌଦ୍ଧିକ ଉତ୍ତରଣ କରୁଥାଏ ଓ ନିଜର ଅନ୍ତର୍ଲୋକକୁ ଆଲୋକିତ କରୁଥାଏ । ଦ୍ୱିତୀୟରେ ଚିତ୍ତଭାଇଙ୍କର ଜୀବନ ବ୍ୟାପୀ ସାହିତ୍ୟ ସାଧନା ତାଙ୍କ ବ୍ୟକ୍ତିତ୍ୱର ଏକ ଅନନ୍ୟ ବିଭବ । ତାଙ୍କର ରାଶି ରାଶି ଲେଖା ମଧ୍ୟରୁ ତାଙ୍କ ସୃଜନଶୀଳତା ଓ ଭାବଚେତନାର ପରିଚୟ ମିଳେ । ମନୁଷ୍ୟର ସ୍ଥିତି, ସମସ୍ୟା ଓ ସଂକଟମାନଙ୍କୁ ତାଙ୍କର ନାନା ଲେଖାରେ ଯେପରି ସେ ବ୍ୟକ୍ତ କରିଛନ୍ତି ତା ଭିତରୁ ତାଙ୍କ ଅନୁଭବ ଓ ଅନ୍ତର୍ବୋଧର ଚିତ୍ର ମିଳିଥାଏ । ମାନବୀୟ ସ୍ୱପ୍ନ, ସଂକଳ୍ପ ଓ ଅଭୀପ୍‌ସାମାନଙ୍କୁ ତାଙ୍କର ବିଭିନ୍ନ ଲେଖାରେ ସେ ବ୍ୟକ୍ତ କରିଛନ୍ତି । ତୃତୀୟରେ ତାଙ୍କର ମାନବବାଦୀ ଜୀବନଦୃଷ୍ଟି ଓ ଅନ୍ତର୍ଜାତୀୟତା-ବୋଧ ତାଙ୍କ ଜୀବନଦର୍ଶନର ବାର୍ତ୍ତା ଦେଇଥାଏ । ଆମ ସଂସାରରେ ରହିଥିବା ନାନା ଭେଦଭାବ ଓ ମଣିଷ ମଣିଷ ଭିତରେ ଗଢ଼ି ଉଠିଥିବା ପ୍ରାଚୀରମାନଙ୍କୁ ଦୂର କରି ଏକ ବିଶ୍ୱଦୃଷ୍ଟିର ପ୍ରସାର ପାଇଁ ସେ ଚିନ୍ତା ବ୍ୟକ୍ତ କରିଛନ୍ତି । ବିଶ୍ୱ ଭ୍ରାତୃତ୍ୱ, ସମ୍ବେଦନଶୀଳ ଜୀବନବୋଧ ଓ ଏକ ସର୍ବୋଦୟ ସମାଜ ପ୍ରତି ତାଙ୍କର ସମର୍ପିତ ଭାବ ତାଙ୍କ ବିଚାରକୁ ମହତ୍ତର କରିଛି । ଏହି ତିନୋଟି ଦିଗ ଉପରେ ଏଠାରେ ସଂକ୍ଷିପ୍ତ ସୂଚନା ଦିଆଯାଇପାରେ । ହୁଏତ ତାଙ୍କ ବ୍ୟକ୍ତିତ୍ୱର ବ୍ୟାପ୍ତିର ଅନ୍ୟାନ୍ୟ ଦିଗ ଓ ଏପରିକି ସୂକ୍ଷ୍ମତର କିମ୍ବା ଆଧ୍ୟାତ୍ମିକ ଦିଗ ବିଷୟରେ କେହି ସୂଚନା ଦେଇପାରନ୍ତି, ତେବେ ମୁଁ ସେସବୁକୁ ଏଠାରେ ଆଲୋଚନା କରିବି ନାହିଁ ।

ଚିତ୍ତଭାଇ ଜୀବନରେ ଅନ୍ୟ କୌଣସି ବୃତ୍ତିଠାରୁ ଶିକ୍ଷକତାକୁ ଶ୍ରେଷ୍ଠ ମନେ କରିଛନ୍ତି ଓ ଏହାକୁ ନିଜ ଜୀବନର ବ୍ରତ କରିଛନ୍ତି । ସେ ଯେଉଁ ବର୍ଷ ଗୁଡ଼ିକ ଶାନ୍ତିନିକେତନର ବିଶ୍ୱଭାରତୀରେ ବିଦ୍ୟାର୍ଥୀ ଜୀବନ ଅତିବାହିତ କରିଥିଲେ ତାହା ତାଙ୍କ ଭିତରେ

ଜ୍ଞାନପିପାସାର ବୀଜ ବପନ କରିଥିଲା । ବହୁ ପ୍ରବୀଣ ଅଧ୍ୟାପକଙ୍କର ପ୍ରଜ୍ଞା, ପାଣ୍ଡିତ୍ୟ ଓ ଜ୍ଞାନ ପାଇଁ ସାଧନା ତାଙ୍କୁ ଅନେକ ପ୍ରେରଣା ଯୋଗାଇଥିଲା । ଭାରତବର୍ଷର ରବୀନ୍ଦ୍ର ନାଥ, ମହାତ୍ମା ଗାନ୍ଧୀ ଓ ଶ୍ରୀଅରବିନ୍ଦ ଶିକ୍ଷାଦର୍ଶନର ଦିଗନ୍ତକୁ ଯେପରି ମୌଳିକ ବିଚାର ଦ୍ୱାରା ରଶ୍ମିମନ୍ତ କରିଛନ୍ତି ସେ ସବୁ ଚିତ୍ତଭାଇଙ୍କୁ ଗଭୀର ଭାବେ ପ୍ରଭାବିତ କରିଥିଲା । ସମାଜ ଓ ରାଷ୍ଟ୍ରର ପୁନଃନିର୍ମାଣ କ୍ଷେତ୍ରରେ ଶିକ୍ଷା ଯେ ଏକ ପ୍ରଧାନ ଆୟୁଧ ହୋଇପାରିବ, ଏହି ଉପଲବ୍ଧି ତାଙ୍କର ଆସିଥିଲା । ଶାନ୍ତି ନିକେତନରୁ ଶିକ୍ଷା ସମାପ୍ତ ପରେ ସେ ଡେନମାର୍କ ଗଲେ । କୋପନହେଗେନ୍ ବିଶ୍ୱବିଦ୍ୟାଳୟରେ ଅଧ୍ୟୟନ ତାଙ୍କ ଜିଜ୍ଞାସାକୁ ବହୁ ପ୍ରସାରିତ କରିଥିଲା । ପାଶ୍ଚାତ୍ୟ ଭୂଖଣ୍ଡର ବହୁ ମନୀଷୀଙ୍କର ଶିକ୍ଷା କ୍ଷେତ୍ରରେ ନୂଆ ନୂଆ ପ୍ରୟୋଗ ଓ ମାନବିକ ଜୀବନବୋଧର ଭାବଧାରା ତାଙ୍କୁ ଅନେକ ପ୍ରେରଣା ଯୋଗାଇଥିଲା । କେତେକ ୟୁରୋପୀୟ ରାଷ୍ଟ୍ରରେ ଶିକ୍ଷା ସ୍ତରରେ ଯେଉଁ କ୍ରାନ୍ତିକାରୀ ପରିବର୍ତ୍ତନମାନ ଆସିଛି ତାହା ସାମାଜିକ ବିକାଶ ଓ ଜୀବନର ଗୁଣାତ୍ମକ ମାନବୃଦ୍ଧିରେ କିପରି ସହାୟକ ହୋଇଛି ତାହା ସେ ଗଭୀର ଭାବରେ ଉପଲବ୍ଧି କରିଥିଲେ । ଏହି ସବୁର ସମ୍ମିଳିତ ପ୍ରଭାବ ତାଙ୍କ ଭିତରେ ଏକ ଶିକ୍ଷକର ଆସ୍ପୃହା ସୃଷ୍ଟି କରିଥିଲା । କେତେକ ଦେଶର କିଛି ପ୍ରବୀଣ ଶିକ୍ଷାବିତ୍‌ଙ୍କର ବିଚାର ତାଙ୍କୁ କିପରି ପ୍ରଭାବିତ କରିଥିଲା ତାହାର ସୂଚନା ତାଙ୍କ ଲେଖାମାନଙ୍କରୁ ମିଳିଥାଏ । ଏହି ପୃଷ୍ଠଭୂମିରେ ଶିକ୍ଷା ସଂପର୍କରେ ସେ ତିନୋଟି ପୁସ୍ତକ ଓଡ଼ିଆରେ ଅନୁବାଦ କରିଛନ୍ତି । ସେହି ପୁସ୍ତକମାନ ହେଲା (୧)ଏ.ଏସ.ନିଲଙ୍କର "ବିଦ୍ୟାଳୟରେ ମସ୍ତିଷ୍କ ନୁହେଁ ହୃଦୟ" (୨) ଭାସିଲି ସୁଖୋମ୍‌ଲିନ୍‌ସ୍କିଙ୍କର "ମୋ ହୃଦୟ ପିଲାଙ୍କ ପାଇଁ" (୩) ବାର୍ବିଆନା ସ୍କୁଲଦ୍ୱାରା ପ୍ରେରିତ "ଜଣେ ଶିକ୍ଷକଙ୍କୁ ଚିଠି" । ଏତଦ୍‌ବ୍ୟତୀତ ତାଙ୍କର ଲେଖାରେ କ୍ରିଷ୍ଟେନ କଲ୍ଡ, ଜାନୁସ୍ କୋସାର୍କ କିପରି ଆଧୁନିକ ଶିକ୍ଷା କ୍ଷେତ୍ରରେ ସଂସ୍କାରର ପଥପ୍ରଦର୍ଶକ ହୋଇଛନ୍ତି ତାହା ମଧ୍ୟ ସେମାନଙ୍କ ଦେଶର ଶିକ୍ଷା ଇତିହାସରୁ ସଂଗ୍ରହ କରିଛନ୍ତି । ଡେନମାର୍କ ଓ ଫିନଲ୍ୟାଣ୍ଡର ଲୋକ ବିଦ୍ୟାଳୟ ବିଷୟରେ ସେ ପ୍ରତ୍ୟକ୍ଷ ଅନୁଭୂତି ଲାଭ କରିଛନ୍ତି ।

ଡେନ୍‌ମାର୍କରୁ ତାଙ୍କର ଶିକ୍ଷା ସମାପ୍ତକରି ଫେରିବା ପରେ ନିଜ ଦେଶରେ ସେ ଚାହିଁଥିଲେ ଯେ କୌଣସି ଉଚ୍ଚ ପଦ-ପଦବୀରେ ଅବସ୍ଥାପିତ ହୋଇପାରିଥାନ୍ତେ । କିନ୍ତୁ ଏ ସବୁରୁ ନିଜକୁ ଦୂରେଇ ନେଇ ଓଡ଼ିଶାରେ ସେ ଗାନ୍ଧୀଙ୍କ ମୌଳିକ ଶିକ୍ଷା ପରିକଳ୍ପନା ଆଧାରରେ ଓଡ଼ିଶାର ତତ୍‌କାଳୀନ ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀଙ୍କ ଏକ ଯୋଜନାରେ ସଂପୃକ୍ତ ହୋଇଛନ୍ତି । ଅନୁଗୁଳଠାରୁ ୧୨ କି.ମି. ଦୂରରେ ଥିବା ଚମ୍ପତିମୁଣ୍ଡା ଠାରେ ଏକ ନୂତନ ଶିକ୍ଷାନୁଷ୍ଠାନ ଚିତ୍ତଭାଇଙ୍କ ତତ୍ତ୍ୱାବଧାନରେ ଆରମ୍ଭ ହୋଇଛି । ଏହାକୁ ଚିତ୍ତଭାଇ କହିଛନ୍ତି "ଜୀବନ ବିଦ୍ୟାଳୟ" । କେତେ ସ୍ୱପ୍ନ, ନିଷ୍ଠା, ସମର୍ପିତ ଭାବ ଓ ସଂକଳ୍ପ ନେଇ

ଜୀବନ ବିଦ୍ୟାଳୟର ବିଦ୍ୟାର୍ଥୀମାନଙ୍କ ସହ ସେ ସମ୍ବନ୍ଧିତ ହୋଇଛନ୍ତି । ପିଲାଙ୍କ ଭିତରେ ଜ୍ଞାନ ପାଇଁ ଅନୁସନ୍ଧିତ୍ସା ସହ ମାନବିକ ମୂଲ୍ୟବୋଧ, ଶ୍ରଦ୍ଧାଶୀଳତା ଓ ସମ୍ବେଦନଶୀଳ ଜୀବନଦୃଷ୍ଟିର ବିକାଶ ପାଇଁ ସେଠାରେ ବିଭିନ୍ନ ପ୍ରୟୋଗ କରାଯାଇଛି । ଏକ ମୁକ୍ତ ପରିବେଶ ଓ ଶୃଙ୍ଖଳିତ ଜୀବନଚର୍ଯ୍ୟା ଭିତରେ ମାନବିକ ଶ୍ରଦ୍ଧା ସହ ଶିକ୍ଷାକୁ ଆନନ୍ଦଦାୟକ କରିବା ପାଇଁ ସେ ପ୍ରୟାସ କରିଛନ୍ତି । ବିଦ୍ୟାଳୟକୁ ଜୀବନ ବିଦ୍ୟାଳୟରେ ରୂପାନ୍ତରିତ କରିବାରେ ସେ ମନପ୍ରାଣ ଦେଇଛନ୍ତି । ସମାଜର ଦାରିଦ୍ର୍ୟ ସୀମାରେଖା ତଳର ପିଲାମାନେ ସେଠାରେ ପଢୁଥିଲେ ମଧ୍ୟ ସେମାନେ ଜୀବନ ବିଦ୍ୟାଳୟର ଆଦର୍ଶରେ ଗଭୀର ଭାବେ ପ୍ରଭାବିତ ଓ ଉପକୃତ ହୋଇଛନ୍ତି । ତେବେ ପରିସ୍ଥିତି କ୍ରମେ ଶିକ୍ଷା ବିଭାଗର ସର୍ବୋଚ୍ଚ ଅଧିକାରୀ ଏହି ଜୀବନ ବିଦ୍ୟାଳୟର ସ୍ୱୟଂଶାସିତ ପଦ୍ଧତି ଓ ସ୍ୱାଧୀନତାକୁ ସ୍ୱୀକାର କରିନାହାନ୍ତି ଓ ଚିତ୍ତଭାଇଙ୍କ ଆଦର୍ଶ ସରକାରୀ ସ୍ତରରେ ସ୍ୱୀକୃତ ହୋଇନାହିଁ । ପରିବର୍ତ୍ତିତ ରାଜନୈତିକ ପରିସ୍ଥିତି ଓ ପ୍ରଶାସନିକ ନିୟନ୍ତ୍ରଣ ଭିତରେ ଚିତ୍ତଭାଇଙ୍କର ସ୍ୱପ୍ନ ମଉଳି ଯାଇଛି ଓ ସେ ଚାରିବର୍ଷ ପରେ ଚଂପତି ମୁଣ୍ଡାରୁ ବିଦାୟ ନେଇଛନ୍ତି । ଗତାନୁଗତିକ ଗୁଳାରେ ଚାଲିବାକୁ ସେ ଆଗ୍ରହୀ ହୋଇନାହାନ୍ତି । ଏହି ଚାରିବର୍ଷର ସମୟ ଭିତରେ ସେ "ଜୀବନ ବିଦ୍ୟାଳୟ" ଓ "ଜଙ୍ଗଲ ଚିଠି" ନାମରେ ଯେଉଁ ଦୁଇଟି ପୁସ୍ତକ ଲେଖିଛନ୍ତି ତାହା ତାଙ୍କ ଅନୁଭୂତି, ପ୍ରଜ୍ଞା ଓ ଜୀବନବୋଧର ବାର୍ତ୍ତା ବହନକରେ । ତାଙ୍କର ଚିନ୍ତା ଓ ଉପଲବ୍ଧିକୁ ସେ ପ୍ରତିଦିନ ଲେଖି ବିଦ୍ୟାର୍ଥୀ ମାନଙ୍କୁ ପରଦିନ ସଭାରେ ଶୁଣାଉଥିଲେ । ପିଲାମାନେ ଯେପରି ନିଜସ୍ୱ ଧାରାରେ ନୂଆ ନୂଆ ବିଷୟ ଚିନ୍ତାକରିବେ ଓ ନିଜର ସୃଜନ ସାମର୍ଥ୍ୟକୁ ବୃଦ୍ଧି କରିବେ ଏହି ଉଦ୍ଦେଶ୍ୟରେ ସେ ଏହା ପିଲାଙ୍କ ପାଇଁ ଲେଖୁଥିଲେ । ତେବେ ଏହି ବହି ଦୁଇଟିରେ ଜୀବନର ନାନା ବିଷୟରେ ଗମ୍ଭୀର ଭାବେ ଅନୁଶୀଳନ କରିବାର ଅନେକ ଉପାଦାନ ରହିଛି ।

ଜୀବନ ବିଦ୍ୟାଳୟରୁ ବିଦାୟ ନେବାପରେ ସେ ଆଗ୍ରାସ୍ଥିତ ବିଚିପୁରର ଗ୍ରାମୀଣ ବିଶ୍ୱବିଦ୍ୟାଳୟରେ ଅଧ୍ୟାପକ ଭାବେ ଯୋଗ ଦେଇଛନ୍ତି । ସେଠାରେ କିଛି ବର୍ଷର ଅଧ୍ୟାପନା ପରେ ସେ ଓଡ଼ିଶା ଫେରିଛନ୍ତି ଓ ଏଥର ଶ୍ରୀଅରବିନ୍ଦଙ୍କ ଆଦର୍ଶରେ ସ୍ଥାପିତ ହୋଇଥିବା ପୂର୍ଣ୍ଣାଙ୍ଗ ଶିକ୍ଷା ସହ ସଂଶ୍ଳିଷ୍ଟ ହୋଇଛନ୍ତି । ଶ୍ରୀଅରବିନ୍ଦ ଓ ଶ୍ରୀମାଙ୍କର କେତେକ ମୁଖ୍ୟ କୃତିକୁ ସେ ଓଡ଼ିଆରେ ଅନୁବାଦ କରିଛନ୍ତି ଓ ପୂର୍ଣ୍ଣାଙ୍ଗ ଶିକ୍ଷାକୁ ବାସ୍ତବ ରୂପରେଖ ଦେବାରେ ପ୍ରୟାସ କରିଛନ୍ତି । ପିଲାମାନଙ୍କୁ ପଢ଼ାଇଛନ୍ତି ଓ ବିଭିନ୍ନ ପୂର୍ଣ୍ଣାଙ୍ଗ ଶିକ୍ଷାନୁଷ୍ଠାନମାନଙ୍କର ଶିକ୍ଷକମାନଙ୍କୁ ମଧ୍ୟ ପ୍ରଶିକ୍ଷଣ ଦେଇଛନ୍ତି । ଶ୍ରୀଅରବିନ୍ଦଙ୍କ ପୂର୍ଣ୍ଣାଙ୍ଗ ଶିକ୍ଷାରେ ପ୍ରତ୍ୟେକ ବ୍ୟକ୍ତିର ଏକ ସୁସଂହତ ବିକାଶ କିପରି ହେବ ତାହା ଉପରେ ପ୍ରାଧାନ୍ୟ ଦିଆଯାଇଛି । ପ୍ରତ୍ୟେକ

ବିଦ୍ୟାର୍ଥୀର ଶାରୀରିକ, ଆବେଗିକ, ମାନସିକ ଓ ଚୈତ୍ୟିକ ଶିକ୍ଷା ସମନ୍ୱିତ ଧାରାରେ ପରିଚାଳିତ ହେବା ଆବଶ୍ୟକ । ଶ୍ରୀଅରବିନ୍ଦଙ୍କ ପୂର୍ଣ୍ଣାଙ୍ଗ ଶିକ୍ଷାର ତାତ୍ତ୍ୱିକ ଓ ବ୍ୟାବହାରିକ ବିଷୟ ଉପରେ ଚିତ୍ତଭାଇ ବଡ଼ ଅଧିକାରୀ ଥିଲେ । ଓଡ଼ିଶାରେ ପୂର୍ଣ୍ଣାଙ୍ଗ ଶିକ୍ଷାକୁ ଏକ ନିର୍ଦ୍ଦିଷ୍ଟ ରୂପରେଖ ଦେବାରେ ତାଙ୍କର ଯଥେଷ୍ଟ ଅବଦାନ ରହିଛି ।

ଚିତ୍ତଭାଇଙ୍କ ସହ ବିଭିନ୍ନ ସମୟରେ ସାକ୍ଷାତ ଆଲୋଚନା ଓ ତାଙ୍କର ଲେଖା ଭିତରୁ ଏହି ଉପଲବ୍ଧି ହୋଇଛି ଯେ ସେ ଥିଲେ ଏକ ଶିକ୍ଷକ-ପ୍ରାଣ ବ୍ୟକ୍ତି । ଶିକ୍ଷାକୁ ବ୍ୟକ୍ତି ଚେତନା ଉତ୍ତରଣରେ ସେ ଆଧାର ଭାବରେ ନେଉଥିଲେ । ସେହିପରି ଭବିଷ୍ୟତ ନିର୍ମାଣ ଓ ସାମାଜିକ ପୁନର୍ଗଠନ ପାଇଁ ଶିକ୍ଷା ଯେ ଅବଶ୍ୟମ୍ଭାବୀ ଏହା ହିଁ ତାଙ୍କର ବିଚାର ଥିଲା । ଯିଏ ଶିକ୍ଷକ ହେବ ତାହା ଭିତରେ ଏକ ଜିଜ୍ଞାସୁ ଭାବ ଓ ମାନବିକ ଦୃଷ୍ଟି ରହିବା ଆବଶ୍ୟକ । ସେ ସର୍ବଦା ନିଜକୁ ଛାତ୍ରମାନଙ୍କର ଜଣେ ସହଯାତ୍ରୀ ବୋଲି ଭାବୁଥିଲେ । ତାଙ୍କ ସମୟର ଶିକ୍ଷାବ୍ୟବସ୍ଥା ଓ ପଦ୍ଧତି ନେଇ ସେ ଅନେକ ଅସନ୍ତୋଷ ବ୍ୟକ୍ତ କରୁଥିଲେ ଓ ଶିକ୍ଷା ସ୍ତରରେ କିପରି ସଂସ୍କାର ଆଣିହେବ ଏଥିପାଇଁ ଲେଖାମାନ ଲେଖୁଥିଲେ । ଶିକ୍ଷା ବ୍ୟବସ୍ଥା ଉନ୍ନତ ହେଲେ ସମାଜ ଯେ ଉନ୍ନତ ହେବ ଏହାହିଁ ଥିଲା ତାଙ୍କର ଅନୁଭବ । ବ୍ୟକ୍ତି, ଗୋଷ୍ଠୀ, ସମାଜ ଓ ରାଷ୍ଟ୍ରର ଜୀବନକୁ ଅଧିକ ସୁନ୍ଦର, ସୁଖପ୍ରଦ ଓ ସମୁନ୍ନତ କରିବାରେ ଶିକ୍ଷାର ଯେ ଏକ ନିର୍ଣ୍ଣାୟକ ଭୂମିକା ରହିଛି ଏହା ନିଃସନ୍ଦେହ ଭାବେ କୁହାଯାଇପାରେ । ଯେଉଁ ବର୍ଷଗୁଡ଼ିକ ସେ ଶିକ୍ଷାନୁଷ୍ଠାନମାନଙ୍କ ସହ ପ୍ରତ୍ୟକ୍ଷଭାବେ ସଂଶ୍ଳିଷ୍ଟ ଥିଲେ ସେ ନିଜ ସ୍ତରରେ କେତେକ ନୂଆ ନୂଆ ପ୍ରୟୋଗ କରୁଥିଲେ । ଶିକ୍ଷାନୁଷ୍ଠାନ ସହ ସଂପର୍କ ନଥିଲା ସମୟରେ ମଧ୍ୟ ସେ ଶିକ୍ଷାର ବିଭିନ୍ନ ଦିଗ ଉପରେ ଗମ୍ଭୀର ଚର୍ଚ୍ଚା କରୁଥିଲେ ଓ ଅନ୍ୟମାନଙ୍କୁ ଦିଗ୍‌ଦର୍ଶନ ଦେଉଥିଲେ । ତାଙ୍କର ଜୀବନ ଥିଲା ଏକ ଅଧ୍ୟୟନଶ୍ରେୟଃ ଜୀବନ । ତାଙ୍କ ଅଧ୍ୟୟନର ପରିଧି ଥିଲା ବହୁ ପ୍ରସାରିତ । ଅଧ୍ୟୟନଦ୍ୱାରା ହିଁ ଏକ ମାନବିକ ଅନୁରାଗ ଜୀବନବୋଧର ମର୍ମ ହୋଇପାରିବ । ଏହିପରି ଏକ ଅଭିବ୍ୟକ୍ତି ପ୍ରସାର ଓ ପାଳନ କରିବା କ୍ଷେତ୍ରରେ ଚିତ୍ତଭାଇଙ୍କର ସ୍ଥାନ ଓଡ଼ିଶାରେ ଅଦ୍ୱିତୀୟ ମନେହୁଏ ।

ଏବେ ତାଙ୍କ ସାହିତ୍ୟ ସାଧନା ସଂପର୍କରେ ସାମାନ୍ୟ ସୂଚନା । ତାଙ୍କର କୃତି ଓ ସୃଜନର ଦିଗନ୍ତ ଏତେ ବ୍ୟାପ୍ତ ଯେ ସେ ସଂପର୍କରେ ମନ୍ତବ୍ୟ ଦେବା ମୋ ପାଇଁ ଧୃଷ୍ଟତା । ତେବେ ସେ କିଛି କାବ୍ୟ, ଗଳ୍ପ, ଉପନ୍ୟାସ ବା ନାଟକ ସୃଷ୍ଟି କରିନାହାନ୍ତି । ତାଙ୍କର ଲେଖା ମୁଖ୍ୟତଃ ଗବେଷଣାତ୍ମକ ପ୍ରବଂଧ ଆଲୋଚନା, ଅନୁବାଦ, ଭ୍ରମଣ ସାହିତ୍ୟ ଓ ଜୀବନୀ / ଆତ୍ମଜୀବନୀ ସହ ସଂଶ୍ଳିଷ୍ଟ । ସମ୍ଭବତଃ ତରୁଣ ବିଦ୍ୟାର୍ଥୀ ଭାବେ ସେ କିଛି କବିତା ଲେଖିଛନ୍ତି ଯାହା ଗୋଟିଏ କବିତା ସଙ୍କଳନ "ଦୁଇ ଅଧ୍ୟାୟ" ଶିରୋନାମାରେ

ପ୍ରକାଶ ପାଇଥିଲା । ସେ ଚାହିଁଥିଲେ କବିତା ଲେଖି ମଧ୍ୟ ନିଜକୁ ପ୍ରତିଷ୍ଠିତ କରିପାରିଥାନ୍ତେ, ତେବେ ସେ କବିତା ରଚନାରେ ଆଉ ଆଗ୍ରହ ପ୍ରକାଶ କରିନାହାନ୍ତି । ବିଶ୍ୱବିଦ୍ୟାଳୟ ସ୍ତରରେ ତାଙ୍କର ଅଧ୍ୟୟନ ସାହିତ୍ୟ, ଦର୍ଶନଶାସ୍ତ୍ର, ମନୋବିଜ୍ଞାନ ଓ ସମାଜଶାସ୍ତ୍ର ସହ ସଂପୃକ୍ତ ଥିଲା । ଏହି ପ୍ରତ୍ୟେକ କ୍ଷେତ୍ରରେ ସେ ଥିଲେ ଧୁରୀଣ ଓ ବିଦ୍ୱାନ । ବହୁ ବିଷୟରେ ଗଭୀର ଅଧ୍ୟୟନ ଓ ଅନୁଶୀଳନ ଯୋଗୁଁ ସେ ଥିଲେ ଜଣେ ମନସ୍ୱୀ ବୁଦ୍ଧିଜୀବୀ । ଏହା ସହ ସେ କେତେକ ଭାରତୀୟ ଓ ୟୁରୋପୀୟ ଭାଷାରେ ମଧ୍ୟ ନିପୁଣ ଥିଲେ । ପରିଣାମତଃ ବିଭିନ୍ନ ଭାଷାର କେତେକ ଉନ୍ନତ ଚିନ୍ତା ସମ୍ବଳିତ ପୁସ୍ତକକୁ ସେ ଓଡ଼ିଆରେ ଅନୁବାଦ କରିଛନ୍ତି କିମ୍ବା ସେହି ବିଚାରମାନଙ୍କୁ ଓଡ଼ିଆ ପାଠକମାନଙ୍କ ପାଇଁ ନିଜ ରଚନାରେ ପ୍ରକାଶ କରିଛନ୍ତି । ତାଙ୍କର ମୌଳିକ ରଚନା, ଅନୁବାଦ ଓ ଅନ୍ୟାନ୍ୟ କୃତିମାନଙ୍କର ସଂଖ୍ୟା ଏପରି ବ୍ୟାପକ ଓ ବିପୁଳ ଯେ ଜଣଙ୍କର ଜୀବନକାଳ ଭିତରେ ଏତେ ଲେଖିବା ଆଶ୍ଚର୍ଯ୍ୟଜନକ ମନେହୁଏ । ତାଙ୍କର ସୃଷ୍ଟି ସମ୍ଭାର ତାଙ୍କ ସାଧନାର ସ୍ୱାକ୍ଷର ବହନକରେ । ତାଙ୍କର ଏହି ସାରସ୍ୱତ ସାଧନା ଅନେକଙ୍କ ପାଇଁ ଯେପରି ଆଶ୍ଚର୍ଯ୍ୟଜନକ ଥିଲା, ସେହିପରି ପ୍ରେରଣାର ଉତ୍ସ ଥିଲା ।

ତରୁଣ ବୟସରେ ଡେନମାର୍କ ଯିବା ପୂର୍ବରୁ ଶାନ୍ତିନିକେତନ କାଳରେ ସେ ତିନୋଟି ବହି ଲେଖିଥିଲେ, ଗୋଟିଏ ଇଂରାଜୀରେ ଓ ଦୁଇଟି ଓଡ଼ିଆରେ । ଇଂରାଜୀ ବହିଟି ଥିଲା "Benedict Spinoza : An Appreciation" । ତର୍କ ବୁଦ୍ଧିବାଦୀ ପରଂପରାର ଦାର୍ଶନିକ ସ୍ପିନୋଜା (୧୬୩୨-୧୬୭୫) ୟୁରୋପୀୟ ପୁନର୍ଜାଗରଣ ଯୁଗର ଜଣେ ପ୍ରଭାବଶାଳୀ ଦାର୍ଶନିକ । ସ୍ପିନୋଜା ଥିଲେ ଇହୁଦୀ, ସେ ଧର୍ମ ଯାଜକମାନଙ୍କର ନାନା ଅସହିଷ୍ଣୁତାର ଶିକାର ହୋଇଥିଲେ । ତେବେ ସ୍ପିନୋଜା ଥିଲେ ନିଷ୍ପାପ ଜୀବନର ଅଧିକାରୀ, ମୁକ୍ତଚିନ୍ତକ ଓ ଏକ ପ୍ରଜ୍ଞାଦୀପ୍ତ ବ୍ୟକ୍ତିତ୍ୱ । ସ୍ପିନୋଜାଙ୍କ ଜୀବନ-ସଂଗ୍ରାମ ଓ ଚିନ୍ତାଦ୍ୱାରା ପ୍ରଭାବିତ ହୋଇ ତାଙ୍କ ଉପରେ ଯେଉଁ ଗବେଷଣାମୂଳକ ପୁସ୍ତକଟି ଲେଖିଛନ୍ତି ସେହିଥିରୁ ଚିତ୍ତଭାଇଙ୍କ ଦର୍ଶନ ଅବବୋଧ ଜନିତ ଗଭୀରତାର ସୂଚନା ମିଳେ । ସେହିପରି ଓଡ଼ିଆ ବହି ଦୁଇଟି ହେଲା "ଓଡ଼ିଶାରେ ମହିମାଧର୍ମ" ଓ "ଅଚ୍ୟୁତାନନ୍ଦ ଓ ପଞ୍ଚସଖା ଧର୍ମ" । ମହିମା ଧର୍ମ ଉପରେ ବା ପଞ୍ଚସଖା ଧର୍ମ ଉପରେ ଏହା ସମ୍ଭବତଃ ପ୍ରଥମ ପାଣ୍ଡିତ୍ୟପୂର୍ଣ୍ଣ ସନ୍ଦର୍ଭ । ଏହି ବହି ଦୁଇଟିରେ ଚିତ୍ତଭାଇ ଯେଉଁ ସବୁ ସିଦ୍ଧାନ୍ତର ଅବତାରଣା କରିଛନ୍ତି ସେ ସବୁ କେତେକାଂଶରେ ବିବାଦୀୟ, ତେବେ ତାଙ୍କର ପ୍ରୟାସ ଓ ଗବେଷଣା ଅତ୍ୟନ୍ତ ପ୍ରଶଂସନୀୟ ।

ପରବର୍ତ୍ତୀ ସମୟରେ ବହୁ ଉଚ୍ଚମାନର ଗବେଷଣାତ୍ମକ ପୁସ୍ତକମାନ ସେ ଓଡ଼ିଆ ଓ ଇଂରାଜୀ ଭାଷାରେ ରଚନା କରିଛନ୍ତି । "ସମାଜ : ପରିବର୍ତ୍ତନ ଓ ବିକାଶ", "ସମାଜ ଗବେଷଣାର ପଦ୍ଧତି" ଦୁଇଟି ସମାଜବିଜ୍ଞାନ ସଂପର୍କୀୟ ବିରାଟ ପୁସ୍ତକ । ପ୍ରଥମ ପୁସ୍ତକଟି ମାନବ ସଭ୍ୟତା କ୍ରମ ବିକାଶର ଐତିହାସିକ ବିବରଣୀ ଓ ଦ୍ୱିତୀୟ ପୁସ୍ତକଟି ସମାଜବିଜ୍ଞାନର ଗବେଷଣା ଉପରେ ଏକ ପାଣ୍ଡିତ୍ୟପୂର୍ଣ୍ଣ କୃତି । ସାହିତ୍ୟ ସମାଲୋଚନା ଓ ଗବେଷଣା ଉପରେ "ଓଡ଼ିଆ ସାହିତ୍ୟର ସାଂସ୍କୃତିକ ବିକାଶଧାରା", "ଓଡ଼ିଆ ସାହିତ୍ୟର ଇତିହାସ : ସାମାଜିକ, ସାଂସ୍କୃତିକ ପୃଷ୍ଠଭୂମି" ଏବଂ "ସାହିତ୍ୟ ଓ ....." ଇତ୍ୟାଦି ରଚନାମାନ ସାହିତ୍ୟ ଓ ବିଶେଷକରି ଓଡ଼ିଆ ସାହିତ୍ୟ ଓ ସଂସ୍କୃତି ଉପରେ ବେଶ୍ ଚିନ୍ତା ଉଦ୍ରେକକାରୀ ରଚନା । ଏତଦ୍ ବ୍ୟତୀତ ତାଙ୍କର ପ୍ରାୟ ପନ୍ଦର ଖଣ୍ଡରୁ ଅଧିକ ପ୍ରବନ୍ଧ ସଂକଳନ ଥିବା ଜଣାଯାଏ । ପ୍ରତ୍ୟେକ ପ୍ରବନ୍ଧ ସଂକଳନରେ ବହୁ ମାନବିକ ସମସ୍ୟା, ସାମାଜିକ ପରିସ୍ଥିତି, ସାହିତ୍ୟିକ ପ୍ରସଙ୍ଗ, ଶିକ୍ଷା, ସଂସ୍କୃତି ଓ ଦାର୍ଶନିକ ପ୍ରଶ୍ନ ଉପରେ ସେ ଲେଖିଥିବା ପ୍ରବଂଧମାନଙ୍କର ସଂଗ୍ରହ ହୋଇଥିବା ଦେଖାଯାଏ । ନାନାବିଧ ବିଷୟ, ପ୍ରସଙ୍ଗ ଓ ସମସ୍ୟା ଉପରେ ସେ ଶହ ଶହ ପ୍ରବଂଧ ଲେଖିବା ତାଙ୍କ ସୃଜନ ସାଧନାର ପରିଚୟ ଦେଇଥାଏ । ଇଂରାଜୀରେ କେତେକ ଗବେଷଣାତ୍ମକ କୃତି ଭିତରେ "Studies on Medieval Religion and Literature of Orissa", "Balaram Das", "A Glimpse into Oriya Literature" ପ୍ରାୟତଃ ମୁଖ୍ୟ ପୁସ୍ତକ । ଓଡ଼ିଶାର ଧର୍ମଧାରା, ସାହିତ୍ୟ ଇତ୍ୟାଦି ଉପରେ ଏହି କୃତିମାନ ବେଶ୍ ପାଣ୍ଡିତ୍ୱପୂର୍ଣ୍ଣ । ମୌଳିକ ପ୍ରବନ୍ଧ ରଚନା କ୍ଷେତ୍ରରେ ଚିତ୍ତଭାଇ ଯେ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଏକ ଯଶସ୍ୱୀ ପ୍ରତିଭା ଏହା ଅନସ୍ୱୀକାର୍ଯ୍ୟ ।

ଓଡ଼ିଶାର ଶିକ୍ଷିତ ଓ ପାଠକ ମହଲରେ ଚିତ୍ତଭାଇ ବେଶ୍ ପରିଚିତ ହୋଇଥିଲେ, କାରଣ ବର୍ଷ ବର୍ଷ ଧରି ସେ ଓଡ଼ିଶାର ପ୍ରମୁଖ ସମ୍ବାଦପତ୍ରରେ ପ୍ରତି ସପ୍ତାହରେ ଏକ ସ୍ତମ୍ଭ ଲେଖୁଥିଲେ । ଯେତେବେଳେ "ପ୍ରଗତିବାଦୀ" ପ୍ରଥମେ ସାପ୍ତାହିକ ଭାବରେ ପ୍ରକାଶ ପାଇଲା, ସେ ସେଥିରେ "ନଖଦର୍ପଣେନ" ଶିରୋନାମାରେ ସ୍ତମ୍ଭ ଲେଖୁଥିଲେ । ପରେ ପ୍ରଗତିବାଦୀ ଏକ ଦୈନିକ ଖବରକାଗଜ ହେଲା ଓ ସପ୍ତାହରେ ଏକ ନିର୍ଦ୍ଦିଷ୍ଟ ବାରରେ ତାଙ୍କର ଲେଖା ପ୍ରକାଶ ପାଉଥିଲା । ପରେ "ଧରିତ୍ରୀ" ଓ "ସମ୍ବାଦ" ଖବରକାଗଜରେ ସେ ମଧ୍ୟ ସ୍ତମ୍ଭ ଲେଖିଲେ । ପ୍ରତି ସପ୍ତାହରେ ଗୋଟିଏ ଚିନ୍ତାମୂଳକ ପ୍ରବନ୍ଧ ସମ୍ବାଦପତ୍ରରେ ନିୟମିତ ଲେଖିବା ତାଙ୍କ ସୃଜନଶୀଳତାର ସ୍ୱାକ୍ଷର ବହନ କରେ । ଯେଉଁ କାଗଜରେ ସେ ନିୟମିତ ଲେଖାମାନ ଲେଖୁଥିଲେ ପାଠକମାନେ ତାଙ୍କ ଲେଖାକୁ ବେଶ୍ ଆଗ୍ରହର ସହିତ ପଢୁଥିଲେ । ସ୍ତମ୍ଭମାନଙ୍କର ବିଷୟବସ୍ତୁ କୌଣସି ନିର୍ଦ୍ଦିଷ୍ଟ ପ୍ରସଙ୍ଗ ଉପରେ ନଥିଲା ।

ମାନବିକ ମୂଲ୍ୟବୋଧଠାରୁ ମୁଣ୍ଡବ୍ୟଥା ବା ଜୁଆଙ୍ଗ ପଲ୍ଲୀଠାରୁ ଜାତିସଂଘ ପର୍ଯ୍ୟନ୍ତ ଯେକୌଣସି ଏକ ପ୍ରସଙ୍ଗକୁ ନେଇ ସେ ସ୍ତମ୍ଭ ଲେଖୁଥିଲେ । ଯେଉଁ ସବୁ ପ୍ରସଙ୍ଗ ଉପରେ ସେ ସ୍ତମ୍ଭ ଲେଖୁଥିଲେ ସେଥିରେ ତାଙ୍କ ବୈଚାରିକ ଗଭୀରତା, ଅବବୋଧ ଓ ପାଠକମାନଙ୍କର ଚିନ୍ତା ପାଇଁ କିଛି ବିଶେଷ ଉପାଦାନ ରହୁଥିଲା । ଯେଉଁମାନେ ତାଙ୍କ ଲେଖାକୁ ନିୟମିତ ପାଠ କରୁଥିଲେ ସେଥିରୁ ତାଙ୍କ ଅଧ୍ୟୟନ, ଜ୍ଞାନ ଓ ମାନସିକ ବ୍ୟାପ୍ତିର ପରିଚୟ ପାଉଥିଲେ । ତେବେ ତାଙ୍କର କେତେ କେତେ ଲେଖାରେ ସମାଜ ପ୍ରତି ଯେଉଁ ବ୍ୟଙ୍ଗ ଓ ଶ୍ଳେଷ ବ୍ୟକ୍ତ ହେଉଥିଲା ସେଥିରୁ ତାଙ୍କର ଅନୁଭବ ଓ ଅନ୍ତର୍ଦୃଷ୍ଟିର ଗଭୀରତା ଜାଣି ହେଉଥିଲା । ସାମାଜିକ ବ୍ୟବସ୍ଥାର କପଟତା, ଅନ୍ୟାୟ, ଅମାନବିକତା ଓ ନାନା ଅପସଂସ୍କୃତିକୁ ସେ ତୀର୍ଯ୍ୟକ୍ ଭାବରେ ସମାଲୋଚନା କରୁଥିଲେ । ବହୁ ସମୟରେ ସେହି ସମାଲୋଚନାର ସ୍ୱର ବେଶ୍ କଠୋର ଲାଗୁଥିଲା । ତାଙ୍କର ଭାବ, ଭାଷା, ଶୈଳୀ, ସମାଲୋଚନା, ବ୍ୟଙ୍ଗ ଓ ବାର୍ତ୍ତାର କିଛି ସ୍ୱତନ୍ତ୍ରତା ରହିଥିଲା । ଜଣେ ନିୟମିତ ପାଠକ କୌଣସି ସ୍ତମ୍ଭ ବା ଲେଖାର ମାତ୍ର କେତୋଟି ବାକ୍ୟ ପଢ଼ିଦେବା ପରେ ଏହା ଯେ ଚିତ୍ତଭାଇଙ୍କର ଲେଖା ହୋଇଥିବ ଏହା ସହଜରେ ଜାଣି ପାରୁଥିଲା । ତେବେ କେତେକ ଲେଖାରେ କିଛି ଅସ୍ପଷ୍ଟତା ରହୁଥିଲା ଓ ଭାଷାର ଇନ୍ଦ୍ରଜାଲ ଭିତରେ ଓ ଏତେ ଫେଣେଇକରି ଲେଖିବା ଭିତରେ ତାଙ୍କ ବର୍ତ୍ତାଟି ସ୍ପଷ୍ଟ ହୋଇପାରୁ ନଥିଲା । ଏହିପରି ଲେଖା ପଢ଼ିବା ପରେ ମୁଁ ବେଳେବେଳେ ତାଙ୍କୁ ସମାଲୋଚନା କରି ସଂପାଦକଙ୍କୁ ପତ୍ର ଲେଖୁଥିଲି । ତେବେ ସମ୍ବାଦପତ୍ରରେ ତାଙ୍କ ସ୍ତମ୍ଭମାନ କୌତୁକପୂର୍ଣ୍ଣ, ମନୋରଂଜନଧର୍ମୀ ବା ନୀତିପୂର୍ଣ୍ଣ ଲେଖା ନ ଥିଲା । ବରଂ ସାମାଜିକ ପରିସ୍ଥିତି, ନାନା ମାନବିକ ସ୍ୱପ୍ନ ଓ ସମସ୍ୟା, ଶିକ୍ଷା, ସଂସ୍କୃତି, ଜାତୀୟ ତଥା ଆନ୍ତର୍ଜାତିକ ଘଟଣାପ୍ରବାହ ଇତ୍ୟାଦି ପ୍ରସଙ୍ଗ ଉପରେ କିଛି ଗମ୍ଭୀର ଚର୍ଚ୍ଚା ଥିଲା । ଓଡ଼ିଶାରେ ବିଭିନ୍ନ ସମ୍ବାଦପତ୍ରରେ ବର୍ଷ ବର୍ଷ ଧରି ସ୍ତମ୍ଭ ଲେଖିବାରେ ସେ ସମ୍ଭବତଃ ଅଦ୍ୱିତୀୟ ଥିଲେ । ସମ୍ବାଦପତ୍ରରେ ପ୍ରକାଶ ପାଉଥିବା ଲେଖାମାନ ନଖଦର୍ପଣେନ, ଜାତିରେ ମୁଁ ଯବନ, କାଳକୁ କଜ୍ଜଳ ଇତ୍ୟାଦି ଶିରୋନାମାରେ ପ୍ରକାଶ ପାଉଥିଲା । ଏହି ଲେଖାମାନ ପରବର୍ତ୍ତୀ ପର୍ଯ୍ୟାୟରେ "ସଂପାଦକର ସ୍ତମ୍ଭ" (ଏହା କେତେ ଖଣ୍ଡରେ ପ୍ରକାଶିତ), "ଜାତିରେ ମୁଁ ଯବନ", "ଆଉ ଏକ ଦୃଷ୍ଟିରେ", "କାଳକୁ କଜ୍ଜଳ" "ବିଶ୍ୱକୁ ଗବାକ୍ଷ" ଇତ୍ୟାଦି ଶିରୋନାମାରେ ପୁସ୍ତକ ଆକାରରେ ପ୍ରକାଶିତ ହୋଇଛି । ଏହି ସବୁ ସ୍ତମ୍ଭମାନଙ୍କର ପରିମାଣ ଓ ଗୁଣାତ୍ମକ ମାନ ଦୃଷ୍ଟିରୁ ଏହା ଉପରେ ସ୍ୱତନ୍ତ୍ର ଗବେଷଣାର ମଧ୍ୟ ଆବଶ୍ୟକତା ରହିଥିବା ମନେହୁଏ ।

ଜୀବନୀ ଓ ଆତ୍ମଜୀବନୀ ଲେଖିବା କ୍ଷେତ୍ରରେ ଚିତ୍ତଭାଇଙ୍କର ସୃଜନ ପ୍ରତିଭାର ମଧ୍ୟ ପରିଚୟ ମିଳେ । ତାଙ୍କର ତିନୋଟି ଜୀବନୀ ପାଠକ ମହଲରେ ବେଶ୍ ଆଦୃତ । "ଭିନ୍ନ ଏକ ବିବେକାନନ୍ଦ", "ନବକୃଷ୍ଣ ଚୌଧୁରୀ" ଓ "କ୍ରିଷ୍ଟେନ କଲଲ" ତାଙ୍କ ରଚିତ ତିନୋଟି ଭିନ୍ନ ରୁଚିର ଜୀବନୀ । ଜଣେ ଆଧ୍ୟାତ୍ମିକ ସୁଧାରକ, ଜଣେ ତ୍ୟାଗୀ ରାଜନୀତିଜ୍ଞ ଓ ଜଣେ କ୍ରାନ୍ତିକାରୀ ଶିକ୍ଷାବିତ୍‌ଙ୍କୁ ଚିତ୍ତଭାଇ ସୁନ୍ଦର ଭାବରେ ବ୍ୟକ୍ତ କରିଛନ୍ତି । ସ୍ୱାମୀ ବିବେକାନନ୍ଦ ବିଶ୍ୱ ଧର୍ମ ମହାସଭାରେ ଯୋଗ ଦେଇ ସେଠାରେ ଭାଷଣଦ୍ୱାରା ସମସ୍ତଙ୍କ ମନ ଛୁଇଁ ପାରିଥିଲେ । ଏହି ସନ୍ନ୍ୟାସୀ ପରିବ୍ରାଜକଙ୍କର ଜୀବନର ଅନେକ ରହସ୍ୟମୟ ଘଟଣା, ଭାରତର ଉତ୍କଟ ଦାରିଦ୍ର୍ୟ, ନିରକ୍ଷରତା, ସାମାଜିକ ଭେଦଭାବ ଦୂରକରିବା ପାଇଁ ତାଙ୍କ ପ୍ରାଣର ବ୍ୟାକୁଳତା ଓ ତାଙ୍କ ମାନବବାଦୀ ବିଚାର ସଂପର୍କରେ ଚିତ୍ତଭାଇ ସୁନ୍ଦର ଭାବରେ ପ୍ରକାଶ କରିଛନ୍ତି । ସେହିପରି ନବକୃଷ୍ଣ ଚୌଧୁରୀଙ୍କ ଜୀବନୀଟି ମଧ୍ୟ ଜଣେ ତ୍ୟାଗୀ ସଂଗ୍ରାମୀଙ୍କ କାହାଣୀ । ତାଙ୍କ ରାଜନୈତିକ ବିଚାର, ରାଜନୀତିରୁ ବିଦାୟ, ସମାଜ-ପୁନର୍ନିର୍ମାଣ କ୍ଷେତ୍ରରେ ଅବଦାନ, ଅହିଂସାମନ୍ତ୍ରରେ ଦୀକ୍ଷିତ ଥିବା ନବବାବୁଙ୍କ ସମାଜବାଦୀ ଦୃଷ୍ଟି ଓ ନକ୍ସାଲବାଦୀଙ୍କ ତ୍ୟାଗକୁ ସମର୍ଥନ, ମୁଖ୍ୟମନ୍ତ୍ରୀ ପଦବୀରେ ଥିବା ବେଳେ ତାଙ୍କ ସରଳ ଜୀବନଶୈଳୀ ଓ ଜୀବନବ୍ୟାପୀ ମାନବିକ ଆଦର୍ଶର ପ୍ରବକ୍ତାଙ୍କ କାହାଣୀକୁ ସେ ସୁନ୍ଦର ଭାବରେ ଉପସ୍ଥାପନ କରିଛନ୍ତି । ସେହିପରି କ୍ରିଷ୍ଟେନ କଲଲ ପାଶ୍ଚାତ୍ୟ ଭୂଖଣ୍ଡର ଜଣେ ସାଧାରଣ ଶିକ୍ଷକ । ତେବେ ଏହି ଶିକ୍ଷକ ଜଣଙ୍କ ଶିକ୍ଷା କ୍ଷେତ୍ରରେ ଯେଉଁ କ୍ରାନ୍ତିକାରୀ ପରିବର୍ତ୍ତନର ପଥପ୍ରଦର୍ଶକ ତାହାକୁ ବେଶ୍ ହୃଦୟସ୍ପର୍ଶୀ ଭାବରେ ଚିତ୍ତଭାଇ ଲେଖିଛନ୍ତି । ଗୋଟିଏ ପ୍ରଚଳିତ ବ୍ୟବସ୍ଥା ଓ ଢ଼ାଂଚାରେ ପରିବର୍ତ୍ତନ ପାଇଁ ଯେଉଁମାନେ ପଦକ୍ଷେପ ନିଅନ୍ତି ସେମାନଙ୍କୁ ରକ୍ଷଣଶୀଳ ବ୍ୟକ୍ତିମାନେ ଗ୍ରହଣ କରିପାରନ୍ତି ନାହିଁ ଓ ସେମାନେ ସମାଲୋଚନାର ଶରବ୍ୟ ହୁଅନ୍ତି । ତେବେ ସେମାନଙ୍କ ଭାବଧାରାରେ ଯେଉଁ ନୂତନତ୍ୱ ଓ ଜୀବନବୋଧର ସ୍ପର୍ଶ ଥାଏ ତାହା ପରବର୍ତ୍ତୀ ସମୟରେ ସମାଜର ଆଦର୍ଶ ହୁଏ । ଏହି ଭାବନାକୁ ଚିତ୍ତଭାଇ ସୁନ୍ଦର ଭାବରେ ବ୍ୟକ୍ତ କରିଛନ୍ତି । ଚିତ୍ତଭାଇଙ୍କର "ରୋହିତର ଡାଏରୀ" ସମ୍ଭବତଃ ଓଡ଼ିଆ ଭାଷା ସାହିତ୍ୟକୁ ତାଙ୍କର ଏକ ଅଭିନବ ଅବଦାନ । ତାଙ୍କ ମନର ଗହନ ଭାବନାମାନଙ୍କୁ ସେ ପ୍ରତିଦିନ ଡାଏରୀରେ ଲେଖୁଥିଲେ । ପ୍ରତିଦିନ ଲେଖୁଥିବା ଡାଏରୀ ମାନ ପରବର୍ତ୍ତୀ ସମୟରେ କୋଡ଼ିଏରୁ ଅଧିକ ଖଣ୍ଡରେ ପ୍ରକାଶିତ ହୋଇଛି । ଏହି ଡାଏରୀମାନଙ୍କରେ ତାଙ୍କ ମନର ଗହନ କଥା, ଅନୁଭବ, କେତେ କେତେ ଭାବାଦର୍ଶ, ସମାଜର ଚିତ୍ର, ସ୍ୱପ୍ନ, ବ୍ୟଥା ଇତ୍ୟାଦିର ନିଛକ ଚିତ୍ର ମିଳିଥାଏ । ସେହିପରି ତାଙ୍କର ଆତ୍ମଜୀବନୀ "ମିତ୍ରସ୍ୟ ଚକ୍ଷୁସା" ଓଡ଼ିଆ ଜୀବନୀ ସାହିତ୍ୟକୁ ତାଙ୍କର ଏକ ବଡ଼ ଅବଦାନ । ଜୀବନୀଟିରେ ତାଙ୍କ ଜୀବନର ଘଟଣା ପ୍ରବାହର କେବଳ

ବିବରଣୀ ନାହିଁ ଏଥିରେ ବହୁ ବିଷୟରେ ମାର୍ମିକ ବର୍ଣ୍ଣନା ରହିଛି । ଏକାଧିକ ଦେଶ, ଜଳବାୟୁ ଓ ବହୁ ସଂସ୍କୃତିରୁ ସେ ଯେଉଁ ସବୁ ପ୍ରେରଣା ପାଇଛନ୍ତି ଓ ଯେଉଁ ଗଭୀର ଆତ୍ମୀୟତାର ଡୋରି ଲଗାଇଛନ୍ତି, ତାହାର ହୃଦୟସ୍ପର୍ଶୀ ବର୍ଣ୍ଣନା ଜଣେ ପାଠକକୁ ଗଭୀର ସ୍ପର୍ଶ କରିଥାଏ । ତାଙ୍କ ଚେତନାର ଦିଗ୍‌ବଳୟ ଓ ହୃଦୟର ଅନୁରାଗର ଏକ ପରିଚୟ ଏହି ଆତ୍ମଜୀବନରୁ ମିଳିଥାଏ । ପାଶ୍ଚାତ୍ୟ ଭୂଖଣ୍ଡର ବହୁ ବିଦ୍ୱାନ୍ ଓ ପ୍ରାଜ୍ଞ ପ୍ରାଧ୍ୟାପକମାନଙ୍କର ଜ୍ଞାନ ଓ ସାଧନା ତାଙ୍କୁ ଜୀବନରେ କେତେ କେତେ ସୋପାନ ଅତିକ୍ରମ କରିବାରେ ପ୍ରେରଣା ଯୋଗାଇଛି ତାହାର ବହୁ ବ୍ୟାଖ୍ୟାନ "ମିତ୍ରସ୍ୟ ଚକ୍ଷୁସା"ରେ ରହିଛି । ପ୍ରଥମେ ତିନି ଖଣ୍ଡରେ ଓ ପରେ ଗୋଟିଏ ଖଣ୍ଡରେ ପ୍ରକାଶିତ ଏହି ଆତ୍ମଜୀବନୀଟି ସାତଶହରୁ ଊର୍ଦ୍ଧ୍ୱ ପୃଷ୍ଠା ବିଶିଷ୍ଟ ଏକ ସୁଦୀର୍ଘ ଜୀବନୀ ହେଲେ ମଧ୍ୟ ଏହା ଯେପରି ସୁଖପାଠ୍ୟ ସେହିପରି ପ୍ରେରଣାଦାୟକ ଓ ଏକ ଚିନ୍ତାଦ୍ୟୋତକ କୃତି । ଯଦି ଚିତ୍ତଭାଇ କିଛି .ନ ଲେଖି କେବଳ ରୋହିତର ଡାଏରୀ ଓ ତାଙ୍କ ଆତ୍ମଜୀବନୀ ଏତିକି ମାତ୍ର ଲେଖିଥାନ୍ତେ ତେବେ ବି ସେ ଓଡ଼ିଆ ସାହିତ୍ୟରେ ଏକ ଉଚ୍ଚ ସ୍ଥାନର ଅଧିକାରୀ ହୋଇଥାନ୍ତେ ।

ଚିତ୍ତଭାଇଙ୍କ ରଚିତ "ଭ୍ରମଣ ସାହିତ୍ୟ" ତାଙ୍କ ଅନୁଭବ ଓ ସୃଜନଶୀଳତାର ବହୁ ସ୍ୱାକ୍ଷର ବହନ କରେ । ସେ ତରୁଣ ବୟସରେ ବିଦ୍ୟାର୍ଥୀ ଭାବେ ପ୍ରଥମେ ଡେନମାର୍କ ଯାଇଥିଲେ । ବିଭିନ୍ନ ଅବସରରେ ଓ ଡେନମାର୍କରେ ପଢୁଥିବା ସମୟରେ ସେ ପୃଥିବୀର କେତେ କେତେ ଦେଶ ଭ୍ରମଣ କରିଛନ୍ତି । ଏହି ଭ୍ରମଣରୁ ସଂସାରର ନାନା ବୈଚିତ୍ର୍ୟକୁ ଅନୁଭବ କରିଛନ୍ତି । ବିଭିନ୍ନ ଦେଶ ଓ ମଣିଷମାନଙ୍କର ସଭ୍ୟତା, ସଂସ୍କୃତି, ଭାଷା, ସାହିତ୍ୟ, ଇତିହାସକୁ ଅନୁଶୀଳନ କରିବାର ସୁଯୋଗ ପାଇଛନ୍ତି । ଯେଉଁ ମାଟିକୁ ଯାଇଛନ୍ତି ସେହି ମାଟି ଓ ମଣିଷଙ୍କ ସହ ଆନ୍ତରିକତାର ବନ୍ଧନ ଯୋଡ଼ିଛନ୍ତି । ସବୁ ସ୍ଥାନରେ ସଖ୍ୟ ଓ ମିତ୍ରତାର ପରିଚୟ ପାଇଛନ୍ତି । ତାଙ୍କ ପରିବ୍ରାଜକୀୟ ଅନୁଭୂତି ଭିତରେ ଯେଉଁ ଭ୍ରମଣ କାହାଣୀ ଲେଖିଛନ୍ତି ଓ ସେହି କାହାଣୀ ଭିତରେ ସେ ଦେଶର ସଭ୍ୟତା, ସଂସ୍କୃତି, ଶିକ୍ଷା, ରାଜନୀତି, ସମାଜ ଇତ୍ୟାଦି ବିଷୟରେ ଯେଉଁ ଚିତ୍ର ପ୍ରଦାନ କରିଛନ୍ତି ସେସବୁ ଯେପରି ସୁଖପାଠ୍ୟ ସେହିପରି ଭାବୋଦ୍ଦୀପକ । "ଡେନମାର୍କ ଚିଠି', "ଭାରତରୁ ଚୀନ", "ଏରେତଜ୍ ଇସ୍ରାଏଲ" ଓ "ଆମେରିକାରୁ ଆସିଲି" ପୁସ୍ତକମାନ ତାଙ୍କ ଉପଲବ୍ଧି ଓ ଅନୁଶୀଳନର ଚିତ୍ର ପ୍ରଦାନ କରିଥାଏ । ଡେନମାର୍କ ଓ ଉତ୍ତର ୟୁରୋପୀୟ ରାଷ୍ଟ୍ର ନରୱେ, ଫିନଲ୍ୟାଣ୍ଡ, ସ୍ୱିଡେନ କିପରି ଏତେ ବିକଶିତ ହୋଇଛନ୍ତି ତାହାର ସୂଚନା ଲେଖାରୁ ମିଳିଥାଏ । ଇସ୍ରାଏଲରେ ଅଧିବାସୀ ଇହୁଦୀମାନେ କିପରି ଇତିହାସରେ ନିଜର ପରିଚୟ ଓ ପ୍ରତିଷ୍ଠା ପାଇଁ ବହୁ ସଂଗ୍ରାମ କରିଛନ୍ତି ଓ ନାନା ନିର୍ଯ୍ୟାତନାର ଶରବ୍ୟ ହୋଇଛନ୍ତି

ତାହାର ଚିତ୍ର "ଏରେତଜ୍ ଇସ୍ରାଏଲ"ରେ ବର୍ଣ୍ଣନା କରିଛନ୍ତି । ଏକ ପ୍ରାଚୀନ ସଭ୍ୟତା ଚୀନ୍‌ର ଲୋକମାନଙ୍କର ଜୀବନଧାରା, ରାଜନୈତିକ ପରିବର୍ତ୍ତନ ପାଇଁ ଗଣସଂଗ୍ରାମର ବହୁ କାହାଣୀ ଓ ପୃଥିବୀ ଇତିହାସରେ ଏକ ସାମ୍ୟବାଦୀ ରାଷ୍ଟ୍ରର ସ୍ଥିତି ନେଇ ମନଛୁଆଁ ବର୍ଣ୍ଣନା ମାନ ଦେଇଛନ୍ତି । ସବୁଠାରୁ ଧନୀ ଓ ସଭ୍ୟ ରାଷ୍ଟ୍ର କୁହାଯାଉଥିବା ଆମେରିକା ଅତୀତରେ ସାମ୍ରାଜ୍ୟବାଦର ଶିକାର ହେବାପରେ ସେଠିକାର ମୂଳ ଅଧିବାସୀମାନେ କିପରି ୟୁରୋପୀୟ ଆଗନ୍ତୁକଙ୍କ ଦ୍ୱାରା ନିର୍ଯ୍ୟାତିତ, ଅତ୍ୟାଚାରିତ ଓ ଅମାନବିକ କ୍ରୂରତାର ଶିକାର ହୋଇଛନ୍ତି ତାହାର ବହୁ ହୃଦୟ-ବିଦାରକ କାହାଣୀ "ଆମେରିକାରୁ ଆସିଲି" ପୁସ୍ତକରେ ଉଲ୍ଲେଖ କରିଛନ୍ତି । ହିମାଳୟ ଉପତ୍ୟକାକୁ ଆଗ୍ରାର ଗ୍ରାମୀଣ ବିଶ୍ୱବିଦ୍ୟାଳୟରେ ଅଧ୍ୟାପକ ଥିବା ବେଳେ ସେ ଭ୍ରମଣରେ ଯାଇଛନ୍ତି । ଏହି ଭ୍ରମଣରୁ ସେ "ଶିଳାତୀର୍ଥ" ନାମରେ ଯେଉଁ ପୁସ୍ତକଟି ରଚନା କରିଛନ୍ତି ତାହା ତାଙ୍କ ଅନୁଭବର ମହାତୀର୍ଥ କହିଲେ ଅତ୍ୟୁକ୍ତି ହେବ ନାହିଁ । ହିମାଳୟର ବିଭିନ୍ନ ଅଂଚଳ ଭ୍ରମଣ କରିବା ଭିତରେ ସେହି ଅଂଚଳର ଜନସମୂହର ଯେଉଁ ସାଂସ୍କୃତିକ ଚିତ୍ର ପ୍ରଦାନ କରିଛନ୍ତି ତାହା ଅତ୍ୟନ୍ତ ଚିତ୍ତରଂଜକ ଲାଗିଥାଏ । ଏହି ପରିବ୍ୟାପ୍ତ ଅଞ୍ଚଳରେ ଭାରତୀୟ ସଂସ୍କୃତି, ଦର୍ଶନ ଓ ସଭ୍ୟତାର ଯେଉଁ ବିକାଶ ଘଟିଥିଲା ତାହା ଅନେକାଂଶରେ ଏ ଦେଶର ଜୀବନତୀର୍ଥ ହୋଇଥିବା ମନେହୁଏ । "ସାଗର ଯାତ୍ରୀ" ଓ "ସାଗର ପଥ" ନାମରେ ଥିବା ତାଙ୍କର ଦୁଇଟି ପୁସ୍ତକରେ ସେ ବିଶାଳ ଓ ପରିବ୍ୟାପ୍ତ ଜଳରାଶି ମଧ୍ୟରେ ଯାତ୍ରା କଲାବେଳେ ଯେଉଁ ଅନୁଭୂତି ଲାଭ କରୁଥିଲେ ଓ ତାହାର ଯେଉଁ ବର୍ଣ୍ଣନା ଦେଇଛନ୍ତି ସେଥିରୁ ତାଙ୍କ ନାନ୍ଦନିକତାର ଗଭୀରତା ଜଣାପଡ଼େ । ମୋଟ ଉପରେ ତାଙ୍କର ଭ୍ରମଣ ସାହିତ୍ୟ ଭିତରେ ପରିବ୍ୟାପ୍ତ ବିଶ୍ୱର ବିବିଧତା, ମାନବୀୟ ସମସ୍ୟା ଓ ଅଭୀପ୍‌ସା, ନାନ୍ଦନିକ ଅନୁଭବ ଓ କେତେ କେତେ ସୂକ୍ଷ୍ମ ଆବେଗର ଚିତ୍ର ଜଣେ ପାଠକ ଲାଭ କରିଥାଏ ।

ଏସବୁ ବ୍ୟତୀତ ଚିତ୍ତଭାଇ ଯେଉଁ ବିପୁଳ ସାହିତ୍ୟ କୃତିର ଅନୁବାଦ ଓଡ଼ିଆରେ କରିଛନ୍ତି ସେଥିରୁ ତାଙ୍କର ପାରଦର୍ଶିତା ଓ ଭାଷାଗତ ପାଣ୍ଡିତ୍ୟର ପରିଚୟ ମିଳିଥାଏ । ଏ କ୍ଷେତ୍ରରେ ଅନୁବାଦ କରିବା ପାଇଁ ସେ ଯେଉଁ ସବୁ ପୁସ୍ତକମାନଙ୍କୁ ଚୟନ କରିଛନ୍ତି ସେଥିରୁ ତାଙ୍କ ସାହିତ୍ୟିକ ମୂଲ୍ୟାଦର୍ଶର ସୂଚନା ମିଳେ । ତାଙ୍କ ଅନୁବାଦଦ୍ୱାରା ସେ ଓଡ଼ିଆ ଅନୁବାଦ ସାହିତ୍ୟକୁ ଋଦ୍ଧିମନ୍ତ କରିବା ସହ ବିଶ୍ୱ ଜ୍ଞାନରାଜିର ଗବାକ୍ଷ ଖୋଲି ଦେଇଛନ୍ତି । ତିନି ଭାରତୀୟ ମନୀଷୀ ଯେଉଁମାନଙ୍କର ଜୀବନାଦର୍ଶ ଓ ବିଚାର ଚିତ୍ତ ଭାଇଙ୍କୁ ଗଭୀର ଭାବେ ପ୍ରଭାବିତ କରିଛି ସେମାନେ ହେଲେ ମହାତ୍ମାଗାନ୍ଧୀ, ବିଶ୍ୱକବି ରବୀନ୍ଦ୍ରନାଥ ଓ ଶ୍ରୀଅରବିନ୍ଦ । ସେ ରେଭେନ୍‌ସାରେ ପାଠ ପଢୁଥିବା ବେଳେ ମହାତ୍ମା ଗାନ୍ଧୀଙ୍କ ଆହ୍ୱାନରେ

ଅନୁପ୍ରାଣିତ ହୋଇ ସ୍ୱାଧୀନତା ଆନ୍ଦୋଳନରେ ଝାସ ଦେଇଥିଲେ । ଜେଲରୁ ମୁକ୍ତ ହେବା ପରେ ବିଶ୍ୱକବିଙ୍କ ବିଶ୍ୱଭାରତୀରେ ବିଦ୍ୟାର୍ଥୀ ହେବା ସହ ରବୀନ୍ଦ୍ରନାଥଙ୍କ କବିତ୍ୱ ଓ ଆଦର୍ଶରେ ପ୍ରଭାବିତ ହୋଇଥିଲେ । ପରବର୍ତ୍ତୀ ପର୍ଯ୍ୟାୟରେ ଶ୍ରୀ ଅରବିନ୍ଦ ଓ ଶ୍ରୀମାଙ୍କର ଆଧ୍ୟାତ୍ମିକ ସାଧନା ଓ ସେମାନଙ୍କ ପ୍ରଚଳିତ ଶିକ୍ଷାବ୍ୟବସ୍ଥାରେ ନିଜକୁ ସଂପୃକ୍ତ କରିଥିଲେ । ପରିଣାମତଃ ସେ ଗାନ୍ଧୀ, ରବୀନ୍ଦ୍ରନାଥ ଓ ଶ୍ରୀ ଅରବିନ୍ଦଙ୍କ କେତେକ ରଚନାମାନଙ୍କୁ ଓଡ଼ିଆରେ ଅନୁବାଦ କରିଛନ୍ତି । ସେହିପରି କେତେକ ପାଶ୍ଚାତ୍ୟ ମନୀଷୀଙ୍କର ଲେଖା, ନୋବେଲ ପୁରସ୍କାର ପ୍ରାପ୍ତ କେତେକ ପୁସ୍ତକ ଓ କିଛି ଶିକ୍ଷାବିତ୍‌ଙ୍କର କୃତିମାନଙ୍କୁ ସେ ଓଡ଼ିଆରେ ମଧ୍ୟ ଅନୁବାଦ କରିଛନ୍ତି । ମହାତ୍ମାଙ୍କର ଯେଉଁ କୃତିମାନଙ୍କୁ ସେ ଓଡ଼ିଆରେ ଅନୁବାଦ କରିଛନ୍ତି ସେ ଭିତରେ ମୁଖ୍ୟ ହେଲା - "ଛାତ୍ରଙ୍କ ପ୍ରତି", "ନାରୀସମାଜ ପ୍ରତି", "ସ୍ୱାଧୀନତା ଓ ତାପରେ", "ଗାନ୍ଧୀ ମାନସ" ଇତ୍ୟାଦି । ସେ ଜୀବନସାରା ଗାନ୍ଧୀଙ୍କ ମୌଳିକ ଆଦର୍ଶ ପ୍ରତି ମଧ୍ୟ ସମର୍ପିତ ଥିବା ମନେହୁଏ । ସତ୍ୟ ଓ ଅହିଂସାକୁ ଜୀବନର ସର୍ବଶ୍ରେଷ୍ଠ ମୂଲ୍ୟବୋଧ ଭାବେ ଗ୍ରହଣ କରିବା, ଶରୀର ଶ୍ରମକୁ ଯଥେଷ୍ଟ ସମ୍ମାନ ଦେବା, କୌଣସି ପ୍ରକାରର ଭେଦଭାବକୁ ଗ୍ରହଣ ନ କରିବା ଇତ୍ୟାଦି ଆଦର୍ଶ ପ୍ରତି ସେ ପ୍ରତିବଦ୍ଧ ରହିଥିଲେ । ବିଶ୍ୱକବିଙ୍କର ଯେଉଁ କୃତିମାନଙ୍କୁ ସେ ଓଡ଼ିଆ କରିଛନ୍ତି ସେ ଭିତରେ "ଦି ଭଉଣୀ",'ବିନୋଦିନୀ', 'ରବୀନ୍ଦ୍ର ଗଳ୍ପ ଚୟନ', 'ଋଷିଆ ଚିଠି' ଇତ୍ୟାଦି ପ୍ରଧାନ ଅଟେ । ଏହା ସହିତ ସେ ରବୀନ୍ଦ୍ର ସଂଗୀତ ଗାନ କରିବାରେ ଅତି ଆନନ୍ଦ ଅନୁଭବ କରୁଥିଲେ । ଶ୍ରୀ ଅରବିନ୍ଦଙ୍କ ରଚନାମାନଙ୍କୁ ଓଡ଼ିଆରେ ଅନୁବାଦ କରିବା ଅତ୍ୟନ୍ତ ଜଟିଳ ବ୍ୟାପାର ଥିଲା । ଶ୍ରୀଅରବିନ୍ଦଙ୍କ ଭାଷାର କ୍ଲିଷ୍ଟତା, ଭାବର ଗଭୀରତା ଓ ଅମୂର୍ତ୍ତ ତତ୍ତ୍ୱ ନିହିତ ଭାବନା ଯୋଗୁଁ ସେ ସବୁକୁ ଓଡ଼ିଆରେ ଅନୁବାଦ କରିବା ଏତେ ସହଜ ବ୍ୟାପାର ନ ଥିଲା । ଶ୍ରୀଅରବିନ୍ଦଙ୍କ ମହାନ କୃତି Life Divine (ପ୍ରାୟ ଏକ ହଜାର ପୃଷ୍ଠାର ପୁସ୍ତକ)କୁ ସେ ଦୁଇ ବର୍ଷରେ "ଦିବ୍ୟ ଜୀବନ" ଶିରୋନାମାରେ ତିନି ଖଣ୍ଡରେ ଅନୁବାଦ କରିବା ତାଙ୍କ ସୃଜନ ସାମର୍ଥ୍ୟର ସୂଚନା ଦିଏ । ଏହା ସହିତ ଶ୍ରୀ ଅରବିନ୍ଦଙ୍କର ଅନ୍ୟାନ୍ୟ କୃତି Synthesis of Yoga, (ଯୋଗ ସମନ୍ୱୟ), Human Cycle (ମାନବ ଯୁଗଚକ୍ର), Ideal of Human Unity (ମାନବ ଏକତାର ଆଦର୍ଶ) ମାନଙ୍କୁ ଓଡ଼ିଆ ଭାଷାରେ ଅନୁବାଦ କରିବା ସହ ଶ୍ରୀମାଙ୍କର ଅଧିକାଂଶ କୃତିମାନଙ୍କୁ "ମାତୃ ରଚନାବଳୀ" ଶିରୋନାମାରେ ମଧ୍ୟ ଅନୁବାଦ କରିଛନ୍ତି । ସେହିପରି ଜବାହରଲାଲ ନେହେରୁଙ୍କ ଲେଖାକୁ "ପୁରାତନ ପତ୍ରାବଳୀ" ନାମରେ ଓ ଆଶାପୂର୍ଣ୍ଣା ଦେବୀଙ୍କ ବିଖ୍ୟାତ ଉପନ୍ୟାସକୁ "ପ୍ରଥମ ପ୍ରତିଶ୍ରୁତି" ନାମରେ ଅନୁବାଦକରି ପ୍ରକାଶ କରିଛନ୍ତି । କେତେକ ପାଶ୍ଚାତ୍ୟ ବିଦ୍ୱାନ, ନୋବେଲ ପୁରସ୍କାର ପ୍ରାପ୍ତ ସାହିତ୍ୟିକ ଓ ଦାର୍ଶନିକମାନଙ୍କର ଲେଖାମାନଙ୍କୁ ମଧ୍ୟ ସେ ଓଡ଼ିଆରେ

ଅନୁସୃଜନ କରିଛନ୍ତି । 'ଡକ୍ଟର ଜିଭାଗୋ", 'ଚାଷୀ', 'ଯାତ୍ରୀ କାମନିତ' ନୋବେଲ ପୁରସ୍କାର ପ୍ରାପ୍ତ ଉପନ୍ୟାସ ସବୁକୁ ସେ ଅନୁବାଦ କରିଛନ୍ତି । ଖଲିଲ ଜିବ୍ରାନଙ୍କର "ବିଦ୍ରୋହୀ ଆତ୍ମା", ଦାର୍ଶନିକ ଓ ନୋବେଲ ପୁରସ୍କାରପ୍ରାପ୍ତ ସ୍ୱାଏଜରଙ୍କ ଆତ୍ମ ଜୀବନୀ "ମୋ ଜୀବନ ଓ ସାଧନା" ତାଙ୍କ ଅନୁସୃଜନ । ଏହିପରି ଦେଖିଲେ ତାଙ୍କ ଅନୁସୃଜନର ଦିଗନ୍ତ ଏତେ ବିସ୍ତାରିତ ଯେ ଏହାଦ୍ୱାରା ଓଡ଼ିଆ ଭାଷା ଓ ସାହିତ୍ୟ କିଛି ସମୃଦ୍ଧ ହୋଇପାରିଛି । ବିଶ୍ୱ ଚିନ୍ତାମାନସ ପ୍ରତି ଓଡ଼ିଆ ପାଠକଙ୍କର ଆଗ୍ରହ ସୃଷ୍ଟି କରିବାରେ ଚିତ୍ତଭାଇଙ୍କର ଅବଦାନ ଯଥାର୍ଥରେ ଅଭିନନ୍ଦନୀୟ । ବିଶ୍ୱ ସାହିତ୍ୟରେ ରହିଥିବା ମହତ୍ତର ଜୀବନବୋଧ, ଶୁଭ ପ୍ରେରଣା, ମାନବବାଦୀ ଅନୁରାଗ ଓ ସାରସ୍ୱତ ସାଧନା କ୍ଷେତ୍ର ପ୍ରତି ସେ ଦୃଷ୍ଟି ଆକର୍ଷଣ କରିଛନ୍ତି । ଯେଉଁ ସାହିତ୍ୟିକ ଅନ୍ତର୍ଦୃଷ୍ଟି, ଭିତରେ ମାନବବାଦୀ ଚେତନା ଓ ସାର୍ବଜନୀନ ଦୃଷ୍ଟିଭଙ୍ଗୀର ଚିତ୍ର ରହିଛି ସେହିପରି କିଛି କୃତିମାନଙ୍କୁ ସେ ଓଡ଼ିଆରେ ଅନୁସୃଜନ କରିବା ତାଙ୍କ ରୁଚିର ପରିଚୟ ଦେଇଥାଏ । ସାହିତ୍ୟ, ଦର୍ଶନ ଓ ଶିକ୍ଷା କ୍ଷେତ୍ରରେ ଆଦର୍ଶ ଓ ନୂତନ ଦିଗନ୍ତ ସୃଷ୍ଟି କରିଥିବା ପ୍ରାଚ୍ୟ ଓ ପାଶ୍ଚାତ୍ୟ ମନୀଷୀମାନଙ୍କର କୃତିମାନଙ୍କୁ ଓଡ଼ିଆରେ ଅନୁସୃଜନ କରି ସେ ଓଡ଼ିଆ ସାହିତ୍ୟର ଦିଗନ୍ତକୁ ଯେ ବିସ୍ତାର କରିଛନ୍ତି ଏହା ନିଃସନ୍ଦେହ ମନେହୁଏ । ତାଙ୍କ ସାରସ୍ୱତ ସାଧନା ଦ୍ୱାରା ଓଡ଼ିଆ ଭାଷା ସାହିତ୍ୟ ଯେ ସମୃଦ୍ଧ ହୋଇଛି ଏହା ମୋର ବ୍ୟକ୍ତିଗତ ଉପଲବ୍ଧି ।

ତାଙ୍କ ବ୍ୟକ୍ତିତ୍ୱର ଅନ୍ୟ ଯେଉଁ ବିଭବଟି ମୋତେ ଆକର୍ଷିତ କରିଥାଏ ତାହା ହେଲା ତାଙ୍କ ବିଶ୍ୱଦୃଷ୍ଟି । ତାଙ୍କର ବ୍ୟାପକ ସଂପର୍କ, ଗଭୀର ଅଧ୍ୟୟନ,ବୌଦ୍ଧିକତା, ସାରସ୍ୱତ ସାଧନା ଓ ସାହିତ୍ୟିକ ସୌନ୍ଦର୍ଯ୍ୟଚେତନା ବ୍ୟତୀତ ତାଙ୍କ ଭିତରର ମାନବବାଦୀ ଜୀବନଦୃଷ୍ଟି ଓ ଏକ ଅନ୍ତର୍ଜାତୀୟ ଚେତନା ତାଙ୍କ ବ୍ୟକ୍ତିତ୍ୱର ଅନ୍ୟ ଏକ ବିଭବ । ତାଙ୍କ ପ୍ରସାରିତ ବିଶ୍ୱଦୃଷ୍ଟିକୁ ସେ "ରୋହିତର ଦୃଷ୍ଟି" ବୋଲି 'ରୋହିତର ଡାଏରୀ'ରେ ଅଭିହିତ କରିଛନ୍ତି । ଐତରେୟ ବ୍ରାହ୍ମଣରେ ରୋହିତ ଉପାଖ୍ୟାନ ବିଷୟଟି ତାଙ୍କୁ ସ୍ପର୍ଶ କରିଛି ଓ ତାହାରି ଆଧାରରେ ସେ ନିଜ ଡାଏରୀକୁ ରୋହିତର ଡାଏରୀ ଭାବେ ନାମିତ କରିଛନ୍ତି । ରୋହିତକୁ ଇନ୍ଦ୍ର 'ଚରୈବେତି ମନ୍ତ୍ର' ଦେଇଛନ୍ତି । ଏହାର ଅର୍ଥ ହେଉଛି ସୂର୍ଯ୍ୟ ପ୍ରତ୍ୟହ ବିଚରଣ କରି ମଧ୍ୟ ଶ୍ରାନ୍ତ ହେଉ ନାହିଁ, ପ୍ରତିଦିନ ସକାଳେ ନୂତନ ତେଜରେ ଉଦୟ ହେଉଛି । ରୋହିତ ସେହିପରି ଆଗକୁ ଯିବାରେ କ୍ଳାନ୍ତ ନ ହେଉ । ରୋହିତ ଏଠାରେ ସୂର୍ଯ୍ୟ ସମବାଚୀ ଶବ୍ଦ । ଏହାର ଏକ ଅନ୍ୟ ତାତ୍ପର୍ଯ୍ୟ ମଧ୍ୟ କରାଯାଇ ପାରିବ । ସୂର୍ଯ୍ୟ କେବେ ଭେଦଭାବ କରେ ନାହିଁ, ସେ ନିଜର କିରଣ ଓ ଆଲୋକକୁ ସମସ୍ତଙ୍କୁ ସମାନ ଭାବରେ ବିତରଣ କରିଥାଏ । କିନ୍ତୁ ବିଡ଼ମ୍ବନାର ବିଷୟ ଯେ ଆମ ସଂସାରରେ କେତେ କେତେ ଉଗ୍ର ସାଂପ୍ରଦାୟିକତାର

ମନୋଭାବ ରହିଛି । ମଣିଷ ମଣିଷ ଭିତରେ ଜାତି, ଧର୍ମ, ବର୍ଣ୍ଣ, ଲିଙ୍ଗ, ଭାଷା ଇତ୍ୟାଦି ନାନା ଭୌଗୋଳିକ ଓ ସାଂସ୍କୃତିକ କାରଣରୁ ପ୍ରାଚୀର ସୃଷ୍ଟି ହୋଇଛି । ତେବେ ସାରା ବିଶ୍ୱରେ ଓ ବିଭିନ୍ନ ସଂସ୍କୃତିରେ କିଛି ଉଦାର ମାନବବାଦୀ ବ୍ୟକ୍ତି ରହିଛନ୍ତି ଯେଉଁମାନେ ସାର୍ବଜନୀନ ଦୃଷ୍ଟିଭଙ୍ଗୀ ଓ ବିଶ୍ୱମନୋଭାବକୁ ସମଗ୍ର ପୃଥିବୀରେ ପ୍ରସାର କରିଥାନ୍ତି । ଚିତ୍ତଭାଇ ପୃଥିବୀର ବହୁ ମନୀଷୀଙ୍କର ଲେଖା ପଢ଼ିଛନ୍ତି, ବହୁ ଦେଶକୁ ଯାଇଛନ୍ତି, ବହୁ ଲୋକଙ୍କ ସହ ହୃଦୟର ସମ୍ବନ୍ଧ ଯୋଡ଼ିଛନ୍ତି ଓ ନିଜ ଚେତନାକୁ ପ୍ରସାରଣ କରିବାର ସୁଯୋଗ ପାଇଛନ୍ତି । ଏ ସବୁର ସମ୍ମିଳିତ ପ୍ରଭାବରୁ ତାଙ୍କ ଭିତରେ ଏକ ଅନ୍ତର୍ଜାତୀୟ ଜୀବନଦୃଷ୍ଟିର ବିକାଶ ହୋଇଛି । ସେ ସକଳ ସଂକୀର୍ଣ୍ଣତାର ଊର୍ଦ୍ଧ୍ୱକୁ ଯାଇଛନ୍ତି । ସଂସାରରେ ଯାହା ସବୁ ଅଶୋଭନୀୟତା, ଅମାନବିକତା, ଅନ୍ୟାୟ ଓ ଅବିବେକିତା ରହିଛି ତାହାକୁ ଦୂର କରିବାକୁ ସେ ବିଭିନ୍ନ ଲେଖାରେ ତାଙ୍କ ପ୍ରାଣର ବ୍ୟାକୁଳତା ବ୍ୟକ୍ତ କରିଛନ୍ତି । ସମଗ୍ର ପୃଥିବୀ ଏକ ପରିବାର ହେବା ଓ ସମଗ୍ର ମଣିଷ ସମୁଦାୟ ଭ୍ରାତୃତ୍ୱର ଡୋରିରେ ଛନ୍ଦି ହେବା ସେ ଆନ୍ତରିକତାର ସହ ଚାହିଁଛନ୍ତି । ତାଙ୍କର କେତେକ ଲେଖାରେ ଏକ ବିଶ୍ୱକୈନ୍ଦ୍ରିକ ଚେତନା ଓ ଭ୍ରାତୃତ୍ୱ ଭାବର ବାର୍ତ୍ତା ରହିଛି । ତାଙ୍କର ଅଧିକାଂଶ ଲେଖାରେ ଜୀବନ ଓ ଜଗତକୁ ଭଲ ପାଇବାର ସଂକେତ ରହିଛି । ତାଙ୍କ ସାହିତ୍ୟରେ ବିଶ୍ୱଜୀବନ ପ୍ରତି ଏକ ଆନ୍ତରିକ ଶ୍ରଦ୍ଧା ବ୍ୟକ୍ତ ହୋଇଛି । ସେ ଏକ ମିତ୍ରର ଦୃଷ୍ଟି ନେଇ ସମଗ୍ର ବିଶ୍ୱକୁ ଦେଖିବାକୁ ଚାହିଁଛନ୍ତି ଓ ସେ ପାଇଁ ତାଙ୍କ ଆତ୍ମଜୀବନୀର ନାମ ରଖିଛନ୍ତି "ମିତ୍ରସ୍ୟ ଚକ୍ଷୁସା" ।

ଜୀବନ ଓ ସମାଜର ଗତିଶୀଳତାକୁ ଲକ୍ଷ୍ୟ କରୁଥିବା ବ୍ୟକ୍ତି କେବେହେଲେ ସଂକୁଚିତ ହେବ ନାହିଁ । ବ୍ୟକ୍ତି ଯେତେ ଅଧିକରୁ ଅଧିକ ନିଜ ଚେତନାରେ ପ୍ରସାରିତ ହେବ ଓ ସକାରାତ୍ମକ ଜୀବନଦୃଷ୍ଟିରେ ଆସ୍ଥା ରଖିବ ସେ ଚାରିପାଖର ପ୍ରାଚୀରମାନଙ୍କୁ ଅତିକ୍ରମଣ କରିପାରିବ । ବିଭିନ୍ନ ଧର୍ମଗ୍ରନ୍ଥରେ ବିଶ୍ୱ ଏକ ପରିବାର, ବିଶ୍ୱ ଭ୍ରାତୃତ୍ୱ, ସହିଷ୍ଣୁତା, ଅହିଂସାର ଅଭିନବ ବାର୍ତ୍ତାମାନ ରହିଛି । କିନ୍ତୁ ବିଡ଼ମ୍ବନାର ବିଷୟ ଏହି ମୂଲ୍ୟବୋଧ ଗୁଡ଼ିକ ଜନଜୀବନରେ ପ୍ରତିଫଳିତ ହୋଇ ନାହିଁ । ବରଂ ବିଭିନ୍ନ ଧର୍ମଗୋଷ୍ଠୀ ଭିତରେ କେତେ କେତେ ତିକ୍ତତା, ଅସହିଷ୍ଣୁତା, ବିଭେଦ ଓ ବିଦ୍ୱେଷ ଭରିରହିଛି । ଆମ ସଂସାରରେ କେତେ କେତେ ଯୁଦ୍ଧ, ହିଂସା ଓ ନାନା କ୍ରୂରତା ବିଭିନ୍ନ କାରଣରୁ ସର୍ବଦା ଘଟିଚାଲିଛି । ତେବେ ବିଦ୍ୱେଷ ଓ ଘୃଣାର ସଂସାର ହେଉଛି ଏକ ଦୁଃଖର ସଂସାର । ଚିତ୍ତଭାଇ ବିଭିନ୍ନ ଦେଶର ଦାର୍ଶନିକ, ସାହିତ୍ୟିକ ଓ ମାନବବାଦୀ ସୁଧାରକଙ୍କର ଲେଖାରେ ଅନୁଭବ କରିଥିବା ମାନବିକ ମହାନୁଭବତାକୁ ଉପଲବ୍ଧି କରିବା ପରେ ନିଜ ଜୀବନଦୃଷ୍ଟିକୁ ବିଶ୍ୱ ଦୃଷ୍ଟିରେ ରୂପାନ୍ତରିତ କରିଛନ୍ତି । ତାଙ୍କର ବିଭିନ୍ନ ଲେଖା ଓ ଜୀବନବୋଧରେ ମାନବିକ ମହାନୁଭବତା

ଜନିତ ଆନ୍ତର୍ଜାତିକ ଦୃଷ୍ଟିଭଙ୍ଗୀରେ ବାର୍ତ୍ତା ରହିଛି । ବିଶ୍ୱଭ୍ରାତୃତ୍ୱ ଓ ମାନବବାଦ ଶିକ୍ଷା ମାଧ୍ୟମରେ ଯେ ପ୍ରସାରିତ ହୋଇପାରିବ ସେଥିପାଇଁ ସେ ଜୀବନସାରା ଶିକ୍ଷକଟିଏ ହୋଇ ରହିବାର ଅଭିଳାଷ ପୋଷଣ କରିଛନ୍ତି । ଏତଦ୍‌ବ୍ୟତୀତ ତାଙ୍କ ଲେଖା ମାଧ୍ୟମରେ ମାନବିକ ହୃଦୟବତ୍ତାର ବାର୍ତ୍ତା ଦେବାକୁ ସେ ପ୍ରୟାସ କରିଛନ୍ତି । ସକଳ ପ୍ରାଚୀର ଓ ଭେଦଭାବକୁ ଅତିକ୍ରମ କରି ଏକ ବିଶ୍ୱଭାବ ପୋଷଣ କରିବାର ଯେଉଁ ବିଚାର ନାନା କ୍ଷେତ୍ରରେ ବ୍ୟକ୍ତ କରିଛନ୍ତି ତାହା ହିଁ ତାଙ୍କ ଜୀବନ ଦର୍ଶନ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଉପସଂହାରରେ ମୋ ଅନୁଭବରେ ଚିତ୍ତଭାଇ ମଣିଷକୁ ଭଲ ପାଉଥିବା ଜଣେ ମଣିଷ । ନିଜର ସକଳ ଗବାକ୍ଷକୁ ଖୋଲିଦେଇ ସେ ବିଶ୍ୱକୁ ଏକ ପରିବାର ରୂପରେ ଦେଖିଛନ୍ତି । ସକଳ ଭେଦଭାବକୁ ଅତିକ୍ରମ କରି ସେ ନିଜ ଭିତରେ ବିଶ୍ୱଭାବ ପୋଷଣ କରିଛନ୍ତି । ସକଳ ଛଳନା ଓ ଅହଙ୍କାରର ଊର୍ଦ୍ଧ୍ୱକୁ ଯାଇ ସବୁ ସ୍ଥାନରେ ସ୍ନେହ ଓ ସଂପ୍ରୀତିର ସଂପର୍କ ଯୋଡ଼ିଛନ୍ତି । ଜୀବନ ସାରା ସାହିତ୍ୟ ସାଧନାରେ ବ୍ରତୀ ହୋଇ ରାଶି ରାଶି ଲେଖା ଲେଖିଛନ୍ତି । ତାଙ୍କ ସାହିତ୍ୟ-ସୃଜନଦ୍ୱାରା ଅଗଣିତ ପାଠକ ମଣ୍ଡଳୀ ସୃଷ୍ଟି କରିଛନ୍ତି । ଓଡ଼ିଆ ଗଦ୍ୟ ସାହିତ୍ୟ ଓ ଅନୁବାଦ କ୍ଷେତ୍ରରେ ସର୍ବକାଳୀନ ସ୍ୱାକ୍ଷର ରଖିଛନ୍ତି । ନିଜର ଶିକ୍ଷକ-ମନସ୍କତା ଯୋଗୁଁ ଜୀବନସାରା ଅଧ୍ୟୟନରେ ବ୍ରତୀ ହୋଇଛନ୍ତି । ନିଜ ଭିତରେ ଜିଜ୍ଞାସୁ ମନୋଭାବ ସର୍ବଦା ରଖି ଆସିଛନ୍ତି । ସେଥିପାଇଁ ତାଙ୍କର ବୌଦ୍ଧିକ ଅନ୍ୱେଷା କେତେ କେତେ ଦିଗନ୍ତକୁ ସ୍ପର୍ଶ କରିପାରିଛି ।

ତାଙ୍କ ବିଷୟରେ କିଛି ଲେଖିବା ବେଳେ ସେ ସ୍ମୃତିର ସାମ୍ନାକୁ ଆସିଯା'ନ୍ତି । ତାଙ୍କ ସଦିଚ୍ଛା ଓ ପ୍ରେରଣା ସ୍ମୃତି ଭିତରେ ଉଜ୍ଜୀବିତ ହୋଇ ଉଠେ । ତାଙ୍କ ସାନ୍ନିଧ୍ୟ, ଆଲୋଚନା ଓ ସମୟେ ସମୟେ କିଛି ମତପାର୍ଥକ୍ୟ ମନେ ପଡ଼ିଯାଏ । ସେ ମୋ ସ୍ମୃତିରେ ଜୀବନ୍ତ ହୋଇଉଠନ୍ତି । ତାଙ୍କ ଅବର୍ତ୍ତମାନରେ ସେ ମୋର ଭାବମଣ୍ଡଳକୁ ଆବେଷ୍ଟନ କରିନିଅନ୍ତି । ଶେଷରେ ତାଙ୍କୁ ପ୍ରଣାମ ଓ ହୃଦୟର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।



# ଶ୍ରମ, ଶ୍ରମିକ ଓ ସାମାଜିକ ସୁରକ୍ଷା

ମନୁଷ୍ୟ ସମାଜ ଏକ ଆଦିମ ଅବସ୍ଥାରୁ ନାନା ପରିବର୍ତ୍ତନ ଓ ସ୍ତର ଦେଇ ଆଜିର ସ୍ଥିତିକୁ ଆସିଛି । ନାନା କାରଣ ଦେଇ ମାନବ ସଭ୍ୟତାର କ୍ରମବିକାଶ ଘଟିଛି । କୃଷିର ଜ୍ଞାନଠାରୁ ମଣିଷର ଯାଯାବର ଜୀବନର ପରିସମାପ୍ତି ଘଟିଛି ଓ ସେହିଠାରୁ ସଭ୍ୟତାର ବିକାଶପର୍ବ ଆରମ୍ଭ ହୋଇଛି । ପୃଥିବୀର ବିଭିନ୍ନ ଭୂଖଣ୍ଡରେ ବିଭିନ୍ନ ସଭ୍ୟତାର ଅଗ୍ରଗତି ଘଟିଛି । ସଭ୍ୟତାମାନଙ୍କର ଅଗ୍ରଗତି କ୍ଷେତ୍ରରେ ନାନା କାରଣ ଓ କାହାଣୀ ରହିଛି । ସଭ୍ୟତାର ବିକାଶର କାହାଣୀ ପଶ୍ଚାତରେ ବହୁବିଧ କାରଣ ରହିଥିଲେ ମଧ୍ୟ ମନୁଷ୍ୟର ବୁଦ୍ଧି ଓ ଶ୍ରମ ଏ କ୍ଷେତ୍ରରେ କିଛିଟା ନିର୍ଣ୍ଣାୟକ ଭୂମିକା ନିର୍ବାହ କରିଛି । ପ୍ରକୃତିରେ ଓ ନିଜ ପରିବେଶରେ ଉପଲବ୍ଧ ବସ୍ତୁମାନଙ୍କୁ ବ୍ୟବହାର କରି ଜୀବନର ଓ ବୃହତ୍ତର ଜନଗୋଷ୍ଠୀର ଆବଶ୍ୟକତାକୁ ପୂରଣ କରିବାକୁ ମଣିଷ ନିଜର ବୁଦ୍ଧି ପ୍ରୟୋଗ କରିଛି । ସଭ୍ୟତାରେ ଯାହା କିଛି ବିକଶିତ ହୋଇଛି ସେସବୁ ନିଜର ବୁଦ୍ଧି ଓ ଶ୍ରମ ଦେଇ ମଣିଷ ନିର୍ମାଣ କରିବାକୁ ପ୍ରଯତ୍ନ କରିଛି । ଜୀବନର ଆବଶ୍ୟକତା ପୂରଣ କରିବା, ପ୍ରାକୃତିକ ପ୍ରତିକୂଳତାକୁ ସମ୍ମୁଖୀନ ହୋଇ ଏକ ନିରାପଦ ଜୀବନ ନିର୍ବାହ କରିବା, ସାମାଜିକ ଜୀବନ ପ୍ରବାହକୁ ଉନ୍ନତ ଓ ଶୃଙ୍ଖଳିତ କରିବା ପାଇଁ ମଣିଷ ସର୍ବଦା ଉଦ୍ୟମ କରି ଆସିଛି । ମଣିଷର ବୁଦ୍ଧି ଓ ଶ୍ରମ ଯୋଗୁ ସଭ୍ୟତାର ଅଗ୍ରଗତି ଘଟିଛି । ଜୀବନର ଗୁଣାତ୍ମକ ମାନରେ ପରିବର୍ତ୍ତନ ଘଟି ଚାଲିଛି ଓ ରାଷ୍ଟ୍ରୀୟ ଭାବନା ଦୃଢ଼ ଭିତ୍ତି ନେଇପାରିଛି । ଏପରିକି ଏହି ପ୍ରୟାସ ଭିତରେ ଆନ୍ତର୍ଜାତିକ ଚେତନାର ବିକାଶ ହୋଇଛି ଓ ଏକ ବିଶ୍ୱଦୃଷ୍ଟିର ଭାବନା ଜୀବନବୋଧରେ ସ୍ଥାନ ପାଇଛି । ବୁଦ୍ଧି, ବିଚାରଶୀଳତା ଓ ବୈଜ୍ଞାନିକ ମନୋଭାବର ବି କ୍ରମବିବର୍ତ୍ତନ ଘଟିଛି । ଏସବୁ ସଭ୍ୟତାର ଅଗ୍ରଗତିରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ନିର୍ବାହ କରିଛନ୍ତି ଓ ସଭ୍ୟତାକୁ ଲକ୍ଷ ଦେବାରେ ସହାୟକ ହୋଇଛନ୍ତି । ମଣିଷ ବୁଦ୍ଧିର ପ୍ରତିଫଳନ ହୋଇଛି ତାର ଶ୍ରମରେ । ସକଳ ଭୌତିକ ଉତ୍ପାଦନ ବା ନିର୍ମାଣ ମନୁଷ୍ୟର ଶ୍ରମ ମଧ୍ୟ ଦେଇ ସମ୍ଭବ ହୋଇଛି । କୃଷି ଉତ୍ପାଦନ, ଆବଶ୍ୟକୀୟ ବସ୍ତୁ ନିର୍ମାଣ, ଜୀବନର ନାନାବିଧ ଆବଶ୍ୟକତାର ପୂରଣ ଓ ରୋଗବାଧକରୁ ସୁରକ୍ଷା ଇତ୍ୟାଦି ପାଇଁ ନିଜର ବୁଦ୍ଧି ଓ ଶ୍ରମ ଲଗାଇ ମଣିଷ ପ୍ରଯତ୍ନ

କରିଛି । ସବୁରି ବିକାଶ ପଶ୍ଚାତରେ ମାନବିକ ଉଦ୍ୟମ ଓ ଶ୍ରମର କାହାଣୀ ରହିଛି । କୌଣସି ବିକାଶ ଆକାଶରୁ ଖସି ନାହିଁ ବା କେଉଁ କଳ୍ପିତ ଦିଅଁ ଦେବତାଙ୍କ ଆଶୀର୍ବାଦରୁ ଘଟି ନାହିଁ । ସବୁ ପଛରେ ରହିଛି ମାନବିକ ପ୍ରଚେଷ୍ଟା ଓ ଶ୍ରମ । ମଣିଷର ଶ୍ରମଶକ୍ତି ହିଁ ଆମର ଆବଶ୍ୟକୀୟ ପ୍ରୟୋଜନୀୟତା ପୂରଣ କରିବା ଦିଗରେ ନିର୍ଣ୍ଣାୟକ ଭୂମିକା ନେଇଛି । କେତେକ ଏହି ଦୃଷ୍ଟିରୁ ଶ୍ରମକୁ ଅସୀମ ସଂପଦ କହିଥାନ୍ତି । ପ୍ରାକୃତିକ ଉପାଦନମାନଙ୍କୁ ସଂପଦରେ ରୂପାନ୍ତରିତ କରିବାରେ ଶ୍ରମ ହିଁ ମୁଖ୍ୟ ଭୂମିକା ନେଇଥାଏ । ଶ୍ରମକୁ ଏହି ଦୃଷ୍ଟିରୁ ମାନବିକ ସୃଜନାତ୍ମକ ଶକ୍ତିର ପରିପ୍ରକାଶ ବୋଲି ନିଆଯାଏ । କୃଷି ଉତ୍ପାଦନ, ବସ୍ତୁ ନିର୍ମାଣ, କଳାତ୍ମକ ପରିପ୍ରକାଶ, ସୃଜନଶୀଳ ଅଭିବ୍ୟକ୍ତି ଏସବୁ ମାନବିକ ଶ୍ରମର ପରିଣାମ । ସଭ୍ୟତାର ଆଦିପର୍ବରେ ସବୁ ଜନଗୋଷ୍ଠୀରେ ବ୍ୟକ୍ତି ନିଜର ଓ ନିଜ ପରିବାରର ଆବଶ୍ୟକତାକୁ ପୂରଣ କରିବା ପାଇଁ ଶ୍ରମରେ ସଂପୃକ୍ତ ରହୁଥିଲା । ଶାରୀରିକ ସ୍ତରରେ ଅକର୍ମଣ୍ୟ ବ୍ୟାଧିଗ୍ରସ୍ତ ବା ଜରାଜନିତ ଦୁର୍ବଳତାରେ ଆକ୍ରାନ୍ତ ହେବା ପର୍ଯ୍ୟନ୍ତ ଜୀବନଯାତ୍ରାର ଅପରିହାର୍ଯ୍ୟ ଦିଗ ଥିଲା ଶ୍ରମ । ପ୍ରତ୍ୟେକ ବ୍ୟକ୍ତି ଥିଲା ଶ୍ରମଜନ (Labouring human) । ଶ୍ରେଣୀହୀନ, ଶୋଷଣହୀନ ଓ ଭେଦଭାବରହିତ ସମାଜରେ ପ୍ରତ୍ୟେକ ବ୍ୟକ୍ତି ଥିଲା ଶ୍ରମଜନ ।

ସାମାଜିକ ବିକାଶ ପ୍ରକ୍ରିୟାରେ ସଭ୍ୟତାର ଇତିହାସରେ ରାଜତନ୍ତ୍ରର ବିକାଶ ସହ ସାମନ୍ତବାଦର ଅଭ୍ୟୁଦୟ ହୋଇଛି । ସାମନ୍ତବାଦ ସମାଜକୁ ଶ୍ରେଣୀବିଭକ୍ତ କରିଛି । ସମାଜର ପ୍ରଭାବଶାଳୀ ଓ କ୍ଷମତାଶାଳୀ ଗୋଷ୍ଠୀ ଭୂସଂପତ୍ତିର ମାଲିକ ହୋଇଛନ୍ତି ଓ ଅଗଣିତ ମଣିଷଙ୍କୁ ନାନା ଭାବରେ ଶୋଷଣ କରିଛନ୍ତି । କେତେକ ସଭ୍ୟତାରେ ଦାସତ୍ୱ ପ୍ରଥାର ଉଦ୍‌ଭବ ହୋଇଛି । ସମାଜର ମୁଷ୍ଟିମେୟ ଲୋକ କ୍ଷମତାର ଅଧିକାରୀ ହୋଇ ଅନ୍ୟ ଲୋକମାନଙ୍କୁ ଦାସ କରି ସେମାନଙ୍କର ଶ୍ରମକୁ ନିଜର ସ୍ୱାର୍ଥ ପାଇଁ ବିନିଯୋଗ କରିଛନ୍ତି । ଗ୍ରାମୀଣ କୃଷିଭିତ୍ତିକ ସମାଜରେ କୃଷିଶ୍ରମିକ, କାରିଗର ଶ୍ରେଣୀ ଓ କ୍ଷୁଦ୍ରଚାଷୀ ଶ୍ରମ ଦେଇ ବିଭିନ୍ନ କଥା ଉତ୍ପାଦନ କରନ୍ତି, ହେଲେ ଆର୍ଥିକ ମାନଦଣ୍ଡରୁ ଦୟନୀୟ ଭାବେ ଜୀବନ ନିର୍ବାହ କରିବାକୁ ବାଧ୍ୟ ହୋଇଛନ୍ତି । ରାଜନବର୍ଗ, ଜମିଦାର ଓ ସାମନ୍ତଶ୍ରେଣୀ ସକଳ ସଂପତ୍ତି ଓ ଜମିର ମାଲିକ ହୋଇଛନ୍ତି । ଏହି ପ୍ରେକ୍ଷାପଟରେ ଶାରୀରିକ ଶ୍ରମକୁ ନ୍ୟୂନ କରାଯାଇଛି ଓ ମାନସିକ ଶ୍ରମକୁ ମହତ୍ତ୍ୱ ଦିଆଯାଇଛି । ଶ୍ରେଣୀବିଭକ୍ତ ସମାଜରେ ଶାରୀରିକ ଶ୍ରମ ଦେଉଥିବା ବ୍ୟକ୍ତିମାନଙ୍କ ଅପେକ୍ଷା ମାନସିକ ଶ୍ରମ ଦେଉଥିବା ବ୍ୟକ୍ତିମାନେ ଉଚ୍ଚସ୍ଥାନ ନେଇଛନ୍ତି ।

ସଭ୍ୟତାର କ୍ରମବିକାଶର ଇତିହାସରେ ଆଧୁନିକ ବିଜ୍ଞାନ ସପ୍ତଦଶ ଶତାବ୍ଦୀରୁ ଆରମ୍ଭ ହୋଇଛି । ବିଜ୍ଞାନର ବିକାଶ ଚିନ୍ତା ରାଜ୍ୟରେ ତୁମୁଳ ଆଲୋଡନ ସୃଷ୍ଟି କରିଛି । ବିଜ୍ଞାନର ଭାବନାମାନ ଆସିବା ପୂର୍ବରୁ ସବୁ ସଭ୍ୟତାରେ ଧର୍ମର ଗଭୀର ପ୍ରଭାବ ରହିଥିଲା । ପ୍ରତ୍ୟେକ ଧର୍ମ ଏକ ସାଂସ୍କୃତିକ ଆଲୋଡନ ଭାବେ ମଣିଷର ସାମାଜିକ, ନୈତିକ ଓ ବୌଦ୍ଧିକ ଜୀବନବୋଧକୁ ନିୟନ୍ତ୍ରଣ କରି ରଖିଥିଲା । ପ୍ରତ୍ୟେକ ଧର୍ମଗୋଷ୍ଠୀ ନିଜ ଧର୍ମଗ୍ରନ୍ଥର ବାଣୀକୁ ଶାଶ୍ୱତ, ଚିରନ୍ତନ ଓ ଈଶ୍ୱର ପ୍ରେରିତ ଜ୍ଞାନ ବୋଲି ମନେ କରିଥିଲା । ପ୍ରତ୍ୟେକ ଧର୍ମ ଏକ ପାରଲୌକିକ ଜୀବନଦର୍ଶନକୁ ସ୍ୱୀକାର କରିଥିଲା ଓ ଏପରିକି ସମାଜର ଶ୍ରେଣୀବିଭାଜନକୁ ଏକ ଈଶ୍ୱରୀୟ ବ୍ୟବସ୍ଥା ଭାବେ ଚିତ୍ରଣ କରିଥିଲା । ବିଜ୍ଞାନର ଆଦି ପର୍ବଟି ଥିଲା ଧର୍ମ ସହ ଏକ ସଂଘର୍ଷର ସମୟ । ବିଜ୍ଞାନ କୌଣସି ଜ୍ଞାନକୁ ଶାଶ୍ୱତ ବା ଅଲଙ୍ଘନୀୟ ବୋଲି ଗ୍ରହଣ ନକରି ପର୍ଯ୍ୟବେକ୍ଷଣ ଓ ପରୀକ୍ଷଣ ଆଧାରିତ ତଥ୍ୟଭିତ୍ତିକ ଜ୍ଞାନକୁ ସ୍ୱୀକାର କରୁଥିଲା । ବିଜ୍ଞାନର ବିକାଶ ପଶ୍ଚାତରେ ଏହି ସିଦ୍ଧାନ୍ତ ରହିଥିଲା ଯେ ପ୍ରକୃତିରେ ଥିବା ସକଳ ବସ୍ତୁ ଓ ଘଟଣା ପଶ୍ଚାତରେ କେବଳ ପ୍ରାକୃତିକ କାରଣ, ନିୟମ ବା ଶୃଙ୍ଖଳା ରହିଛି । ପ୍ରାକୃତିକ ବା ସାମାଜିକ ଘଟଣା ପଶ୍ଚାତରେ କୌଣସି ପାରଲୌକିକ ବା ଦୈବୀ କାରଣ ନାହିଁ । ପ୍ରକୃତିରେ ବହୁ ରହସ୍ୟ ରହିଛି, ପ୍ରକୃତିର ବିଶାଳତା ଓ ଜଟିଳତା ଯୋଗୁ ସମସ୍ତ ବିଷୟକୁ ବ୍ୟାଖ୍ୟା କରିବା ଆମ ପକ୍ଷରେ ସମ୍ଭବ ହୋଇ ନାହିଁ । ହେଲେ ସଭ୍ୟତାର ଅଗ୍ରସର ଯେତିକି ହେଉଥିବ ପ୍ରକୃତିର ରହସ୍ୟମାନଙ୍କୁ କ୍ରମବର୍ଦ୍ଧିଷ୍ଣୁ ଧାରାରେ ବ୍ୟାଖ୍ୟା କରିବା ମଣିଷ ପାଖରେ ସମ୍ଭବ ହେବ । ବିଜ୍ଞାନ ଏକ ମୁକ୍ତ ଓ ସାର୍ବଜନୀନ ପ୍ରଣାଳୀ ଆଧାରରେ ସବୁ ବିଷୟକୁ ବ୍ୟାଖ୍ୟା କରିବାକୁ ଲାଗିଲା । ବୈଜ୍ଞାନିକ ଜ୍ଞାନ ଏହି ଦୃଷ୍ଟିରୁ ଥିଲା ତଥ୍ୟଭିତ୍ତିକ, ପ୍ରଗତିଶୀଳ, ପ୍ରଣାଳୀବଦ୍ଧ, ସଂଶୋଧନାତ୍ମକ ଓ ସାର୍ବଜନୀନ ।

ସଂପ୍ରତି ଯାହାକୁ ବିଜ୍ଞାନ କୁହାଯାଉଛି ତାହାର ଆରମ୍ଭ ପର୍ବରେ ତାହାକୁ "ପ୍ରାକୃତିକ ଦର୍ଶନ" କୁହାଯାଉଥିଲା । ଦର୍ଶନ ସାଧାରଣତଃ ସତ୍ତା, ଜ୍ଞାନ, ନୀତି ଇତ୍ୟାଦି ବିଷୟ ଉପରେ ବିଭିନ୍ନ ତତ୍ତ୍ୱର ଅବତାରଣ କରିଥାଏ । ସେହିପରି ପ୍ରକୃତି ଉପରେ ଏହା ବିଭିନ୍ନ ସିଦ୍ଧାନ୍ତର ଭାବନା ବ୍ୟକ୍ତ କରୁଥିବାରୁ ଏହାର ଆଦିପର୍ବରେ ଏହାକୁ ପ୍ରାକୃତିକ ଦର୍ଶନ କୁହାଯାଉଥିଲା । ବିଜ୍ଞାନର ଯୁଗ ଆସିବାର ପାଖାପାଖି ଦୁଇଶହ ବର୍ଷ ପରେ ପ୍ରଯୁକ୍ତିର ଯୁଗ ଆରମ୍ଭ ହେଲା । ବୈଜ୍ଞାନିକ ସିଦ୍ଧାନ୍ତକୁ ପ୍ରୟୋଗ କରି ବିଭିନ୍ନ ଯନ୍ତ୍ରପାତି ଓ ପ୍ରଯୁକ୍ତିର ନିର୍ମାଣ ସମ୍ଭବ ହେଲା ଯାହା ଜୀବନ ପାଇଁ ବହୁ ଉପଯୋଗୀ ହେଲା । ବିଜ୍ଞାନର ପ୍ରୟୋଗାତ୍ମକ ଦିଗ ହେଲା ପ୍ରଯୁକ୍ତି ଓ ପ୍ରଯୁକ୍ତିର ପ୍ରୟୋଗ ଯୋଗୁ ସଭ୍ୟତାର ରୂପରେଖ ପରିବର୍ତ୍ତିତ ହେବାକୁ ଲାଗିଲା । ଏହି ପୃଷ୍ଠଭୂମିରେ ଇଂଲଣ୍ଡରେ ଅଷ୍ଟାଦଶ ଶତାବ୍ଦୀରେ ଶିଳ୍ପବିପ୍ଳବର

ଯୁଗ ଆସିଲା । ବିଭିନ୍ନ ଶକ୍ତି ଉତ୍ସର ସଂଧାନ, ଲୁହା ଓ ଷ୍ଟିଲର ବହୁଳ ପ୍ରୟୋଗ, ବିଭିନ୍ନ କଳକାରଖାନା ନିର୍ମାଣ, ଗମନାଗମନ କ୍ଷେତ୍ରରେ ଉନ୍ନତି, ଉତ୍ପାଦନ ପ୍ରକ୍ରିୟାରେ ଆଶାତୀତ ବୃଦ୍ଧି ଶିଳ୍ପବିପ୍ଳବ ଯୋଗୁ ସମ୍ଭବ ହେଲା । ଗ୍ରାମୀଣ କୃଷିଭିତ୍ତିକ ଓ କୁଟୀରଶିଳ୍ପ ଆଧାରିତ ଅର୍ଥନୈତିକ ବ୍ୟବସ୍ଥା ପରିବର୍ତ୍ତିତ ହୋଇ ଏକ ସହରୀଭିତ୍ତିକ ଓ ଶିଳ୍ପସମୃଦ୍ଧ ବ୍ୟବସ୍ଥାର ଉଦ୍‌ଭବ ହେଲା । ଏହି ପ୍ରକ୍ରିୟାରେ ବଡ଼ ବଡ଼ ଶିଳ୍ପୋଦ୍ୟୋଗମାନ ଗଢ଼ି ଉଠିଲା । ଗ୍ରାମୀଣ କୁଟୀରଶିଳ୍ପ ଭିତରେ ଜୀବନ ନିର୍ବାହ କରୁଥିବା କାରିଗର ଶ୍ରେଣୀର ଲୋକମାନେ ନିଜ ନିଜର ଜୀବିକା ହରାଇ ସହରାଭିମୁଖୀ ହେଲେ । ଶିଳ୍ପବିପ୍ଳବ ଜନିତ କାରଣରୁ ସମାଜର ଅର୍ଥନୈତିକ ଢାଞ୍ଚାରେ ବଡ ପରିବର୍ତ୍ତନ ଘଟିଲା । ଏହା ସହିତ ଶିଳ୍ପବିପ୍ଳବ ପରିଣାମରୁ ସାମ୍ରାଜ୍ୟବାଦ ଓ ପୁଂଜିବାଦର ବିକାଶ ହେଲା । ଉତ୍ପାଦିତ ସାମଗ୍ରୀମାନଙ୍କୁ ବିକ୍ରି କରିବା ପାଇଁ ଓ କଞ୍ଚାମାଲ ସଂଗ୍ରହ ପାଇଁ ଅନ୍ୟ ଭୂଖଣ୍ଡକୁ ବାଣିଜ୍ୟ କରିବାକୁ ଯାଇ ବିଭିନ୍ନ ଦେଶରେ ସାମ୍ରାଜ୍ୟବାଦର ବିକାଶ ହେବା ଏକ ଐତିହାସିକ ଘଟଣା । ସାମ୍ରାଜ୍ୟବାଦ ଏକ ଭିନ୍ନ ପ୍ରସଙ୍ଗ ଯାହା ଏହି ପରିପ୍ରେକ୍ଷୀରେ ଆଲୋଚ୍ୟ ବିଷୟ ନୁହେଁ ।

ଶିଳ୍ପବିପ୍ଳବର ଅନ୍ୟ ଯୁଗାନ୍ତକାରୀ ପରିବର୍ତ୍ତନର ଦିଗଟି ହେଲା ପୁଞ୍ଜିବାଦ । ଶିଳ୍ପବିପ୍ଳବର ପରିଣାମରୁ ବଡ ବଡ କଳକାରଖାନାର ସ୍ଥାପନ ହେଲା, ବ୍ୟବସାୟ ବାଣିଜ୍ୟର ପ୍ରସାର ଘଟିଲା ଓ ବଡ଼ ବଡ ସହରମାନ ଗଢ଼ି ଉଠିଲା । ପିତୃପୁରୁଷଙ୍କ କୌଳିକ ବୃତ୍ତି ଭିତରେ ରହି ସ୍ୱଚ୍ଛନ୍ଦ ଜୀବନ ଅତିବାହିତ କରିବା ଆଉ ସମ୍ଭବ ହେଲା ନାହିଁ । ନିଜର ଭିଟାମାଟି ପରିତ୍ୟାଗ କରି କର୍ମ ଅନ୍ୱେଷଣରେ ସହରକୁ ଆସୁଥିବା ଲୋକମାନେ ସହରରେ ନିଜର ପରିଚୟ ହରାଇ ସର୍ବହରା ଶ୍ରେଣୀରେ ପରିଣତ ହେଲେ ଓ ପରିଶେଷରେ ନିଜର ଶ୍ରମଶକ୍ତିକୁ ପାଥେୟ କରି ପେଟ ପୋଷିଲେ । ଯେଉଁମାନେ କଳକାରଖାନା ସ୍ଥାପନ କରିଥିଲେ ସେମାନେ ଥିଲେ ଶିଳ୍ପମାଲିକ । ଏହି ଶିଳ୍ପପତିମାନେ ଥିଲେ ସମାଜର ଓ ରାଜନୈତିକ ବ୍ୟବସ୍ଥାର ପ୍ରଭାବଶାଳୀ ବ୍ୟକ୍ତି । ସେମାନେ ଦେଶର ରାଜନୈତିକ ଓ ଆଇନ ବ୍ୟବସ୍ଥାକୁ ପ୍ରଭାବିତ କରୁଥିଲେ ବା ଆଇନ ପ୍ରଣୟନ କରୁଥିଲେ । ଯେଉଁ ଶ୍ରମିକମାନେ କଳକାରଖାନାରେ କାମ କରୁଥିଲେ ସେମାନେ ଏକ ଦୟନୀୟ ସ୍ଥିତିରେ ଜୀବନ ନିର୍ବାହ କରୁଥିଲେ । ସେମାନଙ୍କୁ ହାଡଭଙ୍ଗା ପରିଶ୍ରମ କରିବାକୁ ପଡୁଥିଲା, ଦଶଘଣ୍ଟାରୁ ପନ୍ଦରଘଣ୍ଟା ପର୍ଯ୍ୟନ୍ତ ସେମାନେ ଅକ୍ଳାନ୍ତ ପରିଶ୍ରମ କରୁଥିଲେ । ଏପରିକି ସେମାନଙ୍କର ପତ୍ନୀ ଓ ପୁଅ ଝିଅମାନେ ବି କାମ କରୁଥିଲେ । ପ୍ରତିଦ୍ୱନ୍ଦିତାମୂଳକ ପରିବେଶରେ ସବୁବେଳେ କାମ ମିଳୁନଥିଲା, ଯେତିକି ମଜୁରି ମିଳୁଥିଲା ତାହା ସେମାନଙ୍କ ଜୀବନ ନିର୍ବାହ ଓ ଆବଶ୍ୟକତା ପୂରଣ ପାଇଁ ଯଥେଷ୍ଟ ହେଉନଥିଲା । ରୋଗବାଧକରେ ପଡିଲେ

ଓ କୌଣସି କାରଣରୁ କାମ କରିନପାରିଲେ ଜୀବନ ଦୁର୍ବିସହ ହୋଇ ଉଠୁଥିଲା । ଏହି ପରିବେଶରେ ସେମାନଙ୍କର ଜୀବନର ସାମାନ୍ୟତମ ସୁରକ୍ଷା ନଥିଲା । ସେମାନେ ସହରତଳି ଅଞ୍ଚଳରେ ଅତ୍ୟନ୍ତ ଅସ୍ୱାସ୍ଥ୍ୟକର ପରିବେଷରେ ଜୀବନ ନିର୍ବାହ କରୁଥିଲେ । କାମ କରିବା ଭିତରେ ଶ୍ରମିକମାନେ ମୃତ୍ୟୁବରଣ କରିବା ସାଧାରଣ ଘଟଣା ଥିଲା ଓ ପିଲାମାନଙ୍କୁ ବି କଠିନ କାର୍ଯ୍ୟ କରିବାରେ ନିୟୋଜିତ କରାଯାଉଥିଲା । ଏହିପରି ଦେଖିଲେ ଶିଳ୍ପ ବିପ୍ଳବ ସୃଷ୍ଟି କଲା ଏକ ଶିଳ୍ପପତି ଗୋଷ୍ଠୀ ଓ ଅପରପକ୍ଷରେ ଏକ ଶିଳ୍ପ ଶ୍ରମିକ ସର୍ବହରା ଗୋଷ୍ଠୀ । ଶିଳ୍ପ ଶ୍ରମିକ ମାନଙ୍କର ଲହୁ ଲୁହକୁ ଶୋଷଣ କରି ଏକ ମୁଷ୍ଟିମେୟ ଶ୍ରେଣୀ ସକଳ ସଂପତ୍ତି ଓ ପୁଂଜିର ଅଧିକାରୀ ହେଲେ । ପୁଂଜିବାଦୀ ଅର୍ଥନୀତି ଏକ ଦୁର୍ଦ୍ଦଶାଗ୍ରସ୍ତ ଶ୍ରମିକ ଶ୍ରେଣୀକୁ ସୃଷ୍ଟି କରିଥିଲା ।

ଯେଉଁ ଯୁଗରେ ବିଜ୍ଞାନର ବିକାଶ ହୋଇଥିଲା ସେହି ସମୟରେ ଅନ୍ୟ ଏକ ବିଚାରବୋଧ "ମାନବବାଦ"ର ବିକାଶ ମଧ୍ୟ ଉଦ୍‌ଭବ ହୋଇଥିଲା । ତେବେ ଅଷ୍ଟାଦଶ ଶତାବ୍ଦୀରେ ରାଜତନ୍ତ୍ର ବିରୁଦ୍ଧରେ ଗଣତାନ୍ତ୍ରିକ ଚେତନାର ବିକାଶ ମଧ୍ୟ ଇତିହାସରେ ଥିଲା ଏକ ଗୁରୁତ୍ୱପୂର୍ଣ୍ଣ ଘଟଣା । ଗଣତନ୍ତ୍ର ଏକ ରାଜନୈତିକ ବିଚାରବୋଧରୁ ସାମାଜିକ ଜୀବନପ୍ରବାହକୁ ପ୍ରସାରିତ ହେଲା । ଧୀରେ ଧୀରେ ଊନବିଂଶ ଶତାବ୍ଦୀରେ ଜନମଙ୍ଗଳକାରୀ ଭାବନା ଗଣତାନ୍ତ୍ରିକ ବ୍ୟବସ୍ଥା ଭିତରକୁ ଆସିଲା । ଊନବିଂଶ ଶତାବ୍ଦୀରେ କାର୍ଲ ମାର୍କସଙ୍କର (୧୮୧୮-୧୮୮୩) ସମାଜବାଦ-ସାମ୍ୟବାଦର ପରିକଳ୍ପନା ବୌଦ୍ଧିକ ଚିନ୍ତାରାଜ୍ୟରେ ଏକ ବଡ଼ ଆଲୋଡନ ଥିଲା । ଏକ ଶ୍ରେଣୀବିଭକ୍ତ ଶୋଷଣଭିତ୍ତିକ ସମାଜର କିପରି ପରିବର୍ତ୍ତନ କରାଯାଇ ଏକ ସାମ୍ୟସମାଜର ବିକାଶ ସମ୍ଭବ ହେବ ତାହାର ଦିଗ୍‌ଦର୍ଶନ ଦେବାରେ କାର୍ଲମାର୍କସ୍ ଥିଲେ ଏକ ବିପ୍ଳବୀ ଚିନ୍ତାନାୟକ । ପୁଂଜିବାଦ କିପରି ଏକ ବୈଷମ୍ୟପୂର୍ଣ୍ଣ ସମାଜ ସୃଷ୍ଟିକରି ଅଗଣିତ ମଣିଷଙ୍କ ଦୁଃଖଦୁର୍ଦ୍ଦଶାର କାରଣ ହୋଇଛି ତାହାର ଏକ ବାସ୍ତବ ବିଶ୍ଳେଷଣ ମାର୍କସ ପ୍ରଦାନ କଲେ । ଏହା ସହିତ ସଂଘବଦ୍ଧ ଶ୍ରମିକ ଶ୍ରେଣୀର ବିପ୍ଳବ ଦ୍ୱାରା ଏକ ସମତାଭିତ୍ତିକ ସାମ୍ୟ ସାମଜର ପ୍ରତିଷ୍ଠା କିପରି ସମ୍ଭବ ହେବ ସେ କ୍ଷେତ୍ରରେ ସେ ଥିଲେ ପଥପ୍ରଦର୍ଶକ ।

ମାନବବାଦର ଅଭ୍ୟୁଦୟ, ଗଣତାନ୍ତ୍ରିକ ଚେତନାର ବିକାଶ ଓ ମାର୍କସଙ୍କ ସାମ୍ୟବାଦୀ ସମାଜଦର୍ଶନର ସମନ୍ୱିତ ପ୍ରଭାବରୁ ଶ୍ରମିକମାନଙ୍କର ସାମାଜିକ ସୁରକ୍ଷା ନେଇ ସଚେତନତାର ପରିବେଶ ଊନବିଂଶ ଶତାବ୍ଦୀରେ ଭିତ୍ତି ନେଲା । ଧୀରେ ଧୀରେ ଶ୍ରମିକ ଶ୍ରେଣୀର ମୁକ୍ତି ପାଇଁ ତଥା ସକଳ ପ୍ରକାରର ଦାସତ୍ୱର ବିଲୋପ ପାଇଁ କ୍ରାନ୍ତିର ସୂତ୍ରପାତ ହେଲା । ଶ୍ରମଜୀବୀ ମଣିଷମାନଙ୍କର ଦୁଃଖଦୁର୍ଦ୍ଦଶା ଓ ଦାସତ୍ୱର ମୂଳକାରଣ ଯେ ସେମାନଙ୍କର

ଅର୍ଥନୈତିକ ପରାଧୀନତା ଏହା ହିଁ ଥିଲା ଏକ ବଡ଼ ବୌଦ୍ଧିକ ଉପଲବ୍ଧି । ଏହି ସମୟରେ ବିଭିନ୍ନ ଆନ୍ଦୋଳନ ଓ ଆଲୋଡ଼ନ ମଧ୍ୟ ଦେଇ କେତେକ ଦେଶରେ ଶିଳ୍ପ ସଂସ୍ଥାମାନଙ୍କରେ ଶ୍ରମିକମାନଙ୍କର କାର୍ଯ୍ୟ ନିର୍ଘଣ୍ଟ ସ୍ଥିର କରାଗଲା । ଏପରିକି ଏଥି ପାଇଁ ଆଇନଗତ ବ୍ୟବସ୍ଥା ମଧ୍ୟ ହେଲା, ଅର୍ଥାତ୍ ଜଣେ ଶ୍ରମିକ କେତେ ଘଣ୍ଟା କାର୍ଯ୍ୟ କରିବ ତାହା ନିର୍ଦ୍ଧାରିତ ହେଲା । ଧୀରେ ଧୀରେ ବିଭିନ୍ନ ଦେଶରେ ଶ୍ରମିକମାନେ ସଂଘବଦ୍ଧ ହେଲେ । ପୁଞ୍ଜିପତିମାନଙ୍କ ଦାସତ୍ୱରୁ ମୁକ୍ତ ହେବାକୁ ସଂଗ୍ରାମ କଲେ । ଏହି ସଂଗ୍ରାମ ଭିତରେ ନିଜର ସର୍ବନିମ୍ନ ମାନବିକ ଅଧିକାର, ମଜୁରି, ନିଜର ମୁକ୍ତି ଓ ସ୍ୱତନ୍ତ୍ରତା ପାଇଁ ଲଢ଼େଇ କରିଥିବା କେତେ ମଣିଷ ନିଜ ଦେହର ରକ୍ତ ଦେଇଛନ୍ତି, ନିର୍ଯ୍ୟାତନାକୁ ସାମ୍ନା କରିଛନ୍ତି, ଯନ୍ତ୍ରଣା ଜର୍ଜରିତ ହୋଇଛନ୍ତି ଓ ଏପରିକି ହତ୍ୟାର ଶିକାର ହୋଇଛନ୍ତି ତାହାର କାହାଣୀ ବେଶ୍ ମର୍ମାନ୍ତିକ ମନେହୁଏ । ତେବେ ଏହି ତ୍ୟାଗ ଓ ସଂଗ୍ରାମ ବୃଥା ଯାଇ ନାହିଁ । ବିଭିନ୍ନ ଦେଶରେ ଶ୍ରମିକ ସଂଗଠନମାନ ସୃଷ୍ଟି ହେବା ସହ ଟ୍ରେଡ ୟୁନିୟନମାନଙ୍କୁ ସରକାର ମାନେ ସ୍ୱୀକୃତି ଦେଇଛନ୍ତି । ସମଗ୍ର ବିଶ୍ୱରେ ମେ' ପହିଲାକୁ ଶ୍ରମିକ ଦିବସ ଭାବେ ପାଳନ କରାଯାଇ ଶ୍ରମିକ ଏକତା ଉପରେ ଓ ସେମାନଙ୍କର ମର୍ଯ୍ୟାଦାପୂର୍ଣ୍ଣ ଜୀବନକୁ ପ୍ରାଧାନ୍ୟ ଦିଆଯାଉଛି । ୧୮୮୬ ମସିହାର ମେ' ୧ ତାରିଖ ଦିନ ସାରା ଆମେରିକାରେ ଦୈନିକ ଆଠ ଘଣ୍ଟା କାର୍ଯ୍ୟନିର୍ଘଣ୍ଟ ଦାବି କରି ଶ୍ରମିକମାନେ ଯେଉଁ ଆନ୍ଦୋଳନର ସୂତ୍ରପାତ କରିଥିଲେ ସେଥିରେ ପୋଲିସ ଆକ୍ରମଣରେ କେତେକ ଶହୀଦ ହୋଇଥିଲେ ଓ ଅନେକ ଶ୍ରମିକ ନିର୍ଯ୍ୟାତିତ ହୋଇଥିଲେ । ତାର ସ୍ମାରକୀ ସ୍ୱରୂପ ମେ ୧ ତାରିଖକୁ ଆନ୍ତର୍ଜାତିକ ସ୍ତରରେ ଶ୍ରମିକ ଦିବସ ଭାବେ ପାଳନ କରାଯାଉଛି । ଏତଦ୍‌ବ୍ୟତୀତ ଆନ୍ତର୍ଜାତିକ ଶ୍ରମିକ ସଂଗଠନ ବା ଇଣ୍ଟନେସନାଲ ଲେବର ଅର୍ଗାନାଇଜେସନ (ଆଇଏଲଓ) ପ୍ରତିଷ୍ଠା ଥିଲା ଶ୍ରମିକମାନଙ୍କ ମଙ୍ଗଳ ପାଇଁ ଅନ୍ୟ ଏକ ଯୁଗାନ୍ତକାରୀ ଘଟଣା । ପ୍ରଥମ ବିଶ୍ୱଯୁଦ୍ଧ ପରେ ୧୯୧୯ରେ ପ୍ରତିଷ୍ଠା ହୋଇଥିବା ଆଇଏଲଓ ଏକ ଆନ୍ତର୍ଜାତିକ ଫୋରମ୍ ଯେଉଁଠାରେ ଶ୍ରମିକମାନଙ୍କର ସମସ୍ୟା, ସେମାନଙ୍କର ଜୀବନର ମାନ ଓ ଅଧିକାର ବିଷୟରେ ଆଲୋଚନା ହୋଇଥାଏ । ଶ୍ରମିକମାନଙ୍କର ବିକାଶ ଓ ମାନବିକ ମହତ୍ତ୍ୱ ପ୍ରତିଷ୍ଠା କରିବାରେ ଆଇଏଲଓର ଅବଦାନ ଓ ମହତ୍ତ୍ୱପୂର୍ଣ୍ଣ ସଂପୃକ୍ତି ପାଇଁ ଏହି ସଂଗଠନକୁ ୧୯୬୯ରେ ବିଶ୍ୱଶାନ୍ତି ପୁରସ୍କାର ଦିଆଯିବା ଏକ ଉଲ୍ଲେଖନୀୟ ଘଟଣା ।

ଇତିହାସରୁ ଏହା ଏକ ଉପଲବ୍ଧି ଯେ ମଣିଷ ସମାଜରେ ବହୁ ଦୁଃଖ, ଦୁର୍ଦ୍ଦଶା, ବିଭୀଷିକା ଓ ମନ୍ଦ (evil) ରହିଛି । ଅବଶ୍ୟ ପ୍ରକୃତିର ବହୁ ପ୍ରତିକୂଳତା ବିରୁଦ୍ଧରେ ମଣିଷ ସଂଗ୍ରାମ କରି ବଞ୍ଚି ରହିଛି । ତେବେ ପ୍ରାକୃତିକ ବିପଦ ଓ ପ୍ରତିକୂଳ ପରିବେଶକୁ ନିୟନ୍ତ୍ରଣ

କରି ସଭ୍ୟତାମାନଙ୍କର ନିର୍ମାଣ ମଣିଷର ପ୍ରୟାସରେ ସମ୍ଭବ ହୋଇଛି । ଜ୍ଞାନ ବିଜ୍ଞାନର ବିକାଶ, ପ୍ରାଯୁକ୍ତିକ ଜ୍ଞାନକୌଶଳ ଓ ବିଭିନ୍ନ ମହାମାରୀ ରୋଗମାନଙ୍କର ନିୟନ୍ତ୍ରଣ ସଭ୍ୟତାର ବିକାଶଧାରାରେ ମଣିଷ ହାସଲ କରିପାରିଛି । ତେବେ ଆମ ସଂସାରରେ ବହୁ ଦୁଃଖ, ଦୁର୍ଦ୍ଦଶା, ମାନବିକ କ୍ରୂରତା ନିଷ୍ଠୁରତା, ଅମାନବିକ ବ୍ୟବସ୍ଥା, ଶୋଷଣ, ଯୁଦ୍ଧ, ବିଭୀଷିକା ମଣିଷ ଯୋଗୁ ରହି ଆସିଛି । ଅଧିକନ୍ତୁ ମାନବୀୟ ସଙ୍କଟ ଓ ଦୁଃଖଦୁର୍ଦ୍ଦଶା ଶ୍ରେଣୀ ଗତ ସମାଜ ବ୍ୟବସ୍ଥା ଓ ଶୋଷଣ ଯୋଗୁ ତିଷ୍ଠି ରହିଛି । ମାନବିକ ନଗ୍ନ ବର୍ବରତାର ମୂକସାକ୍ଷୀ ହେଉଛି ଇତିହାସ । ଦ୍ୱିତୀୟ ବିଶ୍ୱଯୁଦ୍ଧ ପ୍ରେକ୍ଷାପଟରେ ନାଜିମାନଙ୍କର ଜିଉମାନଙ୍କ ଉପରେ ଅତ୍ୟାଚାର, ଆମେରିକାରେ ନିଗ୍ରୋମାନଙ୍କର ଦାସତ୍ୱ, ଭାରତବର୍ଷରେ ଦଳିତ ଓ ଶୂଦ୍ରମାନଙ୍କ ପ୍ରତି ରହିଥିବା ଭେଦଭାବ ପରି ଅମାନବୀୟ ଘଟଣାମାନ ସଭ୍ୟତାର ଇତିହାସରେ କଳଙ୍କିତ ଅଧ୍ୟାୟ । ଏହା ସହିତ କେତେ କେତେ ଯୁଦ୍ଧ, ଅତ୍ୟାଚାର, ହିଂସା ଓ ବର୍ବରତାମାନ ସଭ୍ୟତାର ଇତିହାସରେ ଘଟିଯାଇଛି । ଏହି ସ୍ଥିତିରେ ବିଶ୍ୱସ୍ତରରେ ସକଳ ମାନବିକ ସମସ୍ୟାର ଶାନ୍ତିପୂର୍ଣ୍ଣ ସମାଧାନ ଓ ପ୍ରୀତିପୂର୍ଣ୍ଣ ସହାବସ୍ଥାନ ପାଇଁ ଜାତିସଂଘର ପ୍ରତିଷ୍ଠା ଏକ ଉଲ୍ଲେଖନୀୟ ଘଟଣା । ଜାତିସଂଘର ପ୍ରତିଷ୍ଠା ପରେ "ମାନବିକ ଅଧିକାରର ବିଶ୍ୱଘୋଷଣା" ନାମରେ ଯେଉଁ ଦଲିଲଟି ଆନ୍ତର୍ଜାତିକ ସ୍ତରରେ ୧୯୪୮ ଡିସେମ୍ବର ୧୦ ତାରିଖରେ ଗୃହୀତ ହୋଇଛି ତାହା ସଭ୍ୟତାର ଇତିହାସରେ ଏକ ନୈତିକ ଉତ୍ତରଣ କହିଲେ ଅତ୍ୟୁକ୍ତି ହେବନାହିଁ । ମାନବିକ ଅଧିକାରର ଆନ୍ତର୍ଜାତିକ ଘୋଷଣାନାମାର ପ୍ରଥମ ଧାରାଟିରେ କୁହାଯାଇଛି - "ସବୁ ମଣିଷ ମୁକ୍ତ ଓ ସମାନ ମର୍ଯ୍ୟାଦା ନେଇ ଜନ୍ମ ହୋଇଛନ୍ତି । ସମସ୍ତେ ନିଜର ବୁଦ୍ଧି ଓ ବିବେକଦ୍ୱାରା ପରିଚାଳିତ ହୋଇ ଅନ୍ୟମାନଙ୍କ ପ୍ରତି ଭ୍ରାତୃତ୍ୱପୂର୍ଣ୍ଣ ବ୍ୟବହାର ପ୍ରଦର୍ଶନ କରିବା ଉଚିତ ।" ସେହିପରି ଦ୍ୱିତୀୟ ଧାରାରେ କୁହାଯାଇଛି ଯେ ଜାତି, ବର୍ଣ୍ଣ, ଲିଙ୍ଗ, ଭାଷା, ଧର୍ମ, ରାଜନୈତିକ ବିଚାର, ଜାତୀୟତା, ସାମାଜିକ ବଂଶ ପରିଚୟ ଇତ୍ୟାଦିକୁ ଆଧାର କରି ମଣିଷ ମଣିଷ ଭିତରେ ଭେଦଭାବ ସୃଷ୍ଟି କରାଯାଇପାରିବ ନାହିଁ । ଏହିସବୁ ଭାବନା ଏକ ମହତ୍ତର ମାନବବାଦୀ ମୂଲ୍ୟବୋଧର ସ୍ୱାକ୍ଷର ବହନ କରେ । ଶ୍ରମିକମାନଙ୍କ ଅଧିକାର ଓ ସାମାଜିକ ସୁରକ୍ଷା ସମ୍ବନ୍ଧରେ ଧାରା ୨୩ ଓ ୨୪ରେ କେତେକ ମହତ୍ତ୍ୱପୂର୍ଣ୍ଣ ସୂଚନା ରହିଛି । ପ୍ରତ୍ୟେକ ସାବାଳକ ବ୍ୟକ୍ତିର ନିଜ ବୃତ୍ତି ମନୋନୟନ କରିବାର ଅଧିକାର ସହ କାର୍ଯ୍ୟ କରିବାର ଅଧିକାର ରହିଛି । ଏକ ଅନୁକୂଳ ଓ ଉପଯୁକ୍ତ ପରିବେଶରେ କାର୍ଯ୍ୟ କରିବାର ସୁଯୋଗ ତାହାର ରହିବା ଦରକାର । ସମାନ କାର୍ଯ୍ୟ ପାଇଁ ସମାନ ବେତନ ପାଇବା ଓ କୌଣସି ଭେଦଭାବର ଶିକାର ନ ହେବା ମଧ୍ୟ ପ୍ରତ୍ୟେକ ବ୍ୟକ୍ତିର ଅଧିକାର । ନିଜର କାର୍ଯ୍ୟ ଭିତରେ ନିରାପତ୍ତା ରହିବା ଓ ନିଜର ପରିବାରର ଭରଣପୋଷଣ

ପାଇଁ ଅନୁକୂଳ ପରିବେଶ ପାଇବା ଆବଶ୍ୟକ । ତାର ଅଧିକାର ଓ ସୁବିଧା ପାଇଁ କୌଣସି ଶ୍ରମିକ ସଂଗଠନ ବା ଟ୍ରେଡ୍ ୟୁନିୟନ୍‌ରେ ସଂପୃକ୍ତ ହେବାର ଅବକାଶ ତାହାର ରହିଛି । ପ୍ରତ୍ୟେକ ବ୍ୟକ୍ତି ନିର୍ଦ୍ଧାରିତ ସମୟ କାର୍ଯ୍ୟକରିବା ସହ ବିଶ୍ରାମ, ଅବସର ଓ ସାମୟିକ ଛୁଟି ପାଇବାର ସୁଯୋଗ ପାଇପାରିବ ।

ଶ୍ରମିକ ଶ୍ରେଣୀ ଅତୀତରେ ଯେଉଁପରି ଶୋଷଣ, ଅତ୍ୟାଚାର ଓ ନିର୍ଯ୍ୟାତନାର ଶରବ୍ୟ ହୋଇଛି ସେହି ଭାବଧାରା ବିରୁଦ୍ଧରେ ଯେଉଁ ପ୍ରତିବାଦର ସ୍ୱର ଉଠିଛି ତାହାର ପରିଣାମରୁ ଏହିସବୁ ସମ୍ବେଦନ ଓ ମାନବିକ ଆବେଦନମାନ ଆଦର୍ଶ ଭାବେ ବକଶିତ ହୋଇଛି । ଧୀରେ ଧୀରେ ଶ୍ରମିକମାନଙ୍କର ସାମାଜିକ ସୁରକ୍ଷା ଓ ମର୍ଯ୍ୟାଦାପୂର୍ଣ୍ଣ ଜୀବନ ନେଇ କେତେକ ସଚେତନତା ସୃଷ୍ଟି ହୋଇଛି । ପ୍ରତ୍ୟେକ ଜନକଲ୍ୟାଣକାରୀ ରାଷ୍ଟ୍ର ଏହାର ନାଗରିକଙ୍କ ସାମାଜିକ ସୁରକ୍ଷା ଓ ଗୁଣାତ୍ମକ ଜୀବନ ପ୍ରତି ଧ୍ୟାନ ଦେଉଛନ୍ତି । ଏହା ସହିତ ଗୋଟିଏ ସମୟରେ ପିଲାମାନଙ୍କୁ ମଧ୍ୟ କଷ୍ଟକର କାର୍ଯ୍ୟରେ ନିଯୁକ୍ତି ଦେଇ ସେମାନଙ୍କର ଶୈଶବକୁ ଭୂଲୁଣ୍ଠିତ କରାଯାଉଥିଲା । ଅଭାବ ଓ ପ୍ରତିକୂଳ ସ୍ଥିତିରେ ଥିବା ପିଲାମାନେ ବଞ୍ଚିରହିବା ପାଇଁ ବା ନିଜର ସର୍ବନିମ୍ନ ଆବଶ୍ୟକତା ପୂରଣ ପାଇଁ କଅଁଳ ବୟସରୁ ପରିଶ୍ରମ କରୁଥିଲେ । ତେବେ ଶିଶୁ ଶ୍ରମର ନିରାକରଣ ସହ ପିଲାମାନଙ୍କର ଶିକ୍ଷା ଓ ସୁସ୍ଥ ଜୀବନ ପାଇଁ ଏବେ ଅନେକ ସଚେତନତା ପ୍ରକାଶ ପାଇଛି । ଅଠର ବର୍ଷରୁ କମ୍ କୌଣସି ପିଲାକୁ ନିଯୁକ୍ତ କରି ତାର ଶ୍ରମ ନେବା ଆଇନ ଦୃଷ୍ଟିରୁ ଦଣ୍ଡନୀୟ ହୋଇଛି । ଶିକ୍ଷା ଯେ ବ୍ୟକ୍ତିର ଏକ ମୌଳିକ ଅଧିକାର ଓ ପ୍ରତ୍ୟେକ ପିଲା ନିର୍ଦ୍ଦିଷ୍ଟ ବୟସ ସୀମା ପର୍ଯ୍ୟନ୍ତ ଶିକ୍ଷା ପାଇବାକୁ ଯେପରି ଅବକାଶ ପାଏ ସେଥିପାଇଁ ରାଷ୍ଟ୍ରୀୟ ସ୍ତରରେ ବିଭିନ୍ନ ଯୋଜନାମାନ କାର୍ଯ୍ୟକାରୀ କରାଯାଉଛି । ଏହାଛଡା ଏକ ରକ୍ଷଣଶୀଳ ପାରଂପରିକ ସମାଜରେ ମହିଳାମାନେ ସାଂସ୍କୃତିକ ସ୍ତରରେ ଯେପରି ହୀନମନ୍ୟତାର ଶିକାର ହୋଇ ଆସିଛନ୍ତି ସେହି ମାନସିକତାରେ ମଧ୍ୟ ପରିବର୍ତ୍ତନ ଆସିଛି । ଏକ ପୁରଷ-କୈନ୍ଦ୍ରିକ ସାମାଜିକ ବ୍ୟବସ୍ଥାରୁ ଏକ ସୁସ୍ଥ ନାଗରିକ ସମାଜ ଓ ଲିଙ୍ଗଗତ ସମାନତାର ଭାବନା ସାମାଜିକ ପରିବର୍ତ୍ତନର ସୂଚନା ଦିଏ । ମହିଳା ସଶକ୍ତୀକରଣ, କନ୍ୟା ଭ୍ରୁଣହତ୍ୟା ନେଇ ଦୃଢ଼ ଆଇନଗତ ବ୍ୟବସ୍ଥା, ମହିଳାମାନଙ୍କର ସ୍ୱାଭିମାନର ସୁରକ୍ଷା ପାଇଁ କର୍ମସ୍ଥଳ ମାନଙ୍କରେ କେତେକ ଆଚରଣ ବିଧିର ପ୍ରଚଳନ ଇତ୍ୟାଦି ମହିଳାମାନଙ୍କ ସାମାଜିକ ବିକାଶ ପାଇଁ ଉଦ୍ଦିଷ୍ଟ । ସେହିପରି ଦିବ୍ୟାଙ୍ଗ ବ୍ୟକ୍ତି ବା ଯେଉଁମାନଙ୍କର କିଛି ଶାରୀରିକ ଅକ୍ଷମତା ରହିଛି ସେମାନେ ମଧ୍ୟ ଯେପରି ସୁସ୍ଥ ଓ ସମ୍ମାନଜନକ ଜୀବନ ନିର୍ବାହ କରିବାର ଅବକାଶ ପାଇ ପାରିବେ ସେଥିପାଇଁ ସଚେତନତା ପ୍ରକାଶ ପାଇବା ସାମାଜିକ ସୁରକ୍ଷାର ଏକ ସକାରାତ୍ମକ ଆଭିମୁଖ୍ୟ

କହିଲେ ଅତ୍ୟୁକ୍ତି ହେବ ନାହିଁ । ଏହାଛଡା ସମାଜର ବରିଷ୍ଠ ନାଗରିକମାନେ ପରିବର୍ତ୍ତିତ ସାମାଜିକ ପରିବେଶରେ ଯେପରି କେତେକ ସମସ୍ୟାର ସମ୍ମୁଖୀନ ହେଉଛନ୍ତି ସେମାନଙ୍କ ପ୍ରତି ସମ୍ବେଦନ ପ୍ରକାଶ ପାଇବା ସାମାଜିକ ସୁରକ୍ଷାର ଅନ୍ୟ ଏକ ଦିଗନ୍ତ କହିଲେ ଅତ୍ୟୁକ୍ତି ହେବ ନାହିଁ । ଯୌଥ ପରିବାରମାନଙ୍କର ପ୍ରାକୃତିକ ବିଲୟ ଘଟିବାରେ ଲାଗିଛି । ପରିବର୍ତ୍ତିତ ପରିସ୍ଥିତିରେ ଅର୍ଥନୈତିକ ଚାପ ଯୋଗୁ ଏବେ ଅଣୁ-ପରିବାରମାନ ଏକ ସାମାଜିକ ବାସ୍ତବତା । ଏହି ସ୍ଥିତିରେ ବୃଦ୍ଧ ଓ ବୃଦ୍ଧା ବରିଷ୍ଠ ନାଗରିକମାନେ ସମ୍ମୁଖୀନ ହେଉଥିବା ନିଃସଙ୍ଗତା, ନୈରାଶ୍ୟ ଓ ବିଚ୍ଛିନ୍ନତା ଏକ ଗୁରୁତର ସାମାଜିକ ସମସ୍ୟା ଭାବେ ମୁଣ୍ଡ ଟେକିବାରେ ଲାଗିଛି । ଏହି ସମସ୍ୟାର ଦୂରୀକରଣ ପାଇଁ ଅନେକ କିଛି କରାଯିବାର ଆହ୍ୱାନ ସୃଷ୍ଟି ହେଉଛି । ଏସବୁ ଯେ ସାମାଜିକ ସୁରକ୍ଷାର ପରିଭାଷାକୁ ବିସ୍ତାରିତ କରିବାରେ ଲାଗିଛି ଏହା ନିଃସନ୍ଦେହ ମନେହୁଏ ।

ସଂଗଠିତ ଶ୍ରମିକମାନେ ନିଜର ନ୍ୟାୟୋଚିତ ଦାବି ହାସଲ କରିବାର ଅବକାଶ ପାଉଛନ୍ତି ଓ ସମ୍ଭବତଃ ସେମାନେ ସାଂପ୍ରତିକ ସ୍ଥିତିରେ ସେପରି ଶୋଷଣର ଶିକାର ହେଉନାହାନ୍ତି । ସେମାନଙ୍କର ଟ୍ରେଡ ୟୁନିୟନ୍‌ମାନ ରହିଛି ଓ ସେହି ସଂଗଠନମାନ ସେମାନଙ୍କ ଦାବି, ଅଧିକାର ନେଇ ସ୍ୱର ଉଠାଇ ପାରୁଛନ୍ତି । ସଂଗଠିତ ସେକ୍ଟରରେ କାର୍ଯ୍ୟରତ ଶ୍ରମିକ-ଶ୍ରେଣୀ କର୍ମକ୍ଷେତ୍ରରେ ଯୋଗ ଦେବା ପାଇଁ ନିଯୁକ୍ତି ପତ୍ର ପାଇଥାନ୍ତି ଓ ସେମାନଙ୍କ ଚାକିରି ସର୍ତ୍ତାନୁସାରେ ବେତନ, ପ୍ରୋଭିଡେଣ୍ଟ ଫଣ୍ଡ, ଚିକିତ୍ସାର ସୁଯୋଗ ଇତ୍ୟାଦି ଲାଭ କରିଥାନ୍ତି । ବିଭିନ୍ନ ସରକାରୀ କର୍ମକ୍ଷେତ୍ରରେ ଥିବା ସମାଜର ସଚେତନ ଶିକ୍ଷିତ ଗୋଷ୍ଠୀମାନେ ନିଜ ନିଜର ସଂଘ ଗଠନ କରି ସେମାନଙ୍କର ଦାବି ଉପସ୍ଥାପନ କରି ପାରୁଛନ୍ତି । ତେବେ ସମାଜର ଏକ ବୃହତ୍ତର ଅସଂଗଠିତ ଗୋଷ୍ଠୀ ରହିଛନ୍ତି ଯେଉଁମାନେ ପ୍ରାୟତଃ ବିଭିନ୍ନ ସ୍ତରରେ ପ୍ରତିବନ୍ଧକର ସମ୍ମୁଖୀନ ହୋଇଥାନ୍ତି । ଗାଁ ଗଣ୍ଡାର ଦିନ ମଜୁରିଆ, ଚାଷୀ ମୂଲିଆ, ସହରତଳି ଅଞ୍ଚଳର ରିକ୍ସାଚାଳକ, ବିଭିନ୍ନ ମିସ୍ତ୍ରୀକାର୍ଯ୍ୟ କରୁଥିବା କାରିଗର ଶ୍ରେଣୀ, ଛୋଟମୋଟ କାର୍ଯ୍ୟକରି ଜୀବିକା ନିର୍ବାହ କରୁଥିବା ବହୁ ବ୍ୟକ୍ତି ପ୍ରାୟତଃ ଅସଂଗଠିତ ଶ୍ରମିକ ଶ୍ରେଣୀର ବ୍ୟକ୍ତି । ଭାରତୀୟ ସମାଜ ପୃଷ୍ଠଭୂମିରେ ଏହି ଅସଂଗଠିତ ଗୋଷ୍ଠୀର ଲୋକମାନେ ପ୍ରାୟତଃ ଦଳିତ, ଆଦିବାସୀ ବା ସଂଖ୍ୟାଲଘୁ ଗୋଷ୍ଠୀର ବ୍ୟକ୍ତି । ଏହି ଗୋଷ୍ଠୀ ଭିତରେ ଶିକ୍ଷା ଓ ସାମାଜିକ ସଚେତନତା ବିଶେଷ ପରିବ୍ୟାପ୍ତ ହୋଇଥିବା ମନେହୁଏ ନାହିଁ । ଏମାନେ ଶିକ୍ଷିତ, ସଚେତନ ନହେଲେ ମଧ୍ୟ ଆମର ସାମାଜିକ ଜୀବନ ପ୍ରବାହକୁ ଏମାନଙ୍କର ଅବଦାନକୁ ନ୍ୟୁନ କରିହେବ ନାହିଁ । କେତେକ ସାମାଜିକ, ଅର୍ଥନୈତିକ ଓ ପାରିବାରିକ ପରିସ୍ଥିତିରୁ ଶିକ୍ଷା ସ୍ତରକୁ ଆସିନଥିବା ବା ସ୍କୁଲରୁ ଡ୍ରପ ଆଉଟ ହୋଇଥିବା

ପିଲାମାନେ ଭବିଷ୍ୟତରେ କୌଣସି ଧନ୍ଦାକରି ବା ମୂଲଲାଗି ଜୀବନ ନିର୍ବାହ କରିଥାନ୍ତି । ଏପରିକି କେତେକ ବେଶ୍ ବୃତ୍ତିଗତ ବା କାରିଗରୀ ପାରଦର୍ଶିତା ଲାଭ କରିଥାନ୍ତି । ଏହି ଅସଂଗଠିତ ଶ୍ରେଣୀର ବ୍ୟକ୍ତିମାନଙ୍କୁ ସଚେତନ କରାଇବା ଓ ସେମାନଙ୍କ ମଧ୍ୟରେ ନାଗରିକ ଦାୟିତ୍ୱବୋଧ ଓ ଅଧିକାର ନେଇ ଭାବନା ଜାଗ୍ରତ କରିବା ଏକ ବଡ଼ ଆହ୍ୱାନ ।

ଭାରତୀୟ ସମାଜ ପୃଷ୍ଠଭୂମିରେ ସଂଗଠିତ ଶ୍ରମିକ ଗୋଷ୍ଠୀ ହେଉ ବା ଅସଂଗଠିତ ଶ୍ରମିକ ଗୋଷ୍ଠୀ ହେଉ ସେମାନଙ୍କ ଭିତରେ ଏକ ଐକ୍ୟ ଭାବନା ସୃଷ୍ଟି କରିବା କ୍ଷେତ୍ରରେ ଅନେକ ସମସ୍ୟା ରହିଛି । ଯୁଗ ଯୁଗ ଧରି ଭାରତୀୟ ସମାଜ ଜାତିଗତ ପରିଚୟ ଆଧାରରେ ବହୁଧା ବିଭାଜିତ ହୋଇ ରହିଛି । ଶ୍ରମ କରି ବଞ୍ଚୁଥିବା ଲୋକମାନଙ୍କର ସାମାଜିକ ପରିଚୟ ସମାନ ନୁହେଁ । ଏକା ବୃତ୍ତିକରି ଜୀବନ ନିର୍ବାହ କରୁଥିବା ଓ ଅର୍ଥନୈତିକ ସ୍ଥିତିରୁ ସମାନ ଅବସ୍ଥାରେ ଥିବା ଶ୍ରମିକମାନେ ସାମାଜିକ ସ୍ତରରେ ସାନ-ବଡ଼ ବିବେଚିତ ହେବା ଆମ ବ୍ୟବସ୍ଥାର ଏକ ବଡ଼ ପ୍ରହେଳିକା । ଜାତି ବ୍ୟବସ୍ଥାଟି ଉଚ୍ଚ-ନୀଚ ଭେଦଭାବ ଜନିତ ଏକ ସାମାଜିକ ବୈଷମ୍ୟର ଚିତ୍ର ଦେଇଥାଏ ଯେଉଁଠି ତଥାକଥିତ ଦଳିତମାନେ କେତେକ ଅସମ୍ମାନର ସମ୍ମୁଖୀନ ହୋଇଥାନ୍ତି । ସାଂପ୍ରଦାୟିକ ମାନସିକତା ମଧ୍ୟ ଅନ୍ୟ ଏକ ବିକୃତିର ସୂଚନା ଦିଏ, କାରଣ ଏହା ଧାର୍ମିକ ପରିଚୟ ଆଧାରରେ ସାମାଜିକ ବିଦ୍ୱେଷର ମନୋଭାବ ଆଣିଥାଏ । ଏକ ସୁସ୍ଥ ଭ୍ରାତୃତ୍ୱପୂର୍ଣ୍ଣ ଓ ସମ୍ବେଦନଶୀଳ ସାମାଜିକ ସହାବସ୍ଥାନ ପାଇଁ ଜାତିଗତ ଓ ସାଂପ୍ରଦାୟିକ ମନୋଭାବ ସବୁଠାରୁ ଅଧିକ ନକାରାତ୍ମକ ମନେହୁଏ ।

ସାମାଜିକ ବିକାଶ ଓ ବିବର୍ତ୍ତନ ଧାରାରେ "ସାମାଜିକ ସୁରକ୍ଷା" ଏକ ଉନ୍ନତ ଓ ଆଦର୍ଶ ଜୀବନବୋଧର ବାର୍ତ୍ତା ଦେଇଥାଏ । ବିଭିନ୍ନ ସମାଜରେ ଇତିହାସର ବିଭିନ୍ନ କାଳଖଣ୍ଡରେ ରହିଥିବା ସଂଭ୍ରାନ୍ତବାଦ, ସାମନ୍ତବାଦ, ଜାତିବାଦ, କ୍ରୀତଦାସପ୍ରଥା, ସାମାଜିକ ଭେଦଭାବ, ସାମ୍ରାଜ୍ୟବାଦ, ଏକଛତ୍ରବାଦ ଇତ୍ୟାଦି ସାଂପ୍ରତିକ ଜୀବନବୋଧରେ ଅନୈତିକ ଓ ଆମାନବିକ । ସେହିପରି କେତେ କେତେ ମାନବିକ କ୍ରୂରତା, ବର୍ବରତା, ଯୁଦ୍ଧ, ସଂତ୍ରାସବାଦ, ଶୋଷଣ, ଅତ୍ୟାଚାର, ସଭ୍ୟ ଜୀବନବୋଧର ଯେ ପରିପନ୍ଥୀ ଏହା ହିଁ ଏକ ନୈତିକ ଉପଲବ୍ଧି । ଏହି ସ୍ଥିତିରେ ସାମାଜିକ ସୁରକ୍ଷା ଏକ ସଭ୍ୟ ଜୀବନବୋଧ ଓ ରାଷ୍ଟ୍ରୀୟ ଲକ୍ଷ୍ୟ ଭାବରେ ବିକଶିତ ହେବା ଦେଖାଯାଏ । କୌଣସି ବ୍ୟକ୍ତି, ଗୋଷ୍ଠୀ ବା ଶ୍ରେଣୀ ଶୋଷିତ ବା ଅତ୍ୟାଚାରିତ ନହେବା ଓ ଏକ ସୁସ୍ଥ ଜୀବନ ନିର୍ବାହ ପାଇଁ ପରିବେଶ ପାଇବା ଆଜିର ଏକ ସଭ୍ୟ-ମୂଲ୍ୟବୋଧ । ଏହି ପରିପ୍ରେକ୍ଷୀରେ ପ୍ରତ୍ୟେକ ସାବାଳକ ବ୍ୟକ୍ତି ନିଜର ସାମର୍ଥ୍ୟ ଅନୁଯାୟୀ ସ୍ୱାବଲମ୍ବୀ ହୋଇ ଜୀବନ ବଞ୍ଚିବା ତାର ଏକ ଅଧିକାର । ପ୍ରତ୍ୟେକ ବ୍ୟକ୍ତି ତାର ବୃହତ୍ତର ସାମାଜିକ ପରିବେଶକୁ ତାର ସାମର୍ଥ୍ୟ ଅନୁଯାୟୀ ନିଜର

କର୍ତ୍ତବ୍ୟ ଆଧାରରେ କିଛି ଅବଦାନ ଦେବ ଓ ପ୍ରତିବଦଳରେ ସାମାଜିକ ସୁରକ୍ଷା ଉପଭୋଗ କରିବ ଏହା ଆଜିର ଆଦର୍ଶ । ସେହିପରି ଏକ ବୃହତ୍ତର ସାମାଜିକ ପରିବେଶରେ ସେ ମର୍ଯ୍ୟାଦା ଓ ସ୍ୱାଭିମାନର ସହ ଜୀବନଧାରଣ କରିବା ତାର ଏକ ଅଧିକାର । ପ୍ରତ୍ୟେକ ଶିଶୁ ଉପଯୁକ୍ତ ବୟସରୁ ଶିକ୍ଷାଲାଭ କରିବା, ସାବାଳକ ହେବାପରେ ସ୍ୱାବଲମ୍ବୀ ହେବା, ନିଜର ସର୍ବନିମ୍ନ ମୌଳିକ ଆବଶ୍ୟକତାକୁ ପୂରଣ କରିବା, ଆବଶ୍ୟକବେଳେ ସ୍ୱାସ୍ଥ୍ୟ ସେବା ପାଇବା, ଆଇନଦୃଷ୍ଟିରେ ସମାନ ବିବେଚିତ ହେବା ଓ ସମ୍ମାନର ସହ ଜୀବନ ଅତିବାହିତ କରିବା ସାମାଜିକ ସୁରକ୍ଷାର ପ୍ରସାରିତ ଅର୍ଥ । ଯେଉଁ ସାମାଜିକ ପରିବେଶରେ ପ୍ରତ୍ୟେକ ନାଗରିକ ପାଇଁ ଏହା ଉପଲବ୍ଧ ତାହା ଏକ ପ୍ରଗତିଶୀଳ ସମାଜ ।

ବିକାଶଶୀଳ ରାଷ୍ଟ୍ରମାନଙ୍କରେ ଏହି ଆକାଂକ୍ଷା ପୂରଣ ହେବା ସମ୍ଭବ ହୋଇନାହିଁ । ଦାରିଦ୍ର୍ୟ, ବେକାରୀ, ନିରକ୍ଷରତା, ଶିଶୁ ଶ୍ରମିକ, ଭିକ୍ଷାବୃତ୍ତି ପରି ବହୁବିଧ ସମସ୍ୟା କେତେକ ଦେଶରେ ରହିଛି । ଏହା ସହିତ ସାମାଜିକ ଭେଦଭାବ, ଜାତିଆଣ ମାନସିକତା, ଦୁର୍ନୀତି, ନାଗରିକ ବିଶୃଙ୍ଖଳା, ସାଂପ୍ରଦାୟିକ ବିଦ୍ୱେଷପରି ପରିବେଶ ରହିଛି । ତେବେ ଏସବୁକୁ ଦୂର କରି ଏକ ସୁସ୍ଥ ଓ ସମ୍ବେଦନପୂର୍ଣ୍ଣ ସମାଜ ଗଠନ ପାଇଁ ଅନ୍ତଃତ ଚିନ୍ତାସ୍ତରରେ ଆଲୋଡନ ଆସିପାରିଛି । ସମାଜର କିଛି ବ୍ୟକ୍ତି ସମତାପୂର୍ଣ୍ଣ ଓ ନ୍ୟାୟାଧାରିତ ସମାଜର ସଂରଚନା ପାଇଁ ନିଜର ସଂପୃକ୍ତି ବ୍ୟକ୍ତ କରୁଛନ୍ତି । ଆମ ଦେଶର ସମ୍ବିଧାନରେ ଆମର ଈପ୍ସିତ ଆଦର୍ଶମାନଙ୍କୁ ବ୍ୟକ୍ତ କରାଯାଇଛି । ଆମର ଈପ୍ସିତ ଆକାଂକ୍ଷାମାନଙ୍କୁ ବାସ୍ତବତାରେ ରୂପାୟନ କରିବା ପାଇଁ ସବୁରି ସ୍ତରରେ ନିଷ୍ପାପର ପ୍ରୟାସ ହେଲେ ଧାମେ ଯେ ଏକ ବିକଶିତ ରାଷ୍ଟ୍ର ହୋଇପାରିବା ଏହା ଆଶା କରାଯାଏ ।



# ଏକ ହେତୁବାଦୀ ଆଲେଖ୍ୟ

ଲେଖାଟି ଏକ ବ୍ୟକ୍ତିଗତ ଆଲେଖ୍ୟ । ମୁଁ କିପରି ହେତୁବାଦୀ ଜୀବନବୋଧକୁ ଗ୍ରହଣକଲି ସେ ବିଷୟରେ ଦୁଇପଦ ଲେଖିବାକୁ ମୁଁ ଏଠାରେ ସାମାନ୍ୟ ଉଦ୍ୟମ କରିଛି । ପ୍ରସଙ୍ଗଟି ମୋ ପାଇଁ କିଛିଟା ଜଟିଳ । ଏହା ଏହି ଦୃଷ୍ଟିରୁ ଜଟିଳ ଯେ ସେ ଯାତ୍ରା କେବେ ଆରମ୍ଭ ହେଲା ଓ କିପରି ଏକ ଜୀବନବୋଧରେ ପରିଣତ ହେଲା ତାହାର ଏକ ସ୍ପଷ୍ଟ ବିବରଣୀ ଦେବା ସମ୍ଭବ ନୁହେଁ । କେତେ ଅନୁଭୂତି, କିଛି ଅଧ୍ୟୟନ, ସାମାନ୍ୟ ଅନୁଶୀଳନ ଓ କେତେକ ସଂପର୍କ ଭିତରେ ଜଣଙ୍କର ଜୀବନବୋଧ ଏକ ନିର୍ଦ୍ଦିଷ୍ଟ ରୂପ ନେଇଥାଏ । ଘଟଣାକ୍ରମରେ କିଛି ସ୍ମୃତି ମନରେ ଜୀବନ୍ତ ରହିଛି । କେତେ ଅନୁଭବ ହୁଏତ ମନରୁ ଲିଭି ଗଲାଣି । ବୟସ ଯେତିକି ବଢ଼ିଚାଲିଛି ସ୍ମୃତି ସବୁ ବିସ୍ମୃତ ହେବାକୁ ବସିଲାଣି । ଏହା ଯେତିକି ସ୍ୱାଭାବିକ, ସେତିକି ପ୍ରାକୃତିକ । ଯାତ୍ରା ପଥରେ କେତେ ସଂପର୍କ, ପରିଚୟ, ଆତ୍ମୀୟତା ସୃଷ୍ଟି ହୁଏ, ସମୟର ସ୍ରୋତରେ କିଛି ରହେ, କେତେ କେତେ ବିଷୟ ମହାସ୍ରୋତରେ ବିଲୀନ ହୋଇଯାଏ । ମଣିଷ ଯେତେ ଅତୀତକୁ ଚାହେଁ, ଜୀବନର ସଫଳତା, ବିଫଳତାର କିଛି ଅନୁଭବ ସ୍ମୃତିକୁ ଆସେ । ସେହିପରି କିଛି ଅଙ୍ଗେଲିଭା କାହାଣୀର ଚିତ୍ର ଭିତରୁ ମୋର ହେତୁବାଦୀ ଜୀବନବୋଧ ବିଷୟରେ ଦୁଇପଦ ଲେଖିବା ଏହି ଲେଖାଟିର ଉଦ୍ଦେଶ୍ୟ । ଏକ ଆତ୍ମଜୀବନରେ ଜଣେ ଲେଖକ ଜୀବନର ଗୁରୁତ୍ୱପୂର୍ଣ୍ଣ ଘଟଣାବଳୀ ବିଷୟରେ ପୂର୍ଣ୍ଣ ଉଲ୍ଲେଖ କରିବାର ଅବକାଶ ପାଇଥାନ୍ତି, କିନ୍ତୁ ଏକ କ୍ଷୁଦ୍ର ପ୍ରବନ୍ଧ ଭିତରେ କିଛି ଅନୁଭବଦର କାହାଣୀକୁ ଉଲ୍ଲେଖ କରାଯାଇପାରେ ।

ପିଲାଟି ସମୟରୁ ଆମ ବ୍ୟକ୍ତିତ୍ୱର ବିକାଶ ପଶ୍ଚାତରେ ଆମର ପରିବାର ଓ ସାମାଜିକ ପରିବେଶର ଗଭୀର ପ୍ରଭାବ ରହିବା ଏକ ସାଧାରଣ ଉପଲବ୍ଧି । ତେବେ ବ୍ୟକ୍ତିର ଅଧ୍ୟୟନ, ଅନୁଭବ ଓ ଅନୁଶୀଳନ ବ୍ୟକ୍ତିତ୍ୱ ନିର୍ମାଣରେ କିଛିଟା ନିର୍ଣ୍ଣାୟକ ଭୂମିକା ନେଇଥାଏ । ଏହାର ଅଭାବରେ ସାମାଜିକ ପରିବେଶରୁ ଜଣେ ଯେଉଁ ଭାବନା ଓ ଚିତ୍ର ପାଇଥାଏ ତାହା ତାର ବ୍ୟକ୍ତିତ୍ୱ ଉପରେ କିଛି ଅଲିଭା ଦାଗ ଛାଡିଯାଏ । ମୋର ଜନ୍ମ ଏକ ନିମ୍ନ ମଧ୍ୟବିତ୍ତ ରକ୍ଷଣଶୀଳ ହିନ୍ଦୁ ପରିବାରରେ ହୋଇଥିଲା । ବାପା ମା ଶିକ୍ଷିତ ନଥିଲେ,

ଗଭୀର ଈଶ୍ୱରବିଶ୍ୱାସୀ ଓ ପାରଂପରିକ ଭାବେ ଧର୍ମପରାୟଣ ଥିଲେ । ମା' ବିଭିନ୍ନ ପ୍ରକାରର ଓଷା, ବାର ଓ ବ୍ରତ ପାଳନ କରୁଥିଲା । ଗ୍ରାମୀଣ ଜୀବନଧାରାରେ ନାନା ବ୍ରତ ଓ ଉପବାସ ମହିଳାମାନେ କରିବା ଏକ ସାଧାରଣ ଧାରା ଥିଲା । ସେହିପରି ଜାତିପ୍ରଥା, ଅସ୍ପୃଶ୍ୟତା ଓ ଉଚ୍ଚ ନୀଚ ଭେଦଭାବ ଗ୍ରାମ୍ୟ ଜୀବନର ଆଦର୍ଶ ହୋଇ ରହିଥିଲା । ସମସ୍ତ ବିବାହ ଓ ଭୋଜିଭାତ ଜାତି ଭିତରେ ସଂପର୍ଣ୍ଣ ହେଉଥିଲା । ମୋ ଗାଁ ଓଡ଼ିଶାର ସବୁଠାରୁ ବଡ଼ ଗ୍ରାମ ଓ ସେଠାରେ ବହୁ ଜାତିର ଲୋକ ବାସ କରୁଥିଲେ । ତେବେ ପ୍ରତ୍ୟେକ ବ୍ୟକ୍ତି ତାର ଜାତିଗତ ଅସ୍ମିତା ନେଇ ଗ୍ରାମରେ ପରିଚିତ ହେଉଥିଲା । କୌଣସି ବିବାହ ଓ ମୃତାହରେ ଜାତିର ଲୋକମାନଙ୍କୁ ଭୋଜି ଦେବାକୁ ହେଉଥିଲା । ଗ୍ରାମୀଣ ପରିବେଶରେ ବ୍ରାହ୍ମଣମାନେ ବେଶ୍ ପ୍ରଭାବଶାଳୀ ଥିଲେ ଓ ଯେକୌଣସି ବିଷୟରେ ସେମାନଙ୍କର ନିଷ୍ପତ୍ତି ଗ୍ରାମର ଲୋକମାନଙ୍କ ପାଇଁ ଶିରୋଧାର୍ଯ୍ୟ ଥିଲା । ଏହା ସହିତ ଆମ ପିଲାବେଳେ ଅଧିକାଂଶ ଲୋକ ନିଜର କୌଳିକ ବୃତ୍ତିକୁ ପେଷା ଭାବରେ ଗ୍ରହଣ କରି ସ୍ୱାବଲମ୍ବୀ ହେଉଥିଲେ । ଅଧିକାଂଶ ଲୋକ ଚାଷକାମ କରୁଥିଲେ ଓ ଯାହାର ଚାଷଜମି ଅଧିକ ଥିଲା ସେମାନେ ଗ୍ରାମରେ ଧନୀ ଭାବେ ଗଣ୍ୟ ହେଉଥିଲେ । ଦଳିତ ଲୋକମାନେ ଜମିହୀନ ରହିଥିଲେ ଓ ସେମାନଙ୍କ ଭିତରେ ଉତ୍କଟ ଦାରିଦ୍ର୍ୟ ରହିଥିଲା । ଅଧିକାଂଶ ଦଳିତ ଲୋକ ଅସ୍ପୃଶ୍ୟ ରହିଥିଲେ ଓ ସେମାନଙ୍କର ଆର୍ଥିକ ଓ ସାମାଜିକ ସ୍ଥିତି ବଡ଼ ଦୟନୀୟ ଥିଲା । ଭୁବନ ଗ୍ରାମର ଅନ୍ୟ ଏକ ଅପକୀର୍ତ୍ତି ଥିଲା ଯେ ଅନେକ ବର୍ଷ ସେଠାରେ ଘରପୋଡି ହେଉଥିଲା । ଜନବହୁଳତା ଯୋଗୁ ଘରଗୁଡିକ ଲାଗି ଲାଗି ରହିଥିଲା । ସବୁ ଘର ଚାଳଘର ଥିବାରୁ ସାମାନ୍ୟ ଅସତର୍କ କାରଣରୁ ଘରପୋଡି ଘଟୁଥିଲା । ଏହା ବି ଲୋକଙ୍କ ଦାରିଦ୍ର୍ୟର ଅନ୍ୟ ଏକ ମୁଖ୍ୟ କାରଣ ଥିଲା । ଯେଉଁ ବର୍ଷ ବଢ଼ି, ମରୁଡି ପରି ପ୍ରାକୃତିକ ଦୁର୍ବିପାକ ଘଟୁଥିଲା ଓ ଚାଷ ନଷ୍ଟ ହେଉଥିଲା ତାହା ଗ୍ରାମର ଅର୍ଥନୀତିକୁ ବିପର୍ଯ୍ୟସ୍ତ କରୁଥିଲା । ଗାଁକୁ ବିପଦ ନ ପଡିବା ପାଇ ଗାଁରେ ପ୍ରତିବର୍ଷ ଅଷ୍ଟପ୍ରହରୀ, ଯଜ୍ଞ ଓ ବିଭିନ୍ନ ପୂଜାପାର୍ବଣ ପାଳିତ ହେଉଥିଲା । ଦିଅଁ ଦେବତା ଆପଦ ବିପଦରୁ ଗାଁକୁ ସୁରକ୍ଷା ଦେବେ ଏହି ବିଶ୍ୱାସ ଗାଁରେ ବ୍ୟାପକ ଭାବେ ରହିଥିଲା । ଏହା ସହିତ ନିଜର ସାମାଜିକ ସ୍ଥିତି ନିଜର ଭାଗ୍ୟଲିଖନ ବୋଲି ବିଶ୍ୱାସ କରାଯାଉଥିଲା । ଏସବୁର ଗଭୀର ପ୍ରଭାବ ପିଲାଟି ବେଳୁ କିଛି ଛାପ ମୋ ଉପରେ ପକାଇଥିଲା ।

ଏହି ପରିପ୍ରେକ୍ଷୀରେ ପିଲାବେଳର ଦୁଇଟି ଘଟଣା ବଡ ହେବା ପରେ ମୋତେ ବେଶ୍ ଆଲୋଡିତ କରିଥିଲା । ଆମ ଗ୍ରାମରେ ଆମ ପିଲାଟି ବେଳେ ଚାରୋଟି ସ୍ଥାନରେ ଲକ୍ଷ୍ମୀପୂଜା ହେଉଥିଲା । ମୁଁ ଯେତେବେଳେ ପଞ୍ଚମ ଶ୍ରେଣୀରେ ପଢୁଥିଲି ଆମ ସାହିର

ଜଣେ ବ୍ୟକ୍ତି ଆମ ପଡାରେ ଲକ୍ଷ୍ମୀ ମେଢ଼ କରାଇ ଲକ୍ଷ୍ମୀପୂଜା ଆରମ୍ଭ କଲେ । ସେ ମାନସିକ କରି ବାରବର୍ଷ ଲକ୍ଷ୍ମୀପୂଜା କରିବାକୁ ନିଷ୍ପତ୍ତି ନେଲେ । ପଡାରୁ କିଛି ଚାନ୍ଦା ସଂଗ୍ରହ କରି ଓ ସେ ମୁଖ୍ୟ ଭାଗ ନିଜେ ବହନ କରି ବେଶ୍ ନିଷ୍ଠା ଓ ଭକ୍ତିର ସହ ଲକ୍ଷ୍ମୀପୂଜା ବର୍ଷ ବର୍ଷ କରିଚାଲିଲେ । ମୁଁ କଲେଜରେ ପଢୁଥାଏ ଓ ସେ ସଂକଳ୍ପ କରି ତାଙ୍କର ଲକ୍ଷ୍ମୀପୂଜା ମଧ୍ୟ କରୁଥାନ୍ତି । ଏହି ଭିତରେ ସେ କୁଷ୍ଠରୋଗରେ ଆକ୍ରାନ୍ତ ହେଲେ । ସେତେବେଳେ ଗ୍ରାମୀଣ ଜୀବନଧାରାରେ କୁଷ୍ଠରୋଗ ପ୍ରତି ବହୁ କୁସଂସ୍କାର ଓ ଘୃଣା ରହିଥାଏ । କୁଷ୍ଠରୋଗରେ ଆକ୍ରାନ୍ତ ହେବା ପରେ ତାଙ୍କର ଜୀବନ ଧୀରେ ଧୀରେ ଦୁର୍ବିସହ ହେବାକୁ ଲାଗିଲା । ଏକଦା ଆମ ସାହିରେ ଓ ଗ୍ରାମରେ ଯିଏ ଏତେ ସମ୍ମାନିତ ବ୍ୟକ୍ତି ଥିଲେ ଓ ବେଶ୍ ଭକ୍ତି ଭାବର ଅଧିକାରୀ ଥିଲେ ସେ କୁଷ୍ଠରୋଗରେ ଆକ୍ରାନ୍ତ ହେବା ପରେ ଅତ୍ୟନ୍ତ ଦୟନୀୟ ଭାବରେ ବଞ୍ଚି ବହୁ କଷ୍ଟ ଓ ଘୃଣାର ଶରବ୍ୟ ହୋଇ ମୃତ୍ୟୁବରଣ କଲେ । ଆମ ଗ୍ରାମର ଆଉ ଜଣେ ସମ୍ମାନିତ ବ୍ୟକ୍ତି ନିଜ ଉଦ୍ୟମରେ ଗ୍ରାମରେ ଜଗନ୍ନାଥ ମନ୍ଦିରଟିଏ ଆରମ୍ଭ କଲେ । ମୁଁ ପିଲା ଥିବାବେଳେ କିଛି ବ୍ୟକ୍ତିଙ୍କଠାରୁ ଚାନ୍ଦା ଭେଦା ନେଇ ଓ ସେ ନିଜ ପ୍ରୟାସରେ ମନ୍ଦିରଟି ଗଢ଼ି ଚାଲିଲେ ଓ ମନ୍ଦିରଟି ପୂର୍ଣ୍ଣାଙ୍ଗ କଲେ । ମନ୍ଦିର କାର୍ଯ୍ୟରେ ବ୍ୟସ୍ତ ରହି ସେ ଠିକ୍ ଭାବେ ତାଙ୍କର ଚାଷବାସ କରିପାରିଲେ ନାହିଁ ଓ ପରିସ୍ଥିତି ଏପରି ହେଲା ଯେ ସେ ପୂରା ନିସ୍ୱ ହୋଇଗଲେ । ନିଜର ଓ ପରିବାରର ସର୍ବନିମ୍ନ ଆବଶ୍ୟକତା ପୂରଣ କରିବାକୁ ଅସମର୍ଥ ହେବାରୁ ଶେଷ ଜୀବନ ଅତ୍ୟନ୍ତ ଯନ୍ତ୍ରଣାଦାୟକ ହୋଇ ଉଠିଲା । ଦୁଃଖ, ଅଭାବ ଓ ନୈରାଶ୍ୟ ଭିତରେ ସେ ସଂସାରରୁ ବିଦାୟ ନେଲେ ।

ଏହି ସବୁ ବାସ୍ତବ ଅନୁଭୂତିରୁ ଦିଅଁ ଦେବତାଙ୍କ କରୁଣା ଓ ଶକ୍ତି ନେଇ କିଶୋର ବୟସରୁ ମନ ଭିତରେ କିଛି ସନ୍ଦେହ ସୃଷ୍ଟି ହୋଇଥିଲା । ମୋର ଜଣେ ସଂପର୍କୀୟ ଶୁଭାକାଂକ୍ଷୀ ଆର୍ଯ୍ୟସମାଜୀ ଥିଲେ ଓ ସେ ମୋତେ ସ୍ୱାମୀ ଦୟାନନ୍ଦ ସରସ୍ୱତୀଙ୍କ ସତ୍ୟାର୍ଥ ପ୍ରକାଶ ପଢ଼ିବାକୁ ଦେଲେ । ମୁଁ ସେ ବହିର ଦୁଇଟି ଯାକ ଭାଗ ହାଇସ୍କୁଲରେ ଛାତ୍ର ଥିବା ବେଳେ ପଢ଼ିବା ପରେ ଆର୍ଯ୍ୟସମାଜର ବିଚାର ବିଷୟରେ ଅବଗତ ହେଲି । ସ୍ୱାମୀଜୀ ଥିଲେ ବେଦଜ୍ଞ ଓ ସଂସ୍କାରକ । ସେ ପ୍ରତିମାପୂଜା, ଫଳିତ ଜ୍ୟୋତିଷ ଓ ଜାତିପ୍ରଥାର ଥିଲେ ସମାଲୋଚକ । ପ୍ରତିମାପୂଜା ଓ ତାହା ସହ ସଂଶ୍ଲିଷ୍ଟ ନାନା କର୍ମକାଣ୍ଡ ଯେ ନିରର୍ଥକ ତାହା କିଶୋର ବୟସରୁ ମନ ଭିତରେ ଦୃଢ଼ ହୋଇଥିଲା ।

ଗ୍ରାମୀଣ ଜୀବନଧାରାରେ ଅସ୍ପୃଶ୍ୟତା ଓ ଜାତିଆଣ ମାନସିକତା ଅତ୍ୟନ୍ତ ଦୃଢ଼ ହୋଇ ରହିଥିଲା । କିଶୋର ବୟସରୁ ମୋତେ ଏହା ଅମାନବିକ ମନେ ହେଉଥିଲା ।

ବିଶେଷ କରି ମୋର କିଛି ଦଳିତ ସାଙ୍ଗ ମନ୍ଦିର ଭିତରେ ପ୍ରବେଶ କରିପାରୁ ନଥିଲେ ଓ ପୂଜକମାନେ ସେମାନଙ୍କ ହାତକୁ ପ୍ରସାଦ ବି ଦେଉନଥିଲେ । ମୁଁ ଏଥିରେ କିଛି ଅସ୍ୱସ୍ତିକର ଅନୁଭବ କରୁଥିଲି । ହାଇସ୍କୁଲରେ ପଢୁଥିବା ବେଳେ ବିନୋବାଜୀ ଭୂଦାନ ପଦଯାତ୍ରା ପରିପ୍ରେକ୍ଷୀରେ ଭୁବନକୁ ୧୯୬୪ରେ ଆସିଥିଲେ । ହାଇସ୍କୁଲ ପଡିଆରେ ଅପରାହ୍ନରେ ବଡ଼ ସଭା ହେଲା । ଗାଁର ଦଳିତ ଲୋକମାନେ ଦୂରରେ ବସିବା ପାଇଁ ଆୟୋଜକମାନେ ବ୍ୟବସ୍ଥା କରିଥାନ୍ତି । ବିନୋବାଜୀଙ୍କ ସହ ଓଡ଼ିଶାର ବହୁ ବିଶିଷ୍ଟ ଗାନ୍ଧୀବାଦୀ ବ୍ୟକ୍ତି, ଭୁବନକୁ ଆସିଥାନ୍ତି । ରମାଦେବୀ, ମାଳତୀଦେବୀ, ନବବାବୁ, ଆଚାର୍ଯ୍ୟ ହରିହରଙ୍କ ପରି ବିଶିଷ୍ଟ ଗାନ୍ଧିବାଦୀମାନଙ୍କୁ ଭୁବନରେ ଦେଖିବାର ଓ ସେମାନଙ୍କ ଭାଷଣ ଶୁଣିବାର ସୁଯୋଗ ମିଳିଥିଲା । ବିନୋବାଜୀ ଓ ଅନ୍ୟମାନେ ଅସ୍ପୃଶ୍ୟତା ଯେ ଏକ ସାମାଜିକ କଳଙ୍କ ଓ ଜାତିଆଣ ଭେଦଭାବ ମାନବିକତାବିରୋଧୀ ଏହା ବିଷୟରେ କିଛି ବକ୍ତବ୍ୟ ରଖିଥିଲେ । ଗ୍ରାମର ମୁରବି ଓ ବୟସ୍କ ଲୋକମାନଙ୍କଠାରୁ ଜାତିପ୍ରଥା ଓ ଅସ୍ପୃଶ୍ୟତା ସପକ୍ଷରେ ପିଲାବେଳେ ବହୁ କଥା ଶୁଣିଥିଲି । ଏହା ଯେ ଶାସ୍ତ୍ରସମ୍ମତ ଓ ଏକ ଦୈବୀବ୍ୟବସ୍ଥା ଓ ଏହାର ଉଲଙ୍ଘନ ଧର୍ମବିରୋଧୀ କାର୍ଯ୍ୟ ଏହା କେତେବାର ଶୁଣିବା ଭିତରେ ମୁଁ ଏହାକୁ ଗ୍ରହଣ ନକଲେ ମଧ୍ୟ ମୋର ପିଲାବୁଦ୍ଧିରେ ମୁଁ କିଛି ଯୁକ୍ତି ଦେଇ ପାରୁନଥିଲି । ବିନୋବାଜୀଙ୍କ ଭାଷଣ ଶୁଣିବା ପରେ ମୋର ବିଶ୍ୱାସ ଦୃଢ଼ହେଲା ଯେ ଏହି ବ୍ୟବସ୍ଥା ଅନ୍ୟାୟ, ଅମାନବିକ ଓ ଅଯୌକ୍ତିକ । ମୁଁ କଲେଜରେ ଛାତ୍ର ଥିବାବେଳେ ଗାଁକୁ ଆସିଲେ ଦଳିତ ବସ୍ତିକୁ ଯିବା, ସେମାନଙ୍କ ପିଲାମାନେ କିପରି ପାଠ ପଢ଼ି ପାରିବେ ଏଥିପାଇଁ ସେମାନଙ୍କୁ ବୁଝାଇବା, ସେମାନଙ୍କ ଭିତରେ କିପରି ଆତ୍ମବିଶ୍ୱାସ ଓ ଆତ୍ମସମ୍ମାନର ଭାବନା ଆସିବ ସେଥିପାଇଁ ସେମାନଙ୍କୁ ସଚେତନ କରାଇବା ପରି କିଛି ଛୋଟ ମୋଟ କାର୍ଯ୍ୟ କରିବାକୁ ପ୍ରୟାସ କରୁଥିଲି ।

ରେଭେନ୍‌ସା କଲେଜରେ ଛାତ୍ର ଥିବା ବେଳେ କଟକରେ ମୁଁ ଥୋରିଆସାହି ସ୍ଥିତ ଗୁଣନିଧି ଭବନକୁ ମଝିରେ ମଝିରେ ଯାଉଥିଲି । ସେଠାରେ ସେତେବେଳେ ଆଚାର୍ଯ୍ୟ ହରିହର, କୃପାସିନ୍ଧୁ ହୋତା, ରମାଦେବୀଙ୍କ ପରି ବହୁ ବିଶିଷ୍ଟ ଗାନ୍ଧୀବାଦୀ ବ୍ୟକ୍ତି ରହୁଥିଲେ । ଏହି ପ୍ରକ୍ରିୟାରେ ମୁଁ ସର୍ବୋଦୟ ଦର୍ଶନ ସଂପର୍କରେ ଅବଗତ ହେଲି ଓ ତାହାକୁ ଜୀବନ କ୍ଷେତ୍ରରେ କିଞ୍ଚିତ ପ୍ରୟୋଗ କରିବାକୁ ପ୍ରୟାସ କଲି । ସତ୍ୟ ଓ ଅହିଂସାକୁ ଜୀବନର ସର୍ବଶ୍ରେଷ୍ଠ ମୂଲ୍ୟବୋଧ ଭାବେ ସ୍ୱୀକାର କରିବା, ଶରୀରଶ୍ରମକୁ ସମ୍ମାନଦେବା, କୌଣସି ପ୍ରକାରର ଭେଦଭାବ (ତାହା ଜାତିଗତ, ଧର୍ମଗତ ବା ଯାହା କିଛି ହେଉ) ପୋଷଣ

ନକରିବା, କୌଣସି ପ୍ରକାରର ନିଶା ସେବନ ନ କରିବା, ପ୍ରତ୍ୟକ୍ଷ ରାଜନୀତିରେ ସଂପୃକ୍ତ ନହେବା ଓ ଖଦୀ ପରିଧାନ କରିବା ସମ୍ଭବତଃ ସର୍ବୋଦୟର ମୌଳିକ ଆଦର୍ଶ ବୋଲି ନିଆଯାଉଥିଲା । ମୁଁ ଖଦୀ ପିନ୍ଧିଲି ଓ ଏସବୁ ଭାବଧାରାକୁ ଜୀବନରେ ଗ୍ରହଣ କରିବାକୁ ଚେଷ୍ଟା କଲି ।

ଘଟଣା ପ୍ରବାହ ଭିତରେ ବିଶିଷ୍ଟ ଗାନ୍ଧିବାଦୀ ଓ ଭୂଦାନଯଜ୍ଞ ସମିତିର ସଭାପତି ମଦନମୋହନ ସାହୁ ଓ ସର୍ବୋଦୟ ନେତା ମନମୋହନ ଚୌଧୁରୀଙ୍କ ସହ ମୋର ସମ୍ପର୍କ କିଛିଟା ନିବିଡ ହେଲା ଓ ସେମାନେ ମୋ ପାଇଁ ରୋଲ ମଡେଲ୍ ହେଲେ । ମୁଁ ଅଧ୍ୟାପକ ହେବା ପରେ ମୋ ଗ୍ରାମରେ ଗାନ୍ଧୀ ଦର୍ଶନ ଆଲୋଚନା ଚକ୍ର ଆୟୋଜନ କରିଥିଲି ଓ ସେଥିରେ କିଛି ଗାନ୍ଧୀବାଦୀ ଚିନ୍ତକଙ୍କୁ ଆମନ୍ତ୍ରଣ କରିଥିଲି । ମୋ ଅନୁରୋଧରେ ମନମୋହନ ଚୌଧୁରୀ ଓ ମଦନମୋହନ ସାହୁଙ୍କ ପରି ବିଶିଷ୍ଟ ଅତିଥିମାନେ ବି ଭୁବନ ଆସି ଗାନ୍ଧୀବାଦର ନାନା ଦିଗ ଉପରେ ଆଲୋଚନା କରିଥିଲେ । ଏହି ଆଲୋଚନା ଚକ୍ର ସହିତ ଦଳିତ ବସ୍ତିରେ ପଙ୍‌କ୍ତି ଭୋଜନ ଏକ କାର୍ଯ୍ୟକ୍ରମ ରହିଥିଲା । ଗାଁର ଲୋକଙ୍କ ଭିତରେ ରହିଥିବା ଅସ୍ପୃଶ୍ୟତା ଜନିତ ଭେଦଭାବ ଦୂର କରିବା ପାଇଁ ଏହା ମୋର ଏକ କ୍ଷୁଦ୍ର ପ୍ରୟାସ ଥିଲା । ମୋର ଗାନ୍ଧୀବାଦୀମାନଙ୍କ ସହ ସମ୍ବନ୍ଧ ପରିପ୍ରେକ୍ଷୀରେ ମୁଁ ବିଶିଷ୍ଟ ନିରୀଶ୍ୱରବାଦୀ, ସ୍ୱାଧୀନତା ସଂଗ୍ରାମୀ ଓ ଗାନ୍ଧିବାଦୀ ଗୋରାଙ୍କ ସମ୍ପର୍କରେ ଜାଣିବାର ଅବକାଶ ପାଇଲି । ଗୋରାଙ୍କ ପୁରା ନାମ ଗୋପରାଜୁ ରାମଚନ୍ଦ୍ର ରାଓ (୧୯୦୨-୧୯୭୫) ଓ ସେ ଅଧ୍ୟାପନା ଚାକିରିରୁ ଇସ୍ତଫା ଦେଇ ସମାଜସେବା ଓ ସ୍ୱାଧୀନତା ଆନ୍ଦୋଳନରେ ସାମିଲ ହୋଇଥିଲେ । ୧୯୪୦ ମସିହାରେ ସେ ନାସ୍ତିକ କେନ୍ଦ୍ର ନାମରେ ଏକ ଅନୁଷ୍ଠାନ ପ୍ରତିଷ୍ଠା କରି ସମାଜସେବା ଓ ସମାଜସଂସ୍କାର ପାଇଁ ନିଜକୁ ଉତ୍ସର୍ଗ କରିଥିଲେ । ତାଙ୍କ ଅନୁଷ୍ଠାନ ସହ ଯୋଗାଯୋଗ କରି ଜାଣିବାକୁ ପାଇଲି ଯେ ୧୯୮୦ ମସିହାରେ ଦ୍ୱିତୀୟ ବିଶ୍ୱ ନିରୀଶ୍ୱରବାଦୀ ସମ୍ମିଳନୀ ବିଜୟୱାଡାଠାରେ ଅନୁଷ୍ଠିତ ହେବ । ଚାରିଦିନ ଧରି ହେଉଥିବା ଏହି ସମ୍ମିଳନୀରେ ଯୋଗ ଦେବା ଥିଲା ମୋ ପାଇଁ ଏକ ଚମକପ୍ରଦ ଅନୁଭୂତି । ପୃଥିବୀର ବିଭିନ୍ନ ଦେଶରୁ ଆସିଥିବା ହେତୁବାଦୀ, ନିରୀଶ୍ୱରବାଦୀ, ମାନବବାଦୀ, ମାନବିକ ଅଧିକାରର ପ୍ରବକ୍ତା ଓ ବହୁ ପ୍ରଗତିଶୀଳ ବୁଦ୍ଧିଜୀବୀମାନଙ୍କ ଭାଷଣ ଶୁଣିବାର ଅବକାଶ ମିଳିଲା । ସେଠିକାର ଆଲୋଚନାର ସ୍ତର ଏତେ ଉଚ୍ଚମାନର ଥିଲା ଯେ ତାର ଏକ ଗଭୀର ପ୍ରଭାବ ମୋ ଉପରେ ପଡିଥିଲା । ମୁଁ ସେଠାରୁ ଗୋରା, ପେରିୟାର ଓ କେତେକ ଚିନ୍ତାନାୟକଙ୍କର ପୁସ୍ତକ ଆଣିଲି ଓ ସେସବୁର ଅନୁଧ୍ୟାନ ମୋର ବିଚାରବୋଧକୁ ଦୃଢ଼

ଭିତ୍ତି ଦେଇଥିଲା । ସେହିଠାରେ ବିଶିଷ୍ଟ ହେତୁବାଦୀ ଚାଲେଂଜର ଆବ୍ରାହମ କୋଭୁରୁଙ୍କ ଅନୁଗାମୀ ବି ପ୍ରେମାନନ୍ଦଙ୍କ ସହ ସମ୍ପର୍କ ସ୍ଥାପିତ ହେଲା ଓ ତାଙ୍କର ଦେହାନ୍ତ ପର୍ଯ୍ୟନ୍ତ ତାଙ୍କ ସହ ସମ୍ପର୍କ ନିବିଡ ଥିଲା । ଭାରତବର୍ଷରେ ହେତୁବାଦୀ ଆନ୍ଦୋଳନକୁ ଏକ ଜାତୀୟ ରୂପରେଖ ଦେବାରେ ତାଙ୍କର ଅତୁଳନୀୟ ଅବଦାନ ଅନସ୍ୱୀକାର୍ଯ୍ୟ ।

ସୌଭାଗ୍ୟକ୍ରମେ ମୁଁ ଦର୍ଶନଶାସ୍ତ୍ର ପଢ଼ିଲି । ଦର୍ଶନଶାସ୍ତ୍ର ଭିତରେ ଅନ୍ୟାନ୍ୟ ପ୍ରସଙ୍ଗ ସହ ତିନୋଟି ଗୁରୁତ୍ୱପୂର୍ଣ୍ଣ ବିଷୟ ଜଣଙ୍କର ଜୀବନବୋଧକୁ ଗଭୀରଭାବେ ପ୍ରଭାବିତ କରିବାର ସମ୍ଭାବନା ରହିଥାଏ । ପ୍ରଥମତଃ ତର୍କଶାସ୍ତ୍ର ଦର୍ଶନର ଏକ ମୁଖ୍ୟ ବିଭାଗ । ତର୍କଶାସ୍ତ୍ର ଅଧ୍ୟୟନ ଦ୍ୱାରା ବିଭିନ୍ନ ଯୁକ୍ତିର ପ୍ରକାରଭେଦ, ବୈଧଯୁକ୍ତିର ସ୍ୱରୂପ, ଅନୁଶୀଳନାତ୍ମକ ଚିନ୍ତନ ବା କ୍ରିଟିକାଲ୍ ଥିଙ୍କିଙ୍ଗ୍ ବିଷୟରେ ଜଣେ ଅଧ୍ୟୟନ କରିଥାନ୍ତି । ଆମର ଯୁକ୍ତି, ଅନୁମାନ, ଜ୍ଞାନର ସ୍ୱରୂପ ଓ କୌଣସି ସିଦ୍ଧାନ୍ତକୁ ଆସିବାର ପ୍ରଣାଳୀ ବିଷୟରେ ଅନୁଶୀଳନ ତର୍କଶାସ୍ତ୍ରର ପରିସରରେ ବିଚାର୍ଯ୍ୟ ହୋଇଥାଏ । କେଉଁ କାରଣରୁ ଆମର ଯୁକ୍ତି ଓ ଅନୁମାନ ବୈଧ ହୋଇଥାଏ ଓ କେଉଁ ନିୟମକୁ ଲଙ୍ଘନ କରିବା ଦ୍ୱାରା ଯୁକ୍ତି ଅବୈଧ ହୋଇଥାଏ ତାହାର ବିଶ୍ଳେଷଣ ତର୍କଶାସ୍ତ୍ରରେ କରାଯାଏ । ତର୍କଶାସ୍ତ୍ରର ବିଭିନ୍ନ ଦିଗନ୍ତକୁ ଅଧ୍ୟୟନ କରିବା ଦ୍ୱାରା ଜଣଙ୍କର ବିଚାରଶୀଳ ଚିନ୍ତନ ଯୁକ୍ତିସଂଗତ ହେବାର ସମ୍ଭାବନା ରହିଥାଏ । ଦର୍ଶନର ଅନ୍ୟ ଏକ ମହତ୍ତ୍ୱପୂର୍ଣ୍ଣ କ୍ଷେତ୍ର ହେଉଛି ଚିନ୍ତାଧାରାର କ୍ରମବିକାଶର ଐତିହାସିକ ଅନୁଶୀଳନ । ସଭ୍ୟତାର ବିକାଶ ପରଠାରୁ ମାନବୀୟ ଚିନ୍ତା ଚେତନାର କିପରି ଅଗ୍ରଗତି ଘଟିଛି ତାହାର ଏକ ଧାରାବାହିକ ଇତିହାସ ଦର୍ଶନ ପରିସରରେ ଚର୍ଚ୍ଚା ହୋଇଥାଏ । କେଉଁ ସମୟରେ ମାନବୀୟ ଚିନ୍ତାଚେତନା କେଉଁ ସ୍ତରରେ ରହିଥିଲା ଓ ବିଶ୍ୱପ୍ରକୃତି, ସମାଜ ଓ ଜୀବନ ନେଇ ମଣିଷର ଅବବୋଧ କିପରି ଅଗ୍ରଗତି ଘଟିଲା ତାହାର ଏକ ଧାରାବାହିତ କ୍ରମୋନ୍ନତିର ଚିତ୍ର ଦର୍ଶନ ପରିସରରେ ଆଲୋଚିତ ହୋଇଥାଏ । ଜ୍ଞାନ, ବିଜ୍ଞାନ, ସାମାଜିକ ଅନୁଷ୍ଠାନ, ରାଜନୈତିକ ସଂଗଠନ, ନୀତି ନୈତିକତା ଇତ୍ୟାଦିର କ୍ରମବିକାଶର ଚିତ୍ର ଦର୍ଶନ ଦେବାକୁ ପ୍ରୟାସ କରିଥାଏ । ଗୁଣାତ୍ମକ ଜୀବନର ମାନ, ନୀତି-ନୈତିକତାର ଉତ୍ସ ଓ ଜୀବନ ଉପରେ ତାହାର ପ୍ରଭାବ ବିଷୟରେ ଦର୍ଶନ ପରିସରରେ କିଛି ଗମ୍ଭୀର ଆଲୋଚନା ହେବା ଦେଖାଯାଏ । ଏ ସବୁକୁ ଯଥାର୍ଥ ଭାବରେ ବୁଝିବା ଦ୍ୱାରା ଜଣଙ୍କର ବୌଦ୍ଧିକ ଦିଗନ୍ତ, ବିସ୍ତାରିତ ହେବା ସହ ଅନୁଶୀଳନାତ୍ମକ ହେବାର ସମ୍ଭାବନା ରହିଥାଏ । ସମାଜର ସାଂସ୍କୃତିକ ବିକାଶକୁ ଧର୍ମଭାବନା କିପରି ପ୍ରଭାବିତ କରିଛି ଓ ଧାର୍ମିକ ଚେତନାର ସକାରାତ୍ମକ ଓ ନକାରାତ୍ମକ ଦିଗ କ'ଣ ରହିଛି ତାହାର ବିଶ୍ଳେଷଣ ଧର୍ମଦର୍ଶନ ପରିସରରେ ଆଲୋଚିତ

ହୋଇଥାଏ । ଏହା ସହ ଧର୍ମମାନଙ୍କର ତୁଳନାତ୍ମକ ବ୍ୟାଖ୍ୟାନକୁ ଅଧ୍ୟୟନ କରିବା ଦ୍ୱାରା ଜ୍ଞାନର ଦିଗନ୍ତ ବିସ୍ତାରିତ ହୋଇଥାଏ । ଏହିସବୁ ବୌଦ୍ଧିକ ଅନୁଶୀଳନ ଦ୍ୱାରା ଜଣଙ୍କର ବିଚାରବୋଧ ଗମ୍ଭୀର ହେବାର ସମ୍ଭାବନା ରହିଥାଏ । ତେବେ ବିଜ୍ଞାନ ଓ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ମଧ୍ୟରେ ଯେପରି ପାର୍ଥକ୍ୟ ରହିବା ଦୃଷ୍ଟିଗୋଚର ହୁଏ ସେହିପରି ଦର୍ଶନ ଓ ଦାର୍ଶନିକ ଦୃଷ୍ଟି ଭିତରେ ପାର୍ଥକ୍ୟ ରହିଥାଏ । ବିଜ୍ଞାନ ଅଧ୍ୟୟନ କରିଥିବା ପ୍ରତ୍ୟେକ ବ୍ୟକ୍ତି ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଯେ ପୋଷଣ କରନ୍ତି ଏହା ଯେପରି କୁହାଯାଇ ପାରିବ ନାହିଁ, ସେହିପରି ଦର୍ଶନ ଅଧ୍ୟୟନ କରିଥିବା ପ୍ରତ୍ୟେକ ବ୍ୟକ୍ତି ଯେ ଦାର୍ଶନିକ ଦୃଷ୍ଟିଭଙ୍ଗୀ ପୋଷଣ କରନ୍ତି ଏହା ମଧ୍ୟ କୁହାଯାଇ ପାରିବ ନାହିଁ । ମୁକ୍ତ ମନ, ଯୁକ୍ତିଶୀଳ ବିଚାର ଓ ତର୍କସଂଗତ ସିଦ୍ଧାନ୍ତ ଦାର୍ଶନିକ ଚିନ୍ତନର ମୁଖ୍ୟ ଆଭିମୁଖ୍ୟ ଅଟେ । ତେବେ ବିଂଶଶତାବ୍ଦୀ ଆରମ୍ଭରୁ ଦାର୍ଶନିକ ଅନୁଶୀଳନ ସ୍ତରରେ ଏକ ବୈପ୍ଳବିକ ପରିବର୍ତ୍ତନର ସୂତ୍ରପାତ ହୁଏ । ଅତୀତରେ କିପରି ଅନେକ ଅପସିଦ୍ଧାନ୍ତ ଦର୍ଶନ ସ୍ତରରେ ରହିଥିଲା ଓ ଚିନ୍ତାରାଜ୍ୟର ନାନା ବିଭ୍ରାଟର କାରଣ ହୋଇଥିଲା ତାହାର ଚିତ୍ର ବିଂଶଶତାବ୍ଦୀର ଦାର୍ଶନିକମାନେ ପ୍ରକଶ କଲେ । ଧୀରେ ଧୀରେ ଦର୍ଶନ ସ୍ତରରୁ କାଳ୍ପନିକ ତାତ୍ତ୍ୱିକ ପ୍ରସଙ୍ଗ କିପରି ବୌଦ୍ଧିକ ଅସ୍ୱଚ୍ଛତା ଓ ପ୍ରତ୍ୟୟଗତ ବିଭ୍ରାନ୍ତିରୁ ଉଦ୍‌ଭବ ହୋଇ ଚିନ୍ତାରାଜ୍ୟକୁ ସଂକ୍ରମିତ କରିଥିଲା ତାହାର ଚିତ୍ର ଦାର୍ଶନିକ ବିଶ୍ଳେଷଣରୁ ସ୍ୱଷ୍ଟ ହେବାକୁ ଲାଗିଲା । ପ୍ରତ୍ୟୟଗତ ସ୍ୱଚ୍ଛତା, ତର୍କଶୀଳତା ଓ ଅନୁଶୀଳନାତ୍ମକ ବିଶ୍ଳେଷଣ ଦର୍ଶନର ଆଭିମୁଖ୍ୟ ହେଲା । ବିଂଶଶତାବ୍ଦରେ ଆରମ୍ଭ ହୋଇଥିବା ଏହି ଦାର୍ଶନିକ ଚିନ୍ତନ ଦର୍ଶନ ପରିସରରୁ ଅନେକ ଅପସିଦ୍ଧାନ୍ତକୁ ଦୂର କରିବାରେ ସହାୟକ ହୋଇଥିବା ମନେହୁଏ । ବିଜ୍ଞାନର ବିକାଶ ଓ ବିଂଶ ଶତାବ୍ଦୀୟ ଦାର୍ଶନିକ ଅନୁଶୀଳନ ହେତୁବାଦର ବୌଦ୍ଧିକ ଦିଗନ୍ତକୁ ଯେ ବିସ୍ତାର କରିଛନ୍ତି ଏହା କୁହାଯାଇପାରେ ।

ହେତୁବାଦୀ ଜୀବନବୋଧକୁ ଗ୍ରହଣ କରିବାରେ କେତେକ ପୁସ୍ତକର ଯେ ବଳିଷ୍ଠ ପ୍ରଭାବ ରହିଛି ଏହା ବି ଏକ ଅନୁଭବ । ଆବ୍ରାହମ୍ କୋଭୁର, ପେରିୟାର, ବର୍ଟ୍ରାଣ୍ଡ ରସେଲଙ୍କ ଲେଖାମାନଙ୍କରେ ହେତୁବାଦୀ ଜୀବନବୋଧର ଯେଉଁ ବାର୍ତ୍ତା ରହିଛି ତାହା ଯେକୌଣସି ପାଠକକୁ ସ୍ୱାଧୀନ ଭାବରେ ଚିନ୍ତା କରିବାକୁ ବହୁ ପ୍ରେରଣା ଯୋଗାଇବ । ମୁଁ ବିଂଶଶତାବ୍ଦୀର ସତୁରି, ଅଶୀ ଦଶକ ମଧ୍ୟରେ ଯେତେବେଳେ କୋଭୁରଙ୍କ ଦୁଇଟି ଚିନ୍ତାମୂଳକ ପୁସ୍ତକ BegoneGodmen ଓ Gods, Demons and Spritts ପଢ଼ିଲି ତାହା ହେତୁବାଦ ଉପରେ ମୋତେ ଗଭୀର ଭାବେ ପ୍ରଭାବିତ କରିଥିଲା । କୋଭୁର (୧୮୯୮-୧୯୭୮) ଥିଲେ ଜୀବବିଜ୍ଞାନୀ ଓ ଅନେକାଂଶରେ ମନୋବୈଜ୍ଞାନିକ । ବହୁ

ତଥାକଥିତ ପାରଲୌକିକ ଘଟଣାବଳୀ ଓ ଚମତ୍କାରିତା ବିଷୟରେ ଜୀବନସାରା ଗବେଷଣା କରି ସେ ସ୍ଥିର ନିଶ୍ଚିତ ହୋଇଥିଲେ ଯେ ପ୍ରାକୃତିକ ନିୟମକୁ ଲଙ୍ଘନ କରି କେହି କୌଣସି ଚମତ୍କାରିତା ପ୍ରଦର୍ଶନ କରିପାରିବେ ନାହିଁ । ଯେଉଁ ତଥାକଥିତ ବାବା, ମାତା ଓ ଦେବପୁରୁଷମାନେ ଚମତ୍କାରିତା ଆଳରେ ସାଧାରଣ ଲୋକମାନଙ୍କୁ ପ୍ରଭାବିତ କରୁଛନ୍ତି ତାହା ହାତ ସଫେଇ କଳା ବା ଯାଦୁବିଦ୍ୟାର ପରିସରଭୁକ୍ତ । ସାଧାରଣ ଲୋକମାନେ ଏହି ପ୍ରକାର ଏକ ବିଶ୍ୱାସର ବଶବର୍ତ୍ତୀ ଯେ ଯେଉଁ ଦେବପୁରୁଷ ଚମତ୍କାରିତା ପ୍ରଦର୍ଶନ କରୁଛନ୍ତି ସେ ତାଙ୍କର ଦିବ୍ୟଶକ୍ତି ବଳରେ ତାଙ୍କ ସମସ୍ୟାକୁ ଅକ୍ଳେଶରେ ସମାଧାନ କରିଦେଇ ପାରିବେ । ଏହି ପରିପ୍ରେକ୍ଷୀରେ କୋଭୁର ୧୯୬୪ରେ ପୃଥିବୀର ବିଭିନ୍ନ ପତ୍ରି ପତ୍ରିକା ଓ ଗଣମାଧମ ଜରିଆରେ ଏକ ଆହ୍ୱାନ ଦେଲେ ଯେ ଯଦି କୌଣସି ବ୍ୟକ୍ତି ତାଙ୍କ ସମ୍ମୁଖରେ ବା ତାଙ୍କ ମନୋନୀତ ବ୍ୟକ୍ତିଙ୍କ ସାମ୍ନାରେ ଏକ ଅଲୌକିକି ଘଟଣା ପ୍ରଦର୍ଶନ କରିପାରିବେ ତେବେ ସେ ସେହି ବ୍ୟକ୍ତିଙ୍କୁ ଏକ ଲକ୍ଷ ଟଙ୍କା ପ୍ରଦାନ କରିବେ । ପ୍ରକାଶଥାଉ କି କୋଭୁର ବାଇଶିଟି ବିଷୟରେ ଆହ୍ୱାନ ରଖିଥିଲେ ଯେଉଁଥିରୁ ସେ କେତେଗୁଡିଏ ଘଟଣା ସର୍ବସାଧାରଣରେ ତଥାକଥିତ ଦେବପୁରୁଷଙ୍କ ପରି ପ୍ରଦର୍ଶନ କରି ତାହାର କଳା କୌଶଳ ଲୋକମାନଙ୍କୁ ବୁଝାଉଥିଲେ । କୋଭୁରଙ୍କର ଏହି ଆହ୍ୱାନ କେତେକ ଆନ୍ତର୍ଜାତିକ ସଂଗଠନ ବି ରଖିଛନ୍ତି ଓ କୋଭୁରଙ୍କ ଦେହାନ୍ତ ପରେ ବିଭିନ୍ନ ଦେଶର ହେତୁବାଦୀ ସଂଗଠନ ମଧ ରଖିଛନ୍ତି । ଭାରତବର୍ଷରେ ବି. ପ୍ରେମାନନ୍ଦ ଏହି ଆହ୍ୱାନ ରଖିଥିଲେ ଓ ତାଙ୍କର ଦେହାନ୍ତ ପରେ ପ୍ରେମାନନ୍ଦଙ୍କ ଦ୍ୱାରା ପ୍ରତିଷ୍ଠିତ ଅନୁଷ୍ଠାନ ଭାରତୀୟ ହେତୁବାଦୀ ମହାସଂଘ (Federation of Indian Rationalist Association) ଏହି ଆହ୍ୱାନ ରଖିଛି । କୋଭୁର, ପ୍ରେମାନନ୍ଦ ଓ ଅନେକ ହେତୁବାଦୀ ଦେବପୁରୁଷମାନଙ୍କର ଚମତ୍କାରିତା ସର୍ବସାଧାରଣରେ ଦେଖାଇବା ଓ ସେମାନଙ୍କୁ ଆହ୍ୱାନ ଦେବା ହେତୁବାଦୀ ଜୀବନଦୃଷ୍ଟିକୁ ପ୍ରସାର କରିବାକୁ ଅଭିପ୍ରେତ ।

ବହୁ ମାନବୀୟ ସମସ୍ୟା, ଧର୍ମ, ନୈତିକତା, ବିଜ୍ଞାନ ଇତ୍ୟାଦି ନାନା ବୌଦ୍ଧିକ ପ୍ରସଙ୍ଗ ଉପରେ ଯେଉଁମାନେ ଜାତୀୟ ତଥା ଆନ୍ତର୍ଜାତିକ ସ୍ତରରେ ପାଣ୍ଡିତ୍ୟପୂର୍ଣ୍ଣ ଗ୍ରନ୍ଥମାନ ରଚନା କରିଛନ୍ତି ସେମାନଙ୍କ ମଧ୍ୟରେ ବିଂଶଶତାବ୍ଦୀର ପ୍ରବୀଣ ଦାର୍ଶନିକ ବର୍ଟ୍ରାଣ୍ଡ ରସେଲ (୧୮୭୩-୧୯୭୧) ଅନ୍ୟତମ । ରସେଲଙ୍କ ଲେଖାରେ ଯେଉଁ ବିଶ୍ଳେଷଣାତ୍ମକ ଅନୁଶୀଳନର ଚିତ୍ର ରହିଥାଏ ତାହା ପାଠକକୁ ଚିନ୍ତା କରିବାକୁ ବହୁ ଉପାଦାନ ଯୋଗାଇଥାଏ । ରସେଲଙ୍କ କେତେକ ପ୍ରବନ୍ଧ ଓ ବହିର ଯେ ଗଭୀର ପ୍ରଭାବ ମୋର

ଭାବନାସକଳକୁ ପ୍ରଭାବିତ କରିଛି ମୁଁ ଏହା ସ୍ୱୀକାର କରୁଛି । ଗୋରା, ଆମ୍ବେଦକର, ପେରିୟାର ଓ ଏମ.ଏନ. ରାୟଙ୍କର ପରି ଚିନ୍ତା ନାୟକଙ୍କ ଲେଖାରୁ ଭାରତୀୟ ସମାଜ, ସାମାଜିକ ଅବକ୍ଷୟ ଓ ସାମାଜିକ ଅନଗ୍ରସରତାର ନାନା ଚିତ୍ର ମିଳିଥାଏ । ସେମାନଙ୍କ ଚିନ୍ତାମୂଳକ ଲେଖାମାନ ସ୍ୱାଧୀନ ଭାବରେ ଚିନ୍ତା କରିବାକୁ ଯେ ଅନେକ ପ୍ରେରଣା ଯୋଗାଇଛି ଏହା ଅନସ୍ୱୀକାର୍ଯ୍ୟ । ସାମାଜିକ ପ୍ରଥା, ପରଂପରା, ଅତିପ୍ରାକୃତିକ ସତ୍ତାରେ ଗଭୀର ବିଶ୍ୱାସ ଓ ବହୁ ପାରଲୌକିକ ଭାବନା ଭାରତୀୟ ସମାଜର ଅନଗ୍ରସରତାର ଯେ ଏକ ମୁଖ୍ୟ କାରଣ ଏହା ବୁଝିବାରେ ସହାୟକ ହୋଇଥାଏ । ସେହିମାନଙ୍କ ଲେଖାରୁ ସୁସ୍ଥ ସାମାଜିକ ବିକାଶ ପାଇଁ ମୁକ୍ତମନ, ବିଚାରଶୀଳ ଦୃଷ୍ଟି ଓ ମାନବବାଦୀ ଜୀବନବୋଧର ଯେଉଁ ବାର୍ତ୍ତା ମିଳିଥାଏ ତାହା ଜୀବନର ବୌଦ୍ଧିକ ଓ ନୈତିକ ବିକାଶ ପାଇଁ ବହୁ ପ୍ରେରଣା ଯୋଗାଇ ଥାଏ । ମୋର ଏକ କ୍ଷୁଦ୍ର ଉପଲବ୍ଧି ଯେ ଉତ୍ତମମାନର ପୁସ୍ତକ ଜୀବନର ବୌଦ୍ଧିକ ଉତ୍ତରଣ ପାଇଁ ନିର୍ଣ୍ଣାୟକ ମନେହୁଏ । ପୁସ୍ତକ ବୌଦ୍ଧିକ ଦିଗ୍‌ବଳୟକୁ ପ୍ରସାରିତ କରିବା ସହ ଜୀବନ ପାଇଁ ଅନେକ ସୃଜନଶୀଳ ସମ୍ଭାବନା ଆଣିଥାଏ । ଏସବୁର ସମ୍ମିଳିତ ପ୍ରଭାବ ହେତୁବାଦୀ ଜୀବନବୋଧର ପ୍ରସାର ପାଇଁ ଯେ ପ୍ରେରଣାର ଉତ୍ସ ଏହା ନିଃସନ୍ଦେହରେ କୁହାଯାଇ ପାରେ । ଏହାଛଡା ୧୯୮୦ଠାରୁ ଭାରବର୍ଷରେ ପ୍ରକାଶ ପାଉଥିବା କେତେକ ହେତୁବାଦୀ ବିଚାରଧର୍ମୀ ପ୍ରତିକା ପଢ଼ିବାର ଅବକାଶ ପାଇଛି । ଗୋରାଙ୍କ ନାସ୍ତିକ କେନ୍ଦ୍ରରୁ ପ୍ରକାଶ ପାଉଥିବା "ଦି ଆଥେଇଷ୍ଟ" ପେରିୟାରଙ୍କ ସଂଗଠନ ତରଫରୁ ପ୍ରକାଶ ପାଉଥିବା "ମଡର୍ଣ୍ଣ ରେସ୍‌ନାଲିଷ୍ଟ", ଏମ.ଏନ. ରାୟଙ୍କ ସଂଗଠନରୁ ବାହାରୁଥିବା "ଦି ରେଡିକାଲ ହ୍ୟୁମାନିଷ୍ଟ" ପତ୍ରିକାମାନ ଗତ କେତେ ଦଶନ୍ଧି ଧରି ମୁଁ ପଢ଼ି ଆସୁଛି । ଏହି ମାସିକ ପତ୍ରିକାମାନଙ୍କରେ ବହୁ ବିଶିଷ୍ଟ ବ୍ୟକ୍ତିମାନଙ୍କର ବିଭିନ୍ନ ଚିନ୍ତା ଉଦ୍ରେକକାରୀ ଲେଖା, ବିଭିନ୍ନ ଅନୁସନ୍ଧାନମୂଳକ କାହାଣୀ ଓ ବାବାମାନଙ୍କ ବିଷୟରେ ବିବରଣୀ ମୋର ହେତୁବାଦୀ ବିଚାରବୋଧକୁ ପ୍ରସାରିତ କରିବାରେ ସାହାଯ୍ୟ କରିଛି । ଏହାଛଡା ବିଭିନ୍ନ ଜାତୀୟ ତଥା ଆନ୍ତର୍ଜାତିକ ସମ୍ମିଳନୀରେ ଯୋଗ ଦେବା, ସେଥିରେ ପାଣ୍ଡିତ୍ୟପୂର୍ଣ୍ଣ ଆଲୋଚନାରେ ଅଂଶ ଗ୍ରହଣ କରିବା ଓ ଭାବର ଆଦାନ ପ୍ରଦାନ କରିବା ମାଧ୍ୟମରେ କେତେ କେତେ ବିଷୟ ଜାଣିବାର ଅବକାଶ ପାଇଛି । ଏସବୁର ପ୍ରଭାବ ମୋର ବିଚାରବୋଧକୁ ପ୍ରଭାବିତ କରିଆସିଛି ।

ସାମଗ୍ରିକ ଭାବେ ଦେଖିଲେ ହେତୁବାଦର ଦୁଇଟି ଦିଗନ୍ତ ମୋର ଭାବନାକୁ ବହୁ ଭାବରେ ସ୍ପର୍ଶ କରିଛି । ସାଧାରଣତଃ ହେତୁବାଦୀମାନେ ବିଚାରଶୀଳତା ଓ

ମାନବିକତାର ବିକାଶକୁ ପ୍ରାଧାନ୍ୟ ଦେଇଥାନ୍ତି । ସେମାନଙ୍କର ମୌଳିକ ଆଭିମୁଖ୍ୟ ହେଉଛି To instil reason and goodness in man. ରିଜିନ୍ ବା ବିଚାରଶୀଳତା ଏକ ବ୍ୟାପକ ପ୍ରସଙ୍ଗ ଯାହା ମୁକ୍ତମନ, ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଓ ତର୍କଶୀଳତାର ସାର୍ବଭୌମତ୍ୱକୁ ପ୍ରାଧାନ୍ୟ ଦେଇଥାଏ । କୌଣସି ପୂର୍ବଧାରଣାର ବଶବର୍ତ୍ତୀ ନହୋଇ ପରୀକ୍ଷିତ ଓ ତଥ୍ୟାଧାରିତ ଜ୍ଞାନକୁ ଏକ ସାର୍ବଜନୀନ ପ୍ରଣାଳୀ ମାଧ୍ୟମରେ ସ୍ୱୀକାର କରିବା ହିଁ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ଆଭିମୁଖ୍ୟ । ବୈଜ୍ଞାନିକ ଜ୍ଞାନ ପ୍ରଣାଳୀବଦ୍ଧ, ତଥ୍ୟଭିତ୍ତିକ, ପ୍ରଗତିଶୀଳ, ସ୍ୱସଂଶୋଧନାତ୍ମକ ଓ ସାର୍ବଜନୀନ । ଏତ୍‌ଦବ୍ୟତୀତ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ଏକ ନିର୍ଯ୍ୟାସ ହେଉଛି ଯେ ପ୍ରକୃତିରେ ଯାହା କିଛି ଅଛି ବା ପ୍ରକୃତିରେ ଯାହା କିଛି ଘଟଣା ଘଟେ ତାହା ପଶ୍ଚାତରେ କେବଳ ପ୍ରାକୃତିକ କାରଣ ବା ନିୟମ ରହିଛି । ତେବେ ପ୍ରକୃତିର ବିଶାଳତା ଓ ଜଟିଳତା ଯୋଗୁ ପ୍ରକୃତିର ବହୁ ଘଟଣା ଏବେ ବି ଆମ ପାଇଁ ରହସ୍ୟମୟ ହୋଇ ରହିଛି; ତେବେ ମଣିଷର ସଭ୍ୟତା ଯେତିକି ଅଗ୍ରସର ହେଉଥିବ ଜ୍ଞାନର ଦିଗନ୍ତ ସେତିକି ବିସ୍ତାରିତ ହେଉଥିବ । କାଲି ଯାହା ଅଜ୍ଞାତ ଥିଲା ଆଜି ତାହା ଜ୍ଞାତ ହୋଇଛି ଓ ଆଜି ଯାହା ଅଜ୍ଞାତ ରହିଛି ହୁଏତ ଆସନ୍ତା କାଲି ତାହା ଜ୍ଞାତ ହେବ । କିନ୍ତୁ ପ୍ରାକୃତିକ ଘଟଣା ପଶ୍ଚାତରେ ଯେ କୌଣସି ଅତିପ୍ରାକୃତିକ କାରଣ ନାହିଁ ଏହା ହିଁ ବୈଜ୍ଞାନିକ ଚିନ୍ତନର ଏକ ମୌଳିକ ନିର୍ଯ୍ୟାସ । କହିବା ନିଷ୍ପ୍ରୟୋଜନ ଯେ ଏହି ବିଚାରବୋଧ ଓ ଏକ ମୁକ୍ତ ତଥା ସାର୍ବଜନୀନ ପ୍ରଣାଳୀ ବିଜ୍ଞାନର ଦିଗନ୍ତକୁ ବିସ୍ତାର କରିବାରେ ସମର୍ଥ ହୋଇଛି ଓ ଏହି ପ୍ରକ୍ରିୟା ଏକ ଅବାରିତ ଧାରା ଭାବେ ସଭ୍ୟତାର ବିକାଶରେ ନିର୍ଣ୍ଣାୟକ ହୋଇଛି । ଯେତେବେଳେ ଜ୍ଞାନର ବିଶେଷ ବିକାଶ ହୋଇନଥିଲା ବା ବିଜ୍ଞାନର ଯୁଗ ଆସିନଥିଲା ସେତେବେଳେ ସବୁକିଛିକୁ ମଣିଷ ଈଶ୍ୱରୀୟ କାର୍ଯ୍ୟ ଓ ଅତିପ୍ରାକୃତିକ ଧାରାରେ ବୁଝିବାକୁ ପ୍ରୟାସ କରୁଥିଲା । ଧର୍ମଗ୍ରନ୍ଥର ବାଣୀକୁ ପ୍ରତ୍ୟେକ ଧର୍ମଗୋଷ୍ଠୀ ଅକାଟ୍ୟ ଓ ଚିରନ୍ତନ ବୋଲି ଗ୍ରହଣ କରୁଥିଲେ, କିନ୍ତୁ ବିଜ୍ଞାନର ବିକାଶଦ୍ୱାରା ବିଭିନ୍ନ ଧର୍ମର ଭାବନାମାନ ମିଥ୍ୟା ବୋଲି ଜଣାପଡିଲା । ଜ୍ଞାନ ବିଜ୍ଞାନର ବିକାଶ ସହ ଈଶ୍ୱରଙ୍କର ଇଲାକା ସଂକୁଚିତ ହେବାକୁ ଲାଗିଲା ଓ ଈଶ୍ୱର ଯେ ମଣିଷ ମନର ଏକ କଳ୍ପନା ଏହା ହିଁ ହେଲା ଏକ ବୌଦ୍ଧିକ ଉପଲବ୍ଧି ।

ହେତୁବାଦର ଅନ୍ୟ ପ୍ରୟୋଗାତ୍ମକ ଦିଗଟି ହେଲା ଏହାର ମାନବିକ ଆଭିମୁଖ୍ୟ । ହେତୁବାଦୀମାନେ ସବୁ ସଭ୍ୟତାରେ ଏକ ପ୍ରୀତିପୂର୍ଣ୍ଣ ଓ ଭ୍ରାତୃତ୍ୱପୂର୍ଣ୍ଣ ମାନବସମାଜର ସ୍ୱପ୍ନ ଦେଖିଛନ୍ତି । ଆମ ସଂସାରରେ ଜାତି, ଧର୍ମ, ବର୍ଣ୍ଣ, ଲିଙ୍ଗ, ଭାଷା, ଆଞ୍ଚଳିକତା ଓ ଜାତୀୟତାକୁ ନେଇ ବହୁ ଭେଦଭାବ, ଈର୍ଷା, ବିଦ୍ୱେଷର ବାତାବରଣ ରହିଛି । ନାନା ଶୋଷଣ,

ଅତ୍ୟାଚାର, ହିଂସା, ଯୁଦ୍ଧ ଆମ ସଂସାରରେ କେତେ କେତେ ବିଦ୍ୱେଷର ବାତାବରଣ ସୃଷ୍ଟି କରିଛି । ପ୍ରକୃତି ଯେତେ ଦୁଃଖ ଦେଇ ନାହିଁ ତାପେକ୍ଷା ମାନବୀୟ ବର୍ବରତା ବହୁ ଦୁଃଖ ଓ ମନ୍ଦ ବା ଇଭିଲର କାରଣ ହୋଇଛି । ଏହି ସ୍ଥିତିରେ ପରିବର୍ତ୍ତନ ଆଣି ଏକ ଭ୍ରାତୃତ୍ୱପୂର୍ଣ୍ଣ ସମତାଭିତ୍ତିକ ଓ ସମ୍ବେଦନଶୀଳ ବିଶ୍ୱର ରୂପାୟନ ପାଇଁ ହେତୁବାଦୀମାନେ ବିଭିନ୍ନ ସଭ୍ୟତାରେ ଆଲୋକବର୍ତ୍ତିକା ହୋଇଛନ୍ତି । ଏକ ଯୁଦ୍ଧମୁକ୍ତ, ଭେଦଭାବରହିତ ଓ ପ୍ରୀତିପୂର୍ଣ୍ଣ ମନୁଷ୍ୟ ସମାଜର ବହୁ ପରିକଳ୍ପନା ହେତୁବାଦୀ ଚିନ୍ତନ ଦେଇ ଭାବନାନ୍ତରକୁ ଆସିଛି । ପ୍ରତ୍ୟେକ ବ୍ୟକ୍ତିର ଜୀବନର ମୂଲ୍ୟ ରହିଛି ଓ ଜାତି, ଧର୍ମ, ବର୍ଣ୍ଣ, ଜାତୀୟତା ଇତ୍ୟାଦି ନିର୍ବିଶେଷରେ ପ୍ରତ୍ୟେକ ବ୍ୟକ୍ତି କିପରି ଏକ ମର୍ଯ୍ୟାଦାପୂର୍ଣ୍ଣ ଜୀବନର ଅଧିକାରୀ ହୋଇପାରିବ ତାହାର ବିଚାର ହେତୁବାଦୀମାନେ ସର୍ବଦା ପ୍ରକାଶ କରିଆସିଛନ୍ତି । ହୁଏତ ଏବେ ବି ଏହା ସ୍ୱପ୍ନ ବା ଏକ ୟୁଟୋପିଆନ ଆଦର୍ଶ ହୋଇ ରହିଛି, ତଥାପି ବୈଚାରିକ ସ୍ତରରେ ଏହିସବୁ କ୍ରାନ୍ତିକାରୀ ଭାବନା ସଭ୍ୟତାର ନୈତିକ ଉତ୍ତରଣ କ୍ଷେତ୍ରରେ ପଥପ୍ରଦର୍ଶକ ହୋଇଛି ।

ଅତୀତରେ ଆମ ପୃଥିବୀ ନଦୀ, ପର୍ବତ, ସମୁଦ୍ର ଇତ୍ୟାଦି ଦ୍ୱାରା ଭାଗ ଭାଗ ହୋଇ ରହିଥିଲା ଓ ବିଭିନ୍ନ ଭୂଖଣ୍ଡରେ ସଭ୍ୟତାମାନ ପ୍ରାକୃତିକ ପ୍ରକ୍ରିୟାରେ ବିକଶିତ ହୋଇଥିଲା । ଗୋଟିଏ ଭୌଗୋଳିକ ଭୂଖଣ୍ଡର ଲୋକମାନେ ଅନ୍ୟ ଅଞ୍ଚଳ ବିଷୟରେ ଜାଣିବାର ଅବକାଶ ନଥିଲା । ଏହି ସ୍ଥିତିରେ ବିଭିନ୍ନ ଧର୍ମ ଗୋଟିଏ ଗୋଟିଏ ଭୂଖଣ୍ଡର ସାଂସ୍କୃତିକ ଆଲୋଡନ ଭାବେ ଉଦ୍‌ଭବ ହୋଇଥିଲେ । ସୀମିତ ଅର୍ଥରେ ଏକ ଜନଗଣଙ୍କ ମଧ୍ୟରେ ଏକ ସାଂସ୍କୃତିକ ସଂହତି ସ୍ଥାପନ କରିବା ସହ ନୀତିବୋଧର କିଛି ବାର୍ତ୍ତା ଦେବାରେ ପ୍ରତ୍ୟେକ ଧର୍ମର କିଛି ଭୂମିକା ରହିଥିଲା । ତେବେ ତାହା ଥିଲା ସଭ୍ୟତାର ଶୈଶବ କାଳ । ସେହି ସ୍ଥିତିଠାରୁ ମାନବ ସଭ୍ୟତା ବହୁ ଆଗକୁ ଅଗ୍ରସର ହେଲାଣି । ତେବେ ଧାର୍ମିକ ଅସ୍ମିତା ଅତୀତରେ ବହୁ ହିଂସା ଓ ବିଦ୍ୱେଷର କାରଣ ହେବା ଏକ ଐତିହାସିକ ବାସ୍ତବତା । ଧାର୍ମିକ ଆବେଗ ଜ୍ଞାନବିଜ୍ଞାନର ବିକାଶ କ୍ଷେତ୍ରରେ ଅତୀତରେ ଯେପରି ପ୍ରତିବନ୍ଧକ ହୋଇଛି ସେହିପରି ଆନ୍ତର୍ଜାତିକ ମନୋଭାବ ଓ ଶୁଦ୍ଧ ମାନବିକତାର ବିକାଶ ପାଇଁ ଅନ୍ତରାୟ ହୋଇ ରହିଛି । ଏପରିକି ଧାର୍ମିକ କାରଣରୁ ସଂସାରରେ ଧର୍ମୋନ୍ମାଦବାଦ (ଫାନାଟିସିଜିମ୍) ମୌଳବାଦ (ଫଣ୍ଡାମେଣ୍ଟାଲିଜିମ୍), ସ୍ୱେଚ୍ଛାଚାରିତାବାଦ (ଫାସିଜିମ୍) ଓ ସାମନ୍ତବାଦ (ଫିଉଡାଲିଜିମ୍) ପରି ମାନବିକତା ପରିପନ୍ଥୀ ଭାବନାମାନ ସୃଷ୍ଟି ହୋଇଛି । ମୋ ଧର୍ମ ହିଁ ସର୍ବଶ୍ରେଷ୍ଠ, ମୋ ଧର୍ମର ଧର୍ମଗ୍ରନ୍ଥ ହିଁ ଈଶ୍ୱରୀୟଜ୍ଞାନ ଓ ପବିତ୍ର ଓ ଅନ୍ୟସବୁ ଧର୍ମ ଅସତ୍ୟ

ଏହି ଭାବନାରୁ ଆମ ସଂସାର ବହୁଭାବରେ ବିଭାଜିତ ଓ ରକ୍ତରଂଜିତ ହୋଇ ଆସିଛି । ଯେଉଁମାନେ ମୋ ଧର୍ମର ବ୍ୟକ୍ତି ନୁହନ୍ତି ସେମାନେ ବିଧର୍ମୀ, କାଫେର, ପାଗାନ ଓ ସେମାନେ ଘୃଣାର ପାତ୍ର । ଏହି ମାନସିକତା କେତେ କେତେ ଅସହିଷ୍ଣୁତାକୁ ପ୍ରଶ୍ରୟ ଦେଇଛି । ଏହି ଭାବନାରୁ ମଣିଷ ସମାଜକୁ ମୁକ୍ତ କରି ସମସ୍ତଙ୍କ ଭିତରେ ଏକ ଭ୍ରାତୃତ୍ୱର ବଂଧନ ସୃଷ୍ଟି କରିବା ହିଁ ହେତୁବାଦର ଆଭିମୁଖ୍ୟ ହୋଇ ଆସିଛି ।

ହେତୁବାଦୀମାନଙ୍କର ଅନ୍ୟ ଏକ ଉପଲବ୍ଧି ହେଉଛି ଯେ ସଭ୍ୟତାରେ ଯାହା କିଛି ବିକଶିତ ହୋଇଛି ସେ ସବୁ ମାନବିକ ପ୍ରୟାସ ଓ ପ୍ରଜ୍ଞାର ପରିଣାମ । ଏକ ଆଦିମ ଅବସ୍ଥାରୁ କେତେ ସ୍ତର ଓ ପରିସ୍ଥିତି ଦେଇ ସଭ୍ୟତା ଆଜିର ସ୍ଥିତିକୁ ଆସିଛି । ଏହି ସ୍ଥିତିକୁ ଆସିବାରେ ମଣିଷର ନିଷ୍ଠାପର ଉଦ୍ୟମ ରହିଛି । ଆମ ପିତା, ପିତାମହ ଓ ପ୍ରପିତାମହମାନଙ୍କର ଚେଷ୍ଟା, ସଂକଳ୍ପ ଓ ସାଧନା ଯୋଗୁ ଆମେ ଆଜି ଏକ ସୁଖମୟ ସ୍ଥିତିରେ ରହିପାରିଛେ । ସଭ୍ୟତାରେ ଯାହା ସବୁ ବିକଶିତ ହୋଇଛି ସେସବୁ ମାନବିକ ଉଦ୍ୟମ ଓ ବୁଦ୍ଧିର ପ୍ରୟୋଗ ଯୋଗୁ ସମ୍ଭବ ହୋଇଛି । ଏହା ସତ୍ୟ ଯେ ମଣିଷ ମରଣଶୀଳ କିନ୍ତୁ ମାନବସମାଜ ଏକ ଶାଶ୍ୱତ ପ୍ରବାହ । ଆଗାମୀ ପିଢ଼ିର ମଣିଷମାନେ କିପରି ଆମଠାରୁ ଅଧିକ ସୁଖ, ଶାନ୍ତି ଓ ସହଭାଗିତା ଭିତରେ ଜୀବନ ନିର୍ବାହ କରିବେ ଏଥିପାଇଁ ଆମର ନୈତିକ କର୍ତ୍ତବ୍ୟ ରହିଛି । ହେତୁବାଦୀମାନେ ଆମର ଏହି ନୈତିକ ଦାୟିତ୍ୱ ବିଷୟରେ ସର୍ବଦା ମତ ରଖି ଆସିଛନ୍ତି ଓ ଜୀବନର ଗୁଣାତ୍ମକ ବିକାଶ ପାଇଁ ଗମ୍ଭୀର ସଂପୃକ୍ତି ବ୍ୟକ୍ତ କରିଛନ୍ତି । କୌଣସି କଳ୍ପିତ ଦିଅଁ ବା ଈଶ୍ୱର ସଭ୍ୟତାର ବିକାଶରେ କୌଣସି ଭୂମିକା ନେଇ ନାହାନ୍ତି ବା ମାନବିକ ଦୁଃଖଦୁର୍ଦ୍ଦଶା ଦୂର କରି ନାହାନ୍ତି । ବରଂ ସବୁକିଛି ବିକାଶ ଓ ଦୁଃଖ ଦୁର୍ଦ୍ଦଶାର ଅପସାରଣ ମାନବିକ ପ୍ରୟାସରେ ସମ୍ଭବ ହୋଇଛି । ଏହି ବାସ୍ତବ ଅନୁଭୂତିରୁ ହେତୁବାଦୀମାନେ କୌଣସି ଈଶ୍ୱରକୈନ୍ଦ୍ରିକ ଜୀବନବୋଧ ପରିବର୍ତ୍ତେ ଏକ ମାନବକୈନ୍ଦ୍ରିକ ଜୀବନବୋଧରେ ଆସ୍ଥା ରଖି ଆସିଛନ୍ତି ।

ଏହିସବୁ ଅନୁଭୂତି ଓ ବିଚାର ଆଧାରରେ ମୁଁ ହେତୁବାଦକୁ ଏକ ମହତ୍ତର ଜୀବନବୋଧ ଓ ଏକ ନୀତିପୂର୍ଣ୍ଣ ଦର୍ଶନ ଭାବରେ ଗ୍ରହଣ କରେ । ତେବେ ହେତୁବାଦୀ ଜୀବନବୋଧ ପ୍ରତି ଏହି ଆକର୍ଷଣ ସତ୍ତ୍ୱେ କାହା ଉପରେ ମୋର ଭାବନାକୁ ଲଦି ଦେବାକୁ ମୁଁ ଚାହେଁ ନାହିଁ ଓ ଏପରିକି ପରିବାରରେ ମଧ୍ୟ ନୁହଁ । ପ୍ରତ୍ୟେକ ବ୍ୟକ୍ତିର ସ୍ୱାଧୀନ ଚିନ୍ତା ଓ ନିଜସ୍ୱ ଉପଲବ୍ଧିକୁ ମୁଁ ସମ୍ମାନ କରେ । ଯେପର୍ଯ୍ୟନ୍ତ ଜଣଙ୍କର ବିଚାର ବା କାର୍ଯ୍ୟ ସମାଜ ପାଇଁ କ୍ଷତିକାରକ ନୁହେଁ ତାହାକୁ ଗ୍ରହଣ କରିବାରେ ବା ନିଜସ୍ୱ ଶୈଳୀରେ ତାଙ୍କ

ଜୀବନଧାରାକୁ ସେ ପରିଚାଳିତ କରିବାରେ ତାଙ୍କର ଯେ ଅଧିକାର ରହିଛି ଏଥିରେ ମୋର ଗଭୀର ଆସ୍ଥା ରହିଛି । ହେତୁବାଦ ସହ ଉଦାରବାଦ, ମାନବବାଦ ଓ ବ୍ୟକ୍ତି ସ୍ୱାଧୀନତା ଯେ ଘନିଷ୍ଠ ଭାବେ ସମ୍ବନ୍ଧିତ ଏହା ବି ମୋର ଦୃଢ଼ବିଶ୍ୱାସ । ଯେକୌଣସି ପ୍ରକାରର ଉଗ୍ରବାଦ ଓ ଫାନାଟିସିଜମ ଯେ ହେତୁବାଦୀ ଜୀବନବୋଧର ପରିପନ୍ଥୀ ଏହା ହିଁ ହେତୁବାଦୀ ଆଦର୍ଶ । ସଂସାରର ସବୁ ମଣିଷ ହେତୁବାଦୀ ହୁଅନ୍ତୁ ଏହା ମୁଁ ଚାହିଁବି ନାହିଁ, କିନ୍ତୁ ସବୁ ମଣିଷ ବିଚାରଶୀଳ ଓ ସମ୍ବେଦନଶୀଳ ହୁଅନ୍ତୁ ଏହା କାମନା କରିବାରେ ମୁଁ କିଛି ବିରୋଧାଭାସ ଦେଖୁ ନାହିଁ ।

ଉପସଂହାରରେ ମୁଁ କହିବାକୁ ଚାହେଁ ଯେ ହେତୁବାଦର ବୌଦ୍ଧିକ ଦିଗ ଓ ବ୍ୟାବହାରିକ ଦିଗ ଉଭୟ ମୁକ୍ତ ପ୍ରସଙ୍ଗ । କୌଣସି ପ୍ରସଙ୍ଗର ଆଲୋଚନା ବା ସିଦ୍ଧାନ୍ତ ଅନ୍ତିମ ହୋଇନପାରେ । ବରଂ ଆଲୋଚନା, ସମାଲୋଚନା, ଅନୁଶୀଳନାତ୍ମକ ଅନୁଧ୍ୟାନ ବା କ୍ରିଟିକାଲ ଥିଙ୍କିଙ୍ଗ୍ ଏକ ଅବାରିତ ପ୍ରକ୍ରିୟା । ଏହି ପ୍ରକ୍ରିୟାରେ ଏକ ବିଚାର ଅଧିକ ଯୁକ୍ତିସଂଗତ, ଶୁଦ୍ଧ ଓ ଗ୍ରହଣଯୋଗ୍ୟ ହୋଇଥାଏ । ତେବେ ଆବେଗ ପରିବର୍ତ୍ତେ ମୁକ୍ତଚିନ୍ତନ ଏକ ବିଚାରର ସୈଦ୍ଧାନ୍ତିକ ଭିତ୍ତିକୁ ଦୃଢ଼ କରିଥାଏ । ସତ୍ୟରେ ଉପନୀତ ହେବା ପାଇଁ ଏହା ଯେ ଉପଯୁକ୍ତ ପନ୍ଥା ଏହାହିଁ ମୋର ବିଶ୍ୱାସ । ହେତୁବାଦୀମାନେ ଯେ ମୁକ୍ତଚିନ୍ତକ ଓ ସତ୍ୟସନ୍ଧାନୀ ଏହା ବି ମୋର ବିଶ୍ୱାସ । ମୋର ବିଶ୍ୱାସରେ ଯଦି କିଛି ତ୍ରୁଟିର ଉପାଦାନ ଥିବା କେହି ଦର୍ଶାନ୍ତି ମୁଁ ତାହାକୁ ପରିବର୍ତ୍ତନ କରିବାକୁ କେବେ କୁଣ୍ଠା ବା ଅସୂୟା ଭାବ ପୋଷଣ କରିବି ନାହିଁ ବା ନିଜର ତ୍ରୁଟିକୁ ଘୋଡାଇବାକୁ ଅହମିକା ପ୍ରକାଶ କରିବି ନାହିଁ ।



# ହେତୁବାଦ : ଏକ ଦୃଷ୍ଟିପାତ

ଗୁଣାତ୍ମକ ଜୀବନ ପୃଷ୍ଠଭୂମିରେ କୁହାଯାଏ ଯେ ନୈତିକ ଓ ବୌଦ୍ଧିକ ଉତ୍କୃଷ୍ଟତା ଜୀବନର ଶ୍ରେୟ ଓ ଯାହା ଏହାର ପରିପନ୍ଥୀ ବା ବିପରୀତ ତାହା ହେଉଛି ଭ୍ରଷ୍ଟତା । ଏହି ଉତ୍କର୍ଷ ହାସଲ ପାଇଁ ସବୁଠାରୁ ବଡ଼ ସାଧନ ହେଲା ବିଚାରଶୀଳତା । ମଣିଷର ଏହି ବିଚାରଶୀଳ ସାମର୍ଥ୍ୟ ଯୋଗୁ ସେ ଏକ ଆଦିମ ସ୍ଥିତିରୁ ନାନା ପରିବର୍ତ୍ତନ ଓ ସ୍ତର ଦେଇ ଆଜିର ସ୍ଥିତିକୁ ଆସିପାରିଛି । ଅର୍ଥାତ୍ ମଣିଷ ଭିତରେ ରହିଥିବା ବୁଦ୍ଧି ଓ ବିଚାରଶୀଳତା ଯୋଗୁ ମଣିଷ ହିଁ କ୍ରମବିକାଶର ଧାରାରେ ସଭ୍ୟ ଜୀବନର ପାହାଚ ଉଠି ଉଠି ଚାଲିଛି । ପଶୁ, ପକ୍ଷୀ ଓ ଇତର ପ୍ରାଣୀମାନେ ଲକ୍ଷ ଲକ୍ଷ ବର୍ଷ ତଳେ ଯେପରି ଜୀବନ ବଞ୍ଚୁଥିଲେ ଆଜି ମଧ୍ୟ ସେହି ସ୍ଥିତିରେ ରହିଛନ୍ତି, ସେମାନଙ୍କ ଜୀବନଧାରାରେ କୌଣସି ପରିବର୍ତ୍ତନ ସଂଘଟିତ ହୋଇନାହିଁ । କିନ୍ତୁ ଦୁଇ ତିନୋଟି ଶତାବ୍ଦୀ ତଳେ ଆମର ଜ୍ଞାନ, ପ୍ରଯୁକ୍ତି, ରାଜନୈତିକ ବ୍ୟବସ୍ଥା ସାମାଜିକ ଦୃଶ୍ୟପଟ, ସାଂସ୍କୃତିକ ପରିବେଶ ଯାହା ଥିଲା ଆଜି ସେଥିରେ ବହୁ ପରିବର୍ତ୍ତନର ଚିତ୍ର ଦେଖିବାକୁ ମିଳୁଛି । ଏହି ପରିବର୍ତ୍ତନ ପଶ୍ଚାତରେ ରହିଛି ମଣିଷର ପ୍ରୟାସ, ବୌଦ୍ଧିକ ଅନୁସନ୍ଧିତ୍ସା ଓ ବିଚାରଶୀଳ ଉଦ୍ୟମ । ଏହି ପ୍ରୟସାରୁ ହିଁ ମଣିଷ ସଭ୍ୟତା, ସଂସ୍କୃତି, ନୀତି ନୈତିକତା ଓ ସଭ୍ୟ ଜୀବନବୋଧର ବିଚାରମାନ ସୃଷ୍ଟି କରିଛି । ଏହି ବୌଦ୍ଧିକ କୌତୂହଳତା ଓ ବିଚାରଶୀଳ ମନୋଭାବ ଯୋଗୁ ଜୀବନ ଅଧିକରୁ ଅଧିକ ନିରାପଦ, ବ୍ୟବସ୍ଥିତ, ସୁଖପ୍ରଦ ଓ ଗୁଣାତ୍ମକ ହୋଇଚାଲିଛି । ଗୋଟିଏ ଉଦାହରଣ ନିଆଯାଉ । ପଶୁ ହେଉ, ମନୁଷ୍ୟ ହେଉ ପ୍ରତ୍ୟେକ ଜୀବିତ ପ୍ରାଣୀ ଭୋକର ଅନୁଭବରୁ ଖାଦ୍ୟ ସଂଧାନ କରିଥାନ୍ତି । କିନ୍ତୁ ପଶୁମାନେ ପରିବେଶରେ ଯାହା ପା'ନ୍ତି ତାହା ଖାଆନ୍ତି । ମଣିଷ କିନ୍ତୁ ଖାଦ୍ୟ କିପରି ଉତ୍ପାଦନ କରିବ, ଆଗାମୀ ସମୟ ପାଇଁ ସଞ୍ଚୟ କରି ରଖିବ ସେ ବିଷୟ ସେ ଚିନ୍ତା କରିଛି । ସେଥିପାଇଁ ସେ ଚାଷର ଉଦ୍ଭାବନ କରିଛି ଓ ସେଥିରେ ସମୟକୁ ସମୟ ଉନ୍ନତି କରିଚାଲିଛି । ଏକଦା ଗୁମ୍ଫା ଭିତରେ, ବଣ ଜଙ୍ଗଲରେ ଝାଟିମାଟି କୁଡିଆରେ ନିରାପଦହୀନ ହୋଇ ବଞ୍ଚୁଥିବା ମଣିଷ ଏବେ ସହର, ନଗର ନିର୍ମାଣ କରି ନିରାପଦ ଗୃହରେ ଜୀବନ ଅତିବାହିତ କରୁଛି । ଖାଦ୍ୟ, ବାସଗୃହ, ପୋଷାକ, ଗମନାଗମନ,

ଚିକିତ୍ସା ଇତ୍ୟାଦି ଜୀବନର ବିଭିନ୍ନ କ୍ଷେତ୍ରରେ କେତେ କେତେ ଉନ୍ନତି ସାଧନ କରିବାରେ ସଫଳ ହୋଇଛି । ଏହି ସଫଳତା ଓ ବିକାଶ ପଶ୍ଚାତରେ ରହିଛି ମଣିଷର ଅନୁସନ୍ଧିତ୍ସା, ବୁଦ୍ଧିର ପ୍ରୟୋଗ ଓ ବିଚାରଶୀଳ ପ୍ରୟାସ । ନିଜର ଏହି ଉଦ୍ୟମ ଓ ଚିନ୍ତନ ଭିତରୁ ସେ ରାତିକୁ ଆଲୋକିତ କରିପାରିଛି, ବିଭିନ୍ନ ରୋଗ-ଯନ୍ତଣାରୁ ମୁକ୍ତି ପାଇଁ ଚିକିତ୍ସା ବିଜ୍ଞାନର ବିକାଶ କରିଛି, ଜୀବନକୁ ଅଧିକ ସୁଖପ୍ରଦ କରିବା ପାଇଁ କେତେ କେତେ ଅଭିନବ ପନ୍ଥା ଉଦ୍‌ଭାବନ କରିଛି । ସମସ୍ତ ଉଦ୍‌ଭାବନ, ଆବିଷ୍କାର, ବିକାଶ ଓ ପ୍ରଗତି ମଣିଷର ବିଚାରଶୀଳତାରୁ ହିଁ ସମ୍ଭବ ହୋଇଛି । ଏହି ବିଚାରଶୀଳ ଦୃଷ୍ଟି ହେତୁବାଦର ଏକ ଦିଗନ୍ତ । ହେତୁବାଦ ଏକ ଜୀବନଦର୍ଶନ ଭାବେ ଯେଉଁ ସବୁ ଦିଗନ୍ତର ସୂଚନା ଦିଏ ତାହାର ଏକ କ୍ଷେତ୍ର ହେଉଛି ବିଚାରଶୀଳ ଦୃଷ୍ଟି । ଏହି ପରିପ୍ରେକ୍ଷୀରେ ଏହା କୁହାଯାଇପାରେ ଯେ ବିଚାରଶୀଳତାର ପ୍ରୟୋଗ ଓ ପ୍ରସାର ଏକ ବଡ଼ ମୂଲ୍ୟବୋଧ । ଯେଉଁଠି ବିଚାରଶୀଳତା ନାହିଁ ବା ସୁସ୍ଥ ଭାବରେ ଚିନ୍ତା କରିବାକୁ ମଣିଷ ଅସ୍ୱୀକାର କରିଛି ସେ ଅନୁନ୍ନତ ଓ ଅନଗ୍ରସର ହୋଇ ରହିଛି । ଜଣେ ଦାର୍ଶନିକଙ୍କ ମତରେ "Rationality is man's foremost virtue. Evasion, suspension or refusal to think is man's basic Vice." (ବିଚାରଶୀଳ ହେବା ଜୀବନର ଏକ ମୁଖ୍ୟତମ ଉତ୍କର୍ଷ । ଚିନ୍ତା ନକରିବା ବା ପରିହାର କରିବା ମଣିଷ ଜୀବନର ଭ୍ରଷ୍ଟତାର ସୂଚନା ଦିଏ) ।

ମଣିଷର ସାମାଜିକ ଓ ସାଂସ୍କୃତିକ କ୍ରମବିକାଶକୁ ଅନୁଶୀଳନ କରିଥିବା ସମାଜବିଜ୍ଞାନୀମାନେ ଏହା ପଶ୍ଚାତର କେତେକ କାରଣକୁ ଦର୍ଶାଇଛନ୍ତି । ବହୁବିଧ କାରଣ ଭିତରୁ ଚାରୋଟି କାରଣ ଏ କ୍ଷେତ୍ରରେ ଅଧିକ ମୌଳିକ ମନେହୁଏ । ପ୍ରଥମତଃ ଭାଷା କହିବାର ସାମର୍ଥ୍ୟ ଯୋଗୁ ଜ୍ଞାନ, ବିଜ୍ଞାନର ବିକାଶ ଘଟିଛି । ଯେଉଁ ସମୟରେ ଯାହା ସବୁ ଚିନ୍ତା, ଚେତନା ଓ ଜ୍ଞାନର ବିକାଶ ହୋଇଛି ତାହା ପର ପିଢ଼ି ପାଇଁ ରହିଛି ଓ ସେଥିରେ ଧୀରେ ଧୀରେ କ୍ରମୋନ୍ନତି ଘଟିଛି । ଭାଷା କହିବାର ସାମର୍ଥ୍ୟ ମଣିଷ ଭିତରେ ନଥିଲେ ସମ୍ଭବତଃ ମଣିଷର ବିକାଶ ଯାତ୍ରା ସମ୍ଭବ ହୋଇନଥାନ୍ତା । ସେହିପରି ମଣିଷ ଭିତରେ ରହିଛି ସାମାଜିକ ପ୍ରବୃତ୍ତି । ଏହି ସାମାଜିକ ପ୍ରବୃତ୍ତି ଯୋଗୁ ପରିବାର ଓ କ୍ଷୁଦ୍ର ଗ୍ରାମୀଣ ଗୋଷ୍ଠୀ ଜୀବନ ପରିବର୍ତ୍ତିତ ହୋଇଛି ରାଷ୍ଟ୍ର ଓ ଅନ୍ତଃରାଷ୍ଟ୍ରୀୟ ସ୍ତରକୁ । ଏହି ପ୍ରକ୍ରିୟାରେ ବ୍ୟକ୍ତିର ନୈତିକ କର୍ତ୍ତବ୍ୟ କେବଳ ନିଜ ପାଇଁ ବା ନିଜର ପରିବାର ପାଇଁ ସୀମିତ ରହି ନାହିଁ, ବରଂ ବୃହତ୍ତର ଜନଗୋଷ୍ଠୀ ପ୍ରତି ପ୍ରସାରିତ ହୋଇଚାଲିଛି । ମଣିଷର ଅନ୍ୟ ଏକ ବଡ଼ ସାମର୍ଥ୍ୟ ହେଉଛି ବସ୍ତୁ ନିର୍ମାଣ କରିବାର ଦକ୍ଷତା । ପ୍ରକୃତିରେ ଉପଲବ୍ଧ ହେଉଥିବା ବିଭିନ୍ନ ଉପାଦାନକୁ ନେଇ ନିଜର ବୁଦ୍ଧି ପ୍ରୟୋଗ କରି ଜୀବନ ପାଇଁ ଅନେକ ବସ୍ତୁ

ନିର୍ମାଣ କରିବାର ସାମର୍ଥ୍ୟ ମଣିଷର ରହିଛି ଓ ସେ କାଳକ୍ରମେ ହାସଲ କରିଛି । ଘରଦ୍ୱାର, ଯାନାବାହାନ, କଳକାରଖାନା ଇତ୍ୟାଦି ବହୁ କଥା ମଣିଷ ହିଁ ଧୀରେ ଧୀରେ ନିର୍ମାଣ କରିଛି ଓ ସେଥିରେ କ୍ରମୋନ୍ନତି କରି ଚାଲିଛି । ଏସବୁ ସହିତ ମଣିଷର ବୁଦ୍ଧି ଓ ବିଚାରଶୀଳତା ମଣିଷର କ୍ରମବିକାଶ ପାଇଁ ସର୍ବଦା ସାହାଯ୍ୟ କରିଛି । ଯେକୌଣସି ପ୍ରତିକୂଳ ସ୍ଥିତିର ସମ୍ମୁଖୀନ ହେବାକୁ, ଜୀବନକୁ ନିରାପଦ ରଖିବାକୁ, ଜ୍ଞାନର ବିକାଶ ଘଟାଇବାକୁ ଅତି ଆଦିମ ସ୍ତରରୁ ମଣିଷର ପ୍ରୟାସ ଅବ୍ୟାହତ ରହିଛି । ସଭ୍ୟତାରେ ଯାହା ସବୁ ବିକଶିତ ହୋଇଛି ଓ ଯେଉଁ ପ୍ରକ୍ରିୟା ଅବ୍ୟାହତ ରହିଛି ଏସବୁ ପଶ୍ଚାତରେ ମାନବିକ ପ୍ରୟାସ ଓ ବୁଦ୍ଧିର ପ୍ରୟୋଗ ନିର୍ଣ୍ଣାୟକ ଭୂମିକା ନେଇଛି ।

ଗୋଟିଏ ସମୟରେ ପୃଥିବୀ ସମୁଦ୍ର, ପର୍ବତ, ନଦୀ, ଜଙ୍ଗଲ ଇତ୍ୟାଦି ଦ୍ୱାରା ଭାଗ ଭାଗ ହୋଇ ରହିଥିଲା ଓ ବିଭିନ୍ନ ଭୂଖଣ୍ଡରେ ବିଭିନ୍ନ ସଭ୍ୟତାମାନ ଗଢ଼ି ଉଠିଥିଲା । ତେବେ ପ୍ରାକୃତିକ ପ୍ରତିବଂଧକ ଯୋଗୁ ଗୋଟିଏ ସଭ୍ୟତାର ଲୋକମାନେ ଅନ୍ୟ ଭୂଖଣ୍ଡ ବା ଜନଗୋଷ୍ଠୀ ବିଷୟରେ ଜାଣିବାର ଅବକାଶ ନଥିଲା । ସଭ୍ୟତାର ଆରମ୍ଭ କାଳରେ ମଣିଷର ଜୀବନ ଅତ୍ୟନ୍ତ ବିପଦସଙ୍କୁଳ ଥିଲା । ଜ୍ଞାନ-ବିଜ୍ଞାନର କିଛି ବିକାଶ ହୋଇନଥିଲା । ଏହିପରି ଏକ ସ୍ଥିତିରେ ଏକ ନିରାପଦବିହୀନ ପରିବେଶରେ ନାନା ଅତୀନ୍ଦ୍ରିୟ ଦେବାଦେବୀର ବିଶ୍ୱାସ ସମାଜରେ ସୃଷ୍ଟି ହୋଇଥିଲା । ପ୍ରକୃତିର ଘଟଣା ପ୍ରବାହକୁ କିଛି ଅତିପ୍ରାକୃତିକ ସତ୍ତା ନିୟନ୍ତ୍ରଣ କରୁଥିବାର କେତେ କେତେ କଳ୍ପନା ମଣିଷ ମନକୁ ଆସିଥିଲା । ଆନୁଷ୍ଠାନିକ ଧର୍ମମାନଙ୍କର ବିକାଶ ପୂର୍ବରୁ ବହୁ ଈଶ୍ୱରବାଦ ପ୍ରାୟତଃ ବିଭିନ୍ନ ସଭ୍ୟତାରେ କଳ୍ପନା କରାଯାଇଥିଲା । ପ୍ରକୃତିର ପ୍ରତ୍ୟେକ କ୍ଷେତ୍ର ଓ ଜୀବନର ନାନା ଘଟଣା ପ୍ରବାହ ଯେ କିଛି ଅଦୃଷ୍ଟ ଶକ୍ତିର ଇଙ୍ଗିତରେ ପରିଚାଳିତ ହେଉଛି ଏହା ପ୍ରାଗ୍‌ଧର୍ମୀୟ ସମାଜର ଲୋକବିଶ୍ୱାସ ରହିଥିଲା ।

ଖ୍ରୀ.ପୂ. ୧୦୦୦ ବେଳକୁ ପୃଥିବୀର ବିଭିନ୍ନ ଭୂଖଣ୍ଡରେ ସାମାଜିକ ଜୀବନ କିଛିଟା ଦୃଢ଼ୀଭୂତ ହୋଇଥିଲା । ଏହା ପରଠାରୁ କାଳକ୍ରମେ ବିଭିନ୍ନ ଭୂଖଣ୍ଡରେ ଧାର୍ମିକ ଜାଗରଣର ଯୁଗ ଆରମ୍ଭ ହେଲା । ମଣିଷର ଜୀବନଧାରା ଓ ସାମାଜିକ ବ୍ୟବସ୍ଥାକୁ ପ୍ରଭାବିତ କଲା ପରି କେତେକ କ୍ରାନ୍ତିକାରୀ ବ୍ୟକ୍ତଙ୍କର ଆବିର୍ଭାବ ସଭ୍ୟତାର ଇତିହାସରେ ଯୁଗାନ୍ତକାରୀ ଥିଲା । ସେମାନଙ୍କର ଆବିର୍ଭାବ ଓ ବିଚାରବୋଧ ବିଭିନ୍ନ ଭୂଖଣ୍ଡରେ ସାଂସ୍କୃତିକ ଜାଗରଣ ଆଣିବାରେ ସହାୟକ ହୋଇଥିଲା । ଖ୍ରୀ.ପୂ. ୮୦୦ ବର୍ଷଠାରୁ ଖ୍ରୀଷ୍ଟାବ୍ଦ ଆରମ୍ଭ ଭିତରେ ଭାରତ ଭୂଖଣ୍ଡରେ ଉପନିଷଦ୍‌ମାନଙ୍କର ରଚନା, ଗୌତମ ବୁଦ୍ଧ ଓ ମହାବୀରଙ୍କର ଆବିର୍ଭାବ ଭାରତୀୟ ଚିନ୍ତା ମାନସକୁ ଗଭୀରଭାବେ ପ୍ରଭାବିତ କରିଥିଲା । ସେହି ସମ

ସାମୟିକ ଯୁଗରେ ଇସ୍ରାଏଲ୍‌ରେ ହିବ୍ରୁ ସନ୍ଥମାନଙ୍କର ଆବିର୍ଭାବ ଧାର୍ମିକ ଚେତନା ସୃଷ୍ଟି କରିଥିଲା । ଜୋରାଷ୍ଟରଙ୍କ ଆବିର୍ଭାବ ଏକ ଭିନ୍ନ ଭୂଖଣ୍ଡରେ ଏକ ଆଧାତ୍ମିକ ଜୀବନଦୃଷ୍ଟି ପାଇଁ ପରିବେଶ ଆଣିଥିଲା । ଚୀନ ଭୂଖଣ୍ଡରେ କନଫୁସିଅସଙ୍କର ବୈଚାରିକ ଆଲୋଡନ ଟାଓବାଦକୁ ଜନ୍ମ ଦେଇଥିଲା । ହିବ୍ରୁ ଧର୍ମଧାରା ଭିତରୁ ଦୁଇଟି ବଡ ସାଂସ୍କୃତିକ ଆଲୋଡନ ପରବର୍ତ୍ତୀ ପର୍ଯ୍ୟାୟରେ ବିକଶିତ ହୋଇଥିଲା । ଯାହା ଗୋଟିଏ ସମୟରେ ଏକ ସାଂସ୍କୃତିକ ଓ ଆଧାତ୍ମିକ ଆଲୋଡନ ଥିଲା ତାହା କାଳକ୍ରମେ ଆନୁଷ୍ଠାନିକ ଧର୍ମର ରୂପରେଖ ନେଲା । ଖ୍ରୀ.ପୂ. ୮୦୦ରୁ ଖ୍ରୀଷ୍ଟାବ୍ଦ ସପ୍ତମ ଶତାବ୍ଦୀ ଏହି ଦେଢ଼ହଜାର ବର୍ଷ ଭିତରେ ଅଧିକାଂଶ ଆନୁଷ୍ଠାନିକ ଧର୍ମମାନ ରୂପ ନେଇଥିଲା । ସମୟର ଅଗ୍ରଗତି ସହ ହିନ୍ଦୁଧର୍ମ, ବୌଦ୍ଧଧର୍ମ, ଖ୍ରୀଷ୍ଟଧର୍ମ, ଇଶଲାମ ଧର୍ମ ଇତ୍ୟାଦି ପ୍ରତ୍ୟେକ ଧର୍ମ ଏକ ଏକ ନିର୍ଦ୍ଦିଷ୍ଟ ଭୌଗୋଳିକ ପରିବେଶର ବୌଦ୍ଧିକ, ସାଂସ୍କୃତିକ, ରାଜନୈତିକ ଓ ସାମାଜିକ ବ୍ୟବସ୍ଥାକୁ ଗଭୀର ଭାବେ ପ୍ରଭାବିତ ଓ ନିୟନ୍ତ୍ରଣ କଲା । ପ୍ରତ୍ୟେକ ଧର୍ମ ସହ କିଛି ପ୍ରବର୍ତ୍ତକ, ଧର୍ମଗ୍ରନ୍ଥ, କେତେକ ତାତ୍ତ୍ୱିକ ବିଚାର, ନାନା କର୍ମକାଣ୍ଡ, ନୈତିକଭାବନା, ବିଭିନ୍ନ କାହାଣୀ, କିମ୍ବଦନ୍ତୀ ଇତ୍ୟାଦି ସଂଶ୍ଳିଷ୍ଟ ହେଲା । ଅଧିକାଂଶ ଧର୍ମରେ ଏକେଶ୍ୱରବାଦର ଭାବନା ଆସିଲା, ମୃତ୍ୟୁ ପରବର୍ତ୍ତୀ ସ୍ଥିତିର ପରିକଳ୍ପନା କରାଗଲା, ସ୍ୱର୍ଗ, ନରକ, ବିଚାରଦିବସ, ପୁନର୍ଜନ୍ମ ଇତ୍ୟାଦି ଭାବନା ସଂଶ୍ଳିଷ୍ଟ ହେଲା । ଈଶ୍ୱରବାଦୀ ଧର୍ମମାନଙ୍କରେ ଈଶ୍ୱରଙ୍କୁ ସବୁର ସ୍ରଷ୍ଟା, ସର୍ବଶକ୍ତିମାନ, ସର୍ବଜ୍ଞ, ପାପ-ପୁଣ୍ୟର ବିଚାରକ ବୋଲି କଳ୍ପନା କରାଗଲା । ଈଶ୍ୱରଙ୍କର ବ୍ୟକ୍ତି ସତ୍ତା ରହିଛି ଓ ସେ କରୁଣାମୟ ପରି କେତେ କେତେ କଳ୍ପନା ପ୍ରକାଶ ପାଇଲା । ମୁକ୍ତି, ମୋକ୍ଷ, ନିର୍ବାଣ, ସ୍ୱର୍ଗପ୍ରାପ୍ତି ଇତ୍ୟାଦିକୁ ଜୀବନର ଅନ୍ତିମ ଲକ୍ଷ୍ୟ ବୋଲି ବିଭିନ୍ନ ଧର୍ମ ନିଜସ୍ୱ ଶୈଳୀରେ ବିଶ୍ୱାସ କରିବାକୁ ଲାଗିଲେ । ପ୍ରତ୍ୟେକ ଧର୍ମଗୋଷ୍ଠୀ ନିଜ ଧର୍ମକୁ ସନାତନ, ନିଜ ଧର୍ମଗ୍ରନ୍ଥକୁ ପବିତ୍ର, ଧର୍ମଗ୍ରନ୍ଥର ବାଣୀକୁ ଈଶ୍ୱରଦତ୍ତ ଜ୍ଞାନ ଓ ଅଭ୍ରାନ୍ତ ବୋଲି କାଳକ୍ରମେ ବିଶ୍ୱାସ କଲେ । ପ୍ରତ୍ୟେକ ଧର୍ମ ଏକ ସର୍ବଗ୍ରାସୀ ଭୂମିକା ନେଇ ନିଜ ଭୂଖଣ୍ଡର ରାଜନୈତିକ, ଶୈକ୍ଷିକ ଓ ସାଂସ୍କୃତିକ ଜୀବନବୋଧକୁ ପ୍ରଭାବିତ ଓ ନିୟନ୍ତ୍ରଣ କଲା । ଯେଉଁ ଯୁଗରେ ଧର୍ମମାନଙ୍କର ଅଭ୍ୟୁଦୟ ହୋଇଥିଲା ତାହା ଥିଲା ରାଜତନ୍ତ୍ରର ଯୁଗ । ରାଜତନ୍ତ୍ରର ସମର୍ଥନ ଲାଭ କରି ବିଭିନ୍ନ ଧର୍ମ ବୃହତ୍ତର ଅଞ୍ଚଳକୁ ପ୍ରସାରିତ ହୋଇ ଜନମାନସରେ କିଛି ସାଂସ୍କୃତିକ ଅସ୍ମିତା ସୃଷ୍ଟି କଲା । ଏତଦ୍‌ବ୍ୟତୀତ ଜଗତର ବିଶାଳତା ଓ ଜଟିଳତା ତଥା ଜୀବନର ଘନଘଟାକୁ ବୁଝିବାରେ ଧର୍ମ ଯେତେ କାଳ୍ପନିକ ହେଲେ ମଧ୍ୟ ଏକ ବୌଦ୍ଧିକ ଆବେଦନ ସୃଷ୍ଟି କରିଥିଲା । ମୋଟ ଉପରେ କହିବାକୁ ଗଲେ ପ୍ରତ୍ୟେକ ଧର୍ମ ଗୋଟିଏ ଭୌଗୋଳିକ ଭୂଖଣ୍ଡର ଜନଗଣଙ୍କ ମଧ୍ୟରେ ସାଂସ୍କୃତିକ ଐକ୍ୟ ସ୍ଥାପନ କରିବାରେ, ସାମାଜିକ ଜୀବନ ପ୍ରବାହକୁ ସୁନିୟନ୍ତ୍ରିତ ଧାରାରେ ପରିଚାଳିତ କରିବାରେ, ନୀତିବୋଧ ଓ ଜୀବନର ଲକ୍ଷ୍ୟକୁ

ଅବବୋଧ କରିବାରେ ଓ କଳା, ସାହିତ୍ୟ, ସ୍ଥାପତ୍ୟ ଇତ୍ୟାଦିର ବିକାଶ କ୍ଷେତ୍ରରେ ଯେ ଗୁରୁତ୍ୱପୂର୍ଣ୍ଣ ଅବଦାନ ଦେଇଛି ଏହା ଅସ୍ୱୀକାର କରିହେବ ନାହିଁ ।

ମଣିଷର ବୌଦ୍ଧିକ ବିକାଶଧାରାରେ ପଞ୍ଚଦଶ ଶତାବ୍ଦୀର ମଧ୍ୟଭାଗରୁ ସପ୍ତଦଶ ଶତାବ୍ଦୀର ଶେଷ ପର୍ଯ୍ୟନ୍ତ ୟୁରୋପରେ ଏକ ନବଜାଗରଣ ଓ ଜ୍ଞାନଦୀପ୍ତିର ଯୁଗ ଆସିଲା । ଏହି ଅଢ଼େଇ ଶହ ବର୍ଷ ଚିନ୍ତା ରାଜ୍ୟରେ ଏକ ତୁମୁଳ ପରିବର୍ତ୍ତନର ସୂତ୍ରପାତ କରାଇଲା । ଏହାର ପରିଣାମରୁ ଦୁଇଟି କ୍ରାନ୍ତିକାରୀ ଭାବନା ବିଜ୍ଞାନ ଓ ମାନବବାଦୀ ଜୀବନବୋଧର ଅଭ୍ୟୁଦୟ ଆରମ୍ଭ ହେଲା । ବିଜ୍ଞାନର ଯୁଗ ଦୁଇଟି ବୈଚାରିକ ଓ କ୍ରାନ୍ତିକାରୀ ଭାବନାରୁ ବିକାଶ ଲାଭ କଲା । ଏହି ଦୁଇଟି ବିଚାର ପରବର୍ତ୍ତୀ ସମୟରେ ହେତୁବାଦୀ ଜୀବନବୋଧର ମୌଳିକ ଆଧାର ମଧ୍ୟ ହେଲା । ପ୍ରଥମ ଭାବନାଟି ହେଉଛି ପ୍ରକୃତିରେ ଯାହା କିଛି ଅଛି ବା ଘଟଣା ଘଟେ ତାହା ପ୍ରାକୃତିକ । ପ୍ରତ୍ୟେକଟି ଘଟଣା ପଶ୍ଚାତରେ କେବଳ ପ୍ରାକୃତିକ କାରଣ ରହିଛି, ତାହା ଜ୍ଞାତ ହୋଇଥାଉ ବା ହୋଇନଥାଉ । ପ୍ରାକୃତିକ ଘଟଣା ପଶ୍ଚାତରେ କୌଣସି ଆଧିଭୌତିକ ବା ଈଶ୍ୱରୀୟ କାରଣ ନାହିଁ । ପ୍ରକୃତିରେ କେତେକ ଶୃଙ୍ଖଳା ଓ ଏକରୂପତା ରହିଛି । ସେହି ପ୍ରାକୃତିକ ଶୃଙ୍ଖଳା ଓ ଏକରୂପତାକୁ ଆବିଷ୍କାର କଲେ ଘଟଣା ସକଳକୁ ବ୍ୟାଖ୍ୟା କରି ହେବ । ଏହି ସିଦ୍ଧାନ୍ତକୁ "ବୈଜ୍ଞାନିକ ପ୍ରକୃତିବାଦ" କୁହାଯାଏ, ଯାହା ବିଜ୍ଞାନରେ ଏକ ସ୍ୱତଃସିଦ୍ଧ ନିୟମ ଭାବେ ସ୍ୱୀକୃତ । ବିଜ୍ଞାନର ବିକାଶ ପଶ୍ଚାତର ଦ୍ୱିତୀୟ ଭାବନାଟି ହେଉଛି ଏକ ଉପଯୁକ୍ତ ପ୍ରଣାଳୀ । ବସ୍ତୁ ଜଗତକୁ ଜାଣିବାର ବା ବ୍ୟାଖ୍ୟା କରିବାର ପ୍ରଣାଳୀ ହେଉଛି ପର୍ଯ୍ୟବେକ୍ଷଣ ଓ ପରୀକ୍ଷଣ । ପର୍ଯ୍ୟବେକ୍ଷଣ ଓ ପରୀକ୍ଷଣ ଆଧାରରେ ଆମେ ବିଭିନ୍ନ ଘଟଣାର କାରଣକୁ ଅନୁସନ୍ଧାନ କରିବା ସମ୍ଭବ । ପର୍ଯ୍ୟବେକ୍ଷଣ, ପରୀକ୍ଷଣ ମାଧ୍ୟମରେ ପ୍ରକୃତିର ନିୟମକୁ ଜାଣିବା ସମ୍ଭବ ଯାହାର ଆଧାରରେ ଆମେ ସାମାନ୍ୟୀକରଣ କରିପାରିବା । ଏହି ପ୍ରକ୍ରିୟାକୁ ତର୍କଶାସ୍ତ୍ରର ଭାଷାରେ "ଆରୋହଣ ପଦ୍ଧତି" ବା ଇଣ୍ଡକ୍‌ଟିଭ୍ ମେଥଡ୍ କୁହାଯାଏ । ବସ୍ତୁତଃ ବୈଜ୍ଞାନିକ ପ୍ରକୃତିବାଦ ଓ ଆରୋହଣ ପଦ୍ଧତି ବୈଜ୍ଞାନିକ ଜ୍ଞାନର ବିକାଶ କ୍ଷେତ୍ରରେ ପଥପ୍ରଦର୍ଶକ ହେବା ମନେହୁଏ ।

ବିଜ୍ଞାନର ବିକାଶଜନିତ ଆଦିପର୍ବଟି ଥିଲା ଏକ ସଂଘର୍ଷର ସମୟ । ଗୋଟିଏ ପଟେ ଧାର୍ମିକ ବିଶ୍ୱାସ ଓ ଅନ୍ୟ ପଟରେ ବୈଜ୍ଞାନିକ ସିଦ୍ଧାନ୍ତ ଭିତରେ ଗଭୀର ଦ୍ୱନ୍ଦ୍ୱ ସୃଷ୍ଟି ହେଲା । ଧର୍ମଗ୍ରନ୍ଥର ବାଣୀକୁ ବିଜ୍ଞାନର ବିକାଶ ପୂର୍ବରୁ ମଣିଷ ଚିରନ୍ତନ ଓ ଧ୍ରୁବ ସତ୍ୟ ବୋଲି ଭାବି ଆସିଥିଲା । ବିଜ୍ଞାନର ସିଦ୍ଧାନ୍ତ ଧର୍ମର ଅଧିକାଂଶ ମତକୁ ଅସତ୍ୟ ଓ ନିରାଧାର ବୋଲି ଦର୍ଶାଇଲା । ଏହି ବିଶାଳ ବିଶ୍ୱକୁ କେହି ଛ'ଦିନରେ ଛ'ହଜାର ବର୍ଷ ତଳେ ସୃଷ୍ଟି କରିନାହାନ୍ତି, ପୃଥିବୀ ଓ ଆମ ଗ୍ରହମଣ୍ଡଳ କୋଟି କୋଟି ବର୍ଷ ଧରି ପରିବର୍ତ୍ତିତ ଓ ବିବର୍ତ୍ତିତ

ହୋଇ ଆସିଛି । ମଣିଷକୁ କେଉଁ ଈଶ୍ୱର ନିଜର ସ୍ୱରୂପରେ ଗଢ଼ି ନାହାନ୍ତି, ମଣିଷ କୋଟି କୋଟି ବର୍ଷର ଜୈବିକ ବିବର୍ତ୍ତନ ମଧ୍ୟ ଦେଇ ବର୍ତ୍ତମାନର ସ୍ଥିତିକୁ ଆସିଛି । ପୃଥିବୀ ସ୍ଥିର ନୁହେଁ, ଏହା ସୂର୍ଯ୍ୟ ଚାରିପଟେ ଘୂର୍ଣ୍ଣାୟମାନ । ପୃଥିବୀ ସୃଷ୍ଟି ହେବାର କୋଟି କୋଟି ବର୍ଷର ବ୍ୟବଧାନ ପରେ ପାହାଡ, ପର୍ବତ, ନଦୀ, ସମୁଦ୍ର ଉଦ୍ଭବ ହୋଇଛନ୍ତି । ଏହିଭଳି ଅନେକ ବିଚାର ଧର୍ମର ଭାବନାକୁ ମିଥ୍ୟା ପ୍ରମାଣିତ କରିବାରୁ ଧର୍ମ ଓ ବିଜ୍ଞାନ ଭିତରେ ଏକ ସଂଘର୍ଷର ପରିବେଶ ସୃଷ୍ଟି ହୋଇଛି । ପରିଣାମତଃ ବିଜ୍ଞାନର ବହୁ ପ୍ରତିଭାଧର ମନୀଷୀଙ୍କୁ କାଠଗଡାରେ ଛିଡା ହେବାକୁ ପଡିଛି, ବନ୍ଦୀଜୀବନ ବିତାଇବାକୁ ହୋଇଛି ଓ ଏପରିକି ମୃତ୍ୟୁଦଣ୍ଡରେ ପ୍ରାଣବଳି ଦେବାକୁ ପଡିଛି । ତେବେ ବିଜ୍ଞାନର ସିଦ୍ଧାନ୍ତମାନ ତଥ୍ୟଭିତ୍ତିକ, ବସ୍ତୁନିଷ୍ଠ ଓ ସତ୍ୟାଧାରିତ ହୋଇଥିବାରୁ ଧର୍ମ ବିଜ୍ଞାନର ବିଜୟଯାତ୍ରାକୁ ପ୍ରତିହତ କରିପାରି ନାହିଁ । ଏହି ମାତ୍ର ତିନିଶହ ବର୍ଷ ମଧ୍ୟରେ ବିଜ୍ଞାନ ଓ ବିଜ୍ଞାନର ପ୍ରୟୋଗାତ୍ମକ ଦିଗ ପ୍ରଯୁକ୍ତି ଜୀବନର ଗୁଣାତ୍ମକ ମାନରେ ଯଥେଷ୍ଟ ପରିବର୍ତ୍ତନ ଆଣିଛି । ପ୍ରକୃତିର ବିଭିନ୍ନ କ୍ଷେତ୍ରକୁ ଅନୁଧ୍ୟାନ ଦ୍ୱାରା ବିଜ୍ଞାନ ଜ୍ଞାନର ଦିଗନ୍ତକୁ ବିସ୍ତାର କରିଚାଲିଛି । ପ୍ରକୃତିର ବିଭିନ୍ନ କ୍ଷେତ୍ରରେ ଆବିଷ୍କୃତ ନିୟମ ଓ ବିଭିନ୍ନ ସିଦ୍ଧାନ୍ତ ଭିତରେ ସମତାଳତା ଓ ସଂହତି ଦୃଷ୍ଟିଗୋଚର ହୋଇଥାଏ । ପ୍ରକୃତିର ବିଶାଳତା ଓ ଜଟିଳତା ପୃଷ୍ଠଭୂମିରେ ଆମର ପର୍ଯ୍ୟବେକ୍ଷଣ ଓ ପରୀକ୍ଷଣର ପରିସର ଯେତେ ବିସ୍ତାରିତ ହେବାରେ ଲାଗିଛି, ନୂତନ ତଥ୍ୟ ଆଧାରରେ ଅତୀତର ସିଦ୍ଧାନ୍ତ ପରିବର୍ତ୍ତନ ହେବାର ସମ୍ଭାବନା ରହିଛି । ବିଜ୍ଞାନ ନୂତନ ତଥ୍ୟ ଆଧାରରେ ପରିବର୍ତ୍ତନକୁ ସ୍ୱୀକାର କରିଥାଏ । ମୋଟ ଉପରେ କହିଲେ ବୈଜ୍ଞାନିକ ଜ୍ଞାନ ପ୍ରଗତିଶୀଳ, ତଥ୍ୟାଧାରିତ, ପ୍ରଣାଳୀବଦ୍ଧ, ସ୍ୱସଂଶୋଧନାତ୍ମକ (Self-Corrective) ଓ ସାର୍ବଜନୀନ ।

ପାଶ୍ଚାତ୍ୟ ଭୂଖଣ୍ଡରେ ଧର୍ମ ସହ ବିଜ୍ଞାନର ସଂଘର୍ଷ ବିଜ୍ଞାନର ଆଦିପର୍ବରେ ହୋଇଛି । ପ୍ରାଚ୍ୟ ଭୂଖଣ୍ଡରେ ସେପରି କିଛି ହୋଇ ନାହିଁ, କାରଣ ବିଜ୍ଞାନକୁ ଆଧୁନିକ କାଳରେ ପ୍ରାଚ୍ୟ ଭୂଖଣ୍ଡ ସେପରି କିଛି ମୌଳିକ ଅବଦାନ ଦେଇ ନାହିଁ । ତେବେ ପ୍ରାଚ୍ୟ ଭୂଖଣ୍ଡରେ ଧାର୍ମିକ ରକ୍ଷଣଶୀଳତା ସହ ସମାଜ ସଂସ୍କାରର ସଂଘର୍ଷ ହୋଇଛି । ଭାରତବର୍ଷରେ ଅସ୍ପୃଶ୍ୟତା, ଜାତିପ୍ରଥା, ସତୀଦାହପ୍ରଥା, ନାରୀ ନିର୍ଯ୍ୟାତନା ଇତ୍ୟାଦି ବହୁ କୁସଂସ୍କାର ବିରୁଦ୍ଧରେ ହେତୁବାଦୀ ବା ସମାଜ ସଂସ୍କାରକମାନେ ଯେଉଁ ସ୍ୱର ଉତ୍ତୋଳନ କରିଛନ୍ତି, ଧର୍ମାନ୍ଧ ଓ ରକ୍ଷଣଶୀଳ ଲୋକମାନେ ତାହାକୁ ବିଭିନ୍ନ ଭବରେ ବିରୋଧ କରିଛନ୍ତି । ଗୋଟିଏ ଭୂଖଣ୍ଡରେ ଧାର୍ମିକ ଦୃଷ୍ଟିଭଙ୍ଗୀ ବିଜ୍ଞାନର ବିକାଶ କ୍ଷେତ୍ରରେ ପ୍ରତିବନ୍ଧକ ହେବାବେଳେ ଅନ୍ୟ ଭୂଖଣ୍ଡରେ ଏହା ସମାଜ ସଂସ୍କାରକୁ ବିରୋଧ କରି ଆସିଛି ।

ହେତୁବାଦର ଦୁଇଟି ମୌଳିକ ନିଷ୍କର୍ଷ ହେଉଛି ବିଜ୍ଞାନ ମନସ୍କତା ଓ ମାନବବାଦୀ ଜୀବନଦୃଷ୍ଟି । ବୈଜ୍ଞାନିକ ପ୍ରଣାଳୀକୁ ଅନୁସରଣ କରି ସମାଜ ବିଷୟକ ଅଧ୍ୟୟନରୁ ବହୁ ସାମାଜିକ ଦୁର୍ଗତି ବା ସୋସିଆଲ ଇଭିଲର ଚିତ୍ର ପଦାକୁ ଆସିଛି । ମାନବବାଦର ଆବେଦନ ଜୀବନ ଓ ସମାଜ ପ୍ରତି ଦୃଷ୍ଟିଭଙ୍ଗୀରେ ଉଲ୍ଲେଖନୀୟ ପରିବର୍ତ୍ତନ ଆଣିଛି । ମାନବବାଦୀ ବିଚାରର ପରିଣାମରୁ ଗଣତାନ୍ତ୍ରିକ ଜୀବନଧାରା, ଧର୍ମ ନିରପେକ୍ଷ ଜୀବନଦୃଷ୍ଟି, ସାମାଜିକ ଅଧିକାର, ମହିଳା ସଶକ୍ତୀକରଣ ପରି ଭାବନାମାନ ସାମାଜିକ ସ୍ତରରେ ଗୃହୀତ ହୋଇଛି । ରାଜନୈତିକ ଦୃଶ୍ୟପଟରେ ଏକଛତ୍ରବାଦ, ସାମ୍ରାଜ୍ୟବାଦ, ଉପନିବେଶବାଦ ବିରୁଦ୍ଧରେ ଚେତନା ଜାଗ୍ରତ ହୋଇଛି । ଧାର୍ମିକ ଆବେଦନରୁ ରହିଥିବା ଧର୍ମୋନ୍ମାଦବାଦ (ଫାନାଟିସିଜମ୍), ସାଂପ୍ରଦାୟିକତାବାଦ (କମୁନାଲିଜିମ୍), ମୌଳବାଦ (ଫଣ୍ଡାମେଣ୍ଟାଲିଜିମ୍) ବିଚାରମାନ ଯେ ସଭ୍ୟ ଜୀବନଦୃଷ୍ଟିର ପରିପନ୍ଥୀ ଓ ମାନବିକତା ବିରୋଧୀ ଏହା ସ୍ୱୀକୃତ ହୋଇଛି । ସାମାଜିକ ସ୍ତରରେ ରହିଥିବା ସାମନ୍ତବାଦ ତଥା ଲିଙ୍ଗଭେଦ, ଜାତିଭେଦ ଓ ବର୍ଣ୍ଣଭେଦ ଯେ ଅନ୍ୟାୟ ଓ ଅମାନବିକ ଏହା ସାର୍ବଜନୀନ ଭାବେ ସ୍ୱୀକୃତ ହେବାରେ ଲାଗିଛି । ବିଭିନ୍ନ ଦେଶରେ ରହିଥିବା ନାନା ପ୍ରକାରର ଭେଦଭାବ ଓ ଦାସତ୍ୱ ଭାବନାକୁ ଦୂର କରିବା ପାଇଁ ଆନ୍ତର୍ଜାତିକ ସହମତି ପ୍ରକାଶ ପାଇଛି । ପ୍ରତ୍ୟେକ ବ୍ୟକ୍ତିର ମହତ୍ତ୍ୱ, ଆତ୍ମସମ୍ମାନ, ଆଇନ ଦୃଷ୍ଟିରେ ସମାନ ହେବାର ଅଧିକାର ଓ ବ୍ୟକ୍ତିର ସାମର୍ଥ୍ୟର ବିକାଶ ପାଇଁ ସୁଯୋଗ ମାନବବାଦୀ ଜୀବନବୋଧରୁ ଉଦ୍‌ଭବ ହୋଇଛି । ମାନବିକ ଅଧିକାରର ଆନ୍ତର୍ଜାତିକ ଘୋଷଣାନାମାକୁ ସାର୍ବଜନୀନ ସ୍ୱୀକୃତି ଦିଆଯିବା ସଭ୍ୟତାର ଇତିହାସରେ ଏକ ଉଲ୍ଲେଖନୀୟ ଘଟଣା । ପ୍ରତ୍ୟେକ ରାଷ୍ଟ୍ର ଜନମଙ୍ଗଳକାରୀ ଆଭିମୁଖ୍ୟ ଯଥା ସବୁ ନାଗରିକଙ୍କର ସ୍ୱାସ୍ଥ୍ୟ ସେବା, ଶିକ୍ଷା, ଗୁଣାତ୍ମକ ଜୀବନ ଓ ସ୍ୱାବଲମ୍ବନଶୀଳତାକୁ ପ୍ରାଧାନ୍ୟ ଦେବା ମାନବବାଦର ପ୍ରତିଫଳନ କହିଲେ ଅତ୍ୟୁକ୍ତି ହେବ ନାହିଁ । ଏସବୁ ଯେ ବାସ୍ତବପକ୍ଷେ ସବୁ ଦେଶରେ ସଫଳ ହୋଇଛି ତାହା କୁହାଯାଇ ପାରିବ ନାହିଁ, ତେବେ ଅନ୍ତତଃ ଏଥିପାଇଁ ଯେ ସାମାଜିକ ଚେତନା ସୃଷ୍ଟି ହୋଇଛି ଏହା ବି ଏକ ନୈତିକ ଉତ୍ତରଣ । ବସ୍ତୁତଃ ହେତୁବାଦ ବୈଜ୍ଞାନିକ ମନୋଭାବ ଓ ମାନବବାଦୀ ଜୀବନବୋଧର ଯେଉଁ ବୈଚାରିକ ଆଲୋଡନକୁ ନେଇ ପୁଷ୍ଟ ହୋଇଛି ତାହାର ଯେ ବହୁ ସୁଫଳ ସୃଷ୍ଟି ହୋଇଛି ଏହା ଅସ୍ୱୀକାର କରାଯାଇ ପାରିବ ନାହିଁ ।

ହେତୁବାଦ ସର୍ବଦା ଇହଲୌକିକ (This Worldly) ଜୀବନକୁ ପ୍ରାଧାନ୍ୟ ଦେଇଥାଏ ଓ ପାରଲୌକିକ ବିଶ୍ୱାସକୁ ଅସ୍ୱୀକାର କରିଥାଏ । ଅତୀନ୍ଦ୍ରିୟ ଜଗତ, ସ୍ୱର୍ଗ, ନରକ, ମୃତ୍ୟୁପର ଜୀବନ, ମୋକ୍ଷ, ନିର୍ବାଣ ଇତ୍ୟାଦି ପାରଲୌକିକ ବିଶ୍ୱାସ ପଶ୍ଚାତରେ

ନା ଅଛି ପର୍ଯ୍ୟବେକ୍ଷଣୀୟ ଆଧାର ନା ରହିଛି କିଛି ଯୁକ୍ତିଶୀଳ ଭିତ୍ତି । ସଭ୍ୟତାର ଶୈଶବକାଳରେ ଧାର୍ମିକ ବିଶ୍ୱାସ ମଧ୍ୟ ଦେଇ ଏହିସବୁ ଛବିଳ କଳ୍ପନାମାନ ବିଭିନ୍ନ ଧର୍ମଗୋଷ୍ଠୀରେ ସୃଷ୍ଟି ହୋଇଥିଲା । ଧର୍ମମାନଙ୍କର ତୁଳନାତ୍ମକ ଅନୁଶୀଳନରୁ ସେମାନେ କିପରି ପରସ୍ପର ବିରୋଧୀ କଳ୍ପନାମାନ କରିଥିଲେ ତାହାର ଚିତ୍ର ମିଳିଥାଏ । ପୁନଶ୍ଚ ପାରଲୌକିକ ଜୀବନବୋଧ ସହ ପୂର୍ବନିର୍ଦ୍ଦିଷ୍ଟବାଦ, ଭାଗ୍ୟ, ଭକ୍ତି, ଦୈବୀକୃପା ଇତ୍ୟାଦି ବିଶ୍ୱାସମାନ ସଂଶ୍ଳିଷ୍ଟ ହେବା ଦେଖାଯାଏ । ନାନା ମିଥ୍, କାଳ୍ପନିକ କାହାଣୀ, ଆଧାରହୀନ ବିଶ୍ୱାସ ମଧ୍ୟ ଦେଇ ଏସବୁ ସମାଜରେ ପ୍ରସାର ହୋଇଥିବା ଜଣାଯାଏ । ଜୀବନର ପରିସ୍ଥିତି ପାଇଁ ଅଦୃଶ୍ୟ, ଭାଗ୍ୟ, ଦୈବୀ ଆଶୀର୍ବାଦ ଉପରେ ମଣିଷ କେତେ ଆସ୍ଥା ପୋଷଣ କରେ । ଯେତେବେଳେ ମଣିଷ ବୃହତ୍ତର ସମାଜ ଓ ନିଜ ସାମର୍ଥ୍ୟ ଉପରେ ଆସ୍ଥା ରଖିପାରେ ନାହିଁ, ସେ ଭୟ ଓ ନାନା ମନସ୍ତାତ୍ତ୍ୱିକ କାରଣରୁ ଅତୀନ୍ଦ୍ରିୟ ସତ୍ତାରେ ବିଶ୍ୱାସ କରେ । ନାନା ଧାର୍ମିକ କର୍ମକାଣ୍ଡ, ଭକ୍ତି ଓ ଅପବିଶ୍ୱାସକୁ ସେ ଗ୍ରହଣ କରେ । ଭକ୍ତିର ନିଦର୍ଶନ ସ୍ୱରୂପ କିଏ ଲଣ୍ଡା ହୁଏ, ନିଆଁରେ ଚାଲେ, କେଉଁଠି ବେଳା ଦେଖି ବୁଡ ପକାଏ, କେଉଁ ମୂର୍ତ୍ତି ପାଖରେ ମାନସିକ କରେ, କଷ୍ଟକର ପଥ ଅତିକ୍ରମ କରି କେଉଁ ଦିଅଁ ପାଖରେ ଜଳାଭିଷେକ କରେ, କେଉଁଠି ଚାଦର ଚଢ଼ାଏ ଇତ୍ୟାଦି ନାନା ଧାର୍ମିକ ଆବେଗ ବ୍ୟକ୍ତ କରିଥାଏ । ଏସବୁ ଯେତେ ଅର୍ଥହୀନ, ବ୍ୟୟସାପେକ୍ଷ ଓ ପରିବେଶ କ୍ଷୟକାରୀ ହେଲେ ମଧ୍ୟ ହେତୁବାଦୀ ଓ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଅଭାବରେ ଏହାକୁ ନିଜର ପରଂପରା ଓ ଐତିହ୍ୟର ରୂପ ଦେଇ ଐହିକ ଲାଭ ଓ ପାରଲୌକିକ ପ୍ରାପ୍ତି ଉଦ୍ଦେଶ୍ୟରେ କରାଯାଏ । ନାନା ପୂଜା, କର୍ମକାଣ୍ଡ, ଧାର୍ମିକ ଆବେଗ, ଭକ୍ତିଭାବର ହୁଏତ କିଛି ମନସ୍ତାତ୍ତ୍ୱିକ ପ୍ରଭାବ ରହିପାରେ କିନ୍ତୁ ଏହା ଦ୍ୱାରା କୌଣସି ସାମାଜିକ ବିକାଶ ବା ଜୀବନର ଗୁଣାତ୍ମକ ମାନରେ ପରିବର୍ତ୍ତନ ହୁଏ ନାହିଁ । ହେତୁବାଦୀ ଅବବୋଧରେ ଏହା ସ୍ୱୀକାର କରାଯାଏ ଯେ କୌଣସି କଳ୍ପିତ ଦିଅଁ ଦେବତା ସାମାଜିକ ବିକାଶ କରାଇ ନାହାନ୍ତି ବା ମଣିଷର ଦୁଃଖ, ଦୁର୍ଦ୍ଦଶା ଦୂରକରି ନାହାନ୍ତି । ବିକଶିତ ରାଷ୍ଟ୍ରମାନଙ୍କୁ କୌଣସି ଦୈବୀ ଆଶୀର୍ବାଦ ମିଳି ନାହିଁ ଓ ଅନଗ୍ରସର ଦେଶମାନଙ୍କୁ କୌଣସି ଈଶ୍ୱରୀୟ ଅଭିଶାପ ମିଳି ନାହିଁ । ସକଳ ବିକାଶ ଓ ପ୍ରଗତି କେବଳ ମଣିଷର ଉଦ୍ୟମରେ ସମ୍ଭବ ହୋଇଛି । ନାନା ରାଜନୈତିକ ଓ ଅର୍ଥନୈତିକ ପରିସ୍ଥିତି, ସଂହତିପୂର୍ଣ୍ଣ ସାମାଜିକ ପରିବେଶ, ବିଜ୍ଞାନ ଓ ପ୍ରଯୁକ୍ତିର ପ୍ରୟୋଗ ଇତ୍ୟାଦି ନାନା କାରଣରୁ କିଏ ବିକଶିତ ହୋଇଛନ୍ତି ବା କେଉଁ ରାଷ୍ଟ୍ର ଅନଗ୍ରସର ରହିଛି । ଉନ୍ନତ ଶିକ୍ଷା ବ୍ୟବସ୍ଥା, ଉଚ୍ଚ କର୍ମସଂସ୍କୃତି, ନାଗରିକ ସଚେତନତା, ଭବିଷ୍ୟ ଦୃଷ୍ଟି, ଯୋଜନା ଓ ମାନବବାଦୀ ମୂଲ୍ୟବୋଧର ପ୍ରସାର ଇତ୍ୟାଦି ମାଧ୍ୟମରେ ଜୀବନର ଗୁଣାତ୍ମକ ଉନ୍ନତି ଯେ ସମ୍ଭବ ହୋଇଥାଏ ଏହା ଏକ ବାସ୍ତବ ଉପଲବ୍ଧି ।

ନୀତି, ନୈତିକତା, ମାନବିକତା ମୂଲ୍ୟବୋଧ, ନ୍ୟାୟବୋଧ ଇତ୍ୟାଦି ମୂଲ୍ୟଚୟ ବ୍ୟକ୍ତି ଓ ଗୋଷ୍ଠୀ ଜୀବନକୁ ଉନ୍ନତ କରିଥାଏ । ବାସ୍ତବ ଅନୁଭୂତି, ଉତ୍ତମ ଜୀବନ ନେଇ ଅନ୍ତର୍ଦୃଷ୍ଟି ଓ ଚିନ୍ତନ ମଧ୍ୟ ଦେଇ ନୈତିକ ଆଦର୍ଶମାନ ସମାଜରେ ବିକଶିତ ହୋଇଛି । ବସ୍ତୁତଃ ନୈତିକତା ଏକ ସାମାଜିକ କର୍ତ୍ତବ୍ୟ । ସାମାଜିକ ସମ୍ବନ୍ଧ ପରିପ୍ରେକ୍ଷୀରେ ନୈତିକ ମୂଲ୍ୟଚୟ ଗୁରୁତ୍ୱ ବହନ କରେ । "ଆମ ପ୍ରତି ଯେଉଁ ଆଚରଣ ଆମକୁ ଆଘାତ ଦେଇଥାଏ ସେହି ଆଚରଣ ଅନ୍ୟ ପ୍ରତି ପ୍ରଦର୍ଶନ ନ କରିବା ଆମର କର୍ତ୍ତବ୍ୟ" – ଏହା ହିଁ ହେତୁବାଦୀ ବିଚାରବୋଧରେ ନୈତିକତାର ସାରମର୍ମ ।

ବ୍ୟକ୍ତି ଭିତରେ ବିଚାରଶୀଳତା ଓ ମାନବିକ ମୂଲ୍ୟବୋଧ ନେଇ ସଚେତନତା ସାମାଜିକ ପରିବେଶ, ଶିକ୍ଷା ଇତ୍ୟାଦି ଉପରେ ନିର୍ଭର କରିଥାଏ । ଏସବୁକୁ ଗ୍ରହଣ କରିବା କ୍ଷେତ୍ରରେ ବ୍ୟକ୍ତିର ଅଧ୍ୟୟନ, ଅନ୍ତର୍ଦୃଷ୍ଟି, ଶିକ୍ଷା, ସାମାଜିକ ସଚେତନତା ଇତ୍ୟାଦିର ପ୍ରଭାବ ରହିଥାଏ । ନିଜର ସାମାଜିକ ପରିବେଶର କିଛି ପ୍ରଭାବ ବ୍ୟକ୍ତିମାନସକୁ କିଛି ପ୍ରଭାବିତ କରିଥାଏ । ତେବେ ପ୍ରତ୍ୟେକ ବ୍ୟକ୍ତି ଭିତରେ କିଛି ଆବେଗ ସ୍ୱାଭାବିକ ଭାବେ ରହିଥାଏ । ଜୀବନରେ ଆବେଗ, କଳ୍ପନା, ଭାବପ୍ରବଣତାର ମଧ୍ୟ ମହତ୍ତ୍ୱ ରହିଛି । ତେବେ ଆମର ଆବେଗ ପ୍ରୀତିପୂର୍ଣ୍ଣ ନା ଘୃଣାଦ୍ୟୋତକ, ସୃଜନାତ୍ମକ ବା ଧ୍ୱଂସାତ୍ମକ ତାହାର ନିର୍ଣ୍ଣୟ ଆମର ବିଚାରବୁଦ୍ଧି ଦ୍ୱାରା କରାଯିବା ସମ୍ଭବ ନୁହେଁ କି ? ଏକ ଧାର୍ମିକ ଆବେଗ ଦ୍ୱାରା ପ୍ରଭାବିତ ହୋଇ କିଏ ଦୁଃସ୍ଥ ମଣିଷର ସେବାରେ ନିଜକୁ ଉତ୍ସର୍ଗ କରିପାରେ ଅନ୍ୟ କେହି ସାଂପ୍ରଦାୟିକ ହିଂସାରେ ସଂପୃକ୍ତ ହୋଇପାରେ । ଏହି ପରିପ୍ରେକ୍ଷୀରେ କେଉଁ ଆବେଗ ପ୍ରୀତିପୂର୍ଣ୍ଣ ଓ ସୃଜନାତ୍ମକ କିମ୍ବା ଉନ୍ମାଦଯୁକ୍ତ ଓ ଧ୍ୱଂସାତ୍ମକ ତାହାର ମୂଲ୍ୟାୟନ ପାଇଁ ବିଚାରଶୀଳ ଦୃଷ୍ଟି ହିଁ ମାର୍ଗଦର୍ଶକ ହୋଇଥାଏ ।

ଏହା ଏକ ବିଡମ୍ବନା ଯେ ଜ୍ଞାନ ବିଜ୍ଞାନର ବହୁ ବିକାଶ ଓ ବିଜ୍ଞାନର ଚମକପ୍ରଦ ଅଗ୍ରଗତି ସତ୍ତ୍ୱେ ବିଭିନ୍ନ ସମାଜରେ ନାନା କୁସଂସ୍କାର, ଅପବିଶ୍ୱାସ ଓ ନାନା ଅର୍ଥହୀନ ପରଂପରା ରହିଛି । ଗଣତାନ୍ତ୍ରିକ ବ୍ୟବସ୍ଥା ଓ ମାନବବାଦର ପ୍ରଚଳନ ସତ୍ତ୍ୱେ ନାନା ଭେଦଭାବ ଓ ଉଚ୍ଚ-ନୀଚର ମନୋଭାବ କେତେକ ସମାଜରେ ଦୃଢ଼ ହୋଇ ରହିଛି । ଏପରିକି ବିଭିନ୍ନ କୁସଂସ୍କାରର ପ୍ରସାର ପାଇଁ ବୈଜ୍ଞାନିକ ଓ ପ୍ରାଯୁକ୍ତିକ ସାଧନମାନଙ୍କୁ ବିନିଯୋଗ କରାଯାଉଛି । ଆଗେ କୁସଂସ୍କାରମାନ ଆଞ୍ଚଳିକ ସ୍ତରରେ ସୀମିତ ହୋଇ ରହୁଥିଲା । ସଂପ୍ରତି ବିଜ୍ଞାନର ବିକାଶ ଯୋଗୁ ନାନା ଅପବିଶ୍ୱାସ ଓ କୁସଂସ୍କାର ଆଞ୍ଚଳିକ ନରହି ସାର୍ବଜନୀନ ହୋଇଯାଉଛି । କୁସଂସ୍କାରର ପ୍ରସାର କ୍ଷେତ୍ରରେ ଆଧୁନିକ ପ୍ରଯୁକ୍ତିକୁ ସାଧନ ଭାବରେ ବିନିଯୋଗ କରାଯାଉଛି । କୁସଂସ୍କାରର ପ୍ରସାର କେବଳ ଜ୍ଞାନ-ବିଜ୍ଞାନର ଯେ ପ୍ରତିକୂଳ

ତାହା ନୁହଁ ଏହା ସଭ୍ୟ ଜୀବନବୋଧର ବି ପରିପନ୍ଥୀ । ଯେତେ ଦିନ ପର୍ଯ୍ୟନ୍ତ ଅଜ୍ଞତା, ଅହେତୁକତା ଓ ଭୟର ମନୋଭାବ ରହିଥିବ ବୈଜ୍ଞାନିକ ଦୃଷ୍ଟିକୋଣର ଅଭାବରେ ସମାଜରେ ନାନା କୁସଂସ୍କାର ଓ ଅପବିଶ୍ୱାସର ପ୍ରଭାବ ରହିବ ଏହା ହିଁ ଏକ ଉପଲବ୍ଧି । ଜନଗଣଙ୍କର ଅସ୍ଥିମଜ୍ଜାଗତ ବିଶ୍ୱାସର ପରିବର୍ତ୍ତନ ସେପରି ସହଜସାଧ୍ୟ ହୋଇପାରୁ ନାହିଁ ।

ଉପସଂହାରରେ ବିଶିଷ୍ଟ ଆମେରିକୀୟ ଲେଖକ ଜେମସ୍ ଏ ହଟ୍ ତାଙ୍କ ରଚିତ ପୁସ୍ତକ Two Thousand Years of Disbelief ପୁସ୍ତକରେ ଦର୍ଶାଇଛନ୍ତି ଯେ ହେତୁବାଦୀମାନେ ଚିନ୍ତାରାଜ୍ୟର ବିପ୍ଳବୀ ଓ ଏକ ପ୍ରୀତିପୂର୍ଣ୍ଣ ବିଶ୍ୱର ସୃଜନଶୀଳ ସ୍ୱପ୍ନ-ଦ୍ରଷ୍ଟା । ସେମାନେ ଜ୍ଞାନରାଜ୍ୟର ଅମ୍ଳାନ ଜ୍ୟୋତିଷ୍କ ଓ ମାନବିକ ଉତ୍କର୍ଷର ପଥପ୍ରଦର୍ଶକ । ଜ୍ଞାନବିଜ୍ଞାନର ବିକାଶ ଓ ମାନବିକ ମୂଲ୍ୟବୋଧର ପ୍ରସାର ଦିଗରେ ସେମାନଙ୍କର ଅବଦାନ ଅତୁଳନୀୟ ଯଦିବା ନିଜ ସମସାମୟିକ ସମାଜରେ ଏହି ପ୍ରତିଭାଧର ମୁକ୍ତଚିନ୍ତକମାନେ ବହୁ ଅପଯଶ ପାଇଛନ୍ତି ଓ ଏପରିକି ଧର୍ମବିରୋଧୀ ବୋଲି ନିର୍ଯ୍ୟାତିତ ହୋଇଛନ୍ତି । ସଭ୍ୟତାର ଉତ୍ତରଣରେ ହେତୁବାଦୀ ମୁକ୍ତଚିନ୍ତକମାନଙ୍କର ଅବଦାନ ବିଶ୍ୱବିଦିତ ।

ମାନବସମାଜ କିପରି ଉନ୍ନତରୁ ଉନ୍ନତତର ସ୍ଥିତିକୁ ଯିବ ସେଥିପାଇଁ ବିଭିନ୍ନ ସମୟରେ ଓ ବିଭିନ୍ନ ସଭ୍ୟତାରେ ହେତୁବାଦୀ ମାନେ ଗମ୍ଭୀର ସଂପୃକ୍ତି ବ୍ୟକ୍ତ କରିଛନ୍ତି । ଆମ ସଂସାରରେ ଯେତେ ଦୁଃଖ ଦୁର୍ଦ୍ଦଶା ରହିଛି ତାହା ଯେତେ ପ୍ରାକୃତିକ ନୁହେଁ ତାପେକ୍ଷା ଅଧିକ ମାନବକୃତ । ଜ୍ଞାନବିଜ୍ଞାନର ବିକାଶ ସହ ମାନବବାଦର ପ୍ରସାର ଏକ ପ୍ରୀତିପୂର୍ଣ୍ଣ ଓ ଭ୍ରାତୃତ୍ୱପୂର୍ଣ୍ଣ ବିଶ୍ୱ ନିର୍ମାଣରେ ସହାୟକ ହୋଇପାରିବ । ତାହା ହିଁ ହେତୁବାଦର ଆଭିମୁଖ୍ୟ ଓ ହେତୁବାଦୀମାନଙ୍କର ଜୀବନ-ଦର୍ଶନ ।



# ଆଗାମୀ ବିଶ୍ୱ : ଏକ ବୈଚାରିକ ସ୍ୱପ୍ନ

ଏକ ଆଦିମ ସ୍ଥିତିରୁ ନାନା ପରିବର୍ତ୍ତନ ଓ ବିବର୍ତ୍ତନ ମଧ୍ୟ ଦେଇ ମଣିଷର ଅଗ୍ରଗତି ଘଟିଛି ଓ ସଭ୍ୟତାର ବିକାଶ ହୋଇଛି । ଗୋଟିଏ ଦୃଷ୍ଟିରୁ ଦେଖିଲେ ମଣିଷର ଇତିହାସ ହେଉଛି ଏକ ସଂଗ୍ରାମର କାହାଣୀ । ଇତର ପ୍ରାଣୀମାନେ ନିଜର ପ୍ରବୃତ୍ତି ଦ୍ୱାରା ପରିଚାଳିତ ହୋଇ କାର୍ଯ୍ୟ କରନ୍ତି, ସେମାନଙ୍କ ପାଖରେ କୌଣସି ଲକ୍ଷ୍ୟ ରହିନଥାଏ । ସୁତରାଂ ଲକ୍ଷ ଲକ୍ଷ ବର୍ଷ ତଳେ ଇତର ପ୍ରାଣୀମାନେ ଯେଉଁ ସ୍ଥିତିରେ ରହିଥିଲେ ଆଜି ମଧ୍ୟ ସେହି ସ୍ଥିତିରେ ରହିଛନ୍ତି । ସେମାନଙ୍କ ଜୀବନର ମାନରେ ସାମାନ୍ୟ ପରିବର୍ତ୍ତନ ହୋଇ ନାହିଁ । କାଉ, କୋଇଲି, ଚିଲ ପରି ପକ୍ଷୀମାନେ ବା ଗାଈ, ମଇଁଷି, କୁକୁର, ମାଙ୍କଡ ପରି ପ୍ରାଣୀମାନେ ବା ସମସ୍ତ ସରୀସୃପମାନେ, ଯେଉଁ ସ୍ତରର ଇତର ପ୍ରାଣୀ ହୁଅନ୍ତୁ ନା କାହିଁକି, ଆଜକୁ ଲକ୍ଷ ଲକ୍ଷ ବର୍ଷ ତଳେ ଯେଉଁ ସ୍ଥିତିରେ ରହିଥିଲେ ବା ଯେଉଁପରି ଜୀବନ ନିର୍ବାହ କରୁଥିଲେ ଆଜି ମଧ୍ୟ ସେହି ସ୍ତରରେ ଜୀବନ ନିର୍ବାହ କରୁଛନ୍ତି । ସେମାନେ କିଛି ଲକ୍ଷ୍ୟ ପୋଷଣ କରନ୍ତି ନାହିଁ । କେବଳ ପ୍ରବୃତ୍ତି ଦ୍ୱାରା ପରିଚାଳିତ ହୋଇ ସେମାନଙ୍କ ସାମର୍ଥ୍ୟ ଭିତରେ ଥିବା ସୀମା ପରିସରରେ ସେମାନେ ବଂଚିବାକୁ ପ୍ରୟାସ କରନ୍ତି । ପ୍ରାକୃତିକ ପରିବେଶରେ ପରିବର୍ତ୍ତନ ହୋଇଗଲେ ଏକ ପ୍ରାଣୀର ବଂଶ ଧ୍ୱଂସ ପାଇଯାଇ ପାରେ, ତେବେ ସେମାନେ ନିଜର ଧ୍ୱଂସ ପାଇଁ ପ୍ରୟାସ କରନ୍ତି ନାହିଁ ।

ପ୍ରତ୍ୟେକ ଜୀବିତ ପ୍ରାଣୀ ପାଖରେ ପ୍ରବୃତ୍ତି ରହିଥାଏ । ମଣିଷର ବି ପ୍ରବୃତ୍ତି ରହିଛି, ତେବେ ପ୍ରବୃତ୍ତି ବ୍ୟତୀତ ମଣିଷ ପାଖରେ କେତେକ ବିଚାରଶୀଳ ସାମର୍ଥ୍ୟ ରହିଛି । ଏହି ବିଚାରଶୀଳ ସାମର୍ଥ୍ୟ ଯୋଗୁ ସେ ଭାବିପାରେ, ବୁଦ୍ଧି ପ୍ରୟୋଗ କରିପାରେ, ଲକ୍ଷ୍ୟ ପୋଷଣ କରିପାରେ, କୌଣସି ପ୍ରତିକୂଳ ପରିସ୍ଥିତିକୁ ମୁକାବିଲା କରିବା ପାଇଁ ଉପାୟ ଚିନ୍ତାକରେ ଓ ଏହି ପ୍ରକ୍ରିୟାରେ ତାର ଜୀବନର ମାନରେ ଉନ୍ନତି ସାଧନ କରିଥାଏ । ବ୍ୟକ୍ତିର ବ୍ୟବହାର ସ୍ୱୟଂଚାଳିତ ଭାବେ ପ୍ରବୃତ୍ତି ଦ୍ୱାରା ନିୟନ୍ତ୍ରିତ ହୁଏ ନାହିଁ; ବରଂ ଭାବନା, ଯୋଜନା, ଲକ୍ଷ୍ୟ ଇତ୍ୟାଦି ଦ୍ୱାରା ପ୍ରଭାବିତ ହୋଇଥାଏ । ସେଥିପାଇଁ ଏକ ଆଦିମ ସ୍ତରରୁ ସେ

କେତେ କେତେ ପରିସ୍ଥିତି ଦେଇ ସଭ୍ୟତା, ସଂସ୍କୃତି ନିର୍ମାଣ କରିଛି, ଜ୍ଞାନ-ବିଜ୍ଞାନର ବିକାଶ ଘଟାଇଛି, ନୀତି-ନୈତିକତାର ଭାବନା ସୃଷ୍ଟି କରିଛି ଓ ଜୀବନର ଉତ୍କୃଷ୍ଟତା ହାସଲ ପାଇଁ ପ୍ରୟାସ କରିଆସିଛି । ହଜାର ହଜାର ବର୍ଷର ପ୍ରୟାସ ଓ ପ୍ରଚେଷ୍ଟା ଯୋଗୁଁ ସେ ଗୁଣାତ୍ମକ ଶିକ୍ଷାର ବିକାଶ ଘଟାଇଛି, ଜୀବନର ନୂଆ ନୂଆ ମୂଲ୍ୟବୋଧ ଆବିଷ୍କାର କରିଛି ଓ ଜୀବନର ଉତ୍କର୍ଷ ସାଧନ ପାଇଁ ସଂପୃକ୍ତି ବ୍ୟକ୍ତ କରିଛି ।

ବ୍ୟକ୍ତି ଭିତରେ ଯେଉଁ ସାମାଜିକ ପ୍ରବୃତ୍ତି ରହିଛି ତାହାର ପରିଣାମରୁ ସାମୂହିକ ଗୋଷ୍ଠୀଜୀବନର ଭାବନା ବିକଶିତ ହୋଇଛି । ଏହି ପ୍ରକ୍ରିୟାରେ ରାଜ୍ୟ, ରାଷ୍ଟ୍ର ଓ ଏପରିକି ଅନ୍ତଃରାଷ୍ଟ୍ରୀୟ ଭାବନାର ବିକାଶ ହୋଇଛି । କେତେ କେତେ ସାମୂହିକ ଅସ୍ମିତାର ମନୋଭାବ ବ୍ୟକ୍ତି ଚେତନାକୁ ବୃହତ୍ତର ଜନଗୋଷ୍ଠୀ ପ୍ରତି ପ୍ରସାରିତ କରିଛି । ଧାର୍ମିକ ଅସ୍ମିତା, ଜାତୀୟତାବୋଧ, ଭାଷାଗତ ଏକତ୍ୱବୋଧ, ବୃତ୍ତିଗତ ପରିଚୟ ଇତ୍ୟାଦି ବିଚାର ବ୍ୟକ୍ତି ଭିତରେ ସାମୂହିକ ମନୋଭାବ ସୃଷ୍ଟି କରିଛି । ତେବେ ବେଳେବେଳେ ଏହି ଭାବାବେଗ କେତେ କେତେ ନାସ୍ତିସୂଚକ ପରିସ୍ଥିତି ଉଦ୍‌ଭବ କରାଇଛି । ନାନା ଯୁଦ୍ଧ, ଗୋଷ୍ଠୀବିବାଦ, ହିଂସା-ପ୍ରତିହିଂସାର ମନୋଭାବ ଓ କେତେ କେତେ ଅମାନବିକତାର ପରିବେଶ ସୃଷ୍ଟି କରିଛି । ମୌଳବାଦ, ରାଷ୍ଟ୍ରବାଦ ଇତ୍ୟାଦି ଉଗ୍ରବାଦର ପ୍ରସାରରେ ସହାୟକ ହୋଇଛି ଓ ସକଳ ମାନବିକ ମୂଲ୍ୟବୋଧ, ସହିଷ୍ଣୁତା, ଉଦାରତା ଓ ସମ୍ବେଦନଶୀଳତା ପ୍ରତି ଆହ୍ୱାନ ସୃଷ୍ଟି କରିଛି । ତେବେ ଏସବୁ ଉନ୍ମାଦନା, ଉତ୍ତେଜନା ଓ ହିଂସାତ୍ମକ ସ୍ଥିତି ସ୍ଥାୟୀ ହୋଇ ନାହିଁ ଓ ଜୀବନର ମହତ୍ତମ ଅନୁଭୂତି, ତଥା ସୂକ୍ଷ୍ମ ଆବେଗ ଓ ଆଦର୍ଶବୋଧ ସର୍ବଦା ତିଷ୍ଠି ରହିଛି । କେତେ କେତେ ଯୁଦ୍ଧ, ବିଭୀଷିକା, ଜାତିଗତ ଶୋଷଣ ଓ ବିଦ୍ୱେଷ ଆମ ସଂସାରକୁ ନାନା କ୍ଷତି ଓ ଦୁଃଖର ପରିବେଶ ଆଣିଥିଲେ ମଧ୍ୟ ତଥାପି ସଭ୍ୟତାର ଚକ ଆଗକୁ ଯାଇଛି ଓ ସଭ୍ୟ ମୂଲ୍ୟବୋଧ ମାନ ଆମର ସାମୂହିକ ଜୀବନବୋଧକୁ ପ୍ରଭାବିତ କରି ଆସିଛି । ବିଚାରଶୀଳତାକୁ ପରିହାର କରି କେବଳ ପ୍ରବୃତ୍ତି ଦ୍ୱାରା ପରିଚାଳିତ ହେଲେ ବ୍ୟକ୍ତି ଜୀବନର ଅଧୋଗତି ହେବା ଯେପରି ସମ୍ଭବ, ଠିକ୍ ସେହିପରି ଏକ ବୃହତ୍ତର ଜନଗୋଷ୍ଠରେ ହିଂସା, ସନ୍ତ୍ରାସବାଦ ଓ ସାଂପ୍ରଦାୟିକ ବିଦ୍ୱେଷ ପ୍ରାଧାନ୍ୟ ନେଲେ ଜନଗୋଷ୍ଠୀର ବିପର୍ଯ୍ୟୟ ଆସିବା ସେହିପରି ସମ୍ଭବ ।

ଏହା ଏକ ସାଧାରଣ ଉପଲବ୍ଧି ଯେ ମଣିଷ ଇତର ଜୀବମାନଙ୍କ ପରି କେବଳ ସହଜାତ ପ୍ରବୃତ୍ତି ଭିତରେ ସୀମିତ ହୋଇ ବଂଚିବାକୁ ଚାହିଁ ନାହିଁ । ବରଂ ସେ ବୁଦ୍ଧିର

ପ୍ରୟୋଗ କରିଛି, ବିଚାରଶୀଳ ହେବାକୁ ପ୍ରୟାସ କରିଛି । ଜଣେ ବିଚାରଶୀଳ ବ୍ୟକ୍ତିର ଜୀବନ କ୍ଷେତ୍ରରେ କେତେକ ପ୍ରକ୍ରିୟା, ଯୋଜନା, ଲକ୍ଷ୍ୟ, ଧାରା, ପ୍ରଣାଳୀ ରହିବା ଦେଖାଯାଏ । ଏସବୁ କ୍ଷେତ୍ରରେ ନାନା ସମ୍ଭାବନା ବା ମନୋନୟନ ବ୍ୟକ୍ତି ପାଇଁ ଉନ୍ମୁକ୍ତ ରହିଥାଏ । ତେବେ କୌଣସି ଚିନ୍ତା ନକଲେ ବା ଭାବନା ବା ଯୋଜନା ନକଲେ ମଣିଷ ଜୀବନର ସର୍ବନିମ୍ନ ଆବଶ୍ୟକତା ପୂରଣ କରିପାରିବ ନାହିଁ । ମଣିଷ ଯେଉଁ ପରିବେଶରେ ବଞ୍ଚିଛି ସେଠାରେ ନିଜର ମସ୍ତିଷ୍କ ଖଟାଇ ଜୀବନଧାରାକୁ ସୁଗମ କରିବାକୁ ପ୍ରୟାସ କରିଛି । ଚାଷକରି କିପରି ଶସ୍ୟ ଉତ୍ପାଦନ କରିବାକୁ ହେବ, ଖରା ବର୍ଷାରୁ ନିଜକୁ ରକ୍ଷା କରିବାକୁ ବାସଗୃହ କରାଯାଇ ପାରିବ, ରୋଗବାଧକର କିପରି ଚିକତ୍ସା କରି ସୁସ୍ଥ ରହିପାରିବ ଇତ୍ୟାଦି ବହୁ ବିଷୟ ପାଇଁ ମଣିଷ ଚିନ୍ତା କରିଛି ଓ ମସ୍ତିଷ୍କ ଖଟାଇଛି । ନିଜର ପ୍ରବୃତ୍ତି ଭିତରେ ସେ ସୀମିତ ରହିନାହିଁ । ଜ୍ଞାନବିଜ୍ଞାନ ଓ ଆଧୁନିକ ପ୍ରଯୁକ୍ତି ମାନବ ସଭ୍ୟତାକୁ ଯେଉଁ ଉତ୍ତୁଙ୍ଗ ଶିଖରକୁ ନେବାରେ ସମର୍ଥ ହୋଇଛି, ସମଗ୍ର ପୃଥିବୀ କ୍ଷୁଦ୍ର ଗ୍ରାମରେ ପରିଣତ ହୋଇପାରିଛି, ମହାକାଶ ଯାତ୍ରା ସ୍ୱପ୍ନ ହୋଇ ରହି ନାହିଁ, ବିଭିନ୍ନ ମହାମାରୀକୁ ନିୟନ୍ତ୍ରଣ କରିବାର ସାମର୍ଥ୍ୟ ମଣିଷ ହାସଲ କରିଛି, ବହୁ କ୍ଷେତ୍ରରେ ବିକାଶ ତ୍ୱରାନ୍ୱିତ ହୋଇଛି ଏସବୁ ମାନବିକ ଉଦ୍ୟମରୁ ସମ୍ଭବ ହୋଇଛି । ଜ୍ଞାନବିଜ୍ଞାନ କ୍ଷେତ୍ରରେ ଯେଉଁ ବିସ୍ଫୋରଣ ଘଟିଛି ଓ ଦିନକୁ ଦିନ ଏହା ଅଧିକରୁ ଅଧିକ ଉନ୍ନତ ହୋଇଚାଲିଛି ଏସବୁ ମାନବୀୟ ପ୍ରୟାସ, ଗବେଷଣା ଓ ଇଚ୍ଛାଶକ୍ତି ଯୋଗୁ ସମ୍ଭବ ହୋଇଛି । ସକଳ ବିକାଶ ଓ ଜୀବନର ଗୁଣାତ୍ମକ ଅଭିବୃଦ୍ଧି ପାଇଁ ମାନବିକ ଉଦ୍ୟମ ଓ ଚିନ୍ତାଚେତନା ନିର୍ଣ୍ଣାୟକ ମନେ ହୋଇଛି । ଚିନ୍ତା, ଚେତନା, ବିଚାରଶୀଳତା, ଅନୁସନ୍ଧିତ୍ସୁ ମନୋଭାବ ଓ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଜୀବନର ଭୌତିକ ଓ ନୈତିକ ବିକାଶ ଦିଗରେ ସାହାଯ୍ୟ କରିଛି । ସଭ୍ୟତାର ଆରମ୍ଭ ସମୟରୁ ସେ ଯାତ୍ରା ଆଜି ପର୍ଯ୍ୟନ୍ତ ଅବ୍ୟାହତ ରହିଛି, କୌଣସି କାରଣରୁ ସଭ୍ୟତା ଆତ୍ମହତ୍ୟା ନକଲେ ସେହି ଯାତ୍ରା ଭବିଷ୍ୟତରେ ମଧ୍ୟ ଅବ୍ୟାହତ ରହିବ ।

ବ୍ୟଷ୍ଟି ହେଉ ବା ଗୋଷ୍ଠୀ ହେଉ ଚିନ୍ତା ଓ ଚେତନାର ବିକାଶ ନକଲେ ଜୀବନର ମାନରେ ଯେ ଗୁଣାତ୍ମକ ପରିବର୍ତ୍ତନ ଆସିବ ନାହିଁ ଏହା ଏକ ଐତିହାସିକ ଉପଲବ୍ଧି । ସେହିପରି କୌଣସି ଅବାସ୍ତବ ବା କାଳ୍ପନିକ ଶକ୍ତି ଉପରେ ଆସ୍ଥା ସ୍ଥାପନ କରି କେହି ଜୀବନ ନିର୍ବାହ କରିପାରନ୍ତି । ତେବେ ସେହି ଧାରାରେ ସମସ୍ତେ ପରିଚାଳିତ ହେଲେ ଓ ମାନବିକ ପ୍ରୟାସ ଓ ଜିଜ୍ଞାସାକୁ ପରିହାର କଲେ ଜୀବନ ଶଙ୍କାଗ୍ରସ୍ତ ହେବାର ଆଶଙ୍କା

ରହିଥାଏ । ନଦୀତଟରେ ବଞ୍ଚୁଥିବା ବ୍ୟକ୍ତି ନଦୀବଢ଼ି ନେଇ କୌଣସି ସତର୍କତା ଅବଲମ୍ବନ ନକଲେ ଓ କଳ୍ପିତ ଦିଅଁ ଦେବତା ପ୍ରାକୃତିକ ବିପଦ ଆସିଲେ ରକ୍ଷା କରିବେ ବୋଲି ଭାବନାର ଇନ୍ଦ୍ରଜାଲ ଭିତରେ ରହିଲେ ଜୀବନ ଯେ ଶଙ୍କାଗ୍ରସ୍ତ ହୋଇ ରହିବ ଏହା ଅନୁମାନ କରାଯାଇପାରେ । ବୈଜ୍ଞାନିକ ଜ୍ଞାନ ଓ ଆଧୁନିକ ଚିକିତ୍ସା ବିଜ୍ଞାନର ବିକାଶ ପୂର୍ବରୁ ମହାମାରୀ ବା ପ୍ରାକୃତିକ ବିପର୍ଯ୍ୟୟ ବେଳେ ଲୋକମାନେ କେତେ କଳ୍ପିତ ଦିଅଁ ଦେବତାଙ୍କୁ ପ୍ରାର୍ଥନା କରୁଥିଲେ ବି ରକ୍ଷା ପାଇପାରୁ ନଥିଲେ । ବରଂ ରୋଗମାନଙ୍କର କାରଣ ବିଷୟରେ ଗବେଷଣା କରି ତାହାର ଚିକିତ୍ସା ଓ ପ୍ରତିଷେଧକ ବାହାର କରିବା ଦ୍ୱାରା ଜୀବନ ଅଧିକ ନିରାପଦ ହେବା ମନେହୁଏ । ସେହିପରି କୌଣସି ପ୍ରାକୃତିକ ବିପର୍ଯ୍ୟୟ ପରିସ୍ଥିତିରେ ନିଜର ସୁରକ୍ଷା ପାଇଁ ଜ୍ଞାନକୌଶଳର ଅଧିକାରୀ ହେବାର ପ୍ରୟାସ ଯୋଗୁଁ ଜୀବନ ପୂର୍ବପରି ଅସହାୟ ହେଉ ନାହିଁ । ଜ୍ଞାନବିଜ୍ଞାନ ମଣିଷକୁ ଶକ୍ତିଶାଳୀ କରିବା ଦ୍ୱାରା ଜୀବନ ନିରାପଦ ହୋଇପାରିଛି । ଅବଶ୍ୟ କେତେକ ଭୂଖଣ୍ଡରେ ଅଜ୍ଞତା, ଦାରିଦ୍ର୍ୟ, ଅନଗ୍ରସରତା ବ୍ୟାପକ ଭାବରେ ରହିଛି । ଯେଉଁଠି ଏହି ପ୍ରକାର ସ୍ଥିତ ରହିଛି ସେଠିକାର ଲୋକମାନେ ଯେତେ ଧର୍ମପ୍ରାଣ ହେଲେ ମଧ୍ୟ ପ୍ରାକୃତିକ ପ୍ରତିକୂଳ ସ୍ଥିତିରୁ ରକ୍ଷା ପାଇପାରନ୍ତି ନାହିଁ । ଦୁଇ ଶହ ବର୍ଷ ପୂର୍ବରୁ ସମଗ୍ର ପୃଥିବୀରେ କିପରି ଦୁର୍ଭିକ୍ଷ, ମହାମାରୀ ଇତ୍ୟାଦିର ବିଭୀଷିକା ରହିଥିଲା ଓ ବେଳେବେଳେ କେତେକ ଭୂଖଣ୍ଡରେ ଗଣମୃତ୍ୟୁ ସୃଷ୍ଟି ହେଉଥିଲା ତାହାର କାହାଣୀ ସୁବିଦିତ । ମଣିଷ ଯେଉଁ ପ୍ରତିକୂଳ ସ୍ଥିତିର ସମ୍ମୁଖୀନ ହୋଇଛି ସେହି ପରିସ୍ଥିତିରୁ ନିଜକୁ ରକ୍ଷା କରିବା ପାଇଁ ଉପାୟ ଚିନ୍ତା କରିଛି । ସମାଜର କିଛି ଧୁରୀଣ ଓ ଚିନ୍ତାଶୀଳ ବ୍ୟକ୍ତି କୌଣସି ମାନବୀୟ ସଙ୍କଟକୁ ଦୂର କରିବାକୁ ସଂପୃକ୍ତି ବ୍ୟକ୍ତ କରିଛନ୍ତି । ଏହି ପ୍ରୟାସ ପିଢ଼ି ପିଢ଼ି ହୋଇ ଅବ୍ୟାହତ ରହିବା ଯୋଗୁ ଉପାୟ ବାହାରିଛି ଓ ମଣିଷର ସ୍ଥିତିରେ ପରିବର୍ତ୍ତନର ସୂତ୍ରପାତ ହୋଇଛି । କୌଣସି ବିକାଶ ଆକାଶରୁ ଖସି ନାହିଁ ବା କେଉଁ ଦେବତାଙ୍କ ଆଶୀର୍ବାଦରୁ ଉପଲବ୍ଧ ହୋଇନାହିଁ । ଜ୍ଞାନବିଜ୍ଞାନର ବିକାଶ ଓ ଜୀବନର କ୍ରମବର୍ଦ୍ଧିଷ୍ଣୁ ନିରାପତ୍ତା ମାନବିକ ଉଦ୍ୟମ ଓ ସଂଘବଦ୍ଧ ପ୍ରୟାସ ଯୋଗୁ ସମ୍ଭବ ହୋଇଛି ।

ବହୁ ଅତୀତରୁ ଜୀବନର ଉତ୍କର୍ଷ ନେଇ ସୃଜନଶୀଳ ବ୍ୟକ୍ତି, ଦାର୍ଶନିକ ଓ ହେତୁବାଦୀ ଚିନ୍ତକମାନେ ଗମ୍ଭୀର ଚିନ୍ତା ପ୍ରକଟ କରି ଆସିଛନ୍ତି । ଜୀବନର ଉତ୍କର୍ଷ ସାଧନ କ୍ଷେତ୍ରରେ ବଡ଼ ପ୍ରତିବନ୍ଧକ ହେଲା ଅଜ୍ଞତା ଓ ମାନବିକ କ୍ରୂରତା । ମଣିଷ ସମାଜରେ ଥିବା ବହୁ ଦୁଃଖ, ସଂକଟ, ବିଷାଦ ଓ ଦୁର୍ଭାଗ୍ୟପୂର୍ଣ୍ଣ ସ୍ଥିତି ହୁଏତ ପ୍ରାକୃତିକ କାରଣ ଜନିତ କିମ୍ବା ମାନବିକ କାରଣଜନିତ । ପ୍ରାକୃତିକ କାରଣ ଜନିତ ଦୁଃଖ, ଦୁର୍ଦ୍ଦଶାକୁ ଦୂର କରିବାକୁ

ମଣିଷର ପ୍ରୟାସ ଅନେକ ସଫଳ ହୋଇପାରିଛି । ତେବେ ମାନବ ସମାଜରେ ବହୁ ଦୁର୍ଦ୍ଦଶା ମାନବିକ କ୍ରୂରତା, ଶୋଷଣ, ଭେଦଭାବ ଓ ଅନ୍ୟାୟ ଯୋଗୁ ତିଷ୍ଠି ରହିଛି । ସଭ୍ୟତାର ଇତିହାସରେ କେତେ କେତେ ଯୁଦ୍ଧର ବିଭୀଷିକାର ଚିତ୍ର ରହିଛି । ରଙ୍ଗଭେଦ, ଲିଙ୍ଗଭେଦ, ଜାତିଭେଦ, ଦାସତ୍ୱ, ଶୋଷଣ ଇତ୍ୟାଦି କାରଣରୁ ସବଳ ମଣିଷମାନେ ଦୁର୍ବଳ ଲୋକମାନଙ୍କ ଉପରେ ଅତ୍ୟାଚାର କରିଛନ୍ତି । ସାଂପ୍ରଦାୟିକତାବାଦ ଓ ସଂତ୍ରାସବାଦ ଯୋଗୁ ବହୁ ଅମାନବିକ ହିଂସା କେତେକଙ୍କର ସଂସାରକୁ ଉଚ୍ଛନ୍ନ କରିଦେଇଛି । ଏହି ସ୍ଥିତିରେ ସଂସାରରୁ ସକଳ ବର୍ବରତା ଓ ବିକୃତିକୁ ଦୂର କରି ଏକ ମାନବବାଦୀ ଜୀବନବୋଧ ଓ ନୀତିବୋଧର ବାର୍ତ୍ତା ଦେବାକୁ ନାନା ଭାବରେ କିଛି ପ୍ରୟାସ ହୋଇଛି । ପ୍ରତ୍ୟେକ ଧର୍ମ ଗୋଟିଏ ଭୌଗୋଳିକ ଭୂଖଣ୍ଡର ଏକ ସାଂସ୍କୃତିକ ଜାଗରଣ ଭାବେ କେତେକ ଆଦର୍ଶ ଓ ନୀତିବୋଧ ସୃଷ୍ଟି କରିଥିଲା । ତେବେ ପ୍ରତ୍ୟେକ ଧର୍ମର ଆଭିମୁଖ୍ୟ ପାରଲୌକିକ ଲକ୍ଷ୍ୟ ପାଇଁ ଉଦ୍ଦିଷ୍ଟ ଥିଲା । ଧର୍ମମାନଙ୍କ ଆଦାନ ପ୍ରଦାନ ପୂର୍ବରୁ ପ୍ରତ୍ୟେକ ଧର୍ମ ନିଜର ବିଶ୍ୱାସକୁ ଶ୍ରେଷ୍ଠ ଓ ଶ୍ରେୟ ଭାବୁଥିଲା । ପ୍ରତ୍ୟେକ ଧର୍ମଗୋଷ୍ଠୀ ନିଜ ଧର୍ମଗ୍ରନ୍ଥର ବାଣୀକୁ ପବିତ୍ର ଓ ଈଶ୍ୱରୀୟ ନିର୍ଦ୍ଦେଶ ବୋଲି ବିଚାର କରୁଥିଲା । ଅନ୍ୟମାନଙ୍କୁ ସେହି ଢ଼ାଂଚା ଭିତରକୁ ଆଣିବା ପାଇଁ ପ୍ରୟାସକୁ ଈଶ୍ୱରୀୟ କାର୍ଯ୍ୟ ବୋଲି ମନେ କରୁଥିଲା । ଏହି ପ୍ରକାର ମନୋଭାବ ଓ ଉହ୍ଲାଦରୁ ଆମ ସଂସାରରେ କେତେ କେତେ ହିଂସା, ଘୃଣାଭାବ ଓ ସାଂପ୍ରଦାୟିକ ବିଦ୍ୱେଷର ପରିବେଶ ସୃଷ୍ଟି ହେବା ଏକ ଐତିହାସିକ ଉପଲବ୍ଧି । ଏହି ଦୃଷ୍ଟିରୁ ବିଚାର କଲେ ଧର୍ମମାନ ମଣିଷ ସମାଜକୁ ଭାଗ କରିବାରେ ବଳିଷ୍ଠ ଭୂମିକା ନେଇଥିବା ମନେହୁଏ । ସେହିପରି ଉଗ୍ର ଜାତୀୟତାଭାବ ଦେଶ ଦେଶ ଭିତରେ ଯେଉଁ ଘୃଣା ଓ ଅବିଶ୍ୱାସର ବାତାବରଣ ସୃଷ୍ଟି କରିଛି ତାହା ବି ଆଜିର ଆଣବିକ ଯୁଗରେ ମାନବସଭ୍ୟତା ପାଇଁ ଆହ୍ୱାନ ଭାବେ ଆସିଛି । ଦେଶାତ୍ମବୋଧ ବିଶ୍ୱଭ୍ରାତୃତ୍ୱ ଓ ଉଦାରବାଦ କ୍ଷେତ୍ରରେ ପ୍ରତିବନ୍ଧକ ହୋଇ ରହିଛି ।

ମାନବିକ ବିଚାରଶୀଳ ଦୃଷ୍ଟି ଯେତେ ଗମ୍ଭୀର ହେବାରେ ଲାଗିଛି ସେ ଭିତରୁ ଏକତ୍ୱବୋଧର ମନୋଭାବଟି ଆଗାମୀ ବିଶ୍ୱ ପାଇଁ ଅବଶ୍ୟମ୍ଭାବୀ ମନେ ହେଉଛି । ଆଧୁନିକ ପ୍ରଯୁକ୍ତି ବାହ୍ୟିକ ସ୍ତରରେ ବିଶ୍ୱକୁ ଯୋଡିବାରେ ସମର୍ଥ ହେଲାଣି ଓ ଏହା ଏକ ଆତ୍ମିକ ଏକତ୍ୱବୋଧ ପାଇଁ ଅନୁକୂଳ ପରିବେଶ ଆଣି ପାରିଛି । ମାନବସମୂହକୁ ଏକ ଅବିଚ୍ଛେଦ୍ୟ ଅଙ୍ଗ ଭାବରେ ନେଇ ଏକ ଭେଦଭାବରହିତ, ବିଦ୍ୱେଷମୁକ୍ତ ବିଶ୍ୱସମାଜ ପାଇଁ ସାଂପ୍ରତିକ ସମୟର ହେତୁବାଦୀ-ମାନବବାଦୀମାନେ ଗମ୍ଭୀର ସଂପୃକ୍ତି ବ୍ୟକ୍ତ କରୁଛନ୍ତି । ବିଜ୍ଞାନ ଓ

ବୁଦ୍ଧିମତା ଦ୍ୱାରା କେବଳ ପ୍ରକୃତି ଉପରେ ବିଜୟ ହାସଲ କଲେ ଯଥେଷ୍ଟ ହେବ ନାହିଁ, ଏହା ହୋଇ ମଧ୍ୟ ମାନବବାଦୀ ଜୀବନବୋଧ ଅଭାବରେ ସଭ୍ୟତା ଆତ୍ମହତ୍ୟା କରିପାରେ । ସମ୍ବେଦନଶୀଳ ଜୀବନଦୃଷ୍ଟି ଅଭାବରେ ଯେକୌଣସି ପରାକ୍ରମ ଆଧୁନିକ ପ୍ରଯୁକ୍ତି ଆଧାରରେ ସଭ୍ୟତାର ମୃତ୍ୟୁଘଣ୍ଟି ବଜାଇ ପାରେ । ସୁତରାଂ ବିଚାରଶୀଳତା ଓ ବିବେକବୋଧ ମଧ୍ୟ ଦେଇ ମାନବ ସମାଜର ଏକ ନୈତିକ ଉତ୍ତରଣ ଘଟାଇବା ସଭ୍ୟତାର ଭବିଷ୍ୟତ ପାଇଁ ମହତ୍ତ୍ୱପୂର୍ଣ୍ଣ ମନେହୁଏ । ଜୀବନରେ ସଭ୍ୟ ଓ ମାନବିକ କଲ୍ୟାଣବିଧାନକାରୀ ଆଦର୍ଶଚୟକୁ କେତେ ସାର୍ବଜନୀନ କରାଯାଇ ପାରିବ ତାହା ଏକବିଂଶ ଶତାବ୍ଦୀ ପାଇଁ ଆହ୍ୱାନ ହୋଇ ରହିବ । ଏକ ବିଶ୍ୱଗତ ଜୀବନଦୃଷ୍ଟି ମାନବବାଦୀ ଜୀବନଶ୍ରଦ୍ଧାର ଅନ୍ତର୍ନିହିତ ମୂଲ୍ୟ ଭାବେ ବିଶ୍ୱରେ ଗୃହୀତ ହେବାରେ ଲାଗିଛି । ଦ୍ୱିତୀୟ ବିଶ୍ୱଯୁଦ୍ଧର ଧ୍ୱଂସଦହନ ପରଠାରୁ ମାନବ ସଭ୍ୟତାର ଅସ୍ତିତ୍ୱ ନେଇ ଯେଉଁ ଆଶଙ୍କା ପ୍ରକାଶ ପାଇଛି ତାହାରି ଭିତରୁ ଏକ ମାନବବାଦୀ ବିଶ୍ୱବିବେକର ଭାବନା ଉଦ୍ରେକ ହୋଇଛି । ମିଳିତ ଜାତିସଂଘ ଏକ ଆନ୍ତର୍ଜାତିକ ଚେତନାର ବିକାଶ ଦିଗରେ ପଥପ୍ରଦର୍ଶକ ହୋଇଛି । ଏହା ସହିତ ଏକ ଯୁଦ୍ଧରହିତ ଓ ଦାରିଦ୍ର୍ୟମୁକ୍ତ ମାନବ ସମାଜର ବାସ୍ତବ ରୂପାୟନ ପାଇଁ କେତେକ ଅଭିନବ ପନ୍ଥା ଗ୍ରହଣ କରିଛି । ଅତୀତରେ ଅନେକ ହିଂସା, ଦୌରାତ୍ମ୍ୟ ଓ ଅମାନବିକତାର ଯେଉଁ ପରିବେଶ ରହିଥିଲା ସେଥିରୁ ମାନବ ସମାଜକୁ ମୁକ୍ତ କରିବା ପାଇଁ କେତେ କେତେ ଆନ୍ତରିକତା ବିଶ୍ୱ ସ୍ତରରେ ପ୍ରକାଶ ପାଇଛି । ଏବେ ବି କେତେକ ସମାଜରେ ଅମାନବିକତାର ଅବଶେଷ ଯାହା ସବୁ ରହିଛି ତାର ଦୂରୀକରଣ ପାଇଁ ଅନ୍ତତଃ ସଚେତନତା ବୃଦ୍ଧି ପାଇବାରେ ଲାଗିଛି । ବିଭିନ୍ନ ଦେଶର କିଛି ମହତ୍ତ୍ୱାକାଂକ୍ଷୀ ବ୍ୟକ୍ତି ଏକ ପ୍ରୀତିଭରା ଭ୍ରାତୃତ୍ୱପୂର୍ଣ୍ଣ ବିଶ୍ୱ ପାଇଁ କେତେ ଗମ୍ଭୀର ସଂପୃକ୍ତି ବ୍ୟକ୍ତ କରିବାରେ ଲାଗିଛନ୍ତି । ବିଜ୍ଞାନ ଓ ପ୍ରଯୁକ୍ତିର ଉତ୍ତୁଙ୍ଗ ବିକାଶ ସହ ଯଦି ଅହିଂସା, ନୈତିକତା ଓ ସମ୍ବେଦନଶୀଳତାର ସମନ୍ୱୟ ହୋଇପାରିବ ତେବେ ମାନବସମାଜର ଯେ ପୁନର୍ଜନ୍ମ ହେବ ଏହା ହିଁ ବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରୁ ଚିନ୍ତାରାଜ୍ୟରେ କେତେ ଦିଗନ୍ତ ସୃଷ୍ଟି କରିଛି । ବିଜ୍ଞାନ ଓ ମାନବିକତାର ସମନ୍ୱୟରେ ଏକ ସୁନ୍ଦରତର ବିଶ୍ୱର ରୂପାୟନ ହୋଇପାରିବ – ଏହା ଆମ ସମୟର ବଡ଼ ଉପଲବ୍ଧି ।

ଏ ଯୁଗର ଅନ୍ୟ ଏକ ଉପଲବ୍ଧି ହେଉଛି ଯେ ହିଂସା, ସଂକୀର୍ଣ୍ଣତା ଓ ସାଂପ୍ରଦାୟିକତା ଏକ ଦୁଃଖଦୁର୍ଦ୍ଦଶାର ପୃଥିବୀକୁ ଉଦ୍‌ଭବ କରାଇବା ବେଳେ ସହିଷ୍ଣୁତା, ଭ୍ରାତୃତ୍ୱବୋଧ ଓ ସମ୍ବେଦନଶୀଳ ଜୀବନଦୃଷ୍ଟି ଏକ ପ୍ରୀତିଭରା ବିଶ୍ୱକୁ ରୂପ ଦେଇପାରିବ ।

ଏହି ଅନୁଭବ ମଣିଷର ବିଚାରଶୀଳ ଦୃଷ୍ଟିଭଙ୍ଗୀ ଦ୍ୱାରା ସମର୍ଥିତ ହୋଇ ଏକ ମହତ୍ତର ଜୀବନବୋଧ ଭାବରେ ବିଶ୍ୱରେ ପରିବ୍ୟାପ୍ତ ହେବାରେ ଲାଗିଛି । ତାର ପରିଣାମରୁ ମାନବବାଦୀ ଘୋଷଣାନାମା, ମାନବିକ ଅଧିକାରର ବିଶ୍ୱଘୋଷଣା ପତ୍ର ଓ ପରାର୍ଥବାଦ ବା ଅଲଟ୍ରୁଇଜିମ୍ ବିଶ୍ୱ ସ୍ତରରେ ମହତ୍ତର ଆଦର୍ଶ ଭାବେ ସ୍ୱୀକୃତ ହେବାରେ ଲାଗିଛି । ମାନବବାଦୀ ଘୋଷଣାନାମା ଅନୁଯାୟୀ ଆମ ସୌରମଣ୍ଡଳରେ ପୃଥିବୀ ହେଉଛି ଏକମାତ୍ର ଗ୍ରହ ଯେଉଁଠି ଜୀବଜଗତ ରହିଛି ଓ ସଭ୍ୟତାର ବିକାଶ ଘଟିଛି । ଏହି ସୁନ୍ଦର ପୃଥିବୀ ଓ ମାନବ ସଭ୍ୟତାକୁ ସବୁଦିନ ପାଇଁ ପୃଥିବୀ ବକ୍ଷରେ ସ୍ଥାୟୀ କରିବାର ନୈତିକ ଦାୟିତ୍ୱ ଆମ ସମସ୍ତଙ୍କର । ବିଜ୍ଞାନର ଅପପ୍ରୟୋଗକୁ ବନ୍ଦ କରିବା, ଉଗ୍ର ଜାତୀୟତାବାଦୀ ଭାବଧାରାକୁ ପରିହାର କରିବା ଓ ସକଳ ସାଂପ୍ରଦାୟିକ ବିଭାଜନକୁ ପରିତ୍ୟାଗ କରିବା ଦ୍ୱାରା ବିଶ୍ୱରେ ଏକ ସାଂସ୍କୃତିକ ଜାଗରଣ ଆସିପାରିବ । ପୃଥିବୀକୁ ଗୋଟିଏ ରାଜନୈତିକ ବୁଝାମଣା ଭିତରକୁ ଆଣିବା ପାଇଁ ଉଦ୍ୟମ କରିବା, ସବୁ ମଣିଷଙ୍କର କଲ୍ୟାଣକୁ ପ୍ରାଧାନ୍ୟ ଦେବା, ପରିବେଶର ସୁରକ୍ଷା କରିବା ଓ ଜନସଂଖ୍ୟାର ନିୟନ୍ତ୍ରଣ କରିବା କେବଳ ଆନ୍ତର୍ଜାତିକ ଉଦ୍ୟମରେ ସମ୍ଭବ ହୋଇପାରିବ । ଏଥିପାଇଁ ହୁଏତ କିଛି ଉଦ୍‌ବେଳନ ଆସିପାରେ କିନ୍ତୁ ଏହି ମହତ୍ତ୍ୱାକାଂକ୍ଷା ଗୁଡ଼ିକ ମାନବିକ ପ୍ରୟାସରେ ରୂପରେଖ ନେଇପାରିବ । ସେହିପରି ମାନବିକ ଅଧିକାରର ବିଶ୍ୱଘୋଷଣା କ୍ଷେତ୍ରରେ ଯେଉଁ ଭାବଧାରା ବ୍ୟକ୍ତ ହୋଇଛି ତାହା ଭିତରେ ବିଶ୍ୱ ମାନବିକତାର ପ୍ରତିଫଳନ ଦେଖିବାକୁ ମିଳେ । ଅତୀତରେ କେତେ କେତେ ପ୍ରକାରର ଭେଦଭାବ, ଦାସତ୍ୱ, ଉଗ୍ରମନ୍ୟତା ଓ ହୀନମନ୍ୟତା ସଂସାରରେ ତିଷ୍ଠି ରହିଥିଲା । ମାନବିକ ଅଧିକାର ନେଇ ଯେଉଁ ଘୋଷଣାନାମା ଆନ୍ତର୍ଜାତିକ ସ୍ତରରେ ସ୍ୱୀକୃତ ହେଲା ତାହା ସଭ୍ୟତାର ଇତିହାସରେ ଏକ ମହତ୍ତ୍ୱପୂର୍ଣ୍ଣ ଘଟଣା । ପ୍ରତ୍ୟେକ ବ୍ୟକ୍ତିର ଜୀବନର ମୂଲ୍ୟ ରହିଛି ଓ ଜାତି, ଧର୍ମ, ଜାତୀୟତା, ବର୍ଣ୍ଣ, ଲିଙ୍ଗ, ଭାଷା ଇତ୍ୟାଦି ନିର୍ବିଶେଷରେ ପ୍ରତ୍ୟେକ ବ୍ୟକ୍ତି ଏକ ମର୍ଯ୍ୟାଦାପୂର୍ଣ୍ଣ ଜୀବନ ବଞ୍ଚିବା ତାର ଏକ ପ୍ରାକୃତିକ ଅଧିକାର । ମାନବିକ ଅଧିକାରକୁ ସୁରକ୍ଷା ଦେବା ସହ ଜନମଙ୍ଗଳକାରୀ ଆଭିମୁଖ୍ୟକୁ ପ୍ରତ୍ୟେକ ରାଷ୍ଟ୍ର ଗ୍ରହଣ କରିବା ବିଶ୍ୱ ଦୃଶ୍ୟପଟରେ ଏକ ସାଂସ୍କୃତିକ ଉତ୍ତରଣ କହିଲେ ଅତ୍ୟୁକ୍ତି ହେବ ନାହିଁ । ପରାର୍ଥବାଦ ଏକ ନୈତିକ ଜୀବନବୋଧ ଯାହା ଆତ୍ମକୈନ୍ଦ୍ରିକ ଭାବନା ବା ସ୍ୱହିତବାଦର ପରିପନ୍ଥୀ । ପ୍ରତ୍ୟେକ ବ୍ୟକ୍ତି ନିଜ ଜବନର ସମସ୍ତ ଆବଶ୍ୟକତା ସମାଜରୁ ପାଏ ଓ ସମାଜ ହିଁ ତାକୁ ନିରାପତ୍ତା ଯୋଗାଏ । ପ୍ରତିବଦଳରେ ପ୍ରତ୍ୟେକ ବ୍ୟକ୍ତି ଏକ ବୃହତ୍ତର ସମାଜ ପାଖରେ ଉତ୍ତରଦାୟୀ । ବୃହତ୍ତର ସମାଜର ମଙ୍ଗଳ ପାଇଁ କିଛି

ତ୍ୟାଗର ମନୋଭାବ ରଖିବା ଓ ନିଜର ସମ୍ବେଦନଶୀଳତାକୁ ଏକ ବୃହତ୍ତର ଗୋଷ୍ଠୀ ପ୍ରତି ପ୍ରସାରିତ କରିବା ହେଉଛି ପରାର୍ଥବାଦୀ ଜୀବନବୋଧର ମହତ୍ତ୍ୱ । ଏହାର ନୈତିକ ଆଭିମୁଖ୍ୟଟି ହେଉଛି ଯେ ଆପଣଙ୍କର ଅନ୍ୟମାନଙ୍କଠାରୁ ଯେଉଁ ପ୍ରତ୍ୟାଶା ରହିଛି, ପ୍ରତିବଦଳରେ ଆପଣ ମଧ୍ୟ ସେହିପରି ଆଚରଣ ଅନ୍ୟ ପ୍ରତି ଦେଖାଇବା ଆବଶ୍ୟକ । ଆପଣ କୌଣସି ଅସୁବିଧାରେ ଥିବାବେଳେ ଆପଣ ଯଦି ଚାହାନ୍ତି ଯେ ଅନ୍ୟମାନେ ଆପଣଙ୍କୁ ସହଯୋଗ କରନ୍ତୁ ସେହିପରି ଅନ୍ୟର ଅସୁବିଧା ସମୟରେ ତାଙ୍କୁ ସହଯୋଗର ହାତ ବଢ଼ାଇବା ଏକ ମାନବୋଚିତ କାର୍ଯ୍ୟ ଓ ତାହା ହିଁ ପରାର୍ଥବାଦ ।

ଏହିସବୁ ମୂଲ୍ୟବୋଧମାନ ଉତ୍ତମ ଜୀବନ ନେଇ ବିଚାରବୋଧଜନିତ ଅନୁଶୀଳନରୁ ଉଦ୍‌ଭବ ହୋଇଛି । ଜୀବନର ପ୍ରକୃତ ସାର୍ଥକତା କେଉଁଥିରେ ନିହିତ - ଏହି ପ୍ରଶ୍ନକୁ ବିଭିନ୍ନ ଦୃଷ୍ଟିରୁ ସଭ୍ୟତାରେ ଆଲୋଚନା କରାଯାଇଛି । ଧର୍ମମାନଙ୍କ ପରିସରରେ ପାରଲୌକିକ ସ୍ଥିତି ନେଇ କେତେ କେତେ ଚମତ୍କାର କଳ୍ପନାର ଚିତ୍ର ରହିଛି । ମୁକ୍ତି, ମୋକ୍ଷ, ନିର୍ବାଣ, ସ୍ୱର୍ଗପ୍ରାପ୍ତି ପରି ପାରଲୌକିକ ଭାବନା କେତେ କେତେ ଭାବରେ ଜୀବନଧାରାକୁ ଅତୀତରେ ପ୍ରଭାବିତ କରିଛି । ସାଂପ୍ରତିକ ଯୁଗର ବିଚାରଶୀଳତାରେ ଧାର୍ମିକ କଳ୍ପନା ବା ଆବେଗ ପରିବର୍ତ୍ତେ ଏକ ସୁଖକର ଓ ଶାନ୍ତିପୂର୍ଣ୍ଣ ବିଶ୍ୱକୁ ପ୍ରାଧାନ୍ୟ ଦିଆଯାଉଛି । ବ୍ୟକ୍ତି ମରଣଶୀଳ, କିନ୍ତୁ ମାନବସମାଜ ଏକ ଚିରସ୍ଥାୟୀ ଅନୁଷ୍ଠାନ । ଆମର ଆଚରଣ ଓ ଜୀବନବୋଧ ଏପରି ହେବା ଆବଶ୍ୟକ ତାହା ଆମର ଶାନ୍ତିପୂର୍ଣ୍ଣ ସହାବସ୍ଥାନ ସହ ଭବିଷ୍ୟତ ପିଢ଼ି ପାଇଁ ମଧ୍ୟ ସୁଖପ୍ରଦ ଓ ଶାନ୍ତିପ୍ରଦ ହୋଇପାରିବ । ଏକ ଶାନ୍ତିପୂର୍ଣ୍ଣ ଓ ପ୍ରୀତିଭରା ବିଶ୍ୱରେ ଜୀବନ ଅଧିକ ସୁଖପ୍ରଦ ଓ ଦୁଃଖରହିତ ଯେ ହୋଇପାରିବ ଏହି ଭାବନା ଆମ ସମୟର ଏକ ସାର୍ବଜନୀନ ଉପଲବ୍ଧି । ପୃଥିବୀର ରାଷ୍ଟ୍ରସମୂହ ଭିତରେ ଶାନ୍ତିପୂର୍ଣ୍ଣ ସହାବସ୍ଥାନ ଭାବନା ଯେତେ ଦୃଢ଼ ଭିତ୍ତି ନେବ ଓ ପୃଥିବୀରୁ ସାମରିକ ବ୍ୟୟ ସଙ୍କୁଚିତ ହୋଇ ଆସିବ ତାହା ପୃଥିବୀରୁ ସକଳ ଦାରିଦ୍ର୍ୟର ମୂଳୋତ୍ପାଟନ ପାଇଁ ସହାୟକ ହୋଇପାରିବ ।

ବିଂଶ ଶତାବ୍ଦୀର ଜଣେ ବିଶିଷ୍ଟ ଦାର୍ଶନିକ ଓ ନୋବେଲ ପୁରସ୍କାର ବିଜେତା ଲେଖକ ବର୍ଟ୍ରାଣ୍ଡ ରସେଲ (୧୮୭୨-୧୯୭୦) ମାନବିକ ଉତ୍କର୍ଷ ସାଧନ କ୍ଷେତ୍ରରେ ଦୁଇଟି ଗୁଣ ଉପରେ ବହୁ ପ୍ରାଧାନ୍ୟ ଦେଇଛନ୍ତି । ସେହି ଗୁଣ ଦୁଇଟି ହେଲା ସମ୍ବେଦନଶୀଳ ଅନୁଭବ ଓ ସତ୍ୟ ପ୍ରତି ଅନୁରାଗ । ବ୍ୟକ୍ତି ଓ ଗୋଷ୍ଠୀ ପ୍ରତ୍ୟେକ ସ୍ତରରେ ସମ୍ବେଦନଶୀଳ ଜୀବନଦୃଷ୍ଟି ମାନବ ସମାଜର ନୈତିକ ଉତ୍କର୍ଷ ପାଇଁ ମୁଖ୍ୟ ଆଧାର ହୋଇଥାଏ । ଏହାର

ଅଭାବରେ ଘୃଣା, ହିଂସା, ଅସହିଷ୍ଣୁତା, ବିଦ୍ୱେଷ ଇତ୍ୟାଦି ମନୋଭାବ ସୃଷ୍ଟି ହୁଏ । ଅତୀତରେ ଏହି ମନୋଭାବ ସଂସାରରେ ନାନା ଅତ୍ୟାଚାର, ଉତ୍ପୀଡନକୁ ପ୍ରଶ୍ରୟ ଦେବା ସହ ବହୁ ଦୁଃଖ, ଦୁର୍ଦ୍ଦଶାର କାରଣ ହୋଇଛି । ସେହିପରି ସତ୍ୟ ପ୍ରତି ଅନୁରାଗ ସଭ୍ୟତାର ବିକାଶରେ ନିର୍ଣ୍ଣାୟକ ମନେ ହୋଇଛି । ଯେଉଁଠି ଅସତ୍ୟ, ଅବୈଜ୍ଞାନିକ ମନୋଭାବ ଓ ରୁଦ୍ଧ ମାନସିକତା ପ୍ରାଧାନ୍ୟ ନିଏ ତାହା ଅଜ୍ଞତାର ବାୟୁମଣ୍ଡଳ ସୃଷ୍ଟି କରେ । ଅଜ୍ଞତା, ଅପବିଶ୍ୱାସ ଓ ଅହେତୁକ ମାନସିକତା ଜୀବନର ଗୁଣାତ୍ମକ ବିକାଶରେ ବଡ଼ ପ୍ରତିବନ୍ଧକ ହୋଇଥାଏ ।

ଉପସଂହାରରେ, ଏହି ସବୁ ମୂଲ୍ୟାଚୟ ଗଭୀର ଅନୁଶୀଳନରୁ ଚିନ୍ତା ରାଜ୍ୟରେ ନୂତନ ଦିଗନ୍ତର ସୂତ୍ରପାତ କରିଛି । ମୁକ୍ତଚିନ୍ତନ ଓ ବିଚାରଶୀଳତା ମଧ୍ୟ ଦେଇ ଯେଉଁ ଭାବନା ମାନ ଚିନ୍ତାରାଜ୍ୟରେ ଆଲୋଡନ ସୃଷ୍ଟି କରିଛି ତାହାର ଯେ ସୁଦୂରପ୍ରସାରୀ ପ୍ରଭାବ ରହିଛି ଏହା ନିଃସନ୍ଦେହ ମନେହୁଏ । ଏକ ଆଦିମ ଅବସ୍ଥାରୁ ଆରମ୍ଭ ହୋଇଥିବା ମଣିଷର ଯାତ୍ରା କେତେ କେତେ ଆହ୍ୱାନ, ଘାତ, ପ୍ରତିଘାତ, ମାନବିକ ହିଂସା, କ୍ରୂରତା ଓ ବର୍ବରତାର ସ୍ତର ଦେଇ ଆଜିର ସ୍ଥିତିକୁ ଆସିଛି । ଆମର ବିଚାରଶୀଳତା ମଧ୍ୟ ଦେଇ ଯେଉଁ ସବୁ ଜୀବନବୋଧ ଓ ମୂଲ୍ୟବୋଧର ଭାବନାମାନ ବିକଶିତ ହୋଇଛି ତାହା ମାନବ ସଭ୍ୟତାର ନୈତିକ ଓ ସାଂସ୍କୃତିକ ଉତ୍ତରଣରେ ଯେ ନିର୍ଣ୍ଣାୟକ ଭୂମିକା ନେବ ଏହା ଆଶା କରାଯାଏ । ଏହା ଯେତେ ଅଧିକ ସାର୍ବଜନୀନ ହେବ, ଜୀବନର ଗୁଣାତ୍ମକ ମାନ ସେତେ ଉନ୍ନତ ହେବ ବୋଲି କେତେକ ଭାବନା ଚିନ୍ତାରାଜ୍ୟରେ ନୂତନ ଦିଗନ୍ତର ସୂଚନା ଦେଉଛି ।



# ଗଣତାନ୍ତ୍ରିକ ମୂଲ୍ୟବୋଧ : ଏକ ଦୃଷ୍ଟିପାତ

ମାନବ ସଭ୍ୟତାର କ୍ରମବିକାଶର ଏକ ସୁଦୀର୍ଘ ଇତିହାସ ରହିଛି । ଆଧୁନିକ ଜ୍ଞାନବିଜ୍ଞାନ, ପ୍ରଯୁକ୍ତି କ୍ଷେତ୍ରରେ ବିଗତ ଦୁଇ ଶତାବ୍ଦୀ ମଧ୍ୟରେ ଯେପରି ବହୁ ଉଲ୍ଲେଖନୀୟ ଅଗ୍ରଗତି ଘଟିଛି, ସେହିପରି ସାମାଜିକ ବ୍ୟବସ୍ଥା ଓ ରାଜନୈତିକ ଢ଼ାଂଚାରେ ମଧ୍ୟ ବହୁ ବୈପ୍ଳବିକ ପରିବର୍ତ୍ତନ ସଂଘଟିତ ହୋଇଛି । ୟୁରୋପୀୟ ନବଜାଗରଣ ବା ରିନାଁସା ଓ ଏନଲାଇଟେନମେଣ୍ଟ ପରେ ମାନବୀୟ ଚିନ୍ତା ଚେତନାରେ ତୁମୁଳ ପରିବର୍ତ୍ତନମାନ ଆସିଛି । ରାଜତନ୍ତ୍ର, ସାମନ୍ତବାଦ ଓ ସଂଭ୍ରାନ୍ତବାଦ ଅତୀତରେ ସବୁ ଦେଶରେ ଓ ସଭ୍ୟତାରେ ରହିବା ଏକ ଐତିହାସିକ ସତ୍ୟ । ଏସବୁ ଭାବଧାରା ପଶ୍ଚାତରେ ଏହି ବିଚାର ରହିଥିଲା ଯେ ସମାଜର କିଛି ବ୍ୟକ୍ତିଙ୍କର ଜୀବନର ମୂଲ୍ୟ ଓ ମହତ୍ତ୍ୱ ଅନ୍ୟମାନଙ୍କଠାରୁ ଅଧିକ, ଅର୍ଥାତ୍ ସବୁ ମଣିଷଙ୍କର ଜୀବନର ମୂଲ୍ୟ କେବେ ସମାନ ହୋଇପାରିବ ନାହିଁ । ବହୁ ଭେଦଭାବ ସମାଜରେ ରହିଥିଲା ଓ ତାହା ଯେ ଦୈବୀବିଧାନ ଏହା ବି ବିଶ୍ୱାସ କରାଯାଉଥିଲା । ରଙ୍ଗଭେଦ, ଲିଙ୍ଗଭେଦ, ଜାତିଭେଦ ଇତ୍ୟାଦି ଆଧାରରେ କେତେ କେତେ ଉଚ୍ଚ-ନୀଚ ଭାବନା ସମାଜରେ ପରିବ୍ୟାପ୍ତ ହୋଇ ରହିଥିଲା । ସେହିପରି ଶିଳ୍ପବିପ୍ଳବ ଓ ସମୁଦ୍ର ଯାତ୍ରାଜନିତ ଜ୍ଞାନକୌଶଳରୁ କେତେକ ଦେଶ ସାମ୍ରାଜ୍ୟବାଦର ବିସ୍ତାର କରି ଅନ୍ୟ ଦେଶମାନଙ୍କୁ କବଳିତ କରିବାର କାହାଣୀ ମଧ୍ୟ ସୁବିଦିତ । ଏକଛତ୍ରବାଦ ଓ ରାଜତନ୍ତ୍ର ବହୁ ଶତାବ୍ଦୀ ଧରି ପୃଥିବୀର ବହୁ ଦେଶରେ ପ୍ରଚଳିତ ଥିବା ଏକ ଐତିହାସିକ ଉପଲବ୍ଧ । ଏହି ପୃଷ୍ଠଭୂମିରେ ଗଣତାନ୍ତ୍ରିକ ବିଚାରବୋଧର ବିକାଶ ସଭ୍ୟତାର ଇତିହାସରେ ଏକ ନୈତିକ ଉତ୍ତରଣ ଭାବରେ ଆସିଥିବା ମନେହୁଏ । ବ୍ୟକ୍ତି ସ୍ୱାଧୀନତା, ସାମାଜିକ ନ୍ୟାୟ, ମାନବିକ ଅଧିକାର, ସମତାର ଭାବ ମୂଲ୍ୟଚୟ ମାନ ମାନବବାଦୀ ଜୀବନବୋଧରୁ କ୍ରମବିକଶିତ ହେବା ଉଲ୍ଲେଖନୀୟ ଘଟଣା କହିଲେ ଅତ୍ୟୁକ୍ତି ହେବ ନାହିଁ । ଏହିସବୁ ମୂଲ୍ୟଚୟ ଗଣତାନ୍ତ୍ରିକ ବିଚାରବୋଧ ସହ ଅଙ୍ଗାଙ୍ଗୀ ଭାବେ ସଂଶ୍ଳିଷ୍ଟ ।

ଏହା ଅନସ୍ୱୀକାର୍ଯ୍ୟ ଯେ ଗଣତନ୍ତ୍ରର ଢ଼ାଂଚା ଓ ପରିଭାଷା ସମୟକୁ ସମୟ ବଦଳି ଚାଲିଛି । ସାଂପ୍ରତିକ ଅବବୋଧରେ ଏହା ଏକ ରାଜନୈତିକ ଶାସନ ବ୍ୟବସ୍ଥା ଓ ନାଗରିକ ସମାଜର କେତେକ ମୂଲ୍ୟବୋଧର ସୂଚନା ଦେଇଥାଏ । ଗଣତାନ୍ତ୍ରିକ ଶାସନ

ବ୍ୟବସ୍ଥା ବହୁ ପ୍ରାଚୀନ ସମୟରୁ ପ୍ରବର୍ତ୍ତିତ ଥିବା କୁହାଯାଏ । ଏହି ପରିପ୍ରେକ୍ଷୀରେ କୁହାଯାଇଥାଏ ଯେ ପ୍ରାଚୀନ ଗ୍ରୀକ୍ ସଭ୍ୟତାରେ ଏଥେନୀୟ ସାଧାରଣତନ୍ତ୍ର ମାନଙ୍କରେ ଓ ଭାରତବର୍ଷର ପଞ୍ଚାୟତ ବ୍ୟବସ୍ଥାରେ ଗଣତନ୍ତ୍ର ରହିଥିଲା । ଲୋକମାନେ ସମବେତ ହୋଇ ସାମୂହିକ ଭାବରେ ନିଜ ସାଧାରଣତନ୍ତ୍ର ବା ଗ୍ରାମ ପାଇଁ ନିଷ୍ପତ୍ତିମାନ ନେଉଥିଲେ । ଯେଉଁ ଯୁଗରେ ଗ୍ରୀସ୍‌ରେ ସାଧାରଣତନ୍ତ୍ରମାନ ରହିଥିଲା, ସେହି ସମୟରେ ସେଠାରେ ଦାସତ୍ୱ ପ୍ରଥା ମଧ୍ୟ ବଳବତ୍ତର ଥିଲା । ଦାସମାନଙ୍କର ଓ ମହିଳାମାନଙ୍କର କୌଣସି ମତଦେବାର ଅଧିକାର ନଥିଲା, ଯେଉଁମାନଙ୍କର ଲୋକସଂଖ୍ୟା ଅଧାରୁ ବହୁ ଅଧିକା ରହିଥିଲା । ସେହିପରି ଭାରତୀୟ ସମାଜ ବହୁ ଅତୀତରୁ ଏକ ଜାତିଭିତ୍ତିକ ଭେଦଭାବମୂଳକ ସମାଜ ହୋଇ ରହିଥିଲା ଯେଉଁଠି ଦଳିତ, ଶୂଦ୍ରମାନଙ୍କର ସର୍ବନିମ୍ନ ମାନବିକ ଅଧିକାର ମଧ୍ୟ ରହିନଥିଲା । ସୁତରାଂ ଆଧୁନିକ ମାନଦଣ୍ଡରୁ ସେସବୁକୁ ଗଣତନ୍ତ୍ର କହିବା ସମୀଚୀନ ହେବ କି ?

ଊନବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ଗଣତନ୍ତ୍ରର ଜନନୀ କୁହାଯାଉଥିବା ଇଂଲଣ୍ଡରେ ରାଜାଙ୍କର ନିରଙ୍କୁଶ କ୍ଷମତା ରହିଥିଲା । ସଂସଦ ଥିଲା କେବଳ ଏକ ଆଇନ ପ୍ରଣୟନକାରୀ ସଭା । ସେ ସମୟରେ ଗଣତନ୍ତ୍ରର ଅର୍ଥ ଥିଲା ରାଜାଙ୍କର କ୍ଷମତାକୁ ନିୟନ୍ତ୍ରଣ କରିବା । ତେବେ ଊନବିଂଶ ଶତାବ୍ଦୀରେ ଇଂଲଣ୍ଡରେ ଏକ ସଂସ୍କାର ଆଇନ୍ ପାରିତ ହୋଇ ରାଜାଙ୍କର କ୍ଷମତାକୁ ସଙ୍କୁଚିତ କରାଯାଇ ସଂସଦୀୟ ଗଣତନ୍ତ୍ରର ଭିତ୍ତି ଦୃଢ଼ ଭିତ୍ତି ନେଇଥିଲା । ଅବଶ୍ୟ ଅଧିକାଂଶ ୟୁରୋପୀୟ ଦେଶମାନଙ୍କରେ ଗଣତନ୍ତ୍ର ରହିଥିଲେ ବି ମହିଳାମାନଙ୍କର ଓ ସଂପତ୍ତିବାଡି ନଥିବା ପୁରୁଷମାନଙ୍କର ବିଂଶଶତାବ୍ଦୀ ପର୍ଯ୍ୟନ୍ତ ଭୋଟ ଦେବାର ଅଧିକାର ନଥିଲା । ଏହି ପରିପ୍ରେକ୍ଷୀରେ ଗଣତାନ୍ତ୍ରିକ ବ୍ୟବସ୍ଥାର ବିକାଶ କ୍ଷେତ୍ରରେ ଫରାସୀ ରାଷ୍ଟ୍ରବିପ୍ଳବ ଥିଲା ଏକ ଯୁଗାନ୍ତକାରୀ ଘଟଣା । ୧୭୮୯ ରୁ ୧୭୯୯ ପର୍ଯ୍ୟନ୍ତ ଫ୍ରାନ୍‌ସରେ କେତେକ ଦାର୍ଶନିକମାନଙ୍କର ବିଚାରଧାରାକୁ ନେଇ ରାଜତନ୍ତ୍ରର ବିଲୋପ ସହ ନାଗରିକ ଅଧିକାର ନେଇ ଯେଉଁ ଗଣବିପ୍ଳବ ସଂଘଟିତ ହୋଇଥିଲା, ଗଣତାନ୍ତ୍ରିକ ବିଚାରବୋଧର ବିକାଶରେ ତାହା ଥିଲା ଉଲ୍ଲେଖନୀୟ । ନାଗରିକମାନଙ୍କ ଭିତରେ ସ୍ୱାଧୀନତା, ସମାନତା ଓ ଭ୍ରାତୃତ୍ୱଭାବକୁ ରାଷ୍ଟ୍ରୀୟ ଆଦର୍ଶ ଭାବରେ ସାମ୍ବିଧାନିକ ସ୍ୱୀକୃତି ଦିଆଗଲା । ଧୀରେ ଧୀରେ ସ୍ୱେଚ୍ଛାଚାରୀ ରାଜତନ୍ତ୍ର, ପୁରୁଷାନୁକ୍ରମିକ ଶାସନ ବ୍ୟବସ୍ଥା ଓ ଏକଛତ୍ରବାଦ ବିରୁଦ୍ଧରେ ସାମାଜିକ ଚେତନା ବୃଦ୍ଧି ପାଇବାକୁ ଲାଗିଲା । ସେହିପରି ଦ୍ୱିତୀୟ ବିଶ୍ୱଯୁଦ୍ଧପରେ ସାମ୍ରାଜ୍ୟବାଦ ବିରୋଧରେ ବିଭିନ୍ନ ପରାଧୀନ ଦେଶମାନଙ୍କରେ ଜନଜାଗରଣ ସୃଷ୍ଟି ହେଲା । ସାମ୍ରାଜ୍ୟବାଦ କବଳରେ ପରାଧୀନ ଥିବା ଦେଶମାନ ରାଜନୈତିକ ସ୍ୱାଧୀନତା କାଳକ୍ରମେ ହାସଲ କଲେ ଓ ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥାକୁ ଗ୍ରହଣ କରିବାକୁ ଲାଗିଲେ ।

ଜନମଙ୍ଗଳକାରୀ ଆଭିମୁଖ୍ୟ ଗୁଡିକ ଗଣତାନ୍ତ୍ରିକ ବ୍ୟବସ୍ଥାର ଅନ୍ତର୍ନିହିତ ଆଦର୍ଶ ହେବାକୁ ଲାଗିଲା ।

ରାଜନୈତିକ ବିଚାର ସ୍ତରରେ ରାଜନୀତିବିଜ୍ଞାନୀ, ସମାଜଶାସ୍ତ୍ରୀ ଓ ଦାର୍ଶନିକମାନେ ଗଣତନ୍ତ୍ରର ମୌଳିକ ଆଦର୍ଶଗୁଡିକ ଉପରେ ବିଚାରମାନ ବ୍ୟକ୍ତ କରିବାକୁ ଲାଗିଲେ । ଏହି ଧାରାରେ ଗଣତନ୍ତ୍ରର ବୈଚାରିକ ଭିତ୍ତିଟି ସୁଦୃଢ଼ ହେବା ଦେଖାଯାଏ । ଅବଶ୍ୟ ଗଣତାନ୍ତ୍ରିକ ବ୍ୟବସ୍ଥାରେ ଢ଼ାଂଚାଗତ ପାର୍ଥକ୍ୟମାନ ରହିଥିଲେ ବି ଏହ ପଶ୍ଚାତର ସୈଦ୍ଧାନ୍ତିକ ଭିତ୍ତିଟି ଦୃଢ଼ ହୋଇଥିବା ମନେହୁଏ । ଗଣତନ୍ତ୍ର କହିଲେ ପ୍ରକୃତରେ କ'ଣ ବୁଝାଯାଏ କିମ୍ବା ଏହାର ସଂଜ୍ଞା କ'ଣ ହୋଇପାରେ ? କେତେକ ମତ ଦେଇଥାନ୍ତି ଯେ ଜନଗଣଙ୍କ ଦ୍ୱାରା ନିର୍ବାଚିତ ପ୍ରତିନିଧି ମାନେ ବିଚାର ବିମର୍ଶ ମାଧ୍ୟମରେ ସରକାର ପରିଚାଳନା କରିବା ହିଁ ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥା । ଏହି ଶାସନ ବ୍ୟବସ୍ଥାରେ ଲୋକମତ ହିଁ ସାର୍ବଭୌମ ଓ ଜନଗଣଙ୍କ ଦ୍ୱାରା ମନୋନୀତ ପ୍ରାର୍ଥୀ ଓ ପ୍ରତିନିଧିମାନେ ଆଲୋଚନା ମାଧ୍ୟମରେ ଦେଶର ରାଜନୀତିକୁ ପରିଚାଳନା କରିଥାନ୍ତି । ଆମେରିକୀୟ ସମାଜରୁ ଦାସତ୍ୱ ପ୍ରଥାର ବିଲୋପ କରିଥିବା ରାଷ୍ଟ୍ରପତି ଆବ୍ରାହମ ଲିଙ୍କନ (୧୮୦୯-୧୮୬୫) ଗେଟିସବର୍ଗ ଭାଷଣରେ ଗଣତନ୍ତ୍ର ବିଷୟରେ ଯାହା କହିଥିଲେ ତାହାକୁ ବହୁ ସମୟରେ ଉଦ୍ଧାର କରାଯାଏ । ସେ କହିଥିଲେ ଯେ ଗଣତନ୍ତ୍ର ହେଉଛି ଲୋକମାନଙ୍କର, ଲୋକମାନଙ୍କ ଦ୍ୱାରା ଓ ଲୋକମାନଙ୍କ ପାଇଁ ଏକ ସରକାରୀ ବ୍ୟବସ୍ଥା । ଅନ୍ୟ କେତେଜଣ ମତ ଦେଇଥାନ୍ତି ଯେ ଦେଶର ଅର୍ଥନୈତିକ ଓ ସାମାଜିକ ବ୍ୟବସ୍ଥାରେ ଅହିଂସାତ୍ମକ ପନ୍ଥାରେ କ୍ରାନ୍ତିକାରୀ ପରିବର୍ତ୍ତନ ଆଣିବାକୁ ପ୍ରୟାସ କରୁଥିବା ସରକାରୀ ବ୍ୟବସ୍ଥା ହିଁ ଗଣତାନ୍ତ୍ରିକ ପ୍ରକ୍ରିୟାର ମୂଳ ଲକ୍ଷ୍ୟ । ଗଣତନ୍ତ୍ରର ସଂଜ୍ଞା ଯାହା ହେଉନା କାହିଁକି ଯେଉଁଠି ସାଧାରଣତନ୍ତ୍ରର ପ୍ରତିଷ୍ଠା ହୁଏ, ସେଠାରେ ଗଣତନ୍ତ୍ର ରହିଥାଏ । ଏକ ସାଧାରଣତନ୍ତ୍ର ବା ରିପବ୍ଲିକ୍‌ରେ ଶାସନଗତ ଢ଼ାଂଚାଟି ସଂସଦୀୟ ହୋଇପାରେ ବା ରାଷ୍ଟ୍ରପତି ଶାସନ ବ୍ୟବସ୍ଥା ହୋଇପାରେ । ତେବେ ଶାସନ ଢ଼ାଂଚାଟି ଯାହା ହେଲେ ମଧ୍ୟ ସମୟ ବ୍ୟବଧାନରେ ଜନଗଣ ସାବାଳକ ଭୋଟ ମାଧ୍ୟମରେ ସରକାର ମନୋନୀତ କରନ୍ତି । ସଂସଦୀୟ ଗଣତନ୍ତ୍ରରେ ସାଂସଦର ସଭ୍ୟମାନଙ୍କୁ ଲୋକମାନେ ନିର୍ବାଚିତ କରନ୍ତି କିମ୍ବା ରାଷ୍ଟ୍ରପତିମୂଳକ ଶାସନତନ୍ତ୍ରରେ ସେହି ଜନଗଣ ହିଁ ରାଷ୍ଟ୍ରପତିଙ୍କୁ ବହୁମତ ଆଧାରରେ ମନୋନୀତ କରିଥାନ୍ତି । ମୋଟଉପରେ କହିଲେ ଗଣତନ୍ତ୍ର ଏକ ରାଜନୈତିକ ସାଧନ ଯାହା ମାଧ୍ୟମରେ ଏକ ଦେଶର ଶାସନ ସଂଚାଳିତ ହୋଇଥାଏ । ଏହି ଶାସନ ପଦ୍ଧତିରେ ଜନମତର ଗଭୀର ପ୍ରଭାବ ରହିଥାଏ, କାରଣ ଲୋକମାନେ ହିଁ ନିର୍ଦ୍ଦିଷ୍ଟ ସମୟ ବ୍ୟବଧାନରେ ସରକାରକୁ ନିର୍ବାଚିତ କରିଥାନ୍ତି ।

ଏକ ଗଣତାନ୍ତ୍ରିକ ବ୍ୟବସ୍ଥାରେ ସରକାର କହିଲେ ମୁଖ୍ୟତଃ ତିନୋଟି ବିଷୟ ଆସିଥାଏ ଯଥା ବ୍ୟବସ୍ଥାପକ ସଭା, ପ୍ରଶାସନ ଓ ବିଚାର ବିଭାଗ । ବ୍ୟବସ୍ଥାପକ ସଭାର ସଭ୍ୟମାନେ (ସଂସଦ ହେଉ ବା ବିଧାନ ସଭାମାନ ହେଉ) ଦେଶ ପାଇଁ ନିଜର ପରିସର ଭିତରେ ଆଇନ କାନୁନ ପ୍ରଣୟନ କରିଥାନ୍ତି । ସରକାର ଯେଉଁ ଆଇନ ପ୍ରଣୟନ କଲେ ସେହି ଆଇନକୁ କାର୍ଯ୍ୟକାରୀ କରିବା ପ୍ରଶାସନର ଆଭିମୁଖ୍ୟ ଅଟେ । ପ୍ରଶାସନିକ ଅଧିକାରୀ ମାନେ ସରକାରୀ କର୍ମଚାରୀ, ସରକାର ନିର୍ବିଶେଷରେ ସେମାନେ ସରକାରଙ୍କ ନିର୍ଦ୍ଧାରିତ ନିୟମ ଓ ଆଇନକୁ କାର୍ଯ୍ୟକାରୀ କରିଥାନ୍ତି । ଏକ ଗଣତାନ୍ତ୍ରିକ ବ୍ୟବସ୍ଥାରେ ଏକ ସ୍ୱାଧୀନ ବିଚାର ବିଭାଗ ରହିଥାଏ । ସମାଜରୁ ଯେକୌଣସି ପ୍ରକାରର ଅନ୍ୟାୟ, ଅପରାଧକୁ ବିଚାର କରି ସେଥିପାଇଁ ଦଣ୍ଡବିଧାନ କରିବା ଓ ଜନଗଣଙ୍କୁ ନ୍ୟାୟ ଦେବାରେ ବିଚାରାଳୟ ଗୁରୁତ୍ୱପୂର୍ଣ୍ଣ ଭୂମିକା ନେଇଥାଏ । ପ୍ରଶାସନ ସରକାରୀ ନିୟନ୍ତ୍ରଣ ଭିତରେ କାର୍ଯ୍ୟ କରିଥାଏ କିନ୍ତୁ ବିଚାରବିଭାଗ ଏକ ସ୍ୱୟଂଶାସିତ ବ୍ୟବସ୍ଥା ଭାବେ ଲୋକମାନଙ୍କ ମଧ୍ୟରେ ନ୍ୟାୟ ପ୍ରତିଷ୍ଠା କରିବାକୁ ଲକ୍ଷ୍ୟ ରଖିଥାଏ । ବିଚାର ବିଭାଗ ମୁକ୍ତ ଓ ନିରପେକ୍ଷ ଭାବରେ କାର୍ଯ୍ୟ କରିବାକୁ ଏହାକୁ ଗଣତାନ୍ତ୍ରିକ ବ୍ୟବସ୍ଥାରେ ସ୍ୱାବଲମ୍ବନଶୀଳତା ଦିଆଯିବା ମନେହୁଏ । ଏତ୍‌ଦବ୍ୟତୀତ ଏକ ଗଣତାନ୍ତ୍ରିକ ବ୍ୟବସ୍ଥାରେ ଏକ ସ୍ୱାଧୀନ ଗଣମାଧ୍ୟମର ବିଶେଷ ଭୂମିକା ରହିଥାଏ । ସାଂପ୍ରତିକ ପରିସ୍ଥିତିରେ ଯେକୌଣସି ଏକ ସରକାର ନିଜର ଲକ୍ଷ୍ୟ ଓ ଆଦର୍ଶକୁ ଜନଗଣଙ୍କ ପାଖରେ ପ୍ରସାର କରିବା ପାଇଁ ତଥା ଲୋକମାନଙ୍କର ସମର୍ଥନ ପାଇଁ ଦେଶର ଗଣମାଧ୍ୟମର ସହଯୋଗ ନେଇଥାଏ । ସମ୍ବାଦପତ୍ର, ରେଡ଼ିଓ, ଟେଲିଭିଜନ ମାଧ୍ୟମରେ ସରକାର ଏହାର କାର୍ଯ୍ୟ ଓ ଲକ୍ଷ୍ୟକୁ ଜନଗଣଙ୍କ ପାଖରେ ପ୍ରସାର କରିଥାଏ । ତେବେ ଏକ ସ୍ୱାଧୀନ ଓ କ୍ରିୟାଶୀଳ ଗଣମାଧ୍ୟମ କେବଳ ସରକାରୀ ନୀତି ଓ ବିଚାରକୁ ଜନମାନସରେ ପ୍ରସାର କରେ ନାହିଁ ଏହା ମାଧ୍ୟମରେ ସରକାରୀ ନୀତିର ଦୋଷ ତ୍ରୁଟି, କୌଣସି ପ୍ରସଙ୍ଗ ଉପରେ ରାଜନୈତିକ ବିତର୍କ ଓ ଜନମତକୁ ମଧ୍ୟ ସରକାରଙ୍କ ପାଖରେ ପ୍ରକାଶ କରିଥାଏ । ଗଣମାଧ୍ୟମ ଏକ ଜାଗ୍ରତ ପ୍ରହରୀ ଭାବେ କାର୍ଯ୍ୟ କରିଥାଏ ଓ ସରକାରଙ୍କ କାର୍ଯ୍ୟକଳାପ କ୍ଷେତ୍ରରେ ଏହା ସରକାର ଓ ପ୍ରଶାସନକୁ ସବୁ କ୍ଷେତ୍ରରେ ଉତ୍ତରଦାୟୀ କରିଥାଏ ।

ଏକ ଗଣତାନ୍ତ୍ରିକ ରାଷ୍ଟ୍ରର ଲକ୍ଷ୍ୟ, ମୌଳିକ ଆଦର୍ଶ ଓ ଶାସନ ବ୍ୟବସ୍ଥା ତଥା ଏହାର ମୁଖ୍ୟ ଅଙ୍ଗମାନଙ୍କର କାର୍ଯ୍ୟ, ପରିସର ଓ ନିୟମମାନ ଦେଶର ସମ୍ବିଧାନରେ ସ୍ପଷ୍ଟ ଭାବରେ ଉଲ୍ଲେଖ କରାଯାଇଥାଏ । ଯେକୌଣସି ଦଳର ସରକାର ଦେଶର ସମ୍ବିଧାନ ଓ ସମ୍ବିଧାନର ମୌଳିକ ଲକ୍ଷ୍ୟ ପ୍ରତି ଉତ୍ତରଦାୟୀ ରହି ଶାସନ ପରିଚାଳନା କରିବା ଏହାର ଆଭିମୁଖ୍ୟ ହୋଇଥାଏ । ଦେଶର ବ୍ୟବସ୍ଥାପକ ସଭା, ସରକାର ଓ ବିଚାରବିଭାଗର

କାର୍ଯ୍ୟ ପରିସର, ଶୃଙ୍ଖଳା ଓ ନିୟମ ସକଳକୁ ଏକ ଲିଖିତ ସମ୍ବିଧାନରେ ପ୍ରକାଶ କରାଯାଇଥାଏ । ସାମ୍ବିଧାନିକ ବିଧି ବ୍ୟବସ୍ଥା ଭିତରେ ସରକାର ଓ ଏହାର ମୁଖ୍ୟ ଅଙ୍ଗମାନ କାର୍ଯ୍ୟ କରନ୍ତି । ବିଚାରବିଭାଗ ସାମ୍ବିଧାନିକ ଆଦର୍ଶ ଓ ବିଧିମାନଙ୍କର ସୁରକ୍ଷା କ୍ଷେତ୍ରରେ ଜାଗ୍ରତ ପ୍ରହରୀ ଭାବରେ କାର୍ଯ୍ୟ କରିଥାଏ । ଅବଶ୍ୟ ସମୟ, ପରିବର୍ତ୍ତିତ ପରିସ୍ଥିତି ଓ ନୂତନ ଆହ୍ବାନ ପରିପ୍ରେକ୍ଷୀରେ ସାମ୍ବିଧାନିକ ବ୍ୟବସ୍ଥାରେ କେତେକ ପରିବର୍ତ୍ତନ କରାଯାଇପାରେ । ତେବେ ଯାହା ବି ପରିବର୍ତ୍ତନ ଅଣାଯାଏ ତାହା ସେହି ସାମ୍ବିଧାନିକ ବ୍ୟବସ୍ଥା ଓ ତାର ନିର୍ଦ୍ଧାରିତ ପରିସର ଭିତରେ କରାଯାଇଥାଏ । ସାମ୍ବିଧାନିକ ବ୍ୟବସ୍ଥା, ଆଇନ ଓ ନିୟମ ଏକ ସଭ୍ୟ ସମାଜର ମୂଳଭିତ୍ତି ହେବା ଦେଖାଯାଏ । ଦେଶର ଜୀବନଧାରାରେ ଯେପରି ନ୍ୟାୟ ଓ ଶୃଙ୍ଖଳା ରହିବ ସେଥିପାଇଁ ସମ୍ବିଧାନ ଓ ନିୟମମାନ ପ୍ରଣୀତ ହୋଇଥାଏ । ତେବେ ଏକ ଗଣତାନ୍ତ୍ରିକ ବ୍ୟବସ୍ଥାରେ ଅହିଂସ ପନ୍ଥାରେ ପ୍ରତିବାଦ, ଆଇନ ଅମାନ୍ୟର ସମ୍ଭାବନା ରହିଥାଏ । କୌଣସି ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗ ଉପରେ ଲୋକମତ ବା ଜନ ଅସନ୍ତୋଷକୁ ବ୍ୟକ୍ତ କରିବା ପାଇଁ ସରକାରଙ୍କ ବିରୁଦ୍ଧରେ ଆନ୍ଦୋଳନ ଆଇନର ପରିସର ଭିତରେ ଓ ଅହିଂସାତ୍ମକ ପନ୍ଥାରେ କରାଯାଇପାରେ । ଜନ ଅସନ୍ତୋଷକୁ ବ୍ୟକ୍ତ କରିବା ପାଇଁ ବିଭିନ୍ନ ସାମ୍ବିଧାନିକ ପନ୍ଥା ଗଣତନ୍ତ୍ରରେ ରହିଥାଏ । ସୁତରାଂ ଗଣତାନ୍ତ୍ରିକ ବ୍ୟବସ୍ଥା ସବୁଠାରୁ ଅଧିକ ସଭ୍ୟ ଓ ମାନବିକ ବୋଲି ପ୍ରାୟତଃ ସ୍ୱୀକୃତ ହେବା ଦେଖାଯାଏ ।

ଗଣତନ୍ତ୍ରର ପରିଭାଷା ଭିତରେ ଏହା ଏକ ଉପଲବ୍ଧି ଯେ ଗଣତନ୍ତ୍ର କେବଳ ଏକ ରାଜନୈତିକ ଶାସନତାନ୍ତ୍ରିକ ବ୍ୟବସ୍ଥା ନୁହେଁ, ଏହା ମଧ୍ୟ ଏକ ସାମାଜିକ ମୂଲ୍ୟବୋଧ । ନାଗରିକ ସମାଜର ଜୀବନଧାରାରେ ବିବର୍ତ୍ତିତ ହୋଇଥିବା ମାନବବାଦୀ ମୂଲ୍ୟବୋଧ ସକଳ ଗଣତନ୍ତ୍ର କ୍ଷେତ୍ରରେ ପ୍ରତିଫଳିତ ହେବା ଦେଖାଯାଏ । ମାନବବାଦ ଏକ ଉଦାରବାଦୀ ଜୀବନବୋଧର ଯେଉଁ ବାର୍ତ୍ତା ଦେଇଥାଏ ତାହା ଗଣତାନ୍ତ୍ରିକ ବ୍ୟବସ୍ଥାର ବିକାଶରେ ମୁଖ୍ୟ ଭୂମିକା ନେବା ମନେହୁଏ । ସାମାଜିକ ନ୍ୟାୟ, ମାନବିକ ଅଧିକାର, ବ୍ୟକ୍ତି ମର୍ଯ୍ୟାଦାବୋଧ ଏହି ସବୁ ମୂଲ୍ୟଚୟ ସଭ୍ୟତାର କ୍ରମବିକାଶର ଇତିହାସରେ ବହୁ ପରେ ଆସିଥିବା ଜଣାଯାଏ । ଏହି ପୃଷ୍ଠଭୂମିରେ ମାନବବାଦର ଦୁଇଟି ବୈଚାରିକ ଆଦର୍ଶର ସାମାନ୍ୟ ସୂଚନା ଦିଆଯାଇପାରେ । ଉନବିଂଶ ଶତାବ୍ଦୀର ମଧ୍ୟ ଭାଗରେ କାର୍ଲମାର୍କସ ଓ ଫ୍ରେଡେରିକ୍ ଏଂଗେଲସ୍ କମ୍ୟୁନିଷ୍ଟ ଘୋଷଣାନାମା ପ୍ରକାଶ କରିଥିଲେ । ଏହି କ୍ଷୁଦ୍ର ପୁସ୍ତକଟିରେ ଏକ ଶୋଷଣମୁକ୍ତ ସମତାଭିତ୍ତିକ ସମାଜର କେତେକ ପରିକଳ୍ପନା ବ୍ୟକ୍ତ ହୋଇଥିଲା । ଶିଳ୍ପବିପ୍ଳବ ଯୁଗରେ ଯେଉଁ ପୁଂଜିବାଦୀ ବ୍ୟବସ୍ଥାର ବିକାଶ ହେଲା ତାହା ସାଧାରଣ ମଣିଷର ଶ୍ରମକୁ ଶୋଷଣକରି ଏପରି ଏକ ଅର୍ଥନୈତିକ ବ୍ୟବସ୍ଥା ସୃଷ୍ଟି କଲା ଯାହା ସମାଜକୁ ଦୁଇ ଶ୍ରେଣୀରେ

ବିଭକ୍ତ କରିଦେଲା । ସମାଜର ମୁଷ୍ଟିମେୟ ପୁଂଜିପତି ଗୋଷ୍ଠୀ ସକଳ ସଂପତ୍ତିର ଅଧିକାରୀ ହେଲେ ଓ ସମାଜର ଅସଂଖ୍ୟ ମଣିଷ ଶୋଷିତ, ଅତ୍ୟାଚାରିତ ଓ ନିର୍ଯ୍ୟାତିତ ହେବାକୁ ଲାଗିଲେ । ଏହି ପୃଷ୍ଠଭୂମିରେ କମ୍ୟୁନିଷ୍ଟ ଭାବଧାରା ଏକ ସମତାଭିତ୍ତିକ ଓ ମାନବୋଚିତ ଜୀବନବୋଧର ବାର୍ତ୍ତା ଦେଇଥିଲା । ସମାଜରୁ ସକଳ ଶୋଷଣ, ନିର୍ଯ୍ୟାତନାକୁ ବିଲୋପ କରିବା ପାଇଁ ଏଥିରେ ଏକ ମହତ୍ତର ନିବେଦନ ରହିଥିଲା । ସକଳ ଶୋଷଣ, ଅତ୍ୟାଚର ଓ ଅମାନବିକ ପରିସ୍ଥିତିରେ ବିଲୋପ ଘଟାଇ ସବୁ ମଣିଷ କିପରି ଏକ ସୁନ୍ଦର ଓ ସୁଖପ୍ରଦ ଜୀବନ ବଞ୍ଚିପାରିବେ ସେଥିପାଇଁ କିଛି ମୁକ୍ତିର ବାଟ ମାର୍କସ ଦେଖାଇଥିଲେ । ମାର୍କସଙ୍କର ଐତିହାସିକ ବସ୍ତୁବାଦ, ଚେତନାର ଦ୍ୱନ୍ଦ୍ୱାତ୍ମକ ବିକାଶ ଓ ସମତାଭିତ୍ତିକ ସମାଜର ରୂପାୟନ ପାଇଁ ପନ୍ଥା ନେଇ କାହାର ମତଭେଦ ରହିପାରେ କିନ୍ତୁ ତାଙ୍କର ମାନବବାଦୀ ଆବେଦନକୁ ଅସ୍ୱୀକାର କରାଯାଇ ପାରିବ ନାହିଁ । ଦ୍ୱିତୀୟ ଭାବନାଟି ହେଉଛି ମାନବିକ ଅଧିକାରର ବିଶ୍ୱ ଘୋଷଣାନାମା । ଦ୍ୱିତୀୟ ବିଶ୍ୱଯୁଦ୍ଧର ଧ୍ୱଂସଦହନ ଓ ଫାସିଜିମର ବର୍ବରତା ଥିଲା ସଭ୍ୟତାର ଇତିହାସରେ ସବୁଠାରୁ ବଡ଼ ଅମାନବିକ ଘଟଣା । ଜର୍ମାନୀର ହିଟଲର ଯେଉଁପରି ଷାଠିଏ ଲକ୍ଷ ଇହୁଦୀ ବା ଜିଉମାନଙ୍କୁ ଅମାନୁଷିକ ଭାବରେ ହତ୍ୟା କରିଥିଲେ ତାହା ମଣିଷର ବିବେକକୁ ଦୋହଲାଇ ଦେଇଥିଲା । ଜାତିସଂଘର ପ୍ରତିଷ୍ଠା ପରେ ମାନବିକ ଅଧିକାର ନେଇ ଯେଉଁ ବିଶ୍ୱ ଘୋଷଣାନାମାଟି ସେଠାରେ ପାରିତ ହୋଇଥିଲା, ତାହା ମାନବବାଦୀ ଜୀବନବୋଧର ଏକ ବଡ ବାର୍ତ୍ତା ଦେଇଥାଏ । ଆମ ସଂସାରରୁ ସକଳ ପ୍ରକାରର ଭେଦଭାବକୁ କିପରି ଦୂର କରାଯାଇ ପାରିବ ଓ ମଣିଷ ମଣିଷ ଭିତରେ ଭ୍ରାତୃତ୍ୱର ବଂଧନକୁ ଦୃଢ଼ କରିହେବ ସେ ନେଇ ଏହି ଘୋଷଣାନାମାରେ ଏକ ବଡ଼ ସନ୍ଦେଶ ରହିଥିବା ମନେହୁଏ । ସବୁ ମଣିଷ ମୁକ୍ତ ଓ ସ୍ୱାଧୀନ ହୋଇ ଜନ୍ମ ହୋଇଛନ୍ତି । ପ୍ରତ୍ୟେକଙ୍କ ଭିତରେ ବିଚାରଶୀଳତା ଓ ବିବେକବୋଧ ରହିଛି । ଜାତି, ବର୍ଣ୍ଣ, ଧର୍ମ, ଲିଙ୍ଗ, ଜାତୀୟତା, ଭାଷା, ରାଜନୈତିକ ଆଦର୍ଶ ନିର୍ବିଶେଷରେ ପ୍ରତ୍ୟେକ ବ୍ୟକ୍ତି, ଗୋଷ୍ଠୀ ମର୍ଯ୍ୟାଦାର ସହ ଆତ୍ମସମ୍ମାନ ନେଇ ବଞ୍ଚିବା ମଣିଷର ଏକ ମୌଳିକ ଅଧିକାର । ନିଜର ଅନ୍ତର୍ନିହିତ ସାମର୍ଥ୍ୟର ବିକାଶ ଘଟାଇବା, ଶିକ୍ଷା ଲାଭ କରିବାର ସୁଯୋଗ ପାଇବା, ଆଇନ ଦୃଷ୍ଟିରେ ସମାନ ବିବେଚିତ ହେବା ଓ କୌଣସି ଭେଦଭାବର ଶିକାର ନହେବା ପ୍ରତ୍ୟେକ ବ୍ୟକ୍ତିର ଏକ ମାନବିକ ଅଧିକାର । ସେହିପରି ସାମର୍ଥ୍ୟ ଅନୁଯାୟୀ ସ୍ୱାବଲମ୍ବୀ ହେବା, ନିଜର ସର୍ବନିମ୍ନ ଆବଶ୍ୟକତାରୁ ବଞ୍ଚିତ ନହେବା ଓ ନିଜ ଦେଶର ରାଜନୈତିକ ବ୍ୟବସ୍ଥାରେ ନାଗରିକ ଭାବରେ ଅଂଶଗ୍ରହଣ କରିବାର ସୁଯୋଗ ପାଇବା ବ୍ୟକ୍ତିର ଅଧିକାର । ସମଗ୍ର ମଣିଷ ସମାଜରେ ଏକ ଭ୍ରାତୃତ୍ୱର ମନୋଭାବକୁ ବିକାଶ କରାଇ ସକଳ ଭେଦଭାବ, ହିଂସା, ଅସହିଷ୍ଣୁତା ଓ ଅମାନବିକତା ଦୂର କରିବା ଏହି ଘୋଷଣାନାମାର ଥିଲା ଲକ୍ଷ୍ୟ । କହିବା

ନିଷ୍ପ୍ରୟୋଜନ ଯେ କମ୍ୟୁନିଷ୍ଟ ମାନିଫେଷ୍ଟୋ ଓ ମାନବିକ ଅଧିକାରର ବିଶ୍ୱ ଘୋଷଣାନାମା ଏକ ସମତାଭିତ୍ତିକ ଓ ଗଣତାନ୍ତ୍ରିକ ଚେତନାର ବିକାଶ କ୍ଷେତ୍ରରେ ପ୍ରେରଣାର ଉତ୍ସ ହୋଇ ରହିଛି । ବସ୍ତୁତଃ ଗଣତନ୍ତ୍ର ଏକ ରାଜନୈତିକ ବିଚାରାଦର୍ଶ ଓ ଏକ ସାମାଜିକ ମୂଲ୍ୟବୋଧ ଭାବେ ଆନ୍ତର୍ଜାତିକ ସ୍ତରରେ ସ୍ୱୀକୃତ ହୋଇଛି ।

ଧର୍ମନିରପେକ୍ଷତା ଗଣତାନ୍ତ୍ରିକ ଆଦର୍ଶର ଏକ ଅଭିନ୍ନ ଅଙ୍ଗ । ଏକ ଧର୍ମତାନ୍ତ୍ରିକ ରାଷ୍ଟ୍ର (theocratic-state) ଗଣତାନ୍ତ୍ରିକ ମୂଲ୍ୟବୋଧର ପରିପନ୍ଥୀ । ଠିକ୍ ସେହିପରି ସାଂପ୍ରଦାୟିକତା ଧର୍ମନିରପେକ୍ଷତାର ପ୍ରତିକୂଳ । ଏକ ଧର୍ମନିରପେକ୍ଷ ରାଷ୍ଟ୍ର ଧାର୍ମିକ ବିଶ୍ୱାସ ନେଇ ଜନଗଣଙ୍କୁ ସ୍ୱାଧୀନତା ଦେଇଥାଏ । ଧର୍ମ ବ୍ୟକ୍ତିଗତ ବିଶ୍ୱାସ ବା ଅବିଶ୍ୱାସର ପ୍ରଶ୍ନ । ଏକ ଗଣତାନ୍ତ୍ରିକ ରାଷ୍ଟ୍ରରେ ଧାର୍ମିକ ବିଶ୍ୱାସ ବା ପରିଚୟ ନିର୍ବିଶେଷରେ ସମସ୍ତ ନାଗରିକ ସମାନ ବିବେଚିତ ହୁଅନ୍ତି । ଅନ୍ୟପକ୍ଷରେ ସାଂପ୍ରଦାୟିକତା ଧର୍ମଗୋଷ୍ଠୀମାନଙ୍କ ମଧ୍ୟରେ ପ୍ରାଚୀର ସୃଷ୍ଟି କରିଥାଏ । ଆମ ସଂସାରରେ ଧର୍ମକୁ ଆଧାର କରି ନାନା ଅସହିଷ୍ଣୁତା ଓ ବିଦ୍ୱେଷର ଯେଉଁ ମାନସିକତା ରହିଛି ତାହାର ଉତ୍ସ ହେଉଛି ସାଂପ୍ରଦାୟିକତା । ସାଂପ୍ରଦାୟିକତା ଧର୍ମର ମାନବିକ ମୂଲ୍ୟ ପ୍ରତି ଉଦାସୀନ ରହି ଅନ୍ୟ ଧର୍ମାବଲମ୍ବୀମାନଙ୍କ ପ୍ରତି ବିଦ୍ୱେଷ ଓ ହିଂସାର ମନୋଭାବ ଆଣିଥାଏ । ସାଂପ୍ରଦାୟିକତା ରାଜନୈତିକ ବ୍ୟବସ୍ଥା ସହ ସଂଶ୍ଳିଷ୍ଟ ହେଲେ ଏହା ଫାସିବାଦରେ ରୂପାନ୍ତରିତ ହୁଏ । ସାଂପ୍ରଦାୟିକତାବାଦୀମନେ ଇତିହାସରେ ନିଜକୁ ଫାସିବାଦୀ ନକହି ନିଜକୁ ରାଷ୍ଟ୍ରବାଦୀ କହିବାର ବହୁ ଦୃଷ୍ଟାନ୍ତ ଦେଖିବାକୁ ମିଳେ । କେତେକ ସମାଜଶାସ୍ତ୍ରୀଙ୍କ ମତରେ ଧର୍ମ ହୁଏତ ସାଂପ୍ରଦାୟିକତାର କାରଣ ନୁହେଁ, ତେବେ ଏହା ସାଂପ୍ରଦାୟିକତାର ବାହକ ହୋଇଥାଏ । ସାଂପ୍ରଦାୟିକତା ସମାଜରେ ଧାର୍ମିକ ଭେଦଭାବ ଓ ଅସହିଷ୍ଣୁତା ସୃଷ୍ଟି କରିବା ସହ ରାଷ୍ଟ୍ରକୁ ଭାଗ କରିବାରେ ଆୟୁଧ ହୋଇଥାଏ । ଏହି ସବୁ କାରଣ ଦୃଷ୍ଟିରୁ ଧର୍ମତାନ୍ତ୍ରିକ ରାଷ୍ଟ୍ର ଓ ସାଂପ୍ରଦାୟିକତା ଗଣତନ୍ତ୍ରର ଯେ ସମ୍ପୂର୍ଣ୍ଣ ପରିପନ୍ଥୀ ଏହା କହିବା ଅସମୀଚୀନ ନୁହେଁ ।

କୌଣସି ରାଷ୍ଟ୍ରରେ ବହୁ ବିବିଧତା ରହିବା ଅସମ୍ଭବ ନୁହେଁ । ବିବିଧତା ସହ ଗଣତନ୍ତ୍ରର କୌଣସି ବିଭେଦ ନାହିଁ । ଏକ ରାଷ୍ଟ୍ରରେ ବହୁ ଭାଷା, ଧର୍ମ, ସାଂସ୍କୃତିକ ଭିନ୍ନତା ରହିପାରେ ବା ରହିବା ସ୍ୱାଭାବିକ ହୋଇପାରେ । ତେବେ ଏସବୁ ଏକ ଗଣତାନ୍ତ୍ରିକ ବ୍ୟବସ୍ଥା ପାଇଁ ପ୍ରତିବନ୍ଧକ ନୁହେଁ । ନାନା କ୍ଷେତ୍ରରେ ବିବିଧତା ବା ଭିନ୍ନତା ରହି ମଧ୍ୟ ଦେଶର ଜନଗଣଙ୍କ ଭିତରେ ପାରସ୍ପରିକତା ଓ ଭ୍ରାତୃତ୍ୱର ବନ୍ଧନ ବେଶ୍ ଦୃଢ଼ ହେବାରେ ଅସୁବିଧା ନାହିଁ । ଗଣତାନ୍ତ୍ରିକ ବ୍ୟବସ୍ଥା ସକଳ ନାଗରିକଙ୍କୁ ସମାନ ନାଗରିକ ଓ ରାଜନୈତିକ ଅଧିକାର ଦେଇଥାଏ । ଯେ ପର୍ଯ୍ୟନ୍ତ ରାଷ୍ଟ୍ରର ଜନଗଣ ସମାନ ନାଗରିକ ଓ ରାଜନୈତିକ

ଅଧିକାର ଉପଭୋଗ କରନ୍ତି ଓ ସାମାଜିକ ସ୍ତରରେ ସମାନ ବିବେଚିତ ହୁଅନ୍ତି, ସେପର୍ଯ୍ୟନ୍ତ ରାଷ୍ଟ୍ରରେ ଯେ ଗଣତନ୍ତ୍ରର ଭିତ୍ତି ସୁଦୃଢ଼ ରହିଛି ଏହା କୁହାଯାଇପାରେ ।

ମାନବିକ ଅଧିକାରର ମହାନ ପ୍ରବକ୍ତା ଓ ଭାରତୀୟ ସମ୍ବିଧାନର ନିର୍ମାତା ଡ.ବି. ଆର. ଆମ୍ବେଦକର ତାଙ୍କର କେତେକ ଲେଖାରେ ରାଜନୈତିକ ଗଣତନ୍ତ୍ର ଓ ସାମାଜିକ ଗଣତନ୍ତ୍ର ଭିତରେ କେତେକ ମୌଳିକ ପାର୍ଥକ୍ୟ ଦର୍ଶାଇଛନ୍ତି । ତାଙ୍କ ମତରେ ରାଜନୈତିକ ଗଣତନ୍ତ୍ରର ସଫଳତା ବହୁ ସର୍ତ୍ତାବଳୀ ଉପରେ ନିର୍ଭର କରେ, ସେହି ସର୍ତ୍ତ ଭିତରୁ ଏକ ପ୍ରମୁଖ ସର୍ତ୍ତ ହେଉଛି ସାମାଜିକ ଗଣତନ୍ତ୍ର । ତାଙ୍କ ମତରେ ଗଣତନ୍ତ୍ର ସାଧାରଣତନ୍ତ୍ର ଓ ସଂସଦୀୟ ସରକାରଠାରୁ ପୃଥକ୍ । ଗଣତନ୍ତ୍ରର ମୂଳ ସଂସଦୀୟ ସରକାର ବା ଅନ୍ୟପ୍ରକାର ସରକାର ଉପରେ ନିର୍ଭର କରେ ନାହିଁ । ଗଣତନ୍ତ୍ର ସରକାରର ଆକାରଠାରୁ ଭିନ୍ନ । ଗଣତନ୍ତ୍ରକୁ ଡ. ଆମ୍ବେଦକର ଏକ ସମ୍ବନ୍ଧିତ ଜୀବନବୋଧ (Associated living) ବୋଲି ନେଇଛନ୍ତି ଯାହାକୁ ଆମେ ସାମାଜିକ ଗଣତନ୍ତ୍ର ବୋଲି କହିପାରିବା । ଯେଉଁ ପାରସ୍ପରିକ ସମ୍ବନ୍ଧ ଦ୍ୱାରା ଲୋକମାନେ ଏକ ସମାଜ ନିର୍ମାଣ କରନ୍ତି ତାହାରି ଭିତରେ ଗଣତନ୍ତ୍ରର ମୂଳକୁ ଅନୁସନ୍ଧାନ କରିବାକୁ ସେ କହିଛନ୍ତି ।

ସମାଜ ବା ରାଷ୍ଟ୍ର ସହ ଏକ ଏକତ୍ୱର ବା ସହଂତିର ଭାବନା ରହିବା ଆବଶ୍ୟକ । ଏକ ଜନଗୋଷ୍ଠୀର ସାମୂହିକ ବିକାଶ, ଲକ୍ଷ୍ୟ, ପାରସ୍ପରିକ ସହଯୋଗ ଓ ସମ୍ବେଦନ ମଧ୍ୟ ଦେଇ ଗଣତାନ୍ତ୍ରିକ ଚେତନାର ବିକାଶ ହେବା ବିଧେୟ । କିନ୍ତୁ ଭାରତୀୟ ସମାଜ ଜାତି ବ୍ୟବସ୍ଥା ଦ୍ୱାରା ଏପରି କବଳିତ ଓ କଳୁଷିତ ଯେ ସବୁ ସ୍ତରରେ ସାମାଜିକ ଭେଦଭାବ ସୁସ୍ପଷ୍ଟ । ସ୍ତରୀଭୂତ ବୈଷମ୍ୟ (graded inequality) ଭାରତୀୟ ଜାତିବ୍ୟବସ୍ଥାର ମୂଳମନ୍ତ୍ର । ସବୁ ସମାଜରେ ଶ୍ରେଣୀ ବିଭାଜନ ହୁଏତ ରହିଛି, କିନ୍ତୁ ଜାତି ବିଭାଜନ ଶ୍ରେଣୀ ବିଭାଜନଠାରୁ ପୃଥକ୍ । ଶ୍ରେଣୀ ବ୍ୟବସ୍ଥାରେ ଆର୍ଥିକ ତାରତମ୍ୟ ରହିଥାଏ, କିନ୍ତୁ ପରସ୍ପର ଭିତରେ ବିଚ୍ଛିନ୍ନତା ନଥାଏ । ବିଚ୍ଛିନ୍ନତା ଓ ବୈଷମ୍ୟ ଜାତିପ୍ରଥାର ଦୁଇଟି ମନ୍ଦ ପରିଣତି ଯାହା ଗଣତାନ୍ତ୍ରିକ ମୂଲ୍ୟବୋଧର ପରିପନ୍ଥୀ । ସାମାଜିକ ବିଚ୍ଛିନ୍ନତା ଓ ଭେଦଭାବ ଗଣତାନ୍ତ୍ରିକ ଜୀବନବୋଧର ଯେପରି ପ୍ରତିକୂଳ ସେହିପରି ରାଜନୈତିକ ଗଣତନ୍ତ୍ର ପାଇଁ ମଧ୍ୟ ବଡ଼ ପ୍ରତିବନ୍ଧକ । ଗଣତାନ୍ତ୍ରିକ ବ୍ୟବସ୍ଥାର ସଫଳତା କ୍ଷେତ୍ରରେ ବହୁ ସର୍ତ୍ତାବଳୀ ରହିପାରେ, ତେବେ ଏହାର ବିଫଳତା ପାଇଁ ସାମାଜିକ ଓ ଧାର୍ମିକ ବିଚ୍ଛିନ୍ନତା ସବୁଠାରୁ ବଡ଼ ଉପାଦାନ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଉପସଂହାରରେ ଗଣତନ୍ତ୍ରର ସଫଳତା ପାଇଁ ଅନ୍ୟାନ୍ୟ ପ୍ରତିବନ୍ଧକ ସତ୍ତ୍ୱେ ଏକ ସାମ୍ବିଧାନିକ ନୈତିକତା ଯେ ଅପରିହାର୍ଯ୍ୟ ଏହା ମନେହୁଏ । ଭରତୀୟ ସମ୍ବିଧାନର ମୁଖବନ୍ଧ

(Preamble) ରେ କେତେକ ଉଚ୍ଚାଙ୍ଗ ଆଦର୍ଶ ଆମ ରାଷ୍ଟ୍ରର ଲକ୍ଷ୍ୟ ବୋଲି ଘୋଷଣା କରାଯାଇଛି । ସେହି ଆଦର୍ଶମାନ ଗଣତାନ୍ତ୍ରିକ ଜୀବନବୋଧର ମୌଳିକ ସୂତ୍ର । ଏହା ସହିତ ସେହି ଆଦର୍ଶମାନ ବେଶ୍ ମାନବିକ ଓ ସାର୍ବଜନୀନ । ସାମାଜିକ, ଅର୍ଥନୈତିକ ଓ ରାଜନୈତିକ ନ୍ୟାୟ; ଚିନ୍ତା, ଅଭିବ୍ୟକ୍ତି, ବିଶ୍ୱାସ ଓ ଧାର୍ମିକ ଉପଚାର କ୍ଷେତ୍ରରେ ସ୍ୱାଧୀନତା; ସୁବିଧା, ସୁଯୋଗ ଓ ସାମାଜିକ ସ୍ତରରେ ସମାନତା ଓ ପ୍ରତ୍ୟେକ ବ୍ୟକ୍ତିର ମର୍ଯ୍ୟାଦା ଓ ଦେଶର ସଂହତି ଓ ଜନଗଣଙ୍କ ଭିତରେ ଭ୍ରାତୃତ୍ୱଭାବ ଆମ ଜାତୀୟ ଜୀବନର ମୂଳ ଲକ୍ଷ୍ୟ । ଏସବୁ ସ୍ୱାଗତଯୋଗ୍ୟ । କିନ୍ତୁ ବାସ୍ତବ ଅନୁଭବରେ ଏସବୁ କେବଳ ପୋଥି ବାଇଗଣ, ଏଗୁଡିକ ବାଡି ବାଇଗଣ ହେବାକୁ ଆମକୁ ବହୁ ଦୂର ଯିବାକୁ ରହିଛି ।

ମାନବବାଦ, ସାମାଜିକ ନ୍ୟାୟ, ବ୍ୟକ୍ତି ସ୍ୱାଧୀନତା, ସମାନତା, ଭ୍ରାତୃତ୍ୱଭାବ, ଧର୍ମନିରପେକ୍ଷତା ଓ ଗଣତାନ୍ତ୍ରିକ ଜୀବନବୋଧ ମୂଲ୍ୟଚୟ ମାନ ସାମାଜିକ ବିକାଶଧାରାରେ କେତେ କେତେ ସ୍ତର ଦେଇ ସମାଜରେ ବିକଶିତ ହୋଇଛି । ଏସବୁ ଆକାଶରୁ ଖସି ନାହିଁ ବା କେଉଁ ଦିଅଁ ଦେବତାର ଆଶୀର୍ବାଦରୁ ମିଳି ନାହିଁ । ସାମାଜିକ ବିକାଶ ପ୍ରକ୍ରିୟାରେ କେତେ କେତେ ମାନସ-ମନ୍ଥନ ମଧ୍ୟ ଦେଇ ଏସବୁ ମୂଲ୍ୟବୋଧ ମାନ ବିବର୍ତ୍ତିତ ହୋଇଛି । ସେହିପରି ଗଣତନ୍ତ୍ରର ପ୍ରତିଷ୍ଠା କ୍ଷେତ୍ରରେ ରହିଛି ବହୁ ସଂଗ୍ରାମ, ପ୍ରୟାସ ଓ ବୌଦ୍ଧିକ ଚିନ୍ତନ । ସଭ୍ୟତାର କ୍ରମବିକାଶର ଇତିହାସରେ ଗଣତନ୍ତ୍ର ହେଉଛି ଏକ ସଭ୍ୟ ମୂଲ୍ୟବୋଧ । ସଭ୍ୟତାର ଅଗ୍ରଗତି ସହ ମାନବିକ ଆଦର୍ଶର ସଫଳ ଓ ବାସ୍ତବ ରୂପାୟନ ପାଇଁ ମାନବିକ ପ୍ରୟାସ ଯେ ଅବ୍ୟାହତ ରହିବ ଏହା ମନେହୁଏ । ତେବେ ଗଣତାନ୍ତ୍ରିକ ଆଦର୍ଶ ଗୁଡିକ କିପରି ଶାସନତନ୍ତ୍ରରେ ଓ ସାମାଜିକ ଜୀବନ ପ୍ରବାହରେ ବାସ୍ତବ ରୂପରେଖ ନେଇପାରିବ ସେଥିପାଇଁ ଅନେକ ପଥ ଯିବାକୁ ରହିଛି । ସଭ୍ୟତାର ଯାତ୍ରା ଯେ ଏକ ଅବାରିତ ଧାରା ଏହା ନିଃସନ୍ଦେହ । କେତେକେତେ ପରିସ୍ଥିତି ଦେଇ ସଭ୍ୟତା ଆଜି ଯେଉଁ ସ୍ଥିତିକୁ ଆସିଛି ସେଥିରେ କିପରି ଅଧିକ ଉତ୍କର୍ଷ ଆସିପାରିବ ଏହି ସ୍ୱପ୍ନ ବହୁ ଚିନ୍ତାଶୀଳ ଓ ମାନବହିତୈଷୀମାନଙ୍କୁ ଆନ୍ଦୋଳିତ କରିଆସୁଛି । ସମାଜରେ ରହିଥିବା ନାନା ଅମାନବିକ, ଅନୈତିକ, ଅଗଣତାନ୍ତ୍ରିକ ଓ ଅହେତୁକ ପରିସ୍ଥିତିର ବିଲୋପ ସାଧନ କରି ଶାସନତନ୍ତ୍ରରେ ଓ ସାଧାରଣ ଜୀବନ ପ୍ରବାହରେ ଗଣତାନ୍ତ୍ରିକ ଆଦର୍ଶ ସକଳର ପ୍ରସାରକୁ ସ୍ଥାୟୀ କରାଯାଇ ପାରିବ ତାହା ଏବେବି ଏକ ବଡ ଆହ୍ୱାନ ହୋଇ ରହିଛି । ସେହିପରି ଏକ ହିଂସାମୁକ୍ତ, ଶୋଷଣମୁକ୍ତ ଓ ଭେଦଭାବରହିତ ମାନବ ସମାଜର ସମ୍ଭାବନା ନେଇ ବହୁ ଆନ୍ତର୍ଜାତିକ ସଂଗଠନମାନଙ୍କର ସଂପୃକ୍ତି ମାନବିକ ଉତ୍କର୍ଷର ସୂଚନା ଦେଇଥାଏ । ଏହି ପ୍ରୟାସ ଗଣତାନ୍ତ୍ରିକ ଚେତନାର ଯେ ଏକ ପ୍ରସାରିତ ଅଭିବ୍ୟକ୍ତି ଏହା କୁହାଯାଇପାରେ ।



# ବୁଦ୍ଧି, ବୌଦ୍ଧିକତା ଓ ବିଚାରଶୀଳତା : ଏକ ଦୃଷ୍ଟିପାତ

ବୈଜ୍ଞାନିକ ସିଦ୍ଧାନ୍ତ ଅନୁଯାୟୀ କୋଟି କୋଟି ବର୍ଷର ଜୈବିକ ବିବର୍ତ୍ତନ ଦେଇ ଜୀବଜଗତ ଓ ମନୁଷ୍ୟର ଉତ୍ପତ୍ତି ହୋଇଛି । ମଣିଷର ଉତ୍ପତ୍ତି ପରଠାରୁ ଧୀରେ ଧୀରେ ମସ୍ତିଷ୍କର ବିକାଶ ହୋଇଛି । ପ୍ରାଣୀଜଗତରେ ମଣିଷ ଶ୍ରେଷ୍ଠ, କାରଣ ତା ପାଖରେ ବୁଦ୍ଧିର ସାମର୍ଥ୍ୟ ପ୍ରକାଶ ପାଇଛି । ବୁଦ୍ଧିର ବିକାଶ ଯୋଗୁ ଜ୍ଞାନବିଜ୍ଞାନର ବିକାଶ, ପ୍ରକୃତି ଓ ଜୀବନ ବିଷୟକ ଅବବୋଧ, କେତେ କେତେ ସୃଜନଶୀଳ ସାମର୍ଥ୍ୟ, ନୀତି ନୈତିକତା, ବିଚାରଶୀଳ ମନୋଭାବ ଇତ୍ୟାଦିର ବିକାଶ ହୋଇଛି । ଏହିସବୁ ସାମର୍ଥ୍ୟ କ୍ରମବର୍ଦ୍ଧିଷ୍ଣୁ ଭାବେ ବୃଦ୍ଧି ପାଇଛି ଓ ଏକ ଆଦିମ ସ୍ଥିତିରୁ ନାନା ସ୍ତର ଓ ଉତ୍ତରଣ ମଧ୍ୟ ଦେଇ ମଣିଷ ଆଜିର ଅବସ୍ଥାକୁ ଆସିପାରିଛି । ଏହି ଅନୁଭବରୁ ଏହା କୁହାଯାଏ ଯେ ମଣିଷ ଏକ ବୁଦ୍ଧିମାନ୍ ପ୍ରାଣୀ । ଯେକୌଣସି ଏକ ପ୍ରତିକୂଳ ଅବସ୍ଥାକୁ ମୁକାବିଲା କରିବା ପାଇଁ ମଣିଷ ବୁଦ୍ଧିର ପ୍ରୟୋଗ କରିଥାଏ । ବୁଦ୍ଧି ପ୍ରୟୋଗ କରିବା ଦ୍ୱାରା ସେ ନିଜର ପ୍ରତିକୂଳ ସ୍ଥିତିକୁ ସାମ୍ନା କରି ସମାଧାନ ବାହାର କରେ । ଏହି ପ୍ରକ୍ରିୟାରେ ସେ ଧୀରେ ଧୀରେ ଉନ୍ନତ ହୋଇଛି ଓ କେତେ କେତେ ବୌଦ୍ଧିକ ସାମର୍ଥ୍ୟର ଅଧିକାରୀ ହୋଇପାରିଛି । ବୁଦ୍ଧି ଓ ସୃଜନଶୀଳ ସାମର୍ଥ୍ୟ ସଭ୍ୟତା ଓ ସଂସ୍କୃତି ନିର୍ମାଣରେ ନିର୍ଣ୍ଣାୟକ ଭୂମିକା ନେଇଥିବା କୁହାଯାଉଛି ।

ଆମ ଇନ୍ଦ୍ରିୟ ସାହାଯ୍ୟରେ ଆମେ ପରିବେଶକୁ ପ୍ରତ୍ୟକ୍ଷ କରେ ଓ ମସ୍ତିଷ୍କ ସାହାଯ୍ୟରେ ମାନସିକ କ୍ରିୟା ସମାପନ କରିଥାଏ । ମାନସିକ କ୍ରିୟା ବା ବୁଦ୍ଧି ସାହାଯ୍ୟରେ ଆମେ ଚିନ୍ତା କରିଥାଏ । ତେବେ ଚିନ୍ତା କରିବା ଏକ ଜଟିଳ ପ୍ରକ୍ରିୟା ଓ ଚିନ୍ତା କରିବାର ସାମର୍ଥ୍ୟ ସମସ୍ତଙ୍କ ପାଖରେ ସମାନ ନୁହେଁ । ଆମର ପ୍ରତ୍ୟକ୍ଷ, ଶିକ୍ଷଣ ଓ ସ୍ମରଣ ଚିନ୍ତା କରିବା ପାଇଁ ଆଧାର ଯୋଗାଇଥାଏ । ଆମେ କିପରି ଚିନ୍ତା କରେ, ଚିନ୍ତନର ସ୍ୱରୂପ,

ପ୍ରକାରଭେଦ, ସଂଜ୍ଞା ଇତ୍ୟାଦି ପ୍ରସଙ୍ଗରେ ମନୋବିଜ୍ଞାନୀମାନେ ନାନା ବିଶ୍ଳେଷଣ କରିବା ଦେଖାଯାଏ । ସାଧାରଣ ଅନୁଭବରେ ଦେଖାଯାଏ ଯେ କେତେକ ବ୍ୟକ୍ତିଙ୍କର ମାନସିକ ସାମର୍ଥ୍ୟ ବେଶ୍ ଅଧିକ ଓ କେତେକ ବ୍ୟକ୍ତିଙ୍କର ମାନସିକ ଦକ୍ଷତା ତୁଳନାତ୍ମକ ଭାବେ କମ୍ । ମନୋବିଜ୍ଞାନୀ ମାନେ ବ୍ୟକ୍ତିର ବୟସ ଅନୁପାତରେ ମାନସିକ ସାମର୍ଥ୍ୟ ସ୍ଥିର କରିବା ନେଇ କେତେକ ବସ୍ତୁନିଷ୍ଠ ପଦ୍ଧତି ବାହାର କରିଛନ୍ତି । ଏହା ଆଧାରରେ ଜଣେ ବ୍ୟକ୍ତିର ବୁଦ୍ଧ୍ୟାଙ୍କ ବା ଆଇକିୟୁ ସେମାନେ ନିରୂପଣ କରିଥାନ୍ତି । ବ୍ୟକ୍ତିର ବୁଦ୍ଧି ବା ମାନସିକ ସାମର୍ଥ୍ୟକୁ ଶାରୀରିକ ବିକାଶ ସହ ସଂଶ୍ଳିଷ୍ଟ କରି ବ୍ୟକ୍ତିର ବୁଦ୍ଧ୍ୟାଙ୍କ ବାହାର କରାଯାଏ । କିଛି ବ୍ୟକ୍ତି ସ୍ୱଳ୍ପ ବୁଦ୍ଧସଂପନ୍ନ, ମୁଷ୍ଟିମେୟ ଲୋକ ଅସାଧାରଣ ବୁଦ୍ଧିସଂପନ୍ନ ଓ ଅଧିକାଂଶ ଲୋକ ସାଧାରଣ ବୁଦ୍ଧିସଂପନ୍ନ । ବୟସ ବୃଦ୍ଧି ସହ ମାନସିକ ବିକାଶ ସମାନ ଭାବରେ ହେଉଥିଲେ ବୁଦ୍ଧି ସାଧାରଣ ବୋଲି କୁହାଯାଏ । ଯେଉଁମାନଙ୍କ କ୍ଷେତ୍ରରେ ଶାରୀରିକ ବୟସ ଅନୁପାତରେ ମାନସିକ ସାମର୍ଥ୍ୟ କମ୍ ହେଉଥାଏ ସେମାନଙ୍କୁ ଅଳ୍ପବୁଦ୍ଧିଆ କୁହାଯାଏ ଅଥଚ ଶାରୀରିକ ବୟସଠାରୁ ମାନସିକ ଦକ୍ଷତା ଅଧିକ ହେଉଥିଲେ ଜଣଙ୍କର ବୁଦ୍ଧିକୁ ଅସାଧାରଣ କୁହାଯାଏ । ଏହି ପୃଷ୍ଠଭୂମିରେ ମନୋବିଜ୍ଞାନ ପରିସରରେ କେଉଁମାନେ ସାଧାରଣ ବୁଦ୍ଧିସଂପନ୍ନ, କେଉଁମାନେ ଅଳ୍ପବୁଦ୍ଧିସଂପନ୍ନ ଓ କେଉଁମାନେ ଅସାଧାରଣ ବୁଦ୍ଧିସଂପନ୍ନ ତାହାର କେତେକ ମାନଦଣ୍ଡ ରହିବା ଦେଖାଯାଏ ।

ଏହା ଏକ ଆନୁଭବିକ ଉପଲବ୍ଧି ଯେ ବୁଦ୍ଧି ଏକ ସାଧନ ମାତ୍ର । ଏକ ସାଧନକୁ ଭଲ ବା ମନ୍ଦ ଲକ୍ଷ୍ୟରେ ବିନିଯୋଗ କରାଯାଇପାରେ । ବୁଦ୍ଧିମାନ ଲୋକମାନେ ଅପରାଧିକ, ଅନୈତିକ ଓ ଅସାମାଜିକ କାର୍ଯ୍ୟରେ ସଂପୃକ୍ତ ହେବାର ଦୃଷ୍ଟାନ୍ତ ସମାଜରେ ରହିପାରେ । ସମାଜର ଜଣେ ସାଧାରଣ ବ୍ୟକ୍ତି ପରିଶ୍ରମୀ, ଶାନ୍ତିପ୍ରିୟ, ସମ୍ବେଦନଶୀଳ ଓ ପରୋପକାରୀ ହୋଇପାରେ, ଅପରପକ୍ଷରେ ଜଣେ ବୁଦ୍ଧିମାନ ଲୋକ ସ୍ୱାର୍ଥପର, ସଂତ୍ରାସବାଦୀ ଓ ପ୍ରତିହିଂସା ପରାୟଣ ହୋଇପାରେ । ବ୍ୟକ୍ତି ସ୍ୱଭାବରେ ଏହି ପାର୍ଥକ୍ୟ ରହିବା ଦେଖାଯାଏ । ଏହାର କାରଣ ସଂପର୍କରେ କୁହଯାଏ ଯେ ମଣିଷ ସ୍ୱଭାବରେ ଦୁଇଟି ଭିନ୍ନ ସ୍ତର ରହିଛି, ଯଥା ପ୍ରବୃତ୍ତିଗତ ସ୍ତର ଓ ବୌଦ୍ଧିକ ସ୍ତର । ପ୍ରତ୍ୟେକ ବ୍ୟକ୍ତି ଭିତରେ କାମନା, ବାସନା, ଆଶା, ଇଚ୍ଛା, ସ୍ୱପ୍ନ ଇତ୍ୟାଦି ରହିଛି ଯାହା ତାହାର ପ୍ରବୃତ୍ତିଗତ ସ୍ୱଭାବ ସହ ସଂଶ୍ଳିଷ୍ଟ । ବ୍ୟକ୍ତିର ପ୍ରବୃତ୍ତିଗତ ସ୍ତର ଉନ୍ନତ ହୋଇପାରେ କିମ୍ବା ଅଶାଳୀନ ବା ମନ୍ଦ ହୋଇପାରେ । ବ୍ୟକ୍ତିର ଆବେଗିକ ସ୍ତରଟି ମନ୍ଦ ଓ ଅନୈତିକ ହେଲେ ତାର ଚରିତାର୍ଥ ପାଇଁ ଜଣେ ବୁଦ୍ଧିର ପ୍ରୟୋଗ କରିଥାଏ । ଏହି ଦୃଷ୍ଟିରୁ କୁହାଯାଏ ଯେ ବୁଦ୍ଧି ଏକ ସାଧନ ଯାହାକୁ ଭଲ

ବା ମନ୍ଦ ଲକ୍ଷ୍ୟ ଦିଗରେ ପ୍ରୟୋଗ କରାଯାଇପାରେ । ତେବେ ବ୍ୟକ୍ତିର ମନ୍ଦ ଆବେଗକୁ ନିୟନ୍ତ୍ରଣ କରିବାର ସାମର୍ଥ୍ୟ ମଧ୍ୟ ବୁଦ୍ଧିର ରହିଛି । ଜଣେ ନିଜର ବୁଦ୍ଧି ଓ ବିବେକ ମାଧ୍ୟମରେ କ'ଣ ଭଲ ବା ମନ୍ଦ, ନୈତିକ ବା ଅସାମାଜିକ ନିର୍ଣ୍ଣୟ କରିପାରେ । ଯେ ଏହା କରିପାରେ ନାହିଁ ଓ ମନ୍ଦ ଆବେଗ ଦ୍ୱାରା ପରିଚାଳିତ ହୋଇ ବୁଦ୍ଧିକୁ ଅନୈତିକ ଲକ୍ଷ୍ୟରେ ବିନିଯୋଗ କରେ ସେ ସମାଜରେ ନିନ୍ଦିତ ହୋଇଥାଏ । ଜ୍ଞାନକୁ ସମାଜର ହିତ ଦିଗରେ ପ୍ରୟୋଗ କରାଯାଇପାରେ କିମ୍ବା ସମାଜର ଧ୍ୱଂସ ଦିଗରେ ବି ପ୍ରୟୋଗ କରାଯାଇପାରେ । ଜ୍ଞାନ ଯେପରି ଏକ ସାଧନ ଭାବରେ ବିନିଯୋଗ ହୁଏ, ବୁଦ୍ଧି ମଧ୍ୟ ସେହିପରି ଭଲ ବା ମନ୍ଦ ଲକ୍ଷ୍ୟରେ ପ୍ରୟୋଗ ହେବା ସମ୍ଭବ ମନେହୁଏ ।

ବ୍ୟକ୍ତିର ମୌଳିକ ସାମର୍ଥ୍ୟ ବୁଦ୍ଧି ଯୋଗୁ କ୍ରମବିକଶିତ ହୋଇଚାଲିଛି । ମଣିଷ ନିଜ ବୁଦ୍ଧି ପ୍ରୟୋଗ କରି ତାର ଚତୁଃପାର୍ଶ୍ୱର ପରିବେଶକୁ ବୁଝିବାକୁ ପ୍ରୟାସ କରିଆସିଛି । ଏଥିପାଇଁ କେତେ ଉଦ୍ୟମ, ପ୍ରୟାସ ଓ ଜିଜ୍ଞାସା ବିଭିନ୍ନ ସଭ୍ୟତାରେ ପ୍ରକାଶ ପାଇଛି । ଏହାର ପରିଣାମରୁ ଜ୍ଞାନବିଜ୍ଞାନ, ନୂଆ ନୂଆ ପ୍ରଯୁକ୍ତିମାନ ହାସଲ କରିବାରେ ମଣିଷ ସମର୍ଥ ହୋଇପାରିଛି । ଏହା କ୍ରମବର୍ଦ୍ଧିଷ୍ଣୁ ଭାବେ ବୃଦ୍ଧି ପାଇବାରେ ଲାଗିଛି । ବିଶେଷ କରି ଆଧୁନିକ ବିଜ୍ଞାନ ଜ୍ଞାନର ଦିଗନ୍ତକୁ ବହୁ ଭାବରେ ବୃଦ୍ଧି କରିପାରିଛି । ପ୍ରକୃତିର ବହୁ ରହସ୍ୟ ଭେଦ କରିବାକୁ ମଣିଷ ସମର୍ଥ ହେଲାଣି, ଯାହା ଦୁଇ ତିନି ଶତାବ୍ଦୀ ତଳେ ଅଚିନ୍ତନୀୟ ଥିଲା । ଋତୁ ପରିବର୍ତ୍ତନ କାହିଁକି ହୁଏ, କୁଷ୍ଠ ରୋଗର କାରଣ କ'ଣ, ଆଲୋକ କିପରି ଗତି କରେ, ଦେହରେ ରକ୍ତ ସଂଚାଳନ କିପରି ହେଉଛି, ସମୁଦ୍ରର ଜଳ ଲୁଣିଆ କାହିଁକି ଲାଗେ ଯାହା ଆଜି ଜଣେ ସ୍କୁଲ ଛାତ୍ର ବୁଝାଇବାକୁ ସମର୍ଥ ତାହା ଦୁଇ ତିନି ଶତାବ୍ଦୀ ତଳେ ସବୁଠାରୁ ଚିନ୍ତାଶୀଳ ଲୋକମାନେ ବି ଜାଣିନଥିଲେ । ସେହିପରି ମହାକାଶ ଯାତ୍ରା, ସାଟେଲାଇଟ୍ କମ୍ୟୁନିକେସନ୍, ଅଙ୍ଗ ପ୍ରତିରୋପଣ ପରି ଅସଂଖ୍ୟ ଘଟଣା ଯାହା ସଂପ୍ରତି ସମ୍ଭବ ହୋଇପାରିଛି ଦୁଇ ଶତାବ୍ଦୀ ପୂର୍ବରୁ ତାହା ଚିନ୍ତାସ୍ତରକୁ ମଧ୍ୟ ଆସିନଥିଲା । ଏସବୁ ସମ୍ଭବ ହେବା ପଶ୍ଚାତରେ ମଣିଷର ବୌଦ୍ଧିକ ଅନୁସନ୍ଧିତ୍ସା, ଗବେଷଣା ଓ ନିଷ୍ଠାପର ଅନ୍ୱେଷା ରହିଛି । ବୁଦ୍ଧି ଜ୍ଞାନ ବିଜ୍ଞାନ ଓ ବୌଦ୍ଧିକ ଅନୁସନ୍ଧିତ୍ସା ପାଇଁ ସାଧନ ଓ ପ୍ରେରଣା ଯୋଗାଇଛି ।

ଗୋଟିଏ ପ୍ରଶ୍ନ ଉଠିଥାଏ - ବୁଦ୍ଧି ବ୍ୟକ୍ତି ଭିତରେ କିପରି ବିକଶିତ ହୁଏ ? ବିଜ୍ଞାନର ବିକାଶ ପୂର୍ବରୁ ଅସଂଖ୍ୟ ଘଟଣାର ଯେପରି ରହସ୍ୟମୟ ବ୍ୟାଖ୍ୟା ପ୍ରଦାନ କରାଯାଉଥିଲା, ବୁଦ୍ଧି କ୍ଷେତ୍ରରେ ମଧ୍ୟ ସେହିପରି କେତେ କେତେ ରହସ୍ୟମୟ ବ୍ୟାଖ୍ୟାନ

ଦିଆଯାଉଥିଲା । ବୈଜ୍ଞାନିକ ବ୍ୟାଖ୍ୟାନ ତଥ୍ୟଭିତ୍ତିକ, ବସ୍ତୁନିଷ୍ଠ, ପରୀକ୍ଷା ସାପେକ୍ଷ ଓ କାର୍ଯ୍ୟକାରଣ ନିୟମ ଆଧାରିତ ହେବା କୁହାଯାଏ । ବିଜ୍ଞାନ କୌଣସି ରହସ୍ୟମୟ, ପାରଲୌକିକ ବ୍ୟାଖ୍ୟାନକୁ ଗ୍ରହଣ କରେନାହିଁ । ବୁଦ୍ଧିର କ୍ରମବିକାଶକୁ ଜୀବବିଜ୍ଞାନ ଓ ମନୋବିଜ୍ଞାନ ପରିସରରେ ବସ୍ତୁନିଷ୍ଠ ଭାବରେ ବ୍ୟାଖ୍ୟା କରିବା ସମ୍ଭବ ହୋଇପାରିଛି ଓ ଦିନକୁ ଦିନ ନୂଆ ନୂଆ ତଥ୍ୟ ଓ ସିଦ୍ଧାନ୍ତମାନ ଆବିଷ୍କୃତ ହେଉଛି । ବୈଜ୍ଞାନିକ ମାନଦଣ୍ଡରେ ଜୀବବିଜ୍ଞାନୀ ଓ ମନୋବିଜ୍ଞାନୀ ବଂଶାନୁକ୍ରମିକ କାରଣ ଓ ପରିବେଷ୍ଟନୀଜନିତ କାରଣ ଆଧାରରେ ବୁଦ୍ଧିର ବିକାଶକୁ ବ୍ୟାଖ୍ୟା କରିଥାନ୍ତି । ବ୍ୟକ୍ତିର ଜୈବିକ ଶରୀରଟି ନାରୀ-ପୁରୁଷର ଦୈହିକ ସଂପର୍କରୁ ଉଦ୍‌ଭବ ହୋଇଥାଏ । କେତେକ ଆନୁବଂଶିକ ଗୁଣ ବାପା-ମାଙ୍କଠାରୁ ଉତ୍ତରାଧିକାରୀ ସୂତ୍ରରେ ସନ୍ତାନ-ସନ୍ତତିଙ୍କ ପାଖକୁ ଆସିଥାଏ । ଆଧୁନିକ ବିଜ୍ଞାନ କ୍ରୋମୋଜମ୍, ଜିନ୍, ଡିଏନଏ ଇତ୍ୟାଦି ଜ୍ଞାନ ଆଧାରରେ ଏସବୁକୁ ବ୍ୟାଖ୍ୟା କରିବା ଜଣାଯାଏ । ଶିଶୁ ଭିତରେ ବୁଦ୍ଧିର ବିକାଶ କ୍ଷେତ୍ରରେ ପରିବେଷ୍ଟନୀର ପ୍ରଭାବ ମଧ୍ୟ ରହିବା ଦେଖାଯାଏ । ବ୍ୟକ୍ତି ଭିତରର ଅନ୍ତର୍ନିହିତ ସାମର୍ଥ୍ୟର ବିକାଶ ପାଇଁ ପରିବେଷ୍ଟନୀର ଅନେକ ପ୍ରଭାବ ରହିଥାଏ । ଶିଶୁଟିଏ ନିଜର ପରିବେଷ୍ଟନୀରୁ ଯେପରି ଭାଷା ଶିକ୍ଷା କରିଥାଏ, ସେହିପରି ତାର ବୌଦ୍ଧିକ ବିକାଶ ତାର ସାମାଜିକ ସ୍ଥିତି ଓ ପରିବେଷ୍ଟନୀ ଦ୍ୱାରା ପ୍ରଭାବିତ ହୋଇଥାଏ । ପରବର୍ତ୍ତୀ ଅବସ୍ଥାରେ ତାର ଶିକ୍ଷା, ପ୍ରଶିକ୍ଷଣ ଓ ପରିସ୍ଥିତି ତାର ବୁଦ୍ଧି, ମାନସିକତା ଓ ଜୀବନବୋଧକୁ ପ୍ରଭାବିତ କରିଥାଏ । ସୁତରାଂ ବୁଦ୍ଧି, ବିବେକ ଓ ବୌଦ୍ଧିକତାର ବିକାଶ ନାନା କାରଣର ସମ୍ମିଳିତ ପ୍ରଭାବରୁ ରୂପ ନେଇଥାଏ ।

ବ୍ୟକ୍ତି ଭିତରେ ବୁଦ୍ଧିର ବିକାଶ ସହ ସୃଜନ-ସାମର୍ଥ୍ୟର ବିକାଶ ହୋଇଥାଏ । ବୁଦ୍ଧି ଓ ସୃଜନଶୀଳତା ବ୍ୟକ୍ତିର ମହତ୍ତ୍ୱ ପ୍ରତିପାଦନ କରେ । ବୁଦ୍ଧି ଯେପରି ଉପଯୁକ୍ତ ପରିବେଶ ଦ୍ୱାରା ବିକଶିତ ହୋଇଥାଏ, ସେହିପରି ବ୍ୟକ୍ତିର ସୃଜନଶୀଳତା ମଧ୍ୟ ଅନୁକୂଳ ପରିବେଶରେ ପରିସ୍ଫୁଟ ହୋଇଥାଏ । ବୁଦ୍ଧି ଓ ସୃଜନଶୀଳତା ଉଭୟ ମାନସିକ ସାମର୍ଥ୍ୟର ସୂଚକ ହେଲେ ମଧ୍ୟ ସୃଜନ-ସାମର୍ଥ୍ୟ ଅନେକାଂଶରେ ସହଜାତ ବୋଲି ଗ୍ରହଣ କରାଯାଏ । ଜଣେ ଭାସ୍କର, ଚିତ୍ରଶିଳ୍ପୀ, କବି, କଳାକାର ଆଦିଙ୍କ ପ୍ରତିଭା ସମ୍ଭବତଃ ସହଜାତ । ଜଣେ ସଂଗୀତଜ୍ଞ ତାଙ୍କ କଣ୍ଠରେ ସୁନ୍ଦର ରାଗିଣୀ ସୃଷ୍ଟି କରିବା, ଜଣେ କବି ବା ଲେଖକ ନିଜର ଗଭୀର ଅନୁଭବରେ ସୁନ୍ଦର ସାହିତ୍ୟ ସର୍ଜନା କରିବା, ଜଣେ ଚିତ୍ରଶିଳ୍ପୀ ତାଙ୍କ ତୂଳୀରେ ଚମତ୍କାର ଚିତ୍ର ଅଙ୍କନ କରିବା ପରି ଘଟଣା ଏକ ସାଧାରଣ ଅନୁଭବ । ବିଭିନ୍ନ କଳାତ୍ମକ ଅଭିବ୍ୟକ୍ତି ଓ କାଳଜୟୀ ସୃଷ୍ଟି ସୃଜନଶୀଳତାର ସ୍ୱାକ୍ଷର ବହନ କରିଥାଏ । ସୃଜନଶୀଳତା ଭିତରେ କଳ୍ପନା, ନାନ୍ଦନିକତା ଓ ଗଭୀର ଉପଲବ୍ଧି ରହିଥାଏ । ଏସବୁ ଜଣେ ସ୍ରଷ୍ଟାର

ସୃଜନ ଦେଇ ଅଭିବ୍ୟକ୍ତ ହୋଇଥାଏ ।

ଏହି କ୍ଷେତ୍ରରେ ବୌଦ୍ଧିକତା ଓ ସୃଜନଶୀଳତା ଭିତରେ ପାର୍ଥକ୍ୟ କରାଯାଇପାରେ । ବୌଦ୍ଧିକତା ସହିତ ବୁଦ୍ଧି, ଯୌକ୍ତିକତା ସଂଶ୍ଳିଷ୍ଟ ହେବା ବେଳେ ସୃଜନଶୀଳତା ସହ ହୁଏତ ଆବେଗ, କଳ୍ପନା ଓ ଅନ୍ତର୍ଦୃଷ୍ଟି ସନ୍ନିତ ହେବା କୁହାଯାଏ । ତେବେ ବୌଦ୍ଧିକତା କ୍ଷେତ୍ରରେ ଯେ ଅନ୍ତର୍ଦୃଷ୍ଟି ନଥାଏ କିମ୍ବା ସୃଜନଶୀଳ ସ୍ରଷ୍ଟା ପାଖରେ ବୁଦ୍ଧିର ଅଭିବ୍ୟକ୍ତି ନଥାଏ ଏହା କୁହାଯାଇନପାରେ । ସେମାନଙ୍କ ମଧ୍ୟରେ ପାର୍ଥକ୍ୟ ଅନେକାଂଶରେ ପରିମାଣାତ୍ମକ ଯଦିବା ସ୍ଥଳ ବିଶେଷରେ ସେମାନଙ୍କ ମଧ୍ୟରେ କିଛି ଗୁଣାତ୍ମକ ପାର୍ଥକ୍ୟ ପରିଲକ୍ଷିତ ହେଇପାରେ । ତେବେ ବୌଦ୍ଧିକତା ଓ ସୃଜନଶୀଳତା ବ୍ୟକ୍ତି ସାମର୍ଥର ଗୁଣାତ୍ମକ ପରିଚୟ ଦେଇଥାଏ । ଅଧିକନ୍ତୁ ବୌଦ୍ଧିକତା ଓ ସୃଜନଶୀଳତା ସଭ୍ୟତାର ଉତ୍ତରଣ କ୍ଷେତ୍ରରେ ନିର୍ଣ୍ଣାୟକ ଅବଦାନ ଦେବା ମନେହୁଏ ।

ସାହିତ୍ୟ, କଳା, ସଂଗୀତ, ଭାସ୍କର୍ଯ୍ୟ ଇତ୍ୟାଦି ମାନବୀୟ ସୃଜନର ଅଭିବ୍ୟକ୍ତି ହେବା ବେଳେ ଦର୍ଶନ, ଗଣିତ, ବିଜ୍ଞାନ ଇତ୍ୟାଦି ମାନବୀୟ ବୌଦ୍ଧିକତାର ପରିପ୍ରକାଶ ହୋଇଥାଏ । ଚିନ୍ତା ଚେତନାର ଅଗ୍ରଗତି ମାନବିକ ବୌଦ୍ଧିକତାର ସ୍ୱାକ୍ଷର ବହନ କରେ । ଆମର ଯେତେ ଯେତେ ବୌଦ୍ଧିକ କ୍ଷେତ୍ର ରହିଛି ସେସବୁର ଧାରାବାହିକ ଇତିହାସ ଆମେ ନିରୂପଣ କରିପାରିବା । ଏହି ପୃଷ୍ଠଭୂମିରେ ଦର୍ଶନ ଓ ବିଜ୍ଞାନ ଆମ ବୌଦ୍ଧିକ ଅଗ୍ରଗତିର ଚିତ୍ର ଦେଇଥାଏ । ପ୍ରାକୃତିକ ପରିବେଶ, ସାମାଜିକ ସ୍ଥିତି, ଜୀବନର ରହସ୍ୟ ଇତ୍ୟାଦିକୁ ଦାର୍ଶନିକ ମାନେ ବହୁ ଅତୀତରୁ ବ୍ୟାଖ୍ୟା କରିବାକୁ ପ୍ରୟାସ କରିଛନ୍ତି । ସେହି ପ୍ରକ୍ରିୟାରେ ଜ୍ଞାନ, ସତ୍ୟ, ନ୍ୟାୟ, ସୌନ୍ଦର୍ଯ୍ୟ ଇତ୍ୟାଦି ବିଷୟରେ ଦାର୍ଶନିକମାନେ ବିଭିନ୍ନ ସିଦ୍ଧାନ୍ତମାନ ନିର୍ମାଣ କରିଛନ୍ତି । ଗଭୀର ଅନୁଶୀଳନ ଓ ତର୍କସଂଗତ ବ୍ୟାଖ୍ୟାନ ମାଧ୍ୟମରେ ଦାର୍ଶନିକମାନେ ବୌଦ୍ଧିକ ଗଭୀରତାର ପରିଚୟ ଦେଇଛନ୍ତି । ତେବେ ଦାର୍ଶନିକ ଚିନ୍ତା, ଚେତନା ଏକ ଅବାରିତ ଧାରା । ଦର୍ଶନକୁ ମୌଳିକ ଅବଦାନ ଦେଇଥିବା ବୁଦ୍ଧିଦୀପ୍ତ ଚିନ୍ତକମାନେ ପୂର୍ବର ସିଦ୍ଧାନ୍ତମାନଙ୍କର ତ୍ରୁଟି ଦର୍ଶାଇ ନୂତନ ତତ୍ତ୍ୱ ଓ ସିଦ୍ଧାନ୍ତର ଅବତାରଣା କରିବାର କାହାଣୀ ସୁବିଦିତ । ପତ୍ୟେକ ଦାର୍ଶନିକ ନିଜର ପୂର୍ବସୂରୀଙ୍କ ବିଚାରରେ ରହିଥିବା କିଛି ଦୁର୍ବଳତାକୁ ଦର୍ଶାଇବା ସହ ଏକ ନୂତନ ସିଦ୍ଧାନ୍ତ ନିର୍ମାଣ କରିବା ଦେଖାଯାଏ । ଏହି ଧାରାରେ ଦର୍ଶନ ପରିସରରେ ପରସ୍ପର ବିରୋଧୀ ତାତ୍ତ୍ୱିକ ଭାବନା ଓ ସିଦ୍ଧାନ୍ତମାନ ପରିଲକ୍ଷିତ ହୁଏ । ଯେହେତୁ ଦାର୍ଶନିକ ସିଦ୍ଧାନ୍ତମାନ ତଥ୍ୟାଧାରିତ ନ ହୋଇ ପତ୍ୟୟାତ୍ମକ ବିଶ୍ଲେଷଣ ଭିତରେ ସଂପୃକ୍ତ, ତେଣୁ ଦର୍ଶନ ପରିସରରେ ଏହି ବିରୋଧାଭାସ ରହିବା ଦେଖାଯାଏ ।

ତେବେ ଦାର୍ଶନିକ ମାନେ ଯେ ପ୍ରଜ୍ଞାଦୀପ୍ତ ବ୍ୟକ୍ତିଏହା ନିଃସନ୍ଦେହରେ ମନେହୁଏ । ଜ୍ଞାନମୀମାଂସା, ତତ୍ତ୍ୱମୀମାଂସା, ଆଚାରମୀମାଂସା, ସୌନ୍ଦର୍ଯ୍ୟତତ୍ତ୍ୱ ଓ ତର୍କଶୀଳ ପଦ୍ଧତି ଇତ୍ୟାଦି ପ୍ରସଙ୍ଗ ହିଁ ଦାର୍ଶନିକ ବିଶ୍ଳେଷଣର ମୂଳାଧାର । ଏସବୁ ବିଶ୍ଳେଷଣ ଭିତରେ ଗଭୀର ବୌଦ୍ଧିକତାର ଅଭିବ୍ୟକ୍ତି ରହିବା ଏକ ସାଧାରଣ ଉପଲବ୍ଧି । ତେବେ ଦାର୍ଶନିକ ଅନୁଶୀଳନ ଓ ଜୀବନର ତାତ୍ତ୍ୱିକ ଅବବୋଧ ଏକ ଅଗ୍ରଗାମୀ ପ୍ରବାହ । ଏହାର ପରିସମାପ୍ତି ସମ୍ଭବ ନୁହେଁ । ଦାର୍ଶନିକ ପ୍ରଜ୍ଞା ଯେତେ ସୂକ୍ଷ୍ମରୁ ସୂକ୍ଷ୍ମତର ବିଶ୍ଳେଷଣରେ ବ୍ରତୀ ହେଉଥିଲେ ମଧ ଏହାର ବୌଦ୍ଧିକ ଦିଗନ୍ତ ସର୍ବଦା ବିସ୍ତାରିତ ଯାହା ଅନନ୍ତ ସମ୍ଭାବନାର ଚିତ୍ର ଦେଉଥାଏ ।

ବୌଦ୍ଧିକ ଅନୁସନ୍ଧିତ୍ସାର ଅନ୍ୟ ଏକ ବିସ୍ତାରିତ ଦିଗନ୍ତ ହେଉଛି ବିଜ୍ଞାନ । ଅଧିକାଂଶ ବୈଜ୍ଞାନିକ ଉଦ୍ଭାବନ ଓ ଆବିଷ୍କାର ପଶ୍ଚାତରେ ସତ୍ୟସନ୍ଧାନୀ କୌତୂହଳୀ ମଣିଷର ବୌଦ୍ଧିକ ଜିଜ୍ଞାସା ରହିଥାଏ । ଅଧିକାଂଶ ବିଜ୍ଞାନୀ ପ୍ରାୟତଃ ପ୍ରକୃତିର ଅନ୍ତର୍ନିହିତ ରହସ୍ୟ ଜାଣିବାକୁ ଆଗ୍ରହୀ ହୋଇଥାନ୍ତି । ସେମାନଙ୍କର ପର୍ଯ୍ୟବେକ୍ଷଣୀୟ ଅନୁଭୂତି ଭିତରେ ମୌଳିକ ଜିଜ୍ଞାସା ନିହିତ ଥାଏ । ସେଓ ଗଛରୁ ସେଓଟି କାହିଁକି ତଳକୁ ଖସିପଡିଲା, ଉପରକୁ ଗଲା ନାହିଁ ଏକ ସାଧାରଣ ଘଟଣା ମାଧ୍ୟାକର୍ଷଣ ଶକ୍ତିର ଆବିଷ୍କାର ପାଇଁ ଆଧାର ଯୋଗାଇ ଥିଲା । ଚା କେଟଲିରୁ ଢ଼ାଙ୍କୁଣିଟି ଗରମ କଲାବେଳେ କିପରି ତଳକୁ ପଡିଗଲା ଅନୁଭବରୁ ବାଷ୍ପଶକ୍ତିର ରହସ୍ୟ ଉଦ୍‌ଭାବିତ ହୋଇଥିଲା ଯାହା ସଭ୍ୟତାର ଇତିହାସରେ ଏକ ଯୁଗାନ୍ତକାରୀ ଘଟଣା ଥିଲା । ପୋଖରୀ ଜଳରେ ଟେକାଟି କିପରି ତରଙ୍ଗ ସୃଷ୍ଟି କରୁଛି ସେହି ଅନୁଭୂତିରୁ ଶବ୍ଦର ଗତି ବିଷୟରେ ଯେଉଁ ଅନ୍ତର୍ଦୃଷ୍ଟି ମିଳିଲା ସେଥିରୁ ରେଡ଼ିଓର ଉଦ୍‌ଭାବନ ସମ୍ଭବ ହେଲା । ଏହିପରି ଦେଖିଲେ ନିତିଦିନିଆ ଜୀବନର ସାଧାରଣ ଘଟଣା ଜଣେ ଅନୁସନ୍ଧିତ୍ସୁ ଅନ୍ତର୍ଦୃଷ୍ଟି ସଂପନ୍ନ ବୈଜ୍ଞାନିକଙ୍କୁ ଅନେକ ଅର୍ଥପୂର୍ଣ୍ଣ ସନ୍ଦେଶ ଦେଇଛି, ଯେଉଁଥିରୁ ପ୍ରକୃତିର ଅନେକ ରହସ୍ୟକୁ ବୁଝିବାକୁ ମଣିଷ ସମର୍ଥ ହୋଇପାରିଛି । ଗୋଟିଏ ଗୋଟିଏ ବୈଜ୍ଞାନିକ ଉଦ୍‌ଭାବନ ବା ଆବିଷ୍କାର ଜ୍ଞାନରାଜ୍ୟରେ ଯୁଗାନ୍ତକାରୀ ପରିବର୍ତ୍ତନ ପାଇଁ ପଥପ୍ରଦର୍ଶକ ହୋଇଛି । ଆଜି ମାନବସଭ୍ୟତା ଯେଉଁ ସ୍ଥିତିକୁ ଯାଇଛି ତାହା ପଶ୍ଚାତରେ ବୈଜ୍ଞାନିକ ମାନଙ୍କର ଅବଦାନ ଅତୁଳନୀୟ ମନେହୁଏ । ପ୍ରକୃତିର ବହୁ ରହସ୍ୟର ଉନ୍ମୋଚନ କରି ଜ୍ଞାନର ଦିଗନ୍ତକୁ ବିସ୍ତାରିତ କରିବାରେ ସତ୍ୟସନ୍ଧାନୀ ବୈଜ୍ଞାନିକମାନେ ଏକ ପ୍ରମୁଖ ଭୂମିକା ନିର୍ବାହ କରିଛନ୍ତି । ଏହା ଭିତରେ ବିଜ୍ଞାନ ଜୀବନ ଓ ଜଗତକୁ ଅବବୋଧ କରିବାରେ ଏକ ସୈଦ୍ଧାନ୍ତିକ ବିଚାର ମଧ ଅବତାରଣା କରିଛି । ବିଶ୍ୱର ପ୍ରତ୍ୟେକ ବସ୍ତୁ ବା ଘଟଣା ପଶ୍ଚାତରେ ଯେ କେବଳ ପ୍ରାକୃତିକ କାରଣ, ନିୟମ ଓ ଏକରୂପତା ରହିଛି,

କୌଣସି ଆଧିଦୈବିକ କାରଣ ନାହିଁ ଏହି ତତ୍ତ୍ୱ ଉପରେ ବିଜ୍ଞାନର ସୌଧ ଗଢ଼ି ଉଠିଛି ବା ବିଜ୍ଞାନର ଦିଗନ୍ତ ବିସ୍ତାରିତ ହୋଇଛି । ବୈଜ୍ଞାନିକ ଜ୍ଞାନର କ୍ରମବିକାଶ ଓ ତାର ପ୍ରାୟୋଗିକ ପରିଣାମ ମାନବିକ ବୌଦ୍ଧିକତାର ଯେ ଏକ ଚରମ ଉତ୍କର୍ଷ ଏହା କହିଲେ ଅତ୍ୟୁକ୍ତି ହେବ ନାହିଁ ।

ସମାଜ, ସଭ୍ୟତା, ମାନବୀୟ ସମସ୍ୟା ଓ ମାନବ ସମୂହର ଭବିଷ୍ୟତ ନେଇ ଚିନ୍ତା ଓ ସଂପୃକ୍ତି ବ୍ୟକ୍ତ କରୁଥିବା ଗୋଷ୍ଠୀକୁ ସାଧାରଣତଃ ବୁଦ୍ଧିଜୀବୀ ଶ୍ରେଣୀ କୁହାଯାଏ । ବୁଦ୍ଧିଜୀବୀମାନେ ବିଭିନ୍ନ ସମସ୍ୟା ଉପରେ ଅନୁଶୀଳନାତ୍ମକ ବ୍ୟାଖ୍ୟା ପ୍ରଦାନ କରନ୍ତି ଓ ସମାଜକୁ ନୂତନ ଦିଗଦର୍ଶନ ଦେଇଥାନ୍ତି । ସାମାଜିକ ଗୁରୁତ୍ୱ ଥିବା କୌଣସି ପ୍ରସଙ୍ଗ ଉପରେ ଯେଉଁମାନେ ବୁଦ୍ଧିଦୀପ୍ତ ବିଚାର ଓ ଗମ୍ଭୀର ଭାବନା ବ୍ୟକ୍ତ କରନ୍ତି ସେମାନଙ୍କୁ ସମାଜରେ ବୁଦ୍ଧିଜୀବୀର ଆଖ୍ୟା ଦିଆଯାଏ । ଧର୍ମ, ସମାଜ, ରାଜନୀତି, ଶିକ୍ଷା, ଅର୍ଥନୀତି ଇତ୍ୟାଦି ଉପରେ ଯେଉଁମାନେ ସୁଚିନ୍ତିତ ବିଚାରର ଅବତାରଣ କରନ୍ତି ଓ ସମାଜକୁ କିଛି ଦିଗ୍‌ଦର୍ଶନ ଦିଅନ୍ତି ସେମାନେ ଗୋଟିଏ ସମୟର ବୁଦ୍ଧିଜୀବୀ ବୋଲି ଗଣ୍ୟ ହୁଅନ୍ତି । ଅର୍ଥାତ୍ ବୁଦ୍ଧିଜୀବୀମାନେ ହେଲେ ଏକ ଚିନ୍ତକ ଗୋଷ୍ଠୀ । ସମାଜର ବୌଦ୍ଧିକ ଓ ନୈତିକ ବିକାଶ କ୍ଷେତ୍ରକୁ ସେମାନେ କିଛି ଅବଦାନ ଦିଅନ୍ତି । ସାମାଜିକ ଘଟଣା ପ୍ରବାହ, ଲୋକଚରିତ୍ର, ପ୍ରଚଳିତ ପ୍ରଥା, ପରଂପରା ଇତ୍ୟାଦିର ବିଶ୍ଳେଷଣ କରି ଏହାର ଭଲ ମନ୍ଦ ଦିଗର ସୂଚନା ଏମାନେ ଦେଇଥାନ୍ତି । ସାମାଜିକ ବିକାଶ କେଉଁ ଧାରାରେ ଅଗ୍ରଗତି କଲେ ସାମାଜିକ ଶ୍ରେୟ ହାସଲ ହେବା ସହ ଶାନ୍ତିପୂର୍ଣ୍ଣ ସହାବସ୍ଥାନର ପରିବେଶ ସୃଷ୍ଟି ହେବ ଏହା ନେଇ ସେମାନେ ସୁଚିନ୍ତିତ ବିଚାର ବ୍ୟକ୍ତ କରିଥାନ୍ତି । ବୁଦ୍ଧିଜୀବୀମାନେ ମାନବୀୟ ସମସ୍ୟା ଓ ସଂକଟକୁ ଯଥୋଚିତ ଭାବେ ଅବବୋଧ କରି ସମାଜକୁ କିଛି ଦିଗ୍‌ଦର୍ଶନ ଦେଉଥାନ୍ତି । ଜଣେ ବୁଦ୍ଧିଜୀବୀ ନିଜ ଚାରିପାଖର ମଣିଷ ଓ ସାମାଜିକ ଘଟଣା ପ୍ରବାହକୁ ଠିକ୍ ଭାବରେ ବୁଝିବାକୁ ପ୍ରୟାସ କରିଥାନ୍ତି ଓ ନିଜର ବୌଦ୍ଧିକ ସାମର୍ଥ୍ୟରୁ ନୂଆ ଭାବନାର ଅବତାରଣା କରନ୍ତି । ତାଙ୍କ ଭାବନା ବା ବିଚାର ସମାଜରେ କେତେ ଗୃହୀତ ବା ସ୍ୱୀକୃତ ହୁଏ ତାହା ଏକ ଭିନ୍ନ ପ୍ରସଙ୍ଗ । ଏପରିକି ତାଙ୍କର ପ୍ରଗତିଶୀଳ ଭାବନା ଓ କିଛିଟା ଅଣପାରଂପରିକ ବିଚାର ଯୋଗୁ ସେ ସମାଲୋଚିତ ବା ନିନ୍ଦିତ ହୋଇପାରନ୍ତି । ତେବେ ମୁକ୍ତ ଭାବରେ ଚିନ୍ତାକରିବା, କୌଣସି ବିଷୟକୁ ଅନ୍ଧାନୁସରଣ ନକରିବା ଓ ଏକ ବିଚାରଶୀଳ ଦୃଷ୍ଟି ରଖିବା ଜଣେ ବୁଦ୍ଧିଜୀବୀର ଲକ୍ଷଣ ହୋଇଥାଏ । ଏକ ରକ୍ଷଣଶୀଳ ସାମାଜିକ ପରିବେଶରେ ବୁଦ୍ଧିଜୀବୀ ଓ ସଂସ୍କାରପ୍ରୟାସୀ ବ୍ୟକ୍ତିମାନେ ନିନ୍ଦିତ ହେବାର କାହାଣୀ ଇତିହାସରେ ସୁବିଦିତ ।

କାରଣ ସଂସ୍କାରପ୍ରୟାସୀ ବୁଦ୍ଧିଜୀବୀମାନେ ସେମାନଙ୍କ ସମୟଠାରୁ ବହୁ ଆଗରେ ରହିଥାନ୍ତି । ସୁତରାଂ ସେମାନେ ନିଜ ସମସାମୟିକ ସମାଜରେ ଗୃହୀତ ହୋଇପାରନ୍ତି ନାହିଁ । ତେବେ ସେହିମାନଙ୍କର ପ୍ରଗତିଶୀଳ ଓ ସଂସ୍କାରବାଦୀ ଜୀବନଦୃଷ୍ଟି ମାନବବାଦର ବିକାଶ କ୍ଷେତ୍ରରେ ଯେଉଁ ଭାବନା ସୂତ୍ରପାତ କରିଥାଏ ତାହା ଭବିଷ୍ୟତରେ ସାମାଜିକ ଆଦର୍ଶ ହୋଇଥାଏ । ସଂସ୍କାରିତ ଜୀବନବୋଧର ଚାରାଟି ଭବିଷ୍ୟତରେ ମାନବବାଦୀ ମୂଲ୍ୟବୋଧର ବୃକ୍ଷରେ ପରିଣତ ହେବାର ସମ୍ଭାବନା ରଖିଥାଏ । ବହୁ ସଂସ୍କାରବାଦୀ ବୁଦ୍ଧିଜୀବୀ ମୁକ୍ତ ଚିନ୍ତାର ବିକାଶ କ୍ଷେତ୍ରରେ ପଥପ୍ରଦର୍ଶକ ହୋଇପାରନ୍ତି ।

ବୁଦ୍ଧି, ବୌଦ୍ଧିକତାର ନୈତିକ ଉତ୍କର୍ଷ ବିଚାରଶୀଳ ଜୀବନବୋଧରେ ପ୍ରତିଫଳିତ ହୋଇଥାଏ । ବୁଦ୍ଧି, ଜ୍ଞାନ ଓ ବିଜ୍ଞାନକୁ ମାନବିକ ଶ୍ରେୟ ଓ ଉତ୍କର୍ଷ ଦିଗରେ ପ୍ରୟୋଗ କରିବାର ମନୋଭାବକୁ ଏକ ବିଚାରଶୀଳ ଜୀବନଦୃଷ୍ଟି ବୋଲି ଗ୍ରହଣ କରାଯାଏ । ଏହି ଦୃଷ୍ଟିରୁ ବିଚାରଶୀଳତା ଏକ ମୂଲ୍ୟବୋଧଭିତ୍ତିକ ଅବଧାରଣା । ପ୍ରଜ୍ଞା ଓ ବିବେକବୋଧର ସମନ୍ୱିତ ଅଭିବ୍ୟକ୍ତି ହେଉଛି ବିଚାରଶୀଳ ଦୃଷ୍ଟି । ମାନବିକ ଉତ୍କର୍ଷ ଓ ସଂପ୍ରୀତି ସାଧନ ପାଇଁ ବିଚାରଶୀଳତା ହିଁ ଅଭିପ୍ରେତ । ଜ୍ଞାନ ଓ ମାନବିକତାର ସମନ୍ୱୟରେ ସାମାଜିକ ଲକ୍ଷ୍ୟ ସାଧନ ହିଁ ବିଚାରଶୀଳତାର ଅନ୍ତଃସ୍ୱର । ସକଳ ସୃଜନଶୀଳ ଆବେଗ, ଅନୁରାଗ ଓ ଉଲ୍ଲାସ ତଥା ସକଳ ଜ୍ଞାନ ଓ ବିଜ୍ଞାନକୁ ଜୀବନର ଶ୍ରେୟ ସାଧନ ଦିଗରେ ବିନିଯୋଗ କରିବା ହିଁ ବିଚାରଶୀଳତାର ଆଭିମୁଖ୍ୟ । ଜ୍ଞାନ ଓ ମାନବିକତାର ସମନ୍ୱୟରେ ସମାଜ, ରାଷ୍ଟ୍ର ଓ ମାନବ ସମୂହର କଲ୍ୟାଣ ଯେ ନିହିତ ଏହାହିଁ ବିଚାରଶୀଳତାର ମୂଳାଦର୍ଶ । ବସ୍ତୁତଃ ବିଚାରଶୀଳତା ଓ ଏହାର ଅନ୍ତର୍ନିହିତ ମୂଲ୍ୟଚୟ ଜୀବନର ଉତ୍କର୍ଷ ସାଧନ ଦିଗରେ ଅଭିପ୍ରେତ ।

ମଣିଷର ବୁଦ୍ଧି, ବୌଦ୍ଧିକତା ଓ ସୃଜନଶୀଳ ସାମର୍ଥ୍ୟ ସଭ୍ୟତାର କ୍ରମବିକାଶରେ ମୂଳମନ୍ତ୍ର । ଏହା ସହ ବିଚାରଶୀଳତାର ସଂଯୋଗ ହେଲେ ଏହାଦ୍ୱାରା ମାନବିକ ଉତ୍କର୍ଷ ସାଧିତ ହୋଇପାରିବ । ସଂପ୍ରତି ଜ୍ଞାନ ବିଜ୍ଞାନର ଯେଉଁ ବିସ୍ଫୋରଣ ହୋଇଛି ତାହା ସଭ୍ୟତାର ଇତିହାସରେ ନାନା ସମ୍ଭାବନା ସୃଷ୍ଟି କରିପାରିଛି । ଏହି ସମ୍ଭାବନାକୁ ମାନବିକତାର ସ୍ପର୍ଶ ଦେଲେ ମାନବଜାତିର ପୁନର୍ଜନ୍ମ ହୋଇପାରିବ । ଆମର ସାମୂହିକ ଚେତନାରେ ମାନବିକତାର ସ୍ପର୍ଶ ବିଚାରଶୀଳ ଜୀବନଦୃଷ୍ଟି ଦେଇପାରିବ । ମନେ ରଖିବାକୁ ହେବ ଯେ ବ୍ୟକ୍ତି ମରଣଶୀଳ ହେଲେ ବି ମାନବଜାତି ଚିରସ୍ଥାୟୀ । ମାନବସମୂହ କିପରି ଧରାବକ୍ଷରେ ସବୁଦିନ ପାଇଁ ତିଷ୍ଠି ରହିବ ଓ ସାମଗ୍ରିକ ଭାବେ ଜୀବନର ଗୁଣାତ୍ମକ ମାନରେ କ୍ରମୋନ୍ନତି

ଆଣିପାରିବ ଏହା ଆମ ଜୀବନବୋଧର ମନ୍ତ୍ର ହେବା ଆବଶ୍ୟକ । ଅତୀତରେ ନାନା ହିଂସା, ଯୁଦ୍ଧ, ଶୋଷଣ, ଭେଦଭାବ ଓ ଅସହିଷ୍ଣୁତା ସଭ୍ୟତାର ଇତିହାସରେ କେତେ କେତେ ବିକୃତିର ଛାପ ରଖିଯାଇଛି । ଆମ ବିଚାର, ବିବେକ ଓ ବୌଦ୍ଧିକତା ଆଧାରରେ ଆମେ ସେହି ସ୍ଥିତିରେ ପରିବର୍ତ୍ତନ ଆଣିପାରିବା । ଏ କ୍ଷେତ୍ରରେ ମାନବିକ ଦୃଷ୍ଟି ଓ ବିଚାରଶୀଳତା ଆମ ପାଇଁ ପ୍ରେରଣାର ଉତ୍ସ ହୋଇପାରିବ ।

ଉପସଂହାରରେ ଆଧୁନିକ ପ୍ରଯୁକ୍ତି ଆମ ପୃଥିବୀକୁ ଏକ ଗ୍ରାମରେ ପରିଣତ କରିବାର ଅନେକ ସାଧନ ଆମ ପାଖରେ ଉପଲବ୍ଧ କରାଇପାରିଛି । ଏହି ଜ୍ଞାନ ଓ ପ୍ରଯୁକ୍ତି ସହ ବିଚାରଶୀଳତା ଓ ମାନବିକତାର ସମନ୍ୱୟ ହେଲେ ପୃଥିବୀ ଏକ ଆଦର୍ଶ ଗ୍ରାମରେ ରୂପାନ୍ତରିତ ହୋଇପାରିବ । ଯାହା ଏକଦା କାଳ୍ପନିକ ବସ୍ତୁ ଥିଲା ବା ୟୁଟୋପିଆ ମନେ ହେଉଥିଲା ତାହା ବାସ୍ତବପକ୍ଷେ ଆମ ପ୍ରୟାସରେ ରୂପ ନେଇପାରିବ । ଏକ ଶାନ୍ତିପୂର୍ଣ୍ଣ ଓ ପ୍ରୀତିପୂର୍ଣ୍ଣ ପୃଥିବୀ ରୂପାୟିତ କରିବାରେ ବିଚାରଶୀଳତା ଓ ମାନବିକତା ନିର୍ଣ୍ଣାୟକ ଆଧାର ଯୋଗାଇ ପାରିବ । ବିଚାରହୀନତା ଓ ବିଦ୍ୱେଷର ସଂସାର ଯେ ଅନେକ ଦୁଃଖ, ଦୁର୍ଦ୍ଦଶାର କାରଣ ଏହା ହିଁ ଇତିହାସର ଶିକ୍ଷା । ଆମର ବୁଦ୍ଧି, ବିବେକ ଆଧାରରେ ତାହାର ପରିବର୍ତ୍ତନ ଆମର ଏକ ନୈତିକ କର୍ତ୍ତବ୍ୟ । ପୃଥିବୀର କେତେକ ମହତ୍ତ୍ୱାକାଂକ୍ଷୀ ଦାର୍ଶନିକ, ରାଷ୍ଟ୍ରନୀତିଜ୍ଞ, ବୈଜ୍ଞାନିକ ଓ ମାନବହିତୈଷୀ ହେତୁବାଦୀ – ଚିନ୍ତକ ଏହିପରି ଏକ ସ୍ୱପ୍ନ ଦେଖାଉଛନ୍ତି । ଏହି ସ୍ୱପ୍ନ ସାର୍ଥକ ହେବ ବା ସଭ୍ୟତା ଆତ୍ମହତ୍ୟା କରିବ ତାହା ଭବିଷ୍ୟତ କହିପାରିବ ।



# ବିଜ୍ଞାନ ଓ ଆଗାମୀ ବିଶ୍ୱ

ମାନବ ସଭ୍ୟତାର ଇତିହାସ ହେଉଛି ନାନା ଉତ୍‌ଥାନ ପତନର କାହାଣୀ । ସାମଗ୍ରିକ ଭାବେ ମଣିଷ ସମାଜ କେତେ କେତେ ଅନ୍ଧକାରକୁ ସାମ୍ନା କରିଛି । କେତେ ଯୁଦ୍ଧ, ବିଭୀଷିକା, କ୍ରୂରତା ଭିତରେ କେତେ କେତେ ମଣିଷ ନାନା ବିପର୍ଯ୍ୟୟର ସମ୍ମୁଖୀନ ହୋଇଛନ୍ତି । ସେହିପରି କେତେ କେତେ ପ୍ରାକୃତିକ ବିପର୍ଯ୍ୟୟ ଭିତରେ କେଉଁ କେଉଁ ଭୂଖଣ୍ଡରେ ସଭ୍ୟତାର ମଧ୍ୟ ବିଲୋପ ହୋଇଛି । ତେବେ ସମସ୍ତ ଝଡଝଂଜା, ଆପଦ ବିପଦ ମଧ୍ୟରେ ସଭ୍ୟତା ଆଗକୁ ଯାଇଛି । ଆଦିମ ଅବସ୍ଥାରୁ ଆରମ୍ଭ ହୋଇଥିବା ଏହି ଯାତ୍ରା କେତେ ସନ୍ଧିକ୍ଷଣ ଦେଇ ଅଗ୍ରସର ହୋଇଛି । ଇତିହାସର ବେଳାଭୂମିରେ କେତେ କେତେ ପରିବର୍ତ୍ତନର ନିର୍ଣ୍ଣାୟକ ମୁହୂର୍ତ୍ତ ମଧ୍ୟ ଆସିଛି । ଏସବୁ ପରିସ୍ଥିତି ଭିତରେ ସଭ୍ୟତାର ଅଗ୍ରଗତି ଘଟିଛି । ପୃଥିବୀର ଯେଉଁ ଭୂଖଣ୍ଡରେ ଯାହା କିଛି ନୂତନ ଜ୍ଞାନ ଓ ପ୍ରଯୁକ୍ତିର ଉଦ୍‌ଭାବନ ହୋଇଛି ତାହା ଧୀରେ ଧୀରେ ବିଭିନ୍ନ ଭୂଖଣ୍ଡକୁ ପ୍ରସାର ଲାଭ କରିଛି । ଜ୍ଞାନ, ବିଜ୍ଞାନର ଜଗତୀକରଣ କାହିଁ କେଉଁ ଅତୀତରୁ ସମ୍ଭବ ହୋଇଛି । ଅତୀତରେ ନାନା ପ୍ରାକୃତିକ ପ୍ରତିବନ୍ଧକ ଯୋଗୁ ବିଭିନ୍ନ ଭୌଗୋଳିକ ଭୂଖଣ୍ଡରେ ସଭ୍ୟତାମାନ ନିଜସ୍ୱ ଧାରାରେ ବିକଶିତ ହୋଇଥିଲା । ସେହି ପ୍ରକ୍ରିୟାରେ ପ୍ରତ୍ୟେକ ସଭ୍ୟତାର କିଛି ସ୍ୱାତନ୍ତ୍ର୍ୟ ହୁଏତ ରହିଛି । ତେବେ ସାଧାରଣ ଭାବରେ ମାନବିକ ସ୍ୱଭାବ, ଚରିତ୍ର, ଜୀବନବୋଧ, ପରିବେଶର ପ୍ରଭାବ ପ୍ରସଙ୍ଗକୁ ନେଇ ମଣିଷର ସ୍ଥିତି ସମାନ ରହି ଆସିଛି । କଳା, ସଂଗୀତ, ସାହିତ୍ୟ ଇତ୍ୟାଦି ସୃଜନଶୀଳତା ସବୁ ସଭ୍ୟତାରେ ଓ ଜନଗୋଷ୍ଠୀରେ ପ୍ରକାଶ ପାଇଛି । ପ୍ରତ୍ୟେକ ଜନଗୋଷ୍ଠୀ ନିଜସ୍ୱ ଧାରାରେ ଜୀବନକୁ ସୁନ୍ଦର, ଉପଭୋଗ୍ୟ କରିବାକୁ ପନ୍ଥା ବାହାର କରିଛି । ଜୀବନ ବଂଚିବାର କଳା ଭିତରେ କିଛି କିଛି ଭିନ୍ନତା ଜନଗୋଷ୍ଠୀମାନଙ୍କ ମଧ୍ୟରେ ହୁଏତ ପରିଲକ୍ଷିତ ହୋଇପାରେ, ତେବେ ସାମ୍ରଗିକ ଭାବରେ ଜୀବନର ମୂଲ୍ୟ ଓ ମହତ୍ତ୍ୱ ନେଇ ମାନବିକ ପ୍ରତିକ୍ରିୟା ଭିତରେ ବିଶେଷ ପାର୍ଥକ୍ୟ ନାହିଁ ।

କୌଣସି କୌଣସି କାଳଖଣ୍ଡରେ କେଉଁ କେଉଁ ଭୂଖଣ୍ଡରେ କେତେକ ସାଂସ୍କୃତିକ ଜାଗରଣ ସାମାଜିକ ବିକାଶକୁ ତ୍ୱରାନ୍ୱିତ କରିଛି । କେତେକ ସ୍ୱତନ୍ତ୍ର ପରିସ୍ଥିତି ଯୋଗୁ କେତେକ ଭୂଖଣ୍ଡ ବିକାଶର ଧାରାରେ ଯଥେଷ୍ଟ ଅଗ୍ରଗତି କରିଥିବା ବେଳେ ଅନ୍ୟ ଭୂଖଣ୍ଡର ଜନଗଣ ବିକାଶ କରିପାରି ନାହାନ୍ତି । ବିଶେଷ କରି ଯେଉଁ ଭୂଖଣ୍ଡରେ ବିଜ୍ଞାନ ଓ ପ୍ରଯୁକ୍ତିର ବିକାଶ ଅଧିକ ହୋଇଛି ସେଠାରେ ଜୀବନର ସାଧାରଣ ମାନରେ ଉନ୍ନତି ଅଧିକ ହୋଇଛି । କେତେକ ସଭ୍ୟତା ଯେତେ ପ୍ରାଚୀନ ହେଲେ ମଧ ବିଜ୍ଞାନ ଓ ପ୍ରଯୁକ୍ତିର ଉପଯୁକ୍ତ ବିକାଶ ଅଭାବରେ ସେଠିକାର ଜନଗଣ ବିକାଶର ଶିଢ଼ିରେ ଉପରକୁ ଯାଇପାରି ନାହାନ୍ତି । ସମଗ୍ର ପୃଥିବୀରେ ସପ୍ତଦଶ ଶତାବ୍ଦୀ ଆରମ୍ଭ ପର୍ଯ୍ୟନ୍ତ କୃଷିଭିତ୍ତିକ ସମାଜ ଓ ଗ୍ରାମୀଣ ପରିବେଶ ସର୍ବତ୍ର ରହିଥିଲା । ଗୋଟିଏ ଭୂଖଣ୍ଡର ଧାର୍ମିକ ବିଶ୍ୱାସ, ପରଂପରା ଜୀବନବୋଧର ମୁଖ୍ୟ ଆୟୁଧ ଓ ଭିତ୍ତି ପାଲଟି ଥିଲା । ପାରଲୌକିକ ବିଶ୍ୱାସ, ରାଜତନ୍ତ୍ର, ସାମନ୍ତବାଦୀ ପରିବେଶ ସାର୍ବଜନୀନ ଭାବେ ସମଗ୍ର ପୃଥିବୀରେ ପରିବ୍ୟାପ୍ତ ଥିଲା । ତେବେ ଏହି ପରିସ୍ଥିତିରେ ୟୁରୋପରେ ଏକ ସାଂସ୍କୃତିକ ଜାଗରଣର ପରିବେଶ ଆସିଲା । ସେହି ସାଂସ୍କୃତିକ ଜାଗରଣର ଗଭୀର ପ୍ରଭାବରୁ ଜ୍ଞାନ ବିଜ୍ଞାନ ନେଇ ନୂଆ ନୂଆ ଦିଗନ୍ତ ସୃଷ୍ଟି ହେବାକୁ ଲାଗିଲା । ବିଶେଷକରି ସପ୍ତଦଶ ଶତାବ୍ଦୀରୁ ବିଜ୍ଞାନର ଯୁଗ ଆରମ୍ଭ ହେଲା । ଯୁଗ ଯୁଗର ବିଶ୍ୱାସ, ଭାବନା, ଜଗଦ୍‌ଦୃଷ୍ଟିକୁ ଆହ୍ୱାନ ଦେଇ ବିଜ୍ଞାନ ନୂତନ ଜ୍ଞାନର ପରିବେଶ ଆଣିଲା । ବୈଜ୍ଞାନିକ ଜ୍ଞାନ ଥିଲା ତଥ୍ୟଭିତ୍ତିକ ଓ ବସ୍ତୁନିଷ୍ଠ । ପର୍ଯ୍ୟବେକ୍ଷଣ, ପରୀକ୍ଷଣକୁ ଆଧାର କରି ବୈଜ୍ଞାନିକ ଜ୍ଞାନର ସୌଧ ଗଢ଼ି ଉଠିଲା । ପ୍ରକୃତିର ବହୁ ରହସ୍ୟ ଧୀରେ ଧୀରେ ଉନ୍ମୋଚିତ ହେବାକୁ ଲାଗିଲା । ଜଗତର ଉତ୍ପତ୍ତି, ମଣିଷର ବିବର୍ତ୍ତନ ନେଇ ରହି ଆସିଥିବା ଯୁଗ ଯୁଗର ବିଶ୍ୱାସ ବଦଳିଲା । ତେବେ ବିଜ୍ଞାନର ଯୁଗ ଆରମ୍ଭ ହେବାର ଦୁଇ ଶହ ବର୍ଷ ପରେ ପ୍ରଯୁକ୍ତିର ଯୁଗ ଆସିଲା । ବିଜ୍ଞାନକୁ ପ୍ରୟୋଗ କରି ଯେଉଁ ନୂଆ ନୂଆ ପ୍ରଯୁକ୍ତି ସୃଷ୍ଟି ହେଲା ତାହା ଜୀବନଯାତ୍ରାକୁ ସୁଖମୟ କରିବାର କେତେ କେତେ ପରିବେଶ ଆଣିଲା । ଜ୍ଞାନ, ବିଜ୍ଞାନର ଦିଗନ୍ତ ସଂପ୍ରତି ଯେତେ ଅଧିକ ପ୍ରସାରଲାଭ କରୁଛି, ନୂଆ ନୂଆ ପ୍ରାଯୁକ୍ତିକ କୌଶଳର ଉଦ୍‌ଭାବନ ହେଉଛି । ଶହେବର୍ଷ ତଳର ପୃଥିବୀ ଓ ଆଜିର ପୃଥିବୀ ଭିତରେ ରହିଛି ଅନେକ ପାର୍ଥକ୍ୟ । ଆଧୁନିକ ଗମନାଗମନ, ଯୋଗାଯୋଗ, ମୋବାଇଲ, ଇଣ୍ଟରନେଟ୍ ଓ ବହୁ ଉପକରଣ ବ୍ୟତୀତ ସାଂପ୍ରତିକ ଜୀବନ କିପରି ଅସହାୟ ହେବ ତାହା ସହଜରେ ଅନୁମେୟ । ଏତ୍‌ଦବ୍ୟତୀତ ବହୁ କ୍ଷେତ୍ରରେ ନୂଆ ନୂଆ ଗବେଷଣା ଜୀବନଧାରାକୁ ବହୁ ସୁଗମ କରିବାର ପରିବେଶ ଆଣି ପାରିଛି । ଅନେକ ମହାମାରୀ

ରୋଗମାନଙ୍କୁ ନିୟନ୍ତ୍ରଣ କରିବା ସମ୍ଭବ ହୋଇଛି । ବହୁ ମାରାତ୍ମକ ରୋଗମାନଙ୍କର ଚିକିତ୍ସା ବାହାରିବା ଯୋଗୁ ମଣିଷ ସମାଜ ବହୁ ସଫଳତା ହାସଲ କରିପାରୁଛି । ମଣିଷର ଆୟୁ ବଢ଼ିବା ସହ ପୃଥିବୀର ଲୋକସଂଖ୍ୟା ଅସମ୍ଭବ ଭାବରେ ବୃଦ୍ଧି ପାଇବାରେ ଲାଗିଛି । କ୍ରମବର୍ଦ୍ଧିଷ୍ଣୁ ଜନସଂଖ୍ୟାର ଆବଶ୍ୟକତା ପୂରଣ ପାଇଁ ଖାଦ୍ୟଶସ୍ୟର ଉତ୍ପାଦନ ମଧ୍ୟ ସେହିପରି ବୃଦ୍ଧି ପାଉଛି । ବୈଜ୍ଞାନିକ ପଦ୍ଧତିରେ ଖାଦ୍ୟ ଶସ୍ୟର ଉତ୍ପାଦନକୁ ବୃଦ୍ଧି କରିବା ସମ୍ଭବପର ହୋଇପାରିଛି । ଏହିପରି ଦେଖିଲେ ଏହି ଦୁଇ ଶହ ବର୍ଷ ଭିତରେ ପୃଥିବୀର ରୂପରେଖ ଅନେକଟା ପରିବର୍ତ୍ତନ ହେବାରେ ଲାଗିଛି ।

ଆଧୁନିକ ବିଜ୍ଞାନ ଓ ପ୍ରଯୁକ୍ତି ପଶ୍ଚାତରେ କେତେକ ତାତ୍ତ୍ୱିକ ସିଦ୍ଧାନ୍ତ ରହିଛି । ଯେଉଁ ବିଚାରବୋଧ ଓ ସିଦ୍ଧାନ୍ତକୁ ଆଧାର କରି ବିଜ୍ଞାନର ବିଜୟଯାତ୍ରା ଅଗ୍ରସର ହୋଇଛି ତାହା ଗୁରୁତ୍ୱପୂର୍ଣ୍ଣ ମନେହୁଏ । ବୈଜ୍ଞାନିକ ଗବେଷଣା ଓ ଜ୍ଞାନର ମୂଳଭିତ୍ତି ହେଉଛି ପ୍ରକୃତିବାଦ । ଆମ ଚତୁଃପାର୍ଶ୍ୱରେ ଯାହା ସବୁ ଅଛି ବା ଯାହା ସବୁ ଘଟଣା ଘଟେ ତାହା ପଶ୍ଚାତରେ କେବଳ ପ୍ରାକୃତିକ ନିୟମ ବା କାରଣ ରହିଛି । କୌଣସି ପ୍ରାକୃତିକ ଘଟଣା ପଶ୍ଚାତରେ କିଛି ଅତିପ୍ରାକୃତିକ ବା ଦୈବୀ କାରଣ ନାହିଁ । ପ୍ରକୃତିରେ ବହୁ ରହସ୍ୟ ରହିଛି । ପ୍ରକୃତିର ବିଶାଳତା ଓ ଜଟିଳତା ଯୋଗୁ ଏହି ରହସ୍ୟ ସ୍ୱାଭାବିକ ମନେହୁଏ । ତେବେ ମଣିଷ ନିଜର ପ୍ରୟାସ ଓ ଗବେଷଣା ଦ୍ୱାରା ବହୁ ଘଟଣାର ରହସ୍ୟକୁ ଜାଣି ପାରିବ । ଅତୀତରେ ଅନେକ ରହସ୍ୟ ଆଜି ବ୍ୟାଖ୍ୟା କରିବାକୁ ମଣିଷ ସମର୍ଥ ହୋଇପାରିଛି । ସେହିପରି ଆଜି ଆମ ପାଇଁ ଯାହା ରହସ୍ୟଜନକ ମନେହେଉଛି ମାନବିକ ପ୍ରୟାସ ଓ ଅନୁସନ୍ଧିତ୍ସା ଦ୍ୱାରା ତାହା ଆଗାମୀ ଦିନରେ ବୋଧଗମ୍ୟ ହୋଇପାରିବ । ପ୍ରକୃତିର ରହସ୍ୟକୁ ମାନବିକ ପ୍ରୟାସରେ ଉନ୍ମୋଚିତ କରିବା ସମ୍ଭବ । ପ୍ରକୃତିରେ ଯେଉଁ ଶୃଙ୍ଖଳା ଓ ଏକରୂପତା ବିଦ୍ୟମାନ ରହିଛି ତାହାର ଆବିଷ୍କାର ଦ୍ୱାରା ପ୍ରକୃତି ସଂପର୍କରେ ଆମର ଜ୍ଞାନ ବୃଦ୍ଧି ପାଇପାରିବ । ପ୍ରତ୍ୟେକ ଘଟଣା ପଶ୍ଚାତରେ କେବଳ ପ୍ରାକୃତିକ କାରଣ ଓ ନିୟମ ରହିଛି, କୌଣସି ଅତିପ୍ରାକୃତିକ ବା ଈଶ୍ୱରୀୟ କାରଣ ନାହିଁ । ପ୍ରକୃତିରେ ରହିଥିବା ଶୃଙ୍ଖଳା, କାର୍ଯ୍ୟ-କାରଣ ନିୟମ ଓ ଏକରୂପତା ବିଷୟରେ ଆମର ଜ୍ଞାନ କ୍ରମବର୍ଦ୍ଧିଷ୍ଣୁ ଭାବେ ବୃଦ୍ଧି ପାଇବା ବୈଜ୍ଞାନିକ କ୍ରିୟାଶୀଳତାର ପରିଣାମ । ଏହାରି ଆଧାରରେ ପ୍ରକୃତି ଉପରେ ଆମର କେତେକ ନିୟନ୍ତ୍ରଣ ଆସିପାରିଛି । ପ୍ରାକୃତିକ ପ୍ରତିକୂଳ ସ୍ଥିତିକୁ ସମ୍ମୁଖୀନ ହେବାକୁ ମଣିଷ ଧୀରେ ଧୀରେ ନିଜର ସାମର୍ଥ୍ୟ ବୃଦ୍ଧି କରିପାରୁଛି ।

ବୈଜ୍ଞାନିକ ଜ୍ଞାନ ଏକ ବ୍ୟବସ୍ଥିତ ପ୍ରଣାଳୀ ମଧ୍ୟ ଦେଇ ସମ୍ଭବ ହୋଇଥାଏ । ସେହି ପ୍ରଣାଳୀ ମୁକ୍ତ ଓ ନିରପେକ୍ଷ । ତାହାର ଆଧାର ହେଉଛି ପ୍ରତ୍ୟକ୍ଷ, ପର୍ଯ୍ୟବେକ୍ଷଣ ଓ ପରୀକ୍ଷଣ । ସ୍ଥଳ ବିଶେଷରେ ସଂଭାବନା ବା ପ୍ରକଳ୍ପ ସଂରଚନାର ଆଶ୍ରୟ ନିଆଯାଏ । ସମ୍ଭାବ୍ୟ ପ୍ରକଳ୍ପକୁ ବିଭିନ୍ନ ସ୍ଥିତିରେ ପରୀକ୍ଷା କରାଯାଏ । ବାରମ୍ବାର ପରୀକ୍ଷିତ ହେବା ପରେ ଏହା ସ୍ୱୀକୃତ ହୁଏ ବା ବ୍ୟତିକ୍ରମ ଦେଖାଦେଲେ ଏହାକୁ ପରିହାର କରି ନୂତନ ପ୍ରକଳ୍ପର ଅନୁମାନ କରାଯାଏ । ଏହିପରି ପରୀକ୍ଷା ଦ୍ୱାରା ସିଦ୍ଧାନ୍ତ ନିର୍ମାଣ କରାଯାଏ । ଏକ ସିଦ୍ଧାନ୍ତ ବା ସାମାନ୍ୟୀକରଣ କେବଳ ଏକକ ଘଟଣାକୁ ବ୍ୟାଖ୍ୟା କରେ ନାହିଁ ବରଂ ସେହି ସମ୍ବନ୍ଧୀୟ ସକଳ ଘଟଣାକୁ ବ୍ୟାଖ୍ୟା କରିବାକୁ ସମର୍ଥ ହୋଇଥାଏ । ବିଜ୍ଞାନ ଯେଉଁ ପଦ୍ଧତି ପ୍ରୟୋଗ କରେ ତାହା ସକଳ ବସ୍ତୁନିଷ୍ଠ ଜ୍ଞାନର ମୂଳଭିତ୍ତି ଓ ସାର୍ବଜାନୀନ । ଏକ ସାର୍ବଜନୀନ ପ୍ରଣାଳୀର ପ୍ରୟୋଗ ମାଧ୍ୟମରେ ବିଜ୍ଞାନ ତାର ଜ୍ଞାନର ପରିସରକୁ ବ୍ୟାପକ କରିପାରିଛି । ଏହି ଦୃଷ୍ଟିରୁ ଦେଖିଲେ ବୈଜ୍ଞାନିକ ଜ୍ଞାନ ସର୍ବଦା ତଥ୍ୟ ଆଧାରିତ ଓ ବସ୍ତୁନିଷ୍ଠ । ତେବେ ବିଜ୍ଞାନ ସର୍ବଦା ପ୍ରଗତିଶୀଳ ଜ୍ଞାନ ଦେଇଥାଏ । ନୂତନ ତଥ୍ୟ ବା ଅନୁଭୂତି ଆଧାରରେ କୌଣସି ବୈଜ୍ଞାନିକ ସିଦ୍ଧାନ୍ତକୁ ପରିବର୍ତ୍ତନ କରାଯାଏ । କୌଣସି ବୈଜ୍ଞାନିକ ନିଜର ବ୍ୟାଖ୍ୟାନ ବା ସିଦ୍ଧାନ୍ତକୁ ଶାଶ୍ୱତ ବା ଚିରନ୍ତନ ବୋଲି ଗ୍ରହଣ କରନ୍ତି ନାହିଁ । ଏହା ପ୍ରଗତିଶୀଳ ଓ ନୂତନ ତଥ୍ୟ ଆଧାରରେ ପରିବର୍ତ୍ତନଶୀଳ । ବୈଜ୍ଞାନିକ ପ୍ରଣାଳୀ ସ୍ୱସଂଶୋଧନାତ୍ମକ ଓ ପରିବର୍ତ୍ତନର ସମ୍ଭାବନାକୁ ଉନ୍ମୁକ୍ତ ରଖିଥାଏ । ଏହି ଦୃଷ୍ଟିରୁ ବିଚାର କଲେ ବୈଜ୍ଞାନିକ ବିଚାର କ୍ଷେତ୍ରରେ ପରସ୍ପର ବିରୋଧୀ ସିଦ୍ଧାନ୍ତ ରହିବା ସମ୍ଭବ ନୁହେଁ । ସୁତରାଂ ବୈଜ୍ଞାନିକ ଜ୍ଞାନ ପ୍ରଗତିଶୀଳ, ତଥ୍ୟଭିତ୍ତିକ, ପ୍ରଣାଳୀବଦ୍ଧ, ସାର୍ବଜନୀନ ଓ ଆବଶ୍ୟକ ବେଳେ ସ୍ୱସଂଶୋଧନାତ୍ମକ ।

ପୁନଶ୍ଚ ପ୍ରକୃତିର ବିଭିନ୍ନ କ୍ଷେତ୍ରରେ ରହିଥିବା ନିୟମ ଓ ସିଦ୍ଧାନ୍ତମାନ ପରସ୍ପର ସହ ସଂଯୋଜିତ ଓ ପରସ୍ପରର ପରିପୂରକ । ପଦାର୍ଥବିଜ୍ଞାନ, ରସାୟନବିଜ୍ଞାନ, ଜ୍ୟୋତିର୍ବିଜ୍ଞାନ, ଭୂତତ୍ତ୍ୱବିଜ୍ଞାନ ଇତ୍ୟାଦି ବିଜ୍ଞାନର ଯେତେ ଯେତେ କ୍ଷେତ୍ର ରହିଛି ସେହି ପ୍ରତ୍ୟେକ କ୍ଷେତ୍ରରେ ବହୁବିଧ ନିୟମ, ସିଦ୍ଧାନ୍ତମାନ ରହିଛି । ସମସ୍ତ ନିୟମ ଓ ସିଦ୍ଧାନ୍ତମାନ ପରସ୍ପର ସହ ସମତାଳ ଓ ସଂଯୁକ୍ତ । ସକଳ ନିୟମ, ସିଦ୍ଧାନ୍ତ, ପ୍ରକଳ୍ପମାନ ଏକ ପରସ୍ପର-ସଂଯୋଜିତ କ୍ରମ ସୃଷ୍ଟି କରିଥାନ୍ତି । ଏହି ପୃଷ୍ଠଭୂମିରେ ଯାହା ବୈଜ୍ଞାନିକ ପ୍ରକ୍ରିୟାରେ ବ୍ୟାଖ୍ୟା କରିବା ସମ୍ଭବ ହୁଏ ନାହିଁ, ତାହା ବିଜ୍ଞାନ ସ୍ୱୀକାର କରିଥାଏ । ପ୍ରାକୃତିକ ଜଟିଳତା

ଜନିତ କାରଣରୁ ଯାହା ଏକ ନିର୍ଦ୍ଧାରିତ ପଦ୍ଧତିରେ ବ୍ୟାଖ୍ୟା କରିବା ସମ୍ଭବ ନୁହେଁ ତାହାକୁ ଗ୍ରହଣ କରି ବିଜ୍ଞାନ ମାନବିକ ଅନୁସନ୍ଧିତ୍ସାର ଦ୍ୱାରକୁ ସର୍ବଦା ଉନ୍ମୁକ୍ତ ରଖିଥାଏ ।

ମାନବିକ ପ୍ରୟାସ, ଅନୁସନ୍ଧିତ୍ସା ଓ ଗବେଷଣାର ପରିଣାମ ସ୍ୱରୂପ ବିଜ୍ଞାନର ବିକାଶ ଏକ ଉତ୍ତୁଙ୍ଗ ଶିଖରକୁ ସ୍ପର୍ଶ କରିପାରିଛି ଓ ଏହି ଧାରା ଏବେ ବି ଉନ୍ମୁକ୍ତ ରହିଛି । ସଭ୍ୟତା ଯେତେ ଅଗ୍ରସର ହେଉଥିବ, ଜ୍ଞାନର ଦିଗନ୍ତ ସେତେ ବିସ୍ତାରିତ ହେଉଥିବ । ତେବେ ଏ କ୍ଷେତ୍ରରେ ଏକ ବଡ ଉପଲବ୍ଧି ହେଉଛି ଯେ ସଭ୍ୟତାରେ ଯାହା ସବୁ ବିକଶିତ ହୋଇଛି ସେସବୁ ମାନବୀୟ ପ୍ରୟାସ ଓ ପ୍ରଚେଷ୍ଟା ମଧ୍ୟ ଦେଇ ସମ୍ଭବ ହୋଇଛି । କୌଣସି ବିକାଶ ଆକାଶରୁ ଖସି ନାହିଁ ବା କେଉଁ କଳ୍ପିତ ଦିଅଁ ଦେବତାଙ୍କ ଆଶୀର୍ବାଦରୁ ମିଳି ନାହିଁ । ସେହିପରି ସାମାଜିକ ବିକାଶ ପ୍ରକ୍ରିୟାକୁ ମଣିଷ ବୈଜ୍ଞାନିକ ଧାରାରେ ବ୍ୟାଖ୍ୟା କରିପାରୁଛି । ସେଥିରୁ ମଧ୍ୟ ଏହି ସିଦ୍ଧାନ୍ତ ଆସୁଛି ଯେ ସାମାଜିକ ବିକାଶ ପ୍ରକ୍ରିୟା ନାନା ଅର୍ଥନୈତିକ, ରାଜନୈତିକ ଓ ସାଂସ୍କୃତିକ କାରଣ ଦେଇ ସମ୍ଭବ ହୋଇଛି । ସକଳ ନୀତି, ନୈତିକତା, ମୂଲ୍ୟବୋଧ ମାନବିକ ଅନୁଭୂତି ଓ ଉନ୍ନତ ସାମାଜିକ ଜୀବନ ନେଇ ଚିନ୍ତନରୁ ଉଦ୍‌ଭବ ହୋଇଛି । ଏହା ପଶ୍ଚାତରେ ସୁଦୀର୍ଘ ଇତିହାସ ରହିଛି । ଆଦିମ ଗୋଷ୍ଠୀ ଜୀବନରୁ ଆରମ୍ଭ ହୋଇଥିବା ଯାତ୍ରା ଆନ୍ତର୍ଜାତିକ ପରିବେଶ ନେଇ ଚେତନା ସୃଷ୍ଟି କରିପାରିଛି । ଆଜି ବିଶ୍ୱ ସରକାର, ସାର୍ବଜନୀନ ଜୀବନବୋଧ, ଆନ୍ତର୍ଜାତିକ ସଂପୃକ୍ତି ପରି କେତେକେତେ ବିଚାର ବ୍ୟକ୍ତ ହେବାରେ ଲାଗିଛି । ବିଜ୍ଞାନ ବିଶ୍ୱଦୃଷ୍ଟି ଓ ମାନବବାଦୀ ଚେତନାର ବିକାଶ ଦିଗରେ ମଧ୍ୟ ନିର୍ଣ୍ଣାୟକ ଭୂମିକା ନେଇପାରିବ । ତେବେ ବିଜ୍ଞାନର ଅପପ୍ରୟୋଗ ସଭ୍ୟତାର ମୃତ୍ୟୁଘଣ୍ଟି ମଧ୍ୟ ବଜାଇବାର ସମ୍ଭାବନାକୁ ଅସ୍ୱୀକାର କରିହେବ ନାହିଁ । ଏହି ମାନଦଣ୍ଡରୁ ବିଚାର କଲେ ବିଜ୍ଞାନ ନୀତି-ନିରପେକ୍ଷ । ଏହା ଏହି ଦୃଷ୍ଟିରୁ ନୀତି-ନିରପେକ୍ଷ ଯେ ଏହାକୁ ସଭ୍ୟତାର ବିକାଶ ଦିଗରେ ବିନିଯୋଗ କରାଯାଇପାରେ କିମ୍ବା ଧ୍ୱଂସ ଦିଗରେ ବି ବିନିଯୋଗ କରାଯାଇପାରେ । ବିଜ୍ଞାନ ଓ ଆଧୁନିକ ପ୍ରଯୁକ୍ତି ଆଜି ମଣିଷକୁ ଯେପରି ଶକ୍ତିଶାଳୀ କରିପାରିଛି ତାହା ଏକ ଶତାବ୍ଦୀ ତଳେ ଚିନ୍ତା ସ୍ତରରେ ମଧ୍ୟ ନଥିଲା । ତେବେ ଏହାକୁ ଭଲ ଦିଗରେ କିମ୍ବା ମନ୍ଦ ଦିଗରେ ବିନିଯୋଗ କରିବାର ଉତ୍ତରଦାୟିତ୍ୱ ଆମ ଉପରେ ନିର୍ଭର କରେ । ଜ୍ଞାନକୁ ବିନିଯୋଗ କରି ଆମ ସଂସାରରୁ ସକଳ ଦାରିଦ୍ର୍ୟ, ରୋଗ ଓ ମାନବିକ କଷ୍ଟକୁ ଦୂର କରିବା ଅନେକଟା ସମ୍ଭବ ହୋଇପାରିବ । ସଭ୍ୟତାର ଏତେ ବିକାଶ ସତ୍ତ୍ୱେ ମଧ୍ୟ ସଂସାରରେ ଏବେବି କେତେ କେତେ ମଣିଷ ନାନା ଅଭାବ ଓ ଦାରିଦ୍ର୍ୟ ଭିତରେ ଜୀବନ

ନିର୍ବାହ କରୁଛନ୍ତି । ବିକାଶଶୀଳ ଦେଶମାନଙ୍କରେ କେତେ କେତେ ମଣିଷ ଉପମାନବୀୟ ବା ସବ୍‌ହ୍ୟୁମାନ ସ୍ଥିତିରେ ବଞ୍ଚୁଛନ୍ତି । ଅଗଣିତ ଶିଶୁ ଅପପୁଷ୍ଟିରେ ଶିକାର ହେଉଛନ୍ତି ବା ଅତି କଅଁଳ ବୟସରୁ ଜୀବନର ଭାର ବୋହିବାକୁ ପରିସ୍ଥିତିରେ ପଡି ବାଧ୍ୟ ହେଉଛନ୍ତି । କେତେ କେତେ ମଣିଷ ସ୍ୱାସ୍ଥ୍ୟ ସେବାରୁ ବଞ୍ଚିତ ହୋଇ ରହୁଛନ୍ତି । ଏବେ ବି କେତେକ ଦେଶରେ ନିରକ୍ଷରତା ପରି ବ୍ୟାଧିମାନ ରହିଛି । ଏହିସବୁ ସମସ୍ୟାର ଦୂରୀକରଣ କ୍ଷେତ୍ରରେ ବିଜ୍ଞାନ ସର୍ବଶ୍ରେଷ୍ଠ ଆୟୁଧ ହୋଇପାରିବ ।

ତେବେ ଅନୁଶୋଚନାର ବିଷୟ ଏବେ ବି ପୃଥିବୀରେ ନାନା ଭେଦଭାବର ମାନସିକତା ରହିଛି । ଆଣବିକ ଅସ୍ତ୍ର ନିର୍ମାଣ କ୍ଷେତ୍ରରେ ତୀବ୍ର ପ୍ରତିଯୋଗିତାର ପରିବେଶ ରହିଛି । ପଡୋଶୀ ରାଷ୍ଟ୍ରମାନଙ୍କ ମଧ୍ୟରେ ଶତ୍ରୁ ଭାବାପନ୍ନ ମନୋଭାବ ଯୋଗୁ ପରସ୍ପର ଭିତରେ ସାମରିକ ଶକ୍ତିରେ ଅଧିକ ବଳଶାଳୀ ହେବାକୁ ପ୍ରୟାସ କରାଯାଉଛି । ଏହି ପ୍ରକ୍ରିୟାରେ ଅନେକ ଦୁର୍ମୂଲ୍ୟ ପ୍ରାକୃତିକ ସଂପଦ ନଷ୍ଟ ହେଉଛି । ପ୍ରତ୍ୟେକ ରାଷ୍ଟ୍ର ନିଜର ପ୍ରତିରକ୍ଷା କ୍ଷେତ୍ରରେ ଯେଉଁ ବିପୁଳ ଅର୍ଥ ବ୍ୟୟ କରୁଛି ତାହାକୁ ଯଦି ଜନକଲ୍ୟାଣକାରୀ ଲକ୍ଷ୍ୟରେ ବିନିଯୋଗ କରନ୍ତା, ତେବେ ପୃଥିବୀରୁ ସକଳ ଦାରିଦ୍ର୍ୟ ଅକ୍ଳେଶରେ ଦୂର ହୋଇପାରନ୍ତା । ସୁତରାଂ ଏହି ସ୍ଥିତିରେ ସମଗ୍ର ବିଶ୍ୱରେ ଏକ ସାଂସ୍କୃତିକ ଆଲୋଡନର ଆବଶ୍ୟକତା ରହିଛି । ବିଶ୍ୱଭ୍ରାତୃତ୍ୱ, ମାନବିକ ସମ୍ବେଦନଶୀଳତା, ଏକ ବିଦ୍ୱେଷମୁକ୍ତ ମାନବସମାଜର ଭାବନାକୁ କିପରି ସାର୍ବଜନୀନ କରାଯାଇ ପାରିବ ତାହା ଆମ ପାଇଁ ଏକ ବଡ ଆହ୍ୱାନ । ଅତୀତରେ ଅନେକ ମଣିଷ ବହୁ ଦୁଃଖ ଦୁର୍ଦ୍ଦଶା, ମାନବିକ କ୍ରୂରତା ସହ୍ୟ କରିଛନ୍ତି । ଆମ ସଂସାରରେ କେତେ କେତେ ଶୋଷଣ, ଅତ୍ୟାଚାର, ହିଂସା, ଅସହିଷ୍ଣୁତା ଅତୀତରେ ମାନବିକ ଦୁର୍ବୁଦ୍ଧିରୁ ସୃଷ୍ଟି ହୋଇଛି । ତେବେ ଅତୀତରେ ମଣିଷ ସଭ୍ୟତାକୁ ଧ୍ୱଂସ କରିବା ପରି ଶକ୍ତି ଅର୍ଜନ କରିପାରିନଥିଲା । ସଂପ୍ରତି ବିଜ୍ଞାନ ମଣିଷକୁ ଯେପରି ଆଣବିକ ଶକ୍ତିରେ ଶକ୍ତିଶାଳୀ କରିପାରିଛି ସେଥିରେ ବିଜ୍ଞାନର ଅପପ୍ରୟୋଗ କଲେ ସଭ୍ୟତା ଯେ ଆତ୍ମହତ୍ୟା କରିବ ଏହା ନିଃସନ୍ଦେହ ମନେହୁଏ ।

ଅବଶ୍ୟ ଏହା ସତ୍ୟ ଯେ ସବୁ ସଭ୍ୟତା ଓ ବିଭିନ୍ନ କାଳଖଣ୍ଡରେ କେତେକ ମହତ୍ତ୍ୱାକାଂକ୍ଷୀ ବ୍ୟକ୍ତି ବିଶ୍ୱଭ୍ରାତୃତ୍ୱ ଓ ବିଶ୍ୱବିବେକର ବାର୍ତ୍ତାବହ ହୋଇଛନ୍ତି । ଜାତି, ଧର୍ମ , ବର୍ଣ୍ଣ, ଜାତୀୟତାର ଊର୍ଦ୍ଧ୍ୱକୁ ଯାଇ ସେମାନେ ଶୁଦ୍ଧ ମାନବିକତାର ବାଣୀ ଶୁଣାଇଛନ୍ତି । ସଂପ୍ରତି ଏହି ବାର୍ତ୍ତା "ଗ୍ରହମଣ୍ଡଳୀୟ ମାନବବାଦ" ବିଚାର ଦେଇ କେତେକ ଦାର୍ଶନିକ

ବ୍ୟକ୍ତ କରୁଛନ୍ତି । ଆମ ଗ୍ରହମଣ୍ଡଳରେ ପୃଥିବୀ ହେଉଛି ଏକ ମାତ୍ର ଗ୍ରହ ଯେଉଁଠି ଏକ ସଭ୍ୟତାର ଅଭ୍ୟୁଦୟ ହୋଇଛି । ଅନ୍ୟ କୌଣସି ଗ୍ରହରେ ସଭ୍ୟତା ସମ୍ଭବତଃ ନାହିଁ । ତେବେ ଆମ ଗ୍ରହମଣ୍ଡଳ ବାହାରେ ଅନ୍ୟ କେଉଁଠି ସଭ୍ୟତା ରହିଛି କି ନାହିଁ ଆମ ଜ୍ଞାନର ବହିର୍ଭୂତ ହୋଇ ରହିଛି । ଏହି ସ୍ଥିତିରେ ଆମ ଗ୍ରହମଣ୍ଡଳ ପୃଥିବୀରେ ଯେଉଁ ସଭ୍ୟତାର ବିକାଶ ହୋଇଛି ତାହା କିପରି ସବୁଦିନ ପାଇଁ ଅତୁଟ ରହିବ ଓ ଅଧିକରୁ ଅଧିକ ଉନ୍ନତ ସ୍ଥିତିକୁ ଯିବ ସେଥିପ୍ରତି ସଚେତନ ରହିବା ଆମର ଏକ ନୈତିକ କର୍ତ୍ତବ୍ୟ । ଆମକୁ ମନେ ରଖିବାକୁ ହେବ ଯେ ବ୍ୟକ୍ତି ମରଣଶୀଳ ହେଲେ ମଧ୍ୟ ମଣିଷଜାତି ସ୍ଥାୟୀ । ସୁତରାଂ ଆମେ ଆଜି ଯେଉଁ ସ୍ଥିତିରେ ରହିଛେ ତାହା ପଶ୍ଚାତରେ ଆମ ପିତାମହ ଓ ପ୍ରପିତାମହ ମାନଙ୍କର ଭୂୟସୀ ଅବଦାନ ରହିଛି । ସେହିପରି ଆମର କର୍ତ୍ତବ୍ୟ ଆମର ଉତ୍ତରପିଢ଼ି ଓ ଭବିଷ୍ୟ ବଂଶଧରମାନଙ୍କ ପାଇଁ ରହିଛି । ସୁତରାଂ ଆମେ ସଂପ୍ରତି ଯେଉଁ ଜ୍ଞାନ ଓ ପ୍ରଯୁକ୍ତିର ଅଧିକାରୀ ହୋଇ ପାରିଛେ ତାହାର ସୁବିନିଯୋଗ ଦ୍ୱାରା ଓ କେତେକ ମାନବବାଦୀ ଜୀବନବୋଧ ଦ୍ୱାରା ଏକ ସୁନ୍ଦର ପୃଥିବୀ ରୂପରେଖ ନେଇ ପାରିବ । ସଂପ୍ରତି ଗଣମାଧ୍ୟମ ଓ ଆଧୁନିକ ଶିକ୍ଷାର ଯଥେଷ୍ଟ ଅଗ୍ରଗତି ହୋଇପାରିଛି । ତାହାରି ମାଧ୍ୟମରେ ବିଜ୍ଞାନର ହିତକାରୀ ପ୍ରୟୋଗ ଓ ମାନବବାଦୀ ଜୀବନବୋଧକୁ ସାର୍ବଜନୀନ କରାଯାଇ ପାରିବ । ଯଦି ଆମ ସଂସାରରୁ ସକଳ ଅସହିଷ୍ଣୁତା, ପ୍ରତିହିଂସା, ଶୋଷଣ ଇତ୍ୟାଦି ନକାରାତ୍ମକ ଭାବଧାରାର ବିଲୋପ ହୋଇ ଏକ ଭ୍ରାତୃତ୍ୱପୂର୍ଣ୍ଣ ଓ ପ୍ରୀତିପୂର୍ଣ୍ଣ ଜୀବନବୋଧର ବାର୍ତ୍ତା ସାର୍ବଜନୀନ ହୋଇପାରିବ ତେବେ ବିଜ୍ଞାନ ମାଧ୍ୟମରେ ଏକ ସୁନ୍ଦର ଓ ମାନବିକ ବିଶ୍ୱର ଚିତ୍ର ଅସମ୍ଭବ ହେବ ନାହିଁ । ପୃଥିବୀ ଏକ ସୁନ୍ଦର ପୃଥିବୀରେ ରୂପାନ୍ତରିତ ହେବା ସମ୍ଭବ ହେବ ।



# କୁସଂସ୍କାର ଓ ଜନଜୀବନ

କୁସଂସ୍କାର, ଅପବିଶ୍ୱାସ ବା ଅନ୍ଧବିଶ୍ୱାସର ପରିସର ବହୁ ବ୍ୟାପକ । ଯେଉଁ ବିଶ୍ୱାସମାନ ଅହେତୁକ, ଅବୈଜ୍ଞାନିକ ଏବଂ ଅଯୌକ୍ତିକ ସେସବୁକୁ ସାଧାରଣତଃ କୁସଂସ୍କାର ବା ଅନ୍ଧବିଶ୍ୱାସ କୁହାଯାଏ । ଅନ୍ଧବିଶ୍ୱାସ ଦୃଷ୍ଟିହୀନ ବ୍ୟକ୍ତିଙ୍କର ବିଶ୍ୱାସ ନୁହେଁ ବା ଏହି ଶବ୍ଦ ସହ ଦୃଷ୍ଟିହୀନତାର ସଂପର୍କ ନାହିଁ । ବରଂ ଯେଉଁମାନେ ବିଚାରହୀନ ଭାବରେ କେତେକ ବିଶ୍ୱାସକୁ ଗ୍ରହଣ କରନ୍ତି ଓ ଅସତ୍ୟ, ଅବୈଜ୍ଞାନିକ ଓ ଅମାନବିକ ପ୍ରଥାରେ ଆସ୍ଥା ସ୍ଥାପନ କରନ୍ତି ସେହିମାନେ ଅନ୍ଧବିଶ୍ୱାସୀ । ସୁତରାଂ ଅନ୍ଧବିଶ୍ୱାସ ବିଚାରହୀନତାର ପ୍ରତୀକ, ଏହା ଦୃଷ୍ଟିହୀନତା ସହ ସଂପର୍କିତ ନୁହେଁ । ଜଣେ ଦୃଷ୍ଟିହୀନ ବ୍ୟକ୍ତି ଏକ ଶାରୀରିକ ସାମର୍ଥ୍ୟର ଅଧିକାରୀ କୁହନ୍ତି, କିନ୍ତୁ ସେ ଚିନ୍ତା ଓ ବିଚାର ସ୍ତରରେ ଜଣେ ମୁକ୍ତଚିନ୍ତକ, ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ପୃଷ୍ଠପୋଷକ ଓ ସତ୍ୟାନ୍ୱେଷୀ ବ୍ୟକ୍ତି ହେବା ସମ୍ଭବ । ଅପରପକ୍ଷରେ ଜଣେ ଅନ୍ଧବିଶ୍ୱାସୀ ବିଚାରହୀନ, ଯୁକ୍ତିରହିତ ଓ ଅବୈଜ୍ଞାନିକ ଭାବନାକୁ ଗ୍ରହଣ କରନ୍ତି ।

ଏହା ଏକ ଐତିହାସିକ ଉପଲବ୍ଧି ଯେ ସଭ୍ୟତାର କ୍ରମବିକାଶ ସହ ଜ୍ଞାନବିଜ୍ଞାନର କ୍ରମବିକାଶ ଘଟିଛି । ଆଜି ମାନବ ସଭ୍ୟତା ଯେଉଁ ସ୍ଥିତିକୁ ଉତ୍ତରିତ ହୋଇଛି ତାହା ପଶ୍ଚାତରେ ଏକ ସୁଦୀର୍ଘ ଇତିହାସ ରହିଛି । ସଭ୍ୟତାର ବିକାଶଧାରାରେ ଆଧୁନିକ ବିଜ୍ଞାନର ଅଭ୍ୟୁଦୟ ଏକ ଐତିହାସିକ ଘଟଣା । ବିଜ୍ଞାନର ଯୁଗ ଆସିବା ପରେ ପ୍ରକୃତିର ବିଭିନ୍ନ ଘଟଣା ଓ ଜୀବନର ଅନେକ ଘନଘଟାକୁ ବୁଝିବାର ସାମର୍ଥ୍ୟ ଆସିପାରିଛି । ବିଜ୍ଞାନ ଏକ ନିର୍ଭରଶୀଳ ସାର୍ବଜନୀନ ପ୍ରଣାଳୀ ପ୍ରୟୋଗ କରି ପ୍ରକୃତିର ବିଭିନ୍ନ ବସ୍ତୁ, ଘଟଣା ଓ ରହସ୍ୟର କାରଣ ବସ୍ତୁନିଷ୍ଠ ଓ ତଥ୍ୟାଧାରରେ ବ୍ୟାଖ୍ୟା କରି ପାରୁଛି । ସେହିପରି ଆମ ଜୀବନଯାତ୍ରାରେ ଘଟୁଥିବା ବହୁ ଘଟଣା, ଆମର ରୋଗବାଧକ, ସାମାଜିକ ପରିସ୍ଥିତି,

ଆର୍ଥନୀତିକ ବ୍ୟବସ୍ଥା, ରାଜନୈତିକ ପରିବେଶ, ସାଂସ୍କୃତିକ ବିଚାରବୋଧ ଇତ୍ୟାଦିର କାରଣ ଓ ଯୁକ୍ତିନିଷ୍ଠ ବିଶ୍ଳେଷଣ କରିବା ସମ୍ଭବ ହେଉଛି । ଆମର ବୌଦ୍ଧିକ ଗବେଷଣାର ଦିଗନ୍ତ ଏତେ ବ୍ୟାପକ ଓ ବିସ୍ତାରିତ ହୋଇଚାଲିଛି ଯେ ସଂପ୍ରତି ଜ୍ଞାନରାଜ୍ୟରେ ବିସ୍ଫୋରଣ ଆସିଥିବା କୁହାଯାଉଛି । ପରିଣାମସ୍ୱରୂପ ଜୀବନଯାତ୍ରାର ମାନରେ କ୍ରମବର୍ଦ୍ଧିଷ୍ଣୁ ଉନ୍ନତି ହୋଇଚାଲିଛି ତଥା ଶିକ୍ଷା, ସଂସ୍କୃତି, ସାମାଜିକ ମୂଲ୍ୟବୋଧ, ଗଣତାନ୍ତ୍ରିକ ଚେତନା, ମାନବିକ ଅଧିକାର ଇତ୍ୟାଦି ପ୍ରସଙ୍ଗରେ ବହୁ ଅଭିନବ ବିଚାରମାନ ସୃଷ୍ଟି ହୋଇଛି ।

ତେବେ ଆମ ଜନଜୀବନରେ ଏପରି କେତେକ ଘଟଣା, ବଶ୍ୱାସ ଓ କାର୍ଯ୍ୟ ଘଟୁଛି ଯାହା ଆମକୁ ଅତ୍ୟନ୍ତ ଅସ୍ୱାଭାବିକ, ଅମାର୍ଜିତ ଅମାନବିକ, ଅହେତୁକ ଓ ସଭ୍ୟ ଜୀବନବୋଧର ପରିପନ୍ଥୀ ମନେହୁଏ । ଏହାକୁ ଆମେ ସାଧାରଣତଃ ଅନ୍ଧବିଶ୍ୱାସ କହୁଛେ । ହୁଏତ ଅତୀତରେ ବା ପ୍ରାଚୀନ ସମାଜରେ ଜ୍ଞାନ ବିଜ୍ଞାନର ଅଭାବରେ ଏହିସବୁ ବିଶ୍ୱାସ ସମାଜରେ ରହିଥିଲା । ସଭ୍ୟତାର ଶୈଶବ କାଳରେ ଯେଉଁ ଭାବନା, ବିଶ୍ୱାସ ଓ କେତେକ ଅମାନବିକ ପ୍ରଥା ରହିଥିଲା ତାହା ଆଜିର ମାନଦଣ୍ଡରେ ଆମ ପାଇଁ ଅନ୍ଧବିଶ୍ୱାସ । ଆମର ପିତାମହ, ପ୍ରପିତାମହମାନେ ଅଜ୍ଞତାର ପରିସର ଭିତରେ ନାନା ଭୟ, ନିରାପତ୍ତାବିହୀନ ଓ ଅସୁରକ୍ଷିତ ସ୍ଥିତିରେ ଜୀବନ ବଞ୍ଚୁଥିବା ବେଳେ ନାନା ପ୍ରକାରର କାଳ୍ପନିକ ଓ ଅହେତୁକ ବିଶ୍ୱାସ ପୋଷଣ କରୁଥିଲେ । ତେବେ ସେହି ପରିବେଶଠାରୁ ଆଜିର ସ୍ଥିତି ସଂପୂର୍ଣ୍ଣ ଭିନ୍ନ । ନାନା ପ୍ରକାରର ଉତ୍ପୀଡନ ଓ ଭୟ ଭିତରେ ସେମାନଙ୍କ ସଂସାରଟି ବହୁ ସଙ୍କୁଚିତ ହୋଇ ରହିଥିଲା ଓ ସେହି ସ୍ଥିତିରେ ନାନା ଅହେତୁକ ବିଶ୍ୱାସ ପୋଷଣ କରିବା ସେମାନଙ୍କ ପାଇଁ କିଛିଟା ଅର୍ଥବହନ କରୁଥିଲା । କିନ୍ତୁ ସଂପ୍ରତି ସଭ୍ୟତାର ଉତ୍ତୁଙ୍ଗ ବିକାଶ, ଜ୍ଞାନବିଜ୍ଞାନର ଆଶାତୀତ ଅଗ୍ରଗତି, ଆଧୁନିକ ପ୍ରଯୁକ୍ତିର ଚମକପ୍ରଦ ପ୍ରୟୋଗ ଯୁଗରେ କେତେକ ବିଶ୍ୱାସ ଆମକୁ ଏପରି ଅହେତୁକ ଓ ଅମାନବିକ ମନେହେଉଛି ଯାହାକୁ ଆମେ ଅନ୍ଧବିଶ୍ୱାସ କହୁଛେ । ସେହି ବିଶ୍ୱାସ ସକଳ ଏପରି ଅଜ୍ଞତା ଓ ବର୍ବରତାର ଚିତ୍ର ଦେଉଛି ଯାହା ସମାଜରୁ ଦୂର ହେବା ନିତାନ୍ତ ଆବଶ୍ୟକ ବୋଲି ଆମେ ବିଚାର କରୁଛେ । ଏହିପରି ଆମ ଜନଜୀବନକୁ କେତେକ ଘଟଣା ଓ ବିଶ୍ୱାସର ଅବତାରଣା କରାଇବା ଏହି ଲେଖାଟିର ଉଦ୍ଦେଶ୍ୟ । ଏହି ଅନ୍ଧବିଶ୍ୱାସର ପରିସର ଓ ଦିଗନ୍ତ ଏତେ ବ୍ୟାପକ ଯେ ତାହାର ଏକ ସାମଗ୍ରିକ ଚିତ୍ର ପ୍ରଦାନ କରିବା ସମ୍ଭବ ନୁହେଁ । ତେବେ ଏହାର କିଛି ସଂକ୍ଷିପ୍ତ ବିବରଣୀର ବର୍ଣ୍ଣନା କରାଯାଇପାରେ ।

ପଶୁବଳି, ନରବଳି ଓ ଶିଶୁବଳି କେତେକ ପ୍ରାଚୀନ ଅନ୍ଧବିଶ୍ୱାସ । ବହୁ ଦେବବାଦର ବିଶ୍ୱାସ ଯେଉଁ ସମୟରେ ସମାଜରେ ରହିଥିଲା, ସେହି ସମୟରେ ଭାବନା ଥିଲା ଯେ ପ୍ରକୃତିର ପ୍ରତ୍ୟେକ କ୍ଷେତ୍ର ଓ ଜୀବନଧାରାର ପ୍ରତ୍ୟେକ ବିଭାଗ କୌଣସି ଦିଅଁ, ଦେବ ବା ଦେବୀ ଦ୍ୱାରା ନିୟନ୍ତ୍ରିତ ହେଉଛି । ସୂର୍ଯ୍ୟ, ଚନ୍ଦ୍ର, ଅଗ୍ନି ବାୟୁ, ଜଳ ଇତ୍ୟାଦି ପ୍ରାକୃତିକ ଉପାଦାନମାନଙ୍କୁ ମଣିଷ ଦେବତା ବୋଲି କଳ୍ପନା କରିଥିଲା ଓ ସେମାନଙ୍କ ଉଦ୍ଦେଶ୍ୟରେ କେତେ କେତେ ପୂଜା, ଆବାହନର ମନ୍ତ୍ର ଓ ପ୍ରାର୍ଥନାର ଭାବନା ସୃଷ୍ଟି କରିଥିଲା । ଜ୍ଞାନ, ଧନ, ଉତ୍ପାଦନ, ଜନ୍ମ, ମୃତ୍ୟୁ, ଉତ୍ତମ ସ୍ୱାସ୍ଥ୍ୟ, ସୁଖମୟ ଦାଂପତ୍ୟ ଜୀବନ ଇତ୍ୟାଦି କ୍ଷେତ୍ରଗୁଡ଼ିକ କୌଣସି ଦେବୀ ଦେବତାର ନିୟନ୍ତ୍ରଣାଧୀନ ବୋଲି ଭାବନା ରହିଥିଲା । ସେହି ଦେବତାଙ୍କୁ ତୁଷ୍ଟି କରିବା ପାଇଁ ତାଙ୍କ ପାଖରେ ପଶୁବଳି ବା ନରବଳି ଦେଲେ ସେ ଅଭିଷ୍ଟ ପୂରଣ କରିବେ ବୋଲି ବିଶ୍ୱାସ କରାଯାଉଥିଲା । ପରବର୍ତ୍ତୀ ସମୟରେ ଏକେଶ୍ୱରବାଦ ଭାବନାର ବିକାଶ ଯୋଗୁ ଏହି ବିଶ୍ୱାସରେ ପରିବର୍ତ୍ତନ ଆସିଲା । ଈଶ୍ୱର ଏକ, ଅନାଦି, ସର୍ବଶକ୍ତିମାନ, ସର୍ବଜ୍ଞ, କରୁଣାମୟ ଇତ୍ୟାଦି ଭାବନା କେତେକ କ୍ରାନ୍ତିକାରୀ ଚିନ୍ତାନାୟକ ବିଭିନ୍ନ ସଭ୍ୟତାରେ ବିକଶିତ କରାଇଥିଲେ । ସେମାନେ ଏହି ବିଶ୍ୱାସ ମଧ ସୃଷ୍ଟି କରିଥିଲେ ଯେ ଏ ବିଶ୍ୱର ସ୍ରଷ୍ଟା ଓ ପାଳନକର୍ତ୍ତା ହେଉଛନ୍ତି ଈଶ୍ୱର । ଅତୀତର ବଳି, ଉଦଣ୍ଡ ନୃତ୍ୟ ପରବର୍ତ୍ତୀ ସମୟରେ ଧ୍ୟାନ, ପ୍ରାର୍ଥନା, ମାନସିକ ସମର୍ପଣ, ପୂଜା ଆରାଧନାର ରୂପ ନେଲା । ତେବେ ଯେଉଁ ଜନଗୋଷ୍ଠୀ ଭିତରେ ଏ ପର୍ଯ୍ୟନ୍ତ ପଶୁବଳି ବା ନରବଳିର ବିଶ୍ୱାସ ରହିଛି ସେମାନେ ଯେ ସଭ୍ୟତାର ଶିଡ଼ିରେ ତଳେ ରହିଛନ୍ତି ଏହା ମନେହୁଏ । କିମ୍ବା ଯେଉଁ ବ୍ୟକ୍ତିମାନେ ସାମାଜିକ ପ୍ରତିକୂଳତା ବା ଜୀବନର ଘନଘଟାକୁ ଦୂର କରିବା ପାଇଁ ଦେବତାର ସନ୍ତୁଷ୍ଟିକରଣ ଧାରାରେ ବଳି ପ୍ରଥାରେ ଆସ୍ଥା ସ୍ଥାପନ କରୁଛନ୍ତି ସେମାନେ ଯେ ମାନବ ବିକାଶର ଶିଡ଼ିର ନିମ୍ନ ପାହାଚରେ ରହି ଅଜ୍ଞତାର ଜୀବନ ନିର୍ବାହ କରୁଛନ୍ତି ଏହା କହିବା ପ୍ରାସଙ୍ଗିକ ମନେହୁଏ । ହୁଏତ ଏହା ପଶ୍ଚାତରେ ନାନା ମନସ୍ତାତ୍ତ୍ୱିକ, ସାମାଜିକ, ସାଂସ୍କୃତିକ କାରଣ ଇତ୍ୟାଦି ବି ରହିଥାଏ ।

ଡାହାଣୀ, ଗୁଣିଗାରେଡ଼ି, କାଳିସୀ ପରି ବିଶ୍ୱାସମାନ କେତେକ ଗୋଷ୍ଠୀ ବା ସମାଜରେ ରହିଥିବା ଦେଖାଯାଏ । ଗୋଟିଏ ସମୟରେ ମନ୍ଦାତ୍ମା, ଡାହାଣୀର ବିଶ୍ୱାସ ବିଭିନ୍ନ ସମାଜରେ ରହିଥିଲା । ବିଶେଷ କରି ପୁରୁଷତାନ୍ତ୍ରିକ ସମାଜରେ ମହିଳାମାନଙ୍କର ସ୍ୱତନ୍ତ୍ରତା ବା ମାନବିକ ଅଧିକାର ନଥିଲା ବା ଅତ୍ୟନ୍ତ ସଙ୍କୁଚିତ ହୋଇ ରହିଥିଲା ।

ମଧ୍ୟଯୁଗୀୟ ମାନସିକତାରେ ଡାହାଣୀ, ପ୍ରେତାତ୍ମା, ଦୁଷ୍ଟାତ୍ମା, ଅଶରୀରୀ ସତ୍ତାର ବିଶ୍ୱାସ ନାନା ଭାବରେ ବିଭିନ୍ନ ଧର୍ମଗୋଷ୍ଠୀରେ ରହିଥିଲା । ଜନ୍ମାନ୍ତରବାଦରେ ବିଶ୍ୱାସ କରୁଥିବା ଧର୍ମଗୋଷ୍ଠୀରେ ବିଶ୍ୱାସ ଥିଲା ଯେ ଯେଉଁ ବ୍ୟକ୍ତିର ମୃତ୍ୟୁ ଅସ୍ୱାଭାବିକ କାରଣରୁ ହୋଇଥାଏ ସେ ଭୂତ ହୋଇଯାଏ । ହତ୍ୟା, ଆତ୍ମହତ୍ୟା, ଦୁର୍ଘଟଣା ଇତ୍ୟାଦି କାରଣରୁ ମରିଯାଉଥିବା ଲୋକମାନେ ଓ ଦୁଷ୍ଟ ଲୋକମାନେ ଭୂତ ଓ ପ୍ରେତ ହୁଅନ୍ତି । ଭୂତମାନେ ଅତ୍ୟନ୍ତ ହିଂସ୍ର, ପ୍ରତିଶୋଧପରାୟଣ ଓ କ୍ଷତିକାରକ ଅଟନ୍ତି । ଏପରିକି ଯେଉଁ ଧର୍ମମାନଙ୍କରେ ପୁନର୍ଜନ୍ମର ଭାବନା ନାହିଁ ସେଥିରେ ବିଶ୍ୱାସ ରହିଛି ଯେ ଈଶ୍ୱରଙ୍କ ସୃଷ୍ଟି ପ୍ରକ୍ରିୟାରେ କେତେକ ଦୁଷ୍ଟାତ୍ମା ସୃଷ୍ଟି ହୋଇଛନ୍ତି । ଏହି ଦୁଷ୍ଟାତ୍ମାମାନ ମହିଳାମାନଙ୍କ ଶରୀରରେ ପ୍ରବେଶ କରିଥାନ୍ତି । ଏକ ଦୁଷ୍ଟାତ୍ମା ଜଣେ ମହିଳାଙ୍କ ଶରୀରରେ ପ୍ରବେଶ କଲେ ସେହି ମହିଳା ଅଶୁଭ, ଅନିଷ୍ଟକର ଓ ମନ୍ଦ ପାଲଟିଯାଏ । ୟୁରୋପୀୟ ସମାଜରେ ମଧ୍ୟଯୁଗରେ ବହୁ ମହିଳାଙ୍କୁ ଏହି ଅଭିଯୋଗରେ ଅମାନୁଷିକ ଭାବରେ ହତ୍ୟା କରାଯାଇଥିବାର କାହାଣୀ ବେଶ୍ ମର୍ମାନ୍ତିକ ଓ ସୁବିଦିତ । ତେବେ ବିଜ୍ଞାନର ଯୁଗ ଆସିବା ପରେ ୟୁରୋପୀୟ ସମାଜରୁ ଏହି ବିଶ୍ୱାସ ଲୋପ ପାଇଲା । ଭାରତୀୟ ସମାଜ ଓ ବିଶେଷକରି ବିଭିନ୍ନ ଆଦିବାସୀ ଗୋଷ୍ଠୀ ଓ ଗାଁ ଗହଳରେ ଡାହାଣୀର ଭାବନା ରହିଆସିଛି । ଓଡ଼ିଶାରେ ଡାହାଣୀ ସମସ୍ୟା ଏକ ସାମାଜିକ ଅନ୍ଧବିଶ୍ୱାସ । ସାଧାରଣତଃ ଦେଖାଯାଏ ଯେ ଗ୍ରାମରେ କୌଣସି ପରିବାରରେ କିଛି ଅଘଟଣ ଘଟିଲେ, ରୋଗ ବାଧକରେ କେହି ଆକ୍ରାନ୍ତ ହେଲେ ବା ମୃତ୍ୟୁବରଣ କଲେ, କ୍ରମାଗତ ଭାବେ ଅଶୁଭ ଘଟଣାମାନ ଘଟିଲେ ତାହାର କାରଣ ସ୍ୱରୂପ ଲୋକମାନେ ଏହା ଡାହାଣୀର କାର୍ଯ୍ୟ ବୋଲି ଭାବନ୍ତି । ସ୍ଥଳ ବିଶେଷରେ ଗ୍ରାମର କେହି ଅସହାୟ ବିଧବା, ଦଳିତ ବା ଆଦିବାସୀ ମହିଳାଙ୍କୁ ଡାହାଣୀ ବୋଲି ଆଖ୍ୟା ଦିଆଯାଏ । ଏପରି ମଧ୍ୟ ଦେଖାଯାଏ ଯେ କେହି ମହିଳା ଏକାକୀ ରହୁଥିଲେ, ତାଙ୍କର ଜମି ଓ ଘର ଡିହ ଉପରେ ଅନ୍ୟମାନଙ୍କର କୋପଦୃଷ୍ଟି ରହିଥିଲେ କିମ୍ବା ଗ୍ରାମର କିଛି ପ୍ରଭାବଶାଳୀ ଲୋକଙ୍କର ସେ ବଶ୍ୟତା ସ୍ୱୀକାର କରୁନଥିଲେ ତାଙ୍କୁ ଡାହାଣୀ ବୋଲି ପ୍ରଚାର କରାଯାଏ । ତାନ୍ତ୍ରିକ ବା ଦିଶାରୀ ଓ ଗୁଣିଆମାନେ ଗ୍ରାମର ଲୋକମାନଙ୍କ ଉପରେ ପ୍ରଭାବ ବିସ୍ତାର କରିଥିବା ଦେଖାଯାଏ । ସେହି ତାନ୍ତ୍ରିକମାନେ ମନ୍ଦ ଉଦ୍ଦେଶ୍ୟ ରଖି ଗ୍ରାମର କିଛି ଅଘଟଣ ପାଇଁ ଡାହାଣୀମାନଙ୍କୁ ଦୋଷ ଦିଅନ୍ତି ଓ ଲୋକମାନେ ତାହା ବିଶ୍ୱାସ କରନ୍ତି । ତାନ୍ତ୍ରିକ ମାନେ ବିଭିନ୍ନ ପୂଜା ଆରାଧନାର ଉପଯୋଗ କରି ସେମାନଙ୍କର ଅଲୌକିକ ଶକ୍ତି ଥିବା ବିଷୟରେ ଧାରଣା ସୃଷ୍ଟି କରନ୍ତି ଓ

ଡାହାଣୀ ରହିଥିବା ଭାବନାକୁ ପ୍ରସାର କରନ୍ତି । ଲୋକବିଶ୍ୱାସ ଅନୁଯାୟୀ ଡାହାଣୀମାନେ ମନ୍ଦ, ସେମାନେ ଅନ୍ୟର ଅମଙ୍ଗଳ କରନ୍ତି, ତାଙ୍କ କାର୍ଯ୍ୟ ଯୋଗୁ ଗାଁରେ ଅପମୃତ୍ୟୁ, ଅଘଟଣ ଘଟେ ଓ ସେମାନଙ୍କର ଦୃଷ୍ଟି ପଡିଲେ ଅଶୁଭ ଫଳ ମିଳେ ଏହିପରି ନାନା କାରଣ ଯୋଗୁ ଓ ଗଭୀର ଅଜ୍ଞତା ଯୋଗୁ ଡାହାଣୀ ଆଖ୍ୟା ପାଇଥିବା ମହିଳାଙ୍କ ପ୍ରତି ଗାଁର ଲୋକମାନେ ହିଂସ୍ର ଓ ପ୍ରତିଶୋଧ ପରାୟଣ ହୋଇଉଠନ୍ତି । ଡାହାଣୀ ଆଖ୍ୟା ଦେଇ ନିରୀହ ମହିଳାଙ୍କୁ ସର୍ବ ସମ୍ମୁଖରେ ଉଲଗ୍ନ କରାଇବା, ବିଷ୍ଠା ଖୁଆଇବା, ମୂତ୍ର ପିଆଇବା, ହତ୍ୟା କରିବା ପରି ଅଭାବନୀୟ ଓ ଅମାନବିକ ଘଟଣା ସୃଷ୍ଟି କରନ୍ତି । ଦେଖାଯାଏ ଯେ ତଥାକଥିତ ନିମ୍ନ ଜାତିର ଦଳିତ ବା ଆଦିବାସୀ ମହିଳାମାନେ ଏହି ଅତ୍ୟାଚାରର ଶରବ୍ୟ ହୋଇଥାନ୍ତି । କିମ୍ବା ଏପରି ମଧ୍ୟ ଜଣାଯାଏ ଯେ ଗ୍ରାମର କୌଣସି ପରିବାର ପ୍ରତି ଈର୍ଷା ରହିଥିଲେ ବା ଅନ୍ୟମାନଙ୍କ ତୁଳନାରେ ସେହି ପରିବାର ଟିକିଏ ସଂପନ୍ନ ଥିଲେ ଓ ଅନ୍ୟମାନେ ରୋଗବାଧକରେ ପଡୁଥିଲେ ସେମାନଙ୍କ ପରିବାର ମନ୍ତ୍ର ତନ୍ତ୍ର କରି ଅନ୍ୟମାନଙ୍କୁ ଅସୁବିଧାରେ ପକାଉଛି ବୋଲି ବିଶ୍ୱାସ କରାଯାଇ ସେହି ପରିବାର ଉପରେ ଆକ୍ରମଣ କରାଯାଏ । ଏପରିକି ଗୁଣିଗାରେଡି, ମନ୍ତ୍ର, ତନ୍ତ୍ର, କଳାଯାଦୁ ଇତ୍ୟାଦି ଭାବନା ଆଧାରରେ ଗାଁ ଗାଁ ଭିତରେ ମନୋମାଳିନ୍ୟ ସୃଷ୍ଟି ହୁଏ । ଦୁଇ ଗାଁ ଭିତରେ କିଛି ବିବାଦ ରହିଥିଲେ ଗୋଟିଏ ଗାଁର ଅଘଟଣ, ରୋଗ, ମୃତ୍ୟୁ ଇତ୍ୟାଦି ଅଶୁଭ ଘଟଣା ପାଇଁ ଅନ୍ୟ ଗ୍ରାମର ଲୋକମାନଙ୍କୁ ଦାୟୀ କରାଯାଏ । ଏହିସବୁ ଘଟଣାମାନଙ୍କୁ ନେଇ ଗାଁ ଗାଁ ଭିତରେ ତିକ୍ତତା ସୃଷ୍ଟି ହୁଏ । ଅଶିକ୍ଷା, ଅଜ୍ଞତା, ଅମାନବୀୟ କ୍ରୂରତା ଇତ୍ୟାଦି କାରଣରୁ ଏହି ପ୍ରକାରର ପରିସ୍ଥିତି ଉତ୍କଟ ଦାରିଦ୍ର୍ୟ ଭିତରେ ରହିଥିବା ଲୋକମାନଙ୍କ ପାଖରେ ଦେଖାଯାଏ ।

ଏବେ ବି ଜ୍ଞାନ, ବିଜ୍ଞାନ, ଶିକ୍ଷାର ଆଲୋକ ଅନେକ ଗ୍ରାମମାନଙ୍କୁ ଯାଇପାରି ନାହିଁ । ଅତୀତରେ ଯେତେବେଳେ ଜ୍ଞାନ, ବିଜ୍ଞାନର ବିଶେଷ ବିକାଶ ହୋଇନଥିଲା ବା ତାର ପ୍ରଭାବ ଜନଜୀବନକୁ ସ୍ପର୍ଶ କରିନଥିଲା ସେତେବେଳେ ବିଭିନ୍ନ ପ୍ରକାରର "କଳାଯାଦୁ" ଉପରେ ଲୋକମାନେ ଆସ୍ଥା ସ୍ଥାପନ କରୁଥିଲେ । ଲୋକମାନଙ୍କର ଏହି ଅଜ୍ଞତାର ସୁଯୋଗ ନେଇ କିଛି ଧୂର୍ତ୍ତ ବ୍ୟକ୍ତି ମନ୍ତ୍ର, ତନ୍ତ୍ର, ଖଟବୁଲା, କୁଲାବୁଲା, ନଖଦର୍ପଣ ଇତ୍ୟାଦି ବିଚାରର ପୃଷ୍ଠପୋଷକ ଥିଲେ । ସେମାନେ କିଛି ତନ୍ତ୍ର ସାଧନା କରି ଅଲୌକିକ ସାମର୍ଥ୍ୟ ଲାଭ କରିଛନ୍ତି ବୋଲି ବିଶ୍ୱାସ ସୃଷ୍ଟି କରୁଥିଲେ । କିଛି କଳାଯାଦୁ କୌଶଳକ୍ରମେ ସେମାନେ ଲୋକମାନଙ୍କୁ ଦେଖାଇ ଲୋକଙ୍କର ବିଶ୍ୱାସ ଅର୍ଜନ କରୁଥିଲେ । ଫଳରେ

ଲୋକମାନେ ସେମାନଙ୍କର ସମସ୍ୟା ସମାଧାନ ପାଇଁ ସେହି ତାନ୍ତ୍ରିକମାନଙ୍କର ଆଶ୍ରୟ ଲୋଡୁଥିଲେ । ଚୋର ଧରିବା, ଆଗତ ଭବିଷ୍ୟତ କହିବା, କୌଣସି ଗୁପ୍ତ କାର୍ଯ୍ୟ ବିଷୟରେ ଜଣାଇବା ପାଇଁ ଲୋକମାନେ ସେହିମାନଙ୍କର ଆଶ୍ରୟ ନେଉଥିଲେ । କୌଣସି ମାନସିକ ରୋଗରେ ଆକ୍ରାନ୍ତ ବ୍ୟକ୍ତିଙ୍କୁ ଭୂତ ଲାଗିଛି କହି ବିଭିନ୍ନ ନାଟକବାଜି କରି ଭୂତ ଛଡାଇବାର ଅଭିନୟ ଏହି ତାନ୍ତ୍ରିକମାନେ କରିଥାନ୍ତି । ଗୁଣୀ-ଟୁଣି ବିଦ୍ୟା ଯେ ରହିଛି ଏହି ବିଶ୍ୱାସ ଜନମାନସରେ ବ୍ୟାପକ ଭାବେ ରହିଥିବାରୁ ତାହାର ସୁଯୋଗ ନେଇ କିଛି ଧୂର୍ତ୍ତ ବ୍ୟକ୍ତି ସାଧାରଣ ଲୋକମାନଙ୍କୁ କଳାଯାଦୁ ଜରିଆରେ ଠକିଥାନ୍ତି ।

ସେହିପରି ଝଡ଼ା ଫୁଙ୍କା, ଚେଙ୍କ ଚିକିତ୍ସା, ମନ୍ତୁରା ପାଣି ଇତ୍ୟାଦି ଗୁଡିଏ ଅବୈଜ୍ଞାନିକ ବିଶ୍ୱାସ ସମାଜରେ ଏବେ ବି ରହିଆସିଛି । ବିଶେଷ କରି ସମାଜର ଅନଗ୍ରସର ଓ ଗରିବ ଲୋକମାନେ ଯେଉଁମାନେ ଗାଁ ଗହଳରେ ରୁହନ୍ତି ସେମାନଙ୍କ ମଧ୍ୟରୁ କେତେକ ଏହି ସବୁଥିରେ ବିଶ୍ୱାସ କରନ୍ତି । ଯେଉଁମାନେ ଆଧୁନିକ ଚିକିତ୍ସା ବିଷୟରେ ଅଜ୍ଞ କିମ୍ବା ଯେଉଁମାନେ ଡାକ୍ତରି ଚିକିତ୍ସା ପାଇଁ ଅସମର୍ଥ ସେହିମାନେ ଆର୍ଥିକ, ପାରିବେଶିକ କାରଣରୁ ଏହିସବୁ କଥାରେ ବିଶ୍ୱାସ କରିଥାନ୍ତି । ଯେତେବେଳେ ରୋଗବାଧକ କାରଣରୁ ମଣିଷ ଅସହାୟ ହୁଏ ଓ ତାର ଶକ୍ତି ସାମର୍ଥ୍ୟ ଭିତରେ ଚିକିତ୍ସକଙ୍କ ପାଖରେ ପହଞ୍ଚିବା ସମ୍ଭବ ହୁଏ ନାହିଁ, ସେତେବେଳେ ସେ ପରଂପରାଗତ ଅବୈଜ୍ଞାନିକ ବିଶ୍ୱାସକୁ ଜାବୁଡି ଧରେ । ଯେଉଁ ସମୟରେ ହଇଜା, ବସନ୍ତ, ପ୍ଲେଗ ଇତ୍ୟାଦି ରୋଗମାନ ମହାମାରୀର ରୂପ ନେଇ ଗଣମୃତ୍ୟୁର ପରିବେଶ ସୃଷ୍ଟି କରୁଥିଲା ସେତେବେଳେ ଲୋକମାନେ ରକ୍ଷା ପାଇବାକୁ ଦିଅଁ ଦେବତା ପାଖରେ ଶରଣ ପଶୁଥିଲେ, ଗାଁ ଗାଁରେ ହୋମ ଯଜ୍ଞ, ଅଷ୍ଟପ୍ରହରୀ ଇତ୍ୟାଦି କରି ଧାର୍ମିକ ପରିବେଶ ସୃଷ୍ଟି କରୁଥିଲେ । ତେବେ ଚିକିତ୍ସା ବିଜ୍ଞାନର ଅଗ୍ରଗତି ଓ ରୋଗମାନଙ୍କର କାରଣ ଜଣାପଡିବା ପରେ ଲୋକମାନେ ଏସବୁ ପାଇଁ ଭୟଭୀତ ହେଉନାହାନ୍ତି ଓ ସରକାର ମଧ୍ୟ ନାନା ପ୍ରତିଷେଧକ ବ୍ୟବସ୍ଥା ଗ୍ରହଣ କରୁଛନ୍ତି । ତେବେ ଯେଉଁମାନଙ୍କ ପାଖରେ ଆଧୁନିକ ଚିକିତ୍ସା ଅପହଞ୍ଚ ଓ ଯେଉଁମାନଙ୍କ ପାଖରେ ଶିକ୍ଷା ତଥା ସ୍ୱାସ୍ଥ୍ୟଗତ ସଚେତନତା ନାହିଁ ସେମାନେ ବାଧ୍ୟ ହୋଇ ଝଡା, ଫୁଙ୍କା ଇତ୍ୟାଦିର ଆଶ୍ରୟ ନେଉଛନ୍ତି । ସେହପରି ଅତୀତରେ ଲୋକମାନେ କେତେକ ରୋଗରୁ ତ୍ରାଣ ପାଇଁ ପିଲାମାନଙ୍କୁ ଚେଙ୍କ ଦେଉଥିଲେ । ଏସବୁ ଆଜିର ମାନଦଣ୍ଡରେ ଅବାନ୍ତର, ଅବୈଜ୍ଞାନିକ ଓ ଅସଭ୍ୟ ଜଣାପଡିଲେ ମଧ୍ୟ ଅତ୍ୟନ୍ତ ଅସହାୟ ହୋଇ ରହିଥିବା ଲୋକମାନେ ସେହି

ପ୍ରାଚୀନ ପଦ୍ଧତିକୁ ଏବେ ବି ଆଶ୍ରୟ କରୁଛନ୍ତି । କେଉଁ ଦିଅଁ ଦେବତାଙ୍କ ପାଖରେ ଅଧିଆ ପଡୁଛନ୍ତି, ରୋଗବାଧକରୁ ବର୍ତ୍ତିବା ପାଇଁ ମାନସିକ କରୁଛନ୍ତି । ଗରିବ ଓ ଅସହାୟ ଲୋକଟିଏ ଯେତେବେଳେ ଔଷଧ କିଣିବା ବା ଡାକ୍ତରଙ୍କ ପାଖକୁ ତାର ପିଲାକୁ ନେବା ତା ପକ୍ଷରେ ସମ୍ଭବ ହେଉ ନାହିଁ ଓ ତାର ପରିସର ଭିତରେ ଡାକ୍ତରଖାନାଟିଏ ନାହିଁ, ସେ ନିଜର ଅଜ୍ଞତା ଯୋଗୁ ଏହା କରିବାକୁ ବାଧ୍ୟ ହେଉଛି । ଏହି ପ୍ରକ୍ରିୟାରେ କେତେ ପିଲା ଅପପୁଷ୍ଟି ଯୋଗୁ ଓ ରୋଗବାଧକରେ ପଡି ମୃତ୍ୟୁବରଣ କରୁଛନ୍ତି ।

ସମାଜର ଦରିଦ୍ର, ବଞ୍ଚିତ, ଅଶିକ୍ଷିତ ଓ ଅସୁବିଧାଗ୍ରସ୍ତ ଲୋକମାନେ କୁସଂସ୍କାରରେ ବିଶ୍ୱାସ କରୁଛନ୍ତି ଓ ସେଥିରେ ଶିକାର ହେଉଛନ୍ତି । ପୁନଶ୍ଚ ଏହି ନିଷ୍ପେସିତ ଓ ଦୁର୍ବଳ ଜନଗଣ ନିଜର ସାମାଜିକ ସ୍ଥିତି ନେଇ ସଚେତନ ହେବା ସମ୍ଭବ ହେଉନାହିଁ । ବରଂ ସ୍ଥଳବିଶେଷରେ ନିଜର ପ୍ରତିକୂଳ ସ୍ଥିତିକୁ ନିଜର ଭାଗ୍ୟ, କର୍ମଫଳ, କପାଳଲିଖନ, ଦୈବୀବିଧାନ ବୋଲି ଭାବି ଆସିଛନ୍ତି । ଚିକିତ୍ସା ଅଭାବରୁ ପିଲାଟିଏ ମୃତ୍ୟୁମୁଖରେ ପଡିଲେ ଏହା ତାର ଭାଗ୍ୟଲିଖନ ବୋଲି ସାଧାରଣ ମଣିଷଟିଏ ଭାବି ଆସିଛି । ଏହି ଅବହେଳିତ ମଣିଷମାନଙ୍କର ଜୀବନଧାରଣର ସ୍ତର ଉନ୍ନତ ହୋଇପାରୁ ନାହିଁ । ସେମାନଙ୍କ କୁସଂସ୍କାର ପଶ୍ଚାତରେ ସେମାନଙ୍କର ଦାରିଦ୍ର୍ୟ, ଅଶିକ୍ଷା, ସଚେତନତାର ଅଭାବ ପରି ନାନା ସାମାଜିକ ଓ ଆର୍ଥିକ କାରଣ ରହିଆସିଛି ।

ତେବେ ଏହି ପୃଷ୍ଠଭୂମିରେ ସମାଜର ଶିକ୍ଷିତ,ସଚେତନ ଓ ଏପରିକି ସାମାଜିକ ପ୍ରଭାବ ଥିବା ଲୋକମାନେ ମଧ୍ୟ ଅନ୍ୟ କେତେକ ଅନ୍ଧବିଶ୍ୱାସରୁ ମୁକ୍ତ ହୋଇପାରୁ ନାହାନ୍ତି । ବରଂ ସମାଜର ସଚେତନ ଗୋଷ୍ଠୀର କୁସଂସ୍କାର ସମାଜ ପାଇଁ ଅଧିକ କ୍ଷତିକାରକ । ଅନେକ ତଥାକଥିତ ବାବା, ଦେବପୁରୁଷ, ମାତା, ସିଦ୍ଧପୁରୁଷ ଇତ୍ୟାଦିଙ୍କର ଚମତ୍କାରିତାରେ ଶିକ୍ଷିତ ବ୍ୟକ୍ତିମାନେ ମଧ୍ୟ ବିଶ୍ୱାସ କରନ୍ତି । ଏହି ଆଧ୍ୟାତ୍ମିକ ବ୍ୟକ୍ତିମାନେ ଲୋକମାନଙ୍କର ମନସ୍ତତ୍ତ୍ୱ ବିଷୟରେ ଜାଣନ୍ତି । କିଛି ହାତସଫେଇ କୌଶଳ ଦେଖାଇ ସେମାନେ ଚମତ୍କାରିତା ଓ ଅଲୌକିକ ଶକ୍ତିର ଅଧିକାରୀ ବୋଲି ବିଶ୍ୱାସ ସୃଷ୍ଟି କରନ୍ତି । ସାଧାରଣ ଲୋକଙ୍କର ବିଶ୍ୱାସ ଯେ ଯେଉଁ ବାବା ପ୍ରାକୃତିକ ନିୟମକୁ ଲଙ୍ଘନ କରି ଅଲୌକିକ କ୍ରିୟା ଦେଖାଇ ପାରୁଛନ୍ତି ସେ ତାଙ୍କ ଶକ୍ତି ଭିତରେ ସାଧାରଣ ମଣିଷଟିର ସମସ୍ୟାକୁ ଦୂର କରିପାରିବେ । ଆମ ଦେଶରେ ଅଗଣିତ ବାବା ବା ଦେବପୁରୁଷମାନଙ୍କର ସାମ୍ରାଜ୍ୟ ରହିଛି ଓ ସେମାନଙ୍କର

ବିଶାଳ ଭକ୍ତମଣ୍ଡଳୀ ରହିଛନ୍ତି । ଚମତ୍କାରିତା, ଅଲୌକିକତା ଯେତେ ଅବୈଜ୍ଞାନିକ ଓ ଅସତ୍ୟ ହେଲେ ମଧ୍ୟ ସେଥିରେ ଶିକ୍ଷିତ ଲୋକମାନେ ମଧ୍ୟ ଆସ୍ଥା ପୋଷଣ କରନ୍ତି ।

ସେହିପରି ସମାଜର ସାଧାରଣ ବିଶ୍ୱାସରେ ଭାଗ୍ୟ, ଭବିଷ୍ୟତ, ଗ୍ରହ ନକ୍ଷତ୍ରର ପ୍ରଭାବ, ଶୁଭବେଳା, ରାଶିଫଳ ଇତ୍ୟାଦିର ନାନା ଭାବନା ରହିଛି । ଏସବୁ ଯେ ଜୀବନର ଘଟଣା ପ୍ରବାହକୁ ପ୍ରଭାବିତ କରିଥାଏ ଏହି ବିଶ୍ୱାସ ବହୁ ଲୋକ ପୋଷଣ କରନ୍ତି । ସେହିପରି ଆତ୍ମା, ଆତ୍ମାର ଅମରତ୍ୱ, ପୁନର୍ଜନ୍ମବାଦ, ଆତ୍ମାକୁ ପିଣ୍ଡଦାନ, ଆତ୍ମାର ଆବାହନ ବା ପ୍ଲାଂଚେଟ୍ କଲ ଇତ୍ୟାଦି ବିଷୟରେ ବି ଲୋକମାନେ ବିଶ୍ୱାସ କରିବା ଦେଖାଯାଏ । ଏହିସବୁ ବିଶ୍ୱାସମାନ ଧାର୍ମିକ ଧାରଣାର ଅଙ୍ଗବିଶେଷ । ବିଭିନ୍ନ ଧର୍ମଗ୍ରନ୍ଥରେ ରହିଥିବା ଭାବନା ମାନ ଯେତେ ନିରାଧାର, ତଥ୍ୟରହିତ ଓ ଅବୈଜ୍ଞାନିକ ହେଲେ ମଧ୍ୟ ସେହି ସବୁର ବିଶ୍ୱାସ ଶିକ୍ଷିତ ଲୋକମାନେ ବି ପୋଷଣ କରନ୍ତି । ବିଜ୍ଞାନ ଓ ସଭ୍ୟତାର ଯେତେ କ୍ରମବିକାଶ ଘଟିଲେ ମଧ୍ୟ ବୈଜ୍ଞାନିକ ମନୋଭାବ ଅଭାବରେ ନୂଆ ନୂଆ କୁସଂସ୍କାର ମାନ ସୃଷ୍ଟି ହୋଇ ଚାଲିଛି । କୁସଂସ୍କାର ଯେତେ ଅଧିକ ବ୍ୟାପକ ହେବ କେତେକ ଲୋକ ସେଥିରେ ଲାଭବାନ ହେବେ । ବିଶ୍ୱଶାନ୍ତି ମହାଯଜ୍ଞ, ଗ୍ରହଶାନ୍ତି ପୂଜାରାଧନା ଇତ୍ୟାଦି ଦ୍ୱାରା ମଣିଷର ପ୍ରତିକୂଳ ରିଷ୍ଟ ଯେ ଖଣ୍ଡନ ହୋଇପାରିବ ଏହିସବୁ ବିଶ୍ୱାସରୁ କିଛି ଲୋକ ବେଶ୍ ଉପାର୍ଜନ କରିଥାନ୍ତି । ସେହିପରି ବାସ୍ତୁଶାସ୍ତ୍ର, ଫେଙ୍ଗସୁଇ ଇତ୍ୟାଦିର ପ୍ରଭାବ ଯୋଗୁ ସୁଖଶାନ୍ତି ମିଳେ ଓ ବାସ୍ତୁଦୋଷରୁ ଅଶାନ୍ତି, ବିପଦ ସୃଷ୍ଟି ହୁଏ ବୋଲି ଶିକ୍ଷିତ ଲୋକମାନେ ବିଶ୍ୱାସ କରୁଛନ୍ତି । ଆଧୁନିକ ନିର୍ମାଣ ବିଦ୍ୟା ବା ସିଭିଲ ଇଂଜିନିୟରିଂ ବହୁ ପ୍ରାସାଦ ବିଶିଷ୍ଟ ଅଟ୍ଟାଳିକା, ନଦୀବନ୍ଧ, ନାନା ବିସ୍ମୟକର ସ୍ଥପତି ନିର୍ମାଣ କରୁଥିଲେ ମଧ୍ୟ ଆମ ମାନସିକତାରେ ବାସ୍ତୁଶାସ୍ତ୍ରଜନିତ ବିଶ୍ୱାସର ପ୍ରଭାବ ରହିଛି । କେତେକ ପ୍ରାଣୀ ଶୁଭ, କେତେକ ପ୍ରାଣୀ ଅଶୁଭ, କେତେକ ରଙ୍ଗ ମଙ୍ଗଳକାରୀ ବା ଅମଙ୍ଗଳକାରୀ ଇତ୍ୟାଦି ନାନା ଅପବିଶ୍ୱାସ ସମାଜରେ ବଳବତ୍ତର ରହିଛି । ଅନେକ ଅନ୍ଧବିଶ୍ୱାସ ଧାର୍ମିକ ବିଶ୍ୱାସର ସ୍ୱୀକୃତି ଭିତରେ ଜନମାନସରେ ଦୃଢ଼ ହୋଇ ରହିଛି । ଧାର୍ମିକ ଭାବନାମାନ ଏବେ ବି ସ୍ପର୍ଶକାତର ପ୍ରସଙ୍ଗ ଭାବରେ ଜନମାନସକୁ ପ୍ରଭାବିତ କରିପାରୁଛି । ଏପରିକି ଅନେକ ଅପବିଜ୍ଞାନ (Pseudo Science) ମାନଙ୍କୁ ବୈଜ୍ଞାନିକ ସ୍ୱୀକୃତି ଦେଇ ଚତୁର ଲୋକମାନେ ଲୋକମାନଙ୍କ ଭିତରେ ପ୍ରସାର କରୁଛନ୍ତି । ବୈଜ୍ଞାନିକ ଜ୍ଞାନ ସର୍ବଦା ତଥ୍ୟଭିତ୍ତିକ,

ପ୍ରଗତିଶୀଳ, ପ୍ରଣାଳୀବଦ୍ଧ ଓ ସାର୍ବଜନୀନ । ବୈଜ୍ଞାନିକ ନିୟମ ଓ ସିଦ୍ଧାନ୍ତମାନ ପରସ୍ପର ସହ ସଂଯୋଜିତ ଓ ପରସ୍ପରର ପରିପୂରକ । ଅପବିଜ୍ଞାନର ସିଦ୍ଧାନ୍ତମାନ ଏହି ମାନଦଣ୍ଡଠାରୁ ଭିନ୍ନ ।

ଆଧୁନିକ ଗଣମାଧ୍ୟମ ବିଶେଷ କରି ଇଲେକ୍‌ଟ୍ରୋନିକ ମିଡିଆ ବିଜ୍ଞାନର ଏକ ବିସ୍ମୟକର ଉଦ୍‌ଭାବନ । କିନ୍ତୁ ଅନୁଶୋଚନାର ବିଷୟ ଯେ ଟେଲିଭିଜନ ଚାନେଲମାନଙ୍କରେ ବହୁ ଅପବିଜ୍ଞାନ ଓ କୁସଂସ୍କାରର ପ୍ରସାର କରାଯାଇ ଜନମାନସକୁ ବିଭ୍ରାନ୍ତ କରାଯାଉଛି । ଗଣମାଧ୍ୟମ ଓ ବିଶେଷକରି ଟେଲିଭିଜନର ଗଭୀର ପ୍ରଭାବ ରହିଛି । ଯଦି ସେଥିରେ ଅହେତୁକ, ଅବୈଜ୍ଞାନିକ ଭାବନାମାନ ନିରନ୍ତର ପ୍ରସାର କରାଯାଏ, ତେବେ ତାର କୁପ୍ରଭାବ ସମାଜ ଉପରେ ପଡିବ । ବିଭିନ୍ନ ପ୍ରକାର ପ୍ରତିକୂଳ ପରିସ୍ଥିତି ଓ ରିଷ୍ଟ ଖଣ୍ଡନ ପାଇଁ ମନ୍ତ୍ର ମୁଦି, ତାବିଜ, ଡେଉଁରିଆ, ନବରତ୍ନ ନିର୍ମିତ ବସ୍ତୁ, ରୁଦ୍ରାକ୍ଷ ଇତ୍ୟାଦିର ନାନା ବିଜ୍ଞାପନ ଗଣମାଧ୍ୟମରେ ପ୍ରଚାରିତ ହୁଏ । କେବଳ ବିଜ୍ଞାପନ ଭାବେ ପ୍ରଚାରିତ ହୁଏ ନାହିଁ, ସେସବୁକୁ ଆଧ୍ୟାତ୍ମିକ ଓ ରହସ୍ୟମୟ ପୁଟ ଦିଆଯାଇ ଲୋକମାନଙ୍କୁ ପ୍ରଭାବିତ କରାଯାଏ ।

ଏସବୁର ସମ୍ମିଳିତ ପ୍ରଭାବରୁ ଆମ ଜନଜୀବନରେ ନାନା ଅନ୍ଧବିଶ୍ୱାସ ଓ କୁସଂସ୍କାର ଦୃଢ଼ ହେବରେ ଲାଗିଛି । କେଉଁ ପଥରମୂର୍ତ୍ତିରେ ଜଳ ଢ଼ାଳିଲେ, କାହାର ପାଦ ଦର୍ଶନ କଲେ, କାହା ଦଉଡିକୁ ଛୁଇଁଲେ, ନିର୍ଦ୍ଦିଷ୍ଟ ବେଳାରେ କେଉଁଠି ବୁଡ ପକାଇଲେ ଜୀବନର ସମସ୍ତ ପାପ, ତାପ ଦୂର ହୋଇଯିବ ବୋଲି ନାନା ଅପବିଶ୍ୱାସ ଆମ ସମାଜରେ ବ୍ୟାପକ ଭାବେ ରହିଛି । ବୃହତ୍ତର ସମାଜ, ନିଜର ନିଷ୍ଠା, କର୍ମ ଉପରେ ବିଶ୍ୱାସ ନକରି ଦୈବୀ ଆଶୀର୍ବାଦ ଉପରେ ନିର୍ଭର କରିବା ଆମ ଅନଗ୍ରସରତାର ଚିତ୍ର ଦେଇଥାଏ ।

ଆମ ସାମାଜିକ ଜୀବନରେ ଅନ୍ୟାୟ, ଭ୍ରଷ୍ଟାଚାର, ଦୁର୍ନୀତି ଯେପରି ବୃଦ୍ଧି ପାଇବାରେ ଲାଗିଛି, କୁସଂସ୍କାର ମଧ୍ୟ ବ୍ୟାପକ ହେବାରେ ଲାଗିଛି । ସାଧୁତା, କର୍ମକୁଶଳତା, ପନ୍ଥାର ପବିତ୍ରତା ଓ ମାନବିକ ଦୃଷ୍ଟି ପ୍ରତି ଆମର ପ୍ରତିବଦ୍ଧତା ପରିବର୍ତ୍ତେ ଧାର୍ମିକ କର୍ମକାଣ୍ଡ ପ୍ରତି ସାମାଜିକ ତତ୍ପରତା ପ୍ରକାଶ ପାଇବା ଆଧୁନିକ ଜୀବନର ବିଡମ୍ବନା । ସେହିପରି ମାନବିକ ଅଧିକାରର ଉଲଙ୍ଘନ ଆମ ସମାଜର ଏକ ସାଧାରଣ ଘଟଣା । ଏବେ ବି ଜାତିଆଣ ମାନସିକତା, ସାମାଜିକ ଭେଦଭାବ, ଏପରିକି ଅସ୍ପୃଶ୍ୟତା ସାମାଜିକ ଜୀବନର

ନିଛକ ବାସ୍ତବତା । ଆମର ସମ୍ବିଧାନରେ ବହୁଉଚ୍ଚ ଆଦର୍ଶର ବାର୍ତ୍ତା ରହିଥିଲେ ମଧ୍ୟ ସାମାଜିକ ଜୀବନରେ ତାର ପ୍ରତିଫଳନ ନହେବା ପରିତାପର ବିଷୟ । ଆମ ସମ୍ବିଧାନରେ ନାଗରିକ କର୍ତ୍ତବ୍ୟ ପରିସରରେ କୁହାଯାଇଛି ଯେ ବୈଜ୍ଞାନିକ ମନୋଭାବ, ଅନୁସନ୍ଧିତ୍ସୁ ଦୃଷ୍ଟିକୋଣ ଓ ସଂସ୍କାରବାଦୀ ଚେତନାର ବିକାଶ ଘଟାଇବା ବ୍ୟକ୍ତିର କର୍ତ୍ତବ୍ୟ । ତେବେ ଏସବୁ କେବଳ ପୋଥି ବାଇଗଣ ହୋଇ ରହିଛି । ଏହାର ପ୍ରକୃତ ରୂପାୟନ ସମାଜରେ ହୋଇପାରୁ ନାହିଁ ।

ଏହି ସ୍ଥିତିରେ ସମାଜରେ ବୈଜ୍ଞାନିକ ମନୋଭାବ ଓ ମାନବବାଦୀ ଜୀବନଦୃଷ୍ଟିର ପ୍ରସାର ଏକ ବଡ ଆବଶ୍ୟକତା । ସମାଜରୁ କୁସଂସ୍କାର ଅନ୍ଧବିଶ୍ୱାସ ଓ ଭେଦଭାବ ଦୂର କରିବାକୁ ହେଲେ ଶିକ୍ଷାସ୍ତରରେ ବଡ ପରିବର୍ତ୍ତନ ଆବଶ୍ୟକ । ଆମ ସମ୍ବିଧାନର ଈପ୍ସିତ ମୂଲ୍ୟଚୟକୁ ଜନମାନସରେ ଦୃଢ଼ କରିବାକୁ ହେଲେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଓ ମାନବବାଦୀ ଜୀବନବୋଧର ବାର୍ତ୍ତାକୁ ବିଦ୍ୟାଳୟ ଶିକ୍ଷାର ଅଙ୍ଗ କରିବାକୁ ହେବ । ଏହା ସହିତ ଦେଶର ଗଣମାଧ୍ୟମ ଜରିଆରେ ଲୋକମାନଙ୍କ ଦୃଷ୍ଟିଭଙ୍ଗୀରେ ପରିବର୍ତ୍ତନ ଆଣିବାକୁ ପ୍ରୟାସ କରାଯାଇ ପାରିବ । ଏହା ଅନସ୍ୱୀକାର୍ଯ୍ୟ ଯେ ଆମ ରାଜ୍ୟ ଜାତୀୟ ତଥା ଆନ୍ତର୍ଜାତିକ ମାନଦଣ୍ଡରେ ଏକ ଅନଗ୍ରସର ରାଜ୍ୟ । ଆମର ଅନଗ୍ରସରତା ପାଇଁ ଆମର କୁସଂସ୍କାର, ମାନସିକ ଦାରିଦ୍ର୍ୟ ଓ ନାଗରିକ ସଚେତନାର ଅଭାବ ଅନେକାଂଶରେ ଦାୟୀ । ଆମ ରାଜ୍ୟରେ ଏପରି ଅଂଚଳମାନ ରହିଛି ଯେଉଁଠି ଶିକ୍ଷା ଓ ମାନବିକତାର ଆଲୋକ ପହଞ୍ଚି ପାରିନାହିଁ । ସମାଜରେ ରହିଥିବା ଦରିଦ୍ର, ନିଷ୍ପେଷିତ ଓ ଦୁଃସ୍ଥ ମଣିଷମାନେ ନାନା ପ୍ରକାରର ଅନ୍ଧବିଶ୍ୱାସର ବଶବର୍ତ୍ତୀ ହେବା ପୃଷ୍ଠଭୂମିରେ ଯୋଜନାବଦ୍ଧ ଭାବେ ସରକାର ଗଣମାଧ୍ୟମ ଓ ବିଭିନ୍ନ ବେସରକାରୀ ସଂଗଠନମାନ ପ୍ରୟାସ କରିବା ଆବଶ୍ୟକ । ନିରକ୍ଷରତା, ସାମାଜିକ ଓ ଅର୍ଥନୈତିକ ଅନଗ୍ରସରତା ବି ବହୁ ସମୟରେ ଲୋକମାନଙ୍କୁ ଅନ୍ଧବିଶ୍ୱାସୀ କରିବାର କାରଣ ହୋଇଥାଏ । ଏହି ସ୍ଥିତିରେ ସମାଜର ଅବହେଳିତ ଲୋକମାନଙ୍କ ଭିତରେ କିପରି ଶିକ୍ଷା ଓ ସଚେତନତାର ପ୍ରସାର କରାଯାଇ ପାରିବ ସେଥିପାଇଁ ନିରନ୍ତର ପ୍ରୟାସ ଆବଶ୍ୟକ । କୌଣସି କଳ୍ପିତ ଦିଅଁ ଦେବତା ଜୀବନର ମାନରେ ଗୁଣାତ୍ମକ ପରିବର୍ତ୍ତନ ଆଣିବେ ନାହିଁ ବା କୌଣସି ବିକାଶ ଆକାଶରୁ ଖସିବ ନାହିଁ । ସବୁ ସ୍ତରରେ ମାନବିକ ପ୍ରୟାସ, ବୈଜ୍ଞାନିକ ପଦ୍ଧତି ଓ ମାନବବାଦୀ ଜୀବନବୋଧର ବାର୍ତ୍ତା ଜନଗଣଙ୍କ ଭିତରେ ପ୍ରସାର କରାଯାଇ

ପାରିଲେ କୁସଂସ୍କାର ଓ ଅମାନବିକ ପ୍ରଥାର ବିଲୋପ ହୋଇପାରିବ । ଏହା ସହିତ ମାନବିକ ଅନୁଭବ ଓ ସମତାର ଭାବନାକୁ କିପରି ବ୍ୟାପକ କରାଯାଇ ପାରିବ ସେଥିପାଇଁ ମଧ୍ୟ ଦୀର୍ଘକାଳୀନ ପଦକ୍ଷେପ ଆବଶ୍ୟକ । ପୁନଶ୍ଚ ଶିକ୍ଷିତ ସମାଜର ଛଦ୍ମତା ଓ କୁସଂସ୍କାର ଦୂରୀକରଣ କ୍ଷେତ୍ରରେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ବ୍ୟାପକତାକୁ ପ୍ରାଧାନ୍ୟ ଦେବାକୁ ହେବ । ଏହିପରି ଯୋଜନାବଦ୍ଧ ଓ ସଚେତନ ପ୍ରୟାସ ଦ୍ୱାରା ଆମ ସାମାଜିକ ଜୀବନ ପ୍ରବାହରୁ ଅନେକ ଅନ୍ଧବିଶ୍ୱାସ, ଅପସଂସ୍କୃତି ଓ ଅମାନବିକତାକୁ ଯେ ଦୂର କରାଯାଇ ପାରିବ ଏହା ଆଶା କରାଯାଇପାରେ । ମାନସିକତାରେ ପରିବର୍ତ୍ତନ ପାଇଁ ଆଇନ କେବଳ ମାତ୍ର ସାଧନ ହୋଇନପାରେ । ଆଇନ ସହ ସାମାଜିକ ସଚେତନତାର ପଦକ୍ଷେପ ଏକ ସାଂସ୍କୃତିକ ପରିବର୍ତ୍ତନ ପାଇଁ ସହାୟକ ହେବ ।



# ଶ୍ରୀନିବାସ ଉଦ୍‌ଗାତାଙ୍କ ପ୍ରୀତି ଶତପଦୀ : ଏକ ସମୀକ୍ଷା

ବିଶିଷ୍ଟ ସାରସ୍ୱତ ସ୍ରଷ୍ଟା, ଯଶସ୍ୱୀ କବି ପଦ୍ମଶ୍ରୀ ଡ. ଶ୍ରୀନିବାସ ଉଦ୍‌ଗାତାଙ୍କ "ପ୍ରୀତି ଶତପଦୀ" ଏକ ଶହ ଆଠ ସ୍ତବକ ବିଶିଷ୍ଟ ଏକ କାବ୍ୟ । କବିଙ୍କ ନିଜସ୍ୱ ସ୍ୱୀକାରୋକ୍ତି ଅନୁଯାୟୀ ଏହି କ୍ଷୁଦ୍ର କାବ୍ୟଟିକୁ ଗୋଟିଏ ଦିନ ମଧ୍ୟରାତ୍ରରୁ ସକାଳ ପର୍ଯ୍ୟନ୍ତ ପାଞ୍ଚଘଣ୍ଟା ମଧ୍ୟରେ କବି ସୃଷ୍ଟି କରିଥିଲେ । କାବ୍ୟର ପଦଗୁଡ଼ିକ ଏକ ଭାବଗତ ତଲ୍ଲୀନତା ଭିତରେ ତାଙ୍କ କଲମ ମୂନରୁ ଝରି ଆସିଥିଲା । ଏକ ଭାକ୍ତିକ ଆବେଗ ଭିତରେ କବି ଦୁଇ ଜାଗାରେ କାବ୍ୟରେ ଉଲ୍ଲେଖ କରିଛନ୍ତି ଯେ କେହି ଦିବ୍ୟପୁରୁଷ ସତେ ଯେପରି ତାଙ୍କ ମାନସପଟରେ ଭାବନାମାନଙ୍କୁ ବ୍ୟକ୍ତ କରି ଦେଉଛନ୍ତି ଓ ସେ କେବଳ ଏକ ଶ୍ରୁତଲେଖ ସଦୃଶ ତାକୁ ଲେଖି ଯାଉଛନ୍ତି । କବିଙ୍କ ମତରେ ଶ୍ୟାମସଖା ଯାହା ଆବୃତ୍ତି କରି ଯାଇଛନ୍ତି କବି ସେସବୁକୁ କେବଳ ଲିପିବଦ୍ଧ କରିଛନ୍ତି । କବିଙ୍କ ଭାଷାରେ -

ମୁଁ ତ  ମୋ ମନକୁ କରିନାହିଁ କିଛି ବଡେଇଲୁ ଯାହା ଗାଇ ଅଛି
ଯେତେ ମୋ ନାଆଁରେ କରିଛି ଭଣିତ ଶ୍ରୁତଲେଖ ପରି ଲେଖିଅଛି ।

x x x x

ମୁହିଁ ନୁହେଁ କବି କେମିତି ବା ହେବି ସାରା ଜୀବନ ମୁଁ ଶ୍ରୁତଲେଖ
ସରଜନା ତୋର ନୀରାଜନା ମୋର ସେଥିରେ ପାଇଛି ଯାହା ସୁଖ ।

ପ୍ରାଚୀନ କାଳରେ ଅନେକ ସ୍ରଷ୍ଟା ଏହିପରି ଅଭିବ୍ୟକ୍ତି ମାନ ପ୍ରକାଶ କରିଛନ୍ତି ଯେ ସେମାନେ ପ୍ରକୃତରେ ନିଜସ୍ୱ ସାଧନାରେ କିଛି ଲେଖିନାହାନ୍ତି । ସେମାନେ ଏକ

ଐଶ୍ୱରୀୟ ଶକ୍ତିଠାରୁ ଯେଉଁ ନିର୍ଦ୍ଦେଶ ପାଉଥିଲେ ତାହାକୁ ହିଁ କଲମମୂନରେ ଲିପିବଦ୍ଧ କରୁଥିଲେ । ଗୋଟିଏ ଯୁଗର ମୂଲ୍ୟବୋଧରେ ଏହା ଥିଲା ଏକ ସାହିତ୍ୟିକ ସୌଜନ୍ୟ । ଏହି ସୌଜନ୍ୟ ଭିତରେ କବି ପ୍ରାଣର ନମ୍ରତା ପ୍ରକାଶିତ ହେଉଥିଲା । କିନ୍ତୁ କବିତ୍ୱ ଏକ ସ୍ୱତଃସ୍ଫୂର୍ତ୍ତ ପ୍ରେରଣା ବା ଅନ୍ୟ ଭାବରେ କହିଲେ ଏହା ଏକ ସହଜାତ ଅନ୍ତର୍ନିହିତ ପ୍ରତିଭା । ଡ. ଉଦ୍‌ଗାତାଙ୍କର ଏହି ଶାଳୀନତା ସତ୍ତ୍ୱେ ତାଙ୍କର ସାମଗ୍ରିକ କୃତି ପୃଷ୍ଠଭୂମିରେ ତାଙ୍କ ଅନ୍ତଃସ୍ଥଳରେ ସେ ଯେ ବିଶୁଦ୍ଧ କବି-ପ୍ରତିଭାର ଅଧିକାରୀ ଓ ଜଣେ ମହାନ ସ୍ରଷ୍ଟା ଏହା ନିଃସନ୍ଦେହରେ କୁହାଯାଇପାରେ ।

କାବ୍ୟ, କବିତା କବିପ୍ରାଣର ମାର୍ମିକ ଭାବୋଚ୍ଛ୍ୱାସ । କଳ୍ପନା, ଆତ୍ମଲୀନତା, ଅନ୍ତର୍ଦୃଷ୍ଟି ଓ ଏକ ଆବେଗିକ ସୌନ୍ଦର୍ଯ୍ୟବୋଧ କବିତାର ମାର୍ମିକ ସ୍ୱର । କବିତା ସ୍ରଷ୍ଟା ପ୍ରାଣର ସଂଗୀତମୟ ପରିପ୍ରକାଶ । ଏହାର କଳାତ୍ମକ ଗରିମା ପାଠକର ମନକୁ ମଧ ଛନ୍ଦୋମୟ କରିଥାଏ । ସାହିତ୍ୟ-ସୃଜନର ଯେତେ ଯେତେ ଦିଗନ୍ତ ରହିଛି କବିତାର ବର୍ଣ୍ଣାଢ୍ୟ ସୌନ୍ଦର୍ଯ୍ୟ ସମ୍ଭବତଃ ସବୁଠାରୁ ଅଧିକ ପ୍ରାଣସ୍ପର୍ଶୀ । ଏହା ହେଉଛି ମଣିଷ ପ୍ରାଣର ଆଦ୍ୟ ସାରସ୍ୱତ ଅଭିବ୍ୟକ୍ତି । ସେଥିପାଇଁ ବହୁ ଅତୀତରେ ଲେଖା ଯାଇଥିବା କାବ୍ୟ, କବିତା ଏବେ ବି ପାଠକର ହୃଦୟକୁ ସ୍ପର୍ଶ କରିଥାଏ । ଉଚ୍ଚାଙ୍ଗ କାବ୍ୟ କବିତା ଯେ କାଳାତୀତ ଏହା ଅନସ୍ୱୀକାର୍ଯ୍ୟ ।

କାବ୍ୟ କବିତାର ଅଭିବ୍ୟକ୍ତି ଭିତରେ ଥାଏ କଳ୍ପନା, ଆବେଗ, ଶାବ୍ଦିକ ସୌନ୍ଦର୍ଯ୍ୟ ଓ ଭାବପ୍ରବଣତା । ଶାବ୍ଦିକ ଲାଳିତ୍ୟ ଏହାକୁ ରସୋତୀର୍ଣ୍ଣ କରିଥାଏ । କବି ନିଜର କଳ୍ପନାରେ ନାନା ଉପମା, ରୂପକ ଓ ବସ୍ତୁ ବା ଶବ୍ଦକୁ ପ୍ରତୀକ ଭାବରେ ନେଇ ନିଜ ଭାବନାକୁ ରୂପ ଦେଇଥାଏ । ଏହି ଦୃଷ୍ଟିରୁ ବ୍ୟକ୍ତିନିଷ୍ଠତା କବିତାର ଅନ୍ତଃସ୍ୱର । ଏଥିରେ ବସ୍ତୁନିଷ୍ଠତା, ଯୁକ୍ତିଶୀଳତା ବା ତାର୍କିକ ଅଭିବ୍ୟକ୍ତି ନଥାଏ । ତେବେ ଏକ ଦୀର୍ଘ କବିତା ବା କ୍ଷୁଦ୍ର କାବ୍ୟରେ ଏକ ଅନ୍ତର୍ନିହିତ ସଂହତି ଓ ବୋଧଗମ୍ୟ ସଂଗତି ରହିଥାଏ । ପ୍ରତ୍ୟେକ ସୃଜନଶୀଳ ପରିପ୍ରକାଶ କ୍ଷେତ୍ରରେ ଏହି ସଂଗତି ନ ରହିଲେ ତାହା ବୈଚାରିକ ସ୍ତରରେ ବା ଆବେଗିକ ସ୍ତରରେ ସ୍ୱୀକୃତ ହୋଇପାରେ ନାହିଁ । ଇତିହାସ ଓ ବିଜ୍ଞାନ ଭିତରେ ବସ୍ତୁନିଷ୍ଠ ସତ୍ୟ ରହିଥାଏ ଯାହାକୁ ତଥ୍ୟଗତ ସଂହତି ଆଧାରରେ ମୂଲ୍ୟାୟନ କରାଯାଏ । କାବ୍ୟ, କବିତାରେ ତଥ୍ୟଭିତ୍ତିକ ଅଭିବ୍ୟକ୍ତି ନଥାଏ, ଥାଏ ଆବେଗିକ କଳ୍ପନା ବା ଅନୁଭବ ।

ତେବେ ସେହି ଆବେଗିକ ବର୍ଣ୍ଣନାର ଏକ ନିଜସ୍ୱ ସଂହତି ରହିଥାଏ । ସ୍ରଷ୍ଟାର ସୃଜନ ଭିତରେ ତାର ଅନୁଭବର ଗଭୀରତା ଦେଖିହୁଏ । ସେହି ଅନୁଭବର ଗଭୀରତା, ଶାବ୍ଦିକ ଦକ୍ଷତା ଓ ବର୍ଣ୍ଣନାର ଦୃଶ୍ୟପଟରେ ତାହାର ଏକ ମୂଲ୍ୟାୟନ ବସ୍ତୁନିଷ୍ଠ ଭାବରେ କରାଯାଇପାରେ ।

ଡ. ଉଦ୍‌ଗାତାଙ୍କର ପ୍ରୀତି ଶତପଦୀରେ ଦୁଇଟି ଭାବାତ୍ମକ ଧାରାର ପରିପ୍ରକାଶ ଦେଖିବାକୁ ମିଳେ । ତାହା ହେଉଛି ଭକ୍ତି ଓ ପ୍ରେମ । ଭକ୍ତି ଓ ପ୍ରେମ କବିଙ୍କ ଅନ୍ତର୍ମୁଖୀ ଚେତନାରେ ଦୁଇଟି ସମାନ୍ତରାଳ ଧାରା ଭାବେ ପ୍ରବାହିତ ହୋଇଛି । ଭକ୍ତି ଭାବନାରେ ସାଧାରଣତଃ ଈଶ୍ୱରଙ୍କ ପ୍ରଶସ୍ତି ରହିଥାଏ । ମାନବୀୟ ଚେତନାରେ ଈଶ୍ୱରୀୟ କଳ୍ପନା କେତେ କେତେ ଭାକ୍ତିକ ଆବେଗ ସୃଷ୍ଟି କରିଥାଏ । ଯେକୌଣସି ପ୍ରାଚୀନ କାବ୍ୟ କବିତାରେ ଈଶ୍ୱରୀୟ ଲୀଳା, ସ୍ରଷ୍ଟାତ୍ୱ ଓ ଶ୍ରେଷ୍ଠତ୍ୱର ବହୁ ଚିତ୍ତାକର୍ଷକ ବର୍ଣ୍ଣନା ଦେଖିବାକୁ ମିଳେ । ଭକ୍ତ-କବି ଈଶ୍ୱରଙ୍କ ଲୀଳା, ବିଭୂତି, କରୁଣା, ଚମତ୍କାରିତା ଓ ମହାନତାର ଜୟଗାନ କରିଥାଏ । ସେହିପରି ପ୍ରେମ, ପ୍ରଣୟ, ପ୍ରୀତି ଓ ରୀତି କବିପ୍ରାଣକୁ କେତେ କେତେ ଭାବରେ ସୃଜନ-ସୃଷ୍ଟି ପାଇଁ ପ୍ରେରଣା ଯୋଗାଇଥାଏ । ପ୍ରେମ ଓ ପ୍ରଣୟର ଅନୁଭବକୁ ନେଇ କେତେ କେତେ ଉଚ୍ଚକୋଟୀର ସାରସ୍ୱତ ସୃଷ୍ଟିମାନ ବିଶ୍ୱ ସାହିତ୍ୟରେ ରହିବା ଏକ ସାଧାରଣ ଉପଲବ୍ଧି । ପ୍ରେମ ବା ପ୍ରୀତିର ବହୁ ସ୍ତର ବା ଦିଗନ୍ତ ରହିଛି । ପ୍ରେମ ଯେପରି ଏକ ଆବେଗିକ ଅନୁଭବ ଏହା ସେହିପରି ଏକ ଗଭୀରତମ ଭାବମୟ ଅଭିବ୍ୟକ୍ତି । ପ୍ରେମ ବେଳକେ ରୂପାନ୍ତରିତ ହୁଏ ଈଶ୍ୱରୀୟ ଅନୁଭବରେ । ପ୍ରୀତି ଶତପଦୀରେ ଡ. ଉଦ୍‌ଗାତା ପ୍ରେମକୁ ରୂପାନ୍ତରିତ କରିଛନ୍ତି ଭକ୍ତିରେ ଓ ଭକ୍ତିକୁ ବ୍ୟକ୍ତ କରିଛନ୍ତି ଗଭୀର ପ୍ରୀତି-ଅନୁଭବରେ । ରୀତି ଓ ଭକ୍ତିର ଏକ ଅପୂର୍ବ ସଂଯୋଗ ଓ ସମନ୍ୱୟ ଏଠାରେ ଦେଖିବାକୁ ମିଳେ । ଭକ୍ତିତ୍ୱ ଓ ରୀତିତ୍ୱର ସମନ୍ୱିତ ପରିପ୍ରକାଶ ହେଉଛି ଏହି କାବ୍ୟଟିର ସୌଷ୍ଠବ ଓ ଏହାରି ଭିତରେ କବିଙ୍କ ଗଭୀରତମ ଅନୁଭବର ଚିତ୍ରଟି ମିଳିଥାଏ ।

କବିଙ୍କର ଭକ୍ତି କାହା ଉଦ୍ଦେଶ୍ୟରେ ନିବେଦିତ ? କାହା ଉଦ୍ଦେଶ୍ୟରେ କବି ତାଙ୍କର ନୈବେଦ୍ୟ ବ୍ୟକ୍ତ କରୁଛନ୍ତି ? କବି କାବ୍ୟରେ ଈଶ୍ୱର, ଭଗବାନ ଶବ୍ଦ ବ୍ୟବହାର କରିନାହାନ୍ତି । କିନ୍ତୁ "ଶ୍ୟାମସଖା" ଶବ୍ଦକୁ ଈଶ୍ୱରଙ୍କ ପ୍ରତୀକ ଭାବରେ ନେଇଛନ୍ତି । ଶ୍ୟାମସଖା ସତେ ଯେପରି ଏକ ବ୍ୟକ୍ତିସତ୍ତା, ଯାହାଙ୍କ ସହ କବି ଭାବଗତ ସ୍ତରରେ ସମ୍ବନ୍ଧ ଯୋଡିଛନ୍ତି ।

ବୈଷ୍ଣବୀୟ କବିମାନେ ଯେପରି ଈଶ୍ୱରଙ୍କର ବର୍ଣ୍ଣନା କରିବା ବେଳେ କୃଷ୍ଣଙ୍କ ପାଖରେ ନିଜକୁ ନାୟିକା ଭାବରେ ବ୍ୟକ୍ତ କରିଛନ୍ତି, ଡ. ଉଦ୍‌ଗାତା ଠିକ୍ ସେହିପରି ତାଙ୍କ ଅନୁଭବରେ ଦିବ୍ୟପୁରୁଷ ଶ୍ୟାମସଖାଙ୍କ ପାଖରେ ନିଜର ଭାକ୍ତିକ ଆତୁରତାକୁ ରୂପ ଦେଇଛନ୍ତି । କବି ଅତ୍ୟନ୍ତ ଆବେଗିକ ଭାବରେ କିପରି ସେହି ଦିବ୍ୟ ପୁରୁଷଙ୍କର ସାନ୍ନିଧ ଲାଭ କରିବେ ସେଥିପାଇଁ ପ୍ରାଣର ଉତ୍କଣ୍ଠା ପ୍ରକାଶ କରିଛନ୍ତି । ସେ ତାଙ୍କୁ ନିରତରେ ଖୋଜୁଛନ୍ତି । କବିଙ୍କ ବର୍ଣ୍ଣନାରେ ସେ ପାଖରେ ଅଛନ୍ତି ଓ ଦୂରରେ ମଧ ରହିଛନ୍ତି, ଆଖି ବୁଜି ହୃଦୟ-କନ୍ଦରରେ ତାଙ୍କର ଉପସ୍ଥିତିକୁ ଅନୁଭବ କରିପାରୁଛନ୍ତି । କବି ସେହି ଶ୍ୟାମସଖାଙ୍କ ପାଖରେ ସମର୍ପିତ ରହିଛନ୍ତି ଓ ତାଙ୍କ ପ୍ରୀତିର ପରଶରେ ପୁଲକିତ ହେଉଛନ୍ତି । ସେହି ଶ୍ୟାମସଖା ତାଙ୍କ ପ୍ରୀତିରେ କବିଙ୍କୁ ତଲ୍ଲୀନ କରିଛନ୍ତି ଓ ବଞ୍ଚିବାର ଅଭିଳାଷ ଦେଇଛନ୍ତି । ତାଙ୍କର କରୁଣାରେ କବିଙ୍କର ଭାବ-ଆକାଶ ପରିପୂର୍ଣ୍ଣ ହୋଇଯାଉଛି । କବି କେତେବେଳେ କେତେବେଳେ ମନରେ ଶ୍ୟାମସଖାଙ୍କ ପାଖରେ ଅଭିମାନ ବ୍ୟକ୍ତ କରୁଥିଲେ ବି ପୁଣି ପର ମୁହୂର୍ତ୍ତରେ ତାଙ୍କର ଉପସ୍ଥିତିର ଅନୁଭବରେ ଆଖି ଲୋତକପୂର୍ଣ୍ଣ ହୋଇଯାଇଛି ବୋଲି କହିଛନ୍ତି । କବି ସୁନୀଳ ଆକାଶ, ପକ୍ଷୀର କାକଳି, ତଟିନୀର ପ୍ରବାହ, ସାଗରର ଗଭୀରତା, ଧରିତ୍ରୀର ସବୁଜିମା ଓ ସୌନ୍ଦର୍ଯ୍ୟରେ ଆତ୍ମହରା ହୋଇ ଉଠନ୍ତି । ତେବେ ଏସବୁ ସେହି ପରମ ଶିଳ୍ପୀ, ସ୍ରଷ୍ଟା ଓ ରୂପକାରର ଯେ ସୃଜନ ଏହା ଭାବିଛନ୍ତି । ସେହି ରୂପକାର ଯେ ଏତେ ସୌନ୍ଦର୍ଯ୍ୟ ଅବିରତ ଭାବରେ ସୃଷ୍ଟି କରିପାରନ୍ତି ଏହା କବିଙ୍କ ପ୍ରାଣରେ ପୁଲକ ସୃଷ୍ଟି କରୁଛି । କବି ନିଜର କଳ୍ପନାରେ ଏକ ନିରାକାର ରୂପକାରଙ୍କୁ ଚିନ୍ତା ନକରି ତାଙ୍କର ସାକାର ରୂପକୁ ମନଶ୍ଚକ୍ଷୁରେ ଦେଖିବାକୁ ଚାହାନ୍ତି । ଯେତେବେଳେ ସେହି ରୂପକାର କବିଙ୍କଠାରୁ ଦୂରେଇ ଯାଉଛନ୍ତି ସେ ଅନ୍ଧ ହୋଇ ଯାଉଛନ୍ତି । ନିଦ୍ରାରେ ସ୍ୱପ୍ନ ଯେପରି ସାମୟିକ ଭାବରେ ଆସେ ପୁଣି ଚାଲିଯାଏ, ସେହିପରି କବିଙ୍କ ଚେତନାରେ ଶ୍ୟାମସଖା ବେଳକେ ଆସନ୍ତି ପୁଣି ଚାଲିଯାନ୍ତି । ଯେତେବେଳେ ସେ କବିଙ୍କ ଚେତନାରେ ପରିଦୃଶ୍ୟ ହୁଅନ୍ତି ସେତେବେଳେ କବିଙ୍କ ଭାବଜଗତ ବିସ୍ତାରିତ ହୋଇ ଚାଲେ । ସେହି ଅବର୍ଣ୍ଣନୀୟ ମୁହୂର୍ତ୍ତରେ ଶୂନ୍ୟରୁ ଶବ୍ଦମାନ କବିଙ୍କ କର୍ଣ୍ଣଗହ୍ୱରରେ ପ୍ରତିଧ୍ୱନିତ ହୁଏ ଓ ତାଙ୍କର କଲମ ଚଳଚଞ୍ଚଳ ହୋଇଉଠେ । କବିଙ୍କ ସମସ୍ତ ସୁଖ, ଆନନ୍ଦ, ପ୍ରୀତିଭାବ କେବଳ ତାଙ୍କରି ପ୍ରସାଦର ପରିଣାମ । ତାଙ୍କ ସହ ସେହି ପ୍ରୀତିର ଅନୁଭବ କବିଙ୍କ ପ୍ରାଣରେ କେତେ କେତେ ରୋମାଂଚ ସୃଷ୍ଟିକରେ । ସେହି ରୋମାଞ୍ଚରୁ କବିତାର ପଂକ୍ତିମାନ ଆତ୍ମପ୍ରକାଶ କରନ୍ତି । କବିଙ୍କ ଅନୁଭବରେ

ଶ୍ୟାମସଖା କବିଙ୍କ ପାଖରୁ କେବେ କିଛି ଆଶା କରିନାହାନ୍ତି ଯଦିବା କବିଙ୍କର ପ୍ରଣୟ-ତୃଷାକୁ ସର୍ବଦା ପରିତୃପ୍ତ କରିଛନ୍ତି । କବିଙ୍କ ଭାଷାରେ -

ମୋଠାରୁ ତ କେବେ ମୋ କବିତା ପରି କିଛି ମାଗି ନାହୁଁ ତୁହି,

କବିତା ଯେପରି ପରିତୋଷ ଦିଏ ରତିରେ ସେପରି ସହି ।

କବି ଡ. ଉଦ୍‌ଗାତା ନିଜକୁ ବନ୍ଧୁ ସ୍ଥାନରେ କାବ୍ୟରେ ପ୍ରେମିକାର ସ୍ଥାନରେ ରଖିଛନ୍ତି । ତେବେ ତାଙ୍କ ଅନୁଭବରେ ତାଙ୍କ କବିତା ହେଉଛି ତାଙ୍କର ପ୍ରିୟତମା । କବିତାକୁ ନିଜ ପ୍ରାଣର ପ୍ରିୟା, ମରମରେ ଆହ୍ଲାଦ ବୋଲି ଚିତ୍ରଣ କରିଛନ୍ତି । ତେବେ ତାଙ୍କ ଅନୁଭବରେ ତାଙ୍କ କବିତା ହେଉଛି ତାଙ୍କର ପ୍ରିୟତମା । କବିତାକୁ ନିଜ ପ୍ରାଣର ପ୍ରିୟା, ମରମର ଆହ୍ଲାଦ ବୋଲି ଚିତ୍ରଣ କରିଛନ୍ତି । ସେହି ପ୍ରିୟତମାର ପରଶ ଅନ୍ତରରେ ଯେଉଁ ସନ୍ତୋଷ ଭରିଥାଏ ତାହା କୌଣସି ଧନ, ଦଉଲତରେ ପ୍ରାପ୍ତ ହୋଇନଥାଏ । ଦୁନିଆର ସକଳ ବିଭବ, ପ୍ରାପ୍ତି ଓ ଏପରିକି ମୁକ୍ତିଠାରୁ ନିଜର ପ୍ରିୟତମା କବିତାକୁ ଓ ସୃଷ୍ଟିକୁ କବି ଅଧିକ ପ୍ରାଧାନ୍ୟ ଦେଇଛନ୍ତି । କବିଙ୍କ ପ୍ରାଣରେ ସୃଜନର ସେହି ଆବେଗ ଯେତେବେଳେ ରହିଥାଏ ତାଠାରୁ ଜୀବନରେ ଅଧିକ କିଛି ମହତ୍ତର ମୁହୂର୍ତ୍ତ ଆଶା କରାଯାଇନପାରେ । ସେହି ଆବେଗାତ୍ମକ ଅନୁଭବ ନିଜର ଲୁହକୁ ଅମୃତଧାରାରେ ଯେ ରୂପାନ୍ତର କରିଥାଏ ଏହା କବିଙ୍କର ଅନ୍ତରର ଉପଲବ୍ଧି । କବିଙ୍କ ଭାଷାରେ -

ପ୍ରୀତି ସୋହାଗିନୀ ରସ ରଙ୍ଗିଣୀ ମନୋରମା ମୋର କବିତା

ସୁଖ ଦୁଃଖରେ ପ୍ରେମ ବିରହରେ ମଉଳି ଯାଏନି ଛବିତା ।

x x x x

ସାରା ଧରତୀର ଅପବର୍ଗ ଗୋ ଜମାରୁ ତ ମୋର ଲୋଡାନାଇଁ

ପଦୁଟିଏ ତୋର ହସ ବିଳାସରେ, ଅଭାବରେ ଭାବ ଭରିଥାଏ ।

କାବ୍ୟରେ ଭକ୍ତିର ଆବେଗିକ ପରିପ୍ରକାଶ ସହିତ ପ୍ରୀତିର ବର୍ଣ୍ଣନା କାବ୍ୟଟିକୁ ରସୋତୀର୍ଣ୍ଣ କରିଛି । ଶ୍ୟାମସଖାଙ୍କ ଦୃଷ୍ଟିରେ ପ୍ରଣୟିନୀ ହୋଇଥିବା କବି ମାନବୀୟ ପ୍ରେମର ବନ୍ଧୁ ଭାବୋଲ୍ଲାସ ବ୍ୟକ୍ତ କରିଛନ୍ତି । ମାନବୀୟ ପ୍ରୀତି ପ୍ରଣୟକୁ ଏକ ଆଧ୍ୟାତ୍ମିକ ସମ୍ମୋହନ

ସ୍ତରକୁ ଉତ୍ତରଣ କରାଇଛନ୍ତି । କଳ୍ପନା କରିଛନ୍ତି ଏକ ପରମ ପୁରୁଷ ଓ ସେହି ପରମ ପୁରୁଷ ପାଖରେ ପ୍ରତ୍ୟେକ ଗୋପୀଜନ ଯେପରି ସମର୍ପିତ, କବି ସେପରି ସମର୍ପିତ ହେବାକୁ ଚାହାନ୍ତି । ପ୍ରଣୟୀ ଯେପରି ପ୍ରଣୟିନୀର ସମର୍ପଣ ଚାହେଁ, ଶ୍ୟାମସଖା ସେହିପରି ଆତୁରତାର ସହ କବି-ଆତ୍ମାର ସମର୍ପଣ ଆଶା କରନ୍ତି । କବି ନିଜେ ପ୍ରଣୟିନୀ ହୋଇ ନିଜକୁ ଯେପରି ଉତ୍ସର୍ଗ କରିବାକୁ ଚାହାନ୍ତି ସେହିପରି ଆଶା କରନ୍ତି ଯେ ତାଙ୍କ କଳ୍ପନାର ପ୍ରଣୟୀ ମଧ୍ୟ ତାଙ୍କ ଅନ୍ତରର ଦ୍ୱାରକୁ ତାଙ୍କ ଆତ୍ମା ପାଇଁ ମୁକ୍ତ ରଖିଛନ୍ତି । ପ୍ରେମିକର ଆଖିରେ ପ୍ରଣୟିନୀ କିପରି ଅଧିକ ଆକର୍ଷଣୀୟ ହୋଇ ଉଠିବ ସେଥିପାଇଁ ପ୍ରେମିକ ଯେପରି ନିଜର ଅଭିଳାଷ ବ୍ୟକ୍ତ କରିଥାଏ ସେହିପରି କବି ତାଙ୍କ ସ୍ୱପ୍ନର ପ୍ରଣୟୀଙ୍କ ପାଖରେ ନିଜକୁ ଅଧିକ ସମର୍ପଣ କରି ରଖିବା ପାଇଁ ତାଙ୍କର ସଦିଚ୍ଛା ପୋଷଣ କରିଛନ୍ତି । କବି ଯେପରି ତାଙ୍କର ଦେହ, ମନ, ପ୍ରାଣ ଓ ଆତ୍ମାରେ ସେହି ଶ୍ୟାମସଖାଙ୍କ ପାଖରେ ସର୍ବଦା ସମର୍ପିତ ହୋଇ ରହିବେ ତାହା ଅନ୍ତରରେ ଆଶା କରିଛନ୍ତି । ପ୍ରେମିକ-ପ୍ରେମିକା ଭିତରେ ମିଳନର ଯେଉଁ ଦୁର୍ବାର ଆକର୍ଷଣ ରହିଥାଏ, କବି କଳ୍ପନାର ପ୍ରଣୟୀଙ୍କ ସହ ଭାବଗତ ସ୍ତରରେ ସେହି ମିଳନ ପାଇଁ ନିଜର ଏକାନ୍ତ ଅଭୀପ୍ସା ବ୍ୟକ୍ତ କରିଛନ୍ତି –

ଆ ଆରେ ସଜେଇ ଦେ ମୋତେ ଭାବାଳଂକାରେ ଅପଘନ
ମଣ୍ଡିଦେ ମୋର ନୀଳ ନୟନରେ ସପନର ସୁଧା ଅଂଜନ
ଗଳା ଭିଡିଧରି ଭୁଜମାଳେ ପ୍ରିୟ ମୋ ଅଧରେ ସୁଧା ବରଷାଇ
ଭାବ ଚନ୍ଦନେ କୁଟିକମ କରି ସ୍ତନକୁମ୍ଭ ମୋ ରଂଜନ ।
କଳାନିଧି ଯେତେ ଜାଣୁ ତୁହି ମୋତେ ଟିକେଟିକେ ହେଲେ ଶିଖେଇ ଦେ
କେଉଁ ଛନ୍ଦରେ ନାଚିବି ଗାଇବି, ତୋ ମନ ମୋହିବି ବତେଇ ଦେ ।

କବି ପୁନଶ୍ଚ କହିଛନ୍ତି ଯେ ତାଙ୍କ ଚିତ୍ତ ଗହନରେ ସେ ଲୁଚିଥାନ୍ତି ଓ ତାଙ୍କ ସହ ମିଳିତ ହେବାକୁ ତାଙ୍କ ଆତ୍ମାକୁ ପ୍ରେରଣା ଦେଉଥାନ୍ତି । କବି ନିଜ ଆତ୍ମାକୁ ଶ୍ୟାମସଖାଙ୍କର ପ୍ରଣୟିନୀ ବୋଲି କେତେ ଆବେଗରେ ବ୍ୟକ୍ତ କରିଛନ୍ତି । ସେ ଏକ ପୁରୁଷର ଶରୀର ଧରିଥିଲେ ବି ତଙ୍କ ଆତ୍ମା ହେଉଛି ପ୍ରଣୟ-ପ୍ରୟାସୀ ଏକ ପ୍ରଣୟିନୀ । ପ୍ରଣୟିନୀ ଅନ୍ତରରେ ପ୍ରଣୟୀ ସହିତ ମିଳିତ ହେବାର ଦୁର୍ବାର ଆକାଂକ୍ଷା ରହିଥାଏ । ଅନ୍ତରରେ ରହିଥିବା ଏହି

ଅମୃତ ତୃଷାକୁ ସେହି ଦିବ୍ୟ ପୁରୁଷ କେତେ ସରାଗରେ ପରିତୃପ୍ତ କରି ଆସିଛନ୍ତି । ପ୍ରିୟର ଚୁମାରେ ପ୍ରିୟା ଯେପରି ଉଲ୍ଲସିତ ହୋଇଥାଏ, ଠିକ୍ ସେହିପରି ତାଙ୍କର ପରଶରେ କବିର ଅନ୍ତରାତ୍ମା ପୁଲକିତ ହୋଇଛି ।

ପ୍ରେମ, ପ୍ରୀତି, ପ୍ରଣୟ ହେଉଛି ମାନବିକ ଆବେଗ । ଏହି ମାନବିକ ପ୍ରବୃତ୍ତି ଅତ୍ୟନ୍ତ ସହଜାତ ଓ ଏହି ଆବେଗିକ ଅନୁଭବ ବେଳକେ ତୀବ୍ର ଭାବରେ ବ୍ୟକ୍ତି ସତ୍ତାକୁ ପ୍ରଭାବିତ କରିଥାଏ । କବି ଯେତେ ଈଶ୍ୱର-ପ୍ରୀତି ବିଷୟ ଚେତନାକୁ ଆଣିଲେ ବି ତାହାକୁ ପ୍ରକାଶ କରିବାକୁ ମାନବିକ ପ୍ରବୃତ୍ତିକୁ ଆଧାର କରିଛନ୍ତି । ପ୍ରେମ ଓ ପ୍ରଣୟକୁ ମାନବିକ ସ୍ତରରୁ ଏକ ଅତିମାନବିକ ସ୍ତରକୁ ପ୍ରସାରିତ କରିଛନ୍ତି । ପ୍ରୀତି ଓ ରତି ଯେତିକି ଦୈହିକ ତାର ଅନୁଭବ ଓ ତୃପ୍ତି ସେତିକି ମାନସିକ । ଏହା ହିଁ ସୃଷ୍ଟିର ବୈଚିତ୍ର୍ୟ । ଏହି ପ୍ରାବୃତ୍ତିକ ବାସନାରୁ ହିଁ ମାନବିକ ସତ୍ତା ତିଷ୍ଠି ରହିଛି । ପ୍ରବୃତ୍ତି ପାଶବିକ, ତେବେ ପରିଣାମ ହେଉଛି ସର୍ଜନାତ୍ମକ । ସେଥିପାଇଁ ସମାଜରେ କେତେ କେତେ ନୀତି, ଶୃଙ୍ଖଳା ଓ ମୂଲ୍ୟାଧାରିତ ବ୍ୟବସ୍ଥାର ପ୍ରଚଳନ ହୋଇଛି । କବି ମାନବିକ ପ୍ରବୃତ୍ତିରେ ଏହି ବାସ୍ତବତାକୁ ବ୍ୟକ୍ତ କରିଛନ୍ତି -

ବିପରୀତେ ରତି ମିଳନେ ଦ୍ରୁପଦି ନବୀନ ରୁଚିର ସରଜନା
ମୁଗ୍ଧ ଆଳାପେ ପରଶ ମନ୍ତ୍ରେ ସଂପୁଟିତ ସେ ନିରାଜନା
ପୁରୁଷପଣର ଯେତେ ଆତୁରତା ଭାବ-ବିମୁଦିତା କାମିନୀର
ଆମନ୍ତ୍ରଣରେ ସେ କବି ଯାହାର ତୁଟିନି ସମାଧି, କଳପନା ।

କାବ୍ୟରେ ଭକ୍ତି ଓ ପ୍ରେମର ପ୍ରାବଲ୍ୟ ଭିତରେ ମାନବିକ ଚେତନାର ସାମାନ୍ୟ ଝଲକ ରହିଛି । ମାନବିକତା ହେଉଛି ଏକ ମହତ୍ତର ମୂଲ୍ୟବୋଧ । ମାନବିକ ସମ୍ବେଦନଶୀଳତା ଏକ ଗୁଣାତ୍ମକ ଜୀବନର ଚିତ୍ର ବହନ କରେ । ଅନ୍ୟର ସୁଖ-ଦୁଃଖରେ ସମଭାଗୀ ହେବାର ମନୋଭାବ ଓ ଅନ୍ୟ ପ୍ରତି ଏକ ସମ୍ବେଦନଶୀଳ ଜୀବନଦୃଷ୍ଟି ଭିତରେ ଜୀବନର ସାର୍ଥକତା ପ୍ରକାଶ ପାଇଥାଏ । ଅନ୍ୟର ଆଖିରୁ ଲୁହ ପୋଛିବାକୁ ଯିଏ ସହାନୁଭୂତିର ହାତ ବଢ଼ାଏ ବା ଅନ୍ୟର ଦୁଃଖରେ ଯାହାର ପ୍ରାଣ ବିଗଳିତ ହୁଏ ସେ ହିଁ ଏକ ମହାନ୍-ଜୀବନର ଅଧିକାରୀ । ସଭ୍ୟତା, ସଂସ୍କୃତିର ବିକାଶ ଏହି ଆଦର୍ଶବୋଧ

ଯୋଗୁ ହିଁ ସମ୍ଭବ ହୋଇଛି । କବି ମାନବିକତାର ଏହି ଭାବନାଟିକୁ ସୁନ୍ଦର ଭାବରେ ବ୍ୟକ୍ତ କରିଛନ୍ତି -

ଆପଣାକୁ ଭଲ ନପାଇ କି କିଏ ଭଲ ପାଇଅଛି ଜଗତକୁ
ମଣିଷକୁ ଭଲ ନପାଇ ପାଇଛି ତୋର ସାନ୍ନିଧ ଶୁଭାଶିଷ ।

x x x x x

ଆମର ନେତ୍ର କାହିଁ ଅଛି ସଖି ଯେପରି ଦୃଷ୍ଟି ଶକତିର
ଅଧିକାରୀ ଥିଲା କବି ଭୀମଭୋଇ ତା ନୟନେ ଥିଲା ନିରାକାର
ତେଣୁ ଆପଣାକୁ ପାରିଲାନି ଦେଖି ଦେଖିଲା ଜଗତ ଦୀନ ଦଶା
କହିଲା ମୋ କଥା ଥାଉ ପଛେ ପ୍ରଭୁ ଜଗତର କର ଉଦ୍ଧାର ।

କବି ସନ୍ଥକବି ଭୀମଭୋଇଙ୍କ ଭାବମାନସ ଦ୍ୱାରା ପ୍ରଭାବିତ ହୋଇଛନ୍ତି । ଭୀମଭୋଇଙ୍କ କବିତାରେ ଯେଉଁ ମାନବଦରଦୀ ଜୀବନବୋଧର ପ୍ରତିଫଳନ ହୋଇଛି ତାହା ଡ. ଉଦ୍‌ଗାତାଙ୍କୁ ପ୍ରଭାବିତ କରିଛି । ପ୍ରେମ, ପ୍ରଣୟ ଓ ଭକ୍ତିକ ଦୃଷ୍ଟିଭଙ୍ଗୀଟି ଏକ ଶୁଦ୍ଧ ମାନବିକ ଆଦର୍ଶରେ ପ୍ରଭାବିତ ହୋଇଛି । କବି ବିଭିନ୍ନ ରଚନାରେ ମାନବବାଦର ଯେଉଁ ବାର୍ତ୍ତା ଦେବାକୁ ପ୍ରୟାସ କରିଛନ୍ତି ତାହାର ସାମାନ୍ୟ ଝଲକ ଏହି ଗ୍ରନ୍ଥ ଭିତରେ ମଧ୍ୟ ବ୍ୟକ୍ତ କରିଛନ୍ତି ।

ଈଶ୍ୱରୀୟ ବିଶ୍ୱାସ କବି ଡ. ଉଦ୍‌ଗାତାଙ୍କ ଜୀବନବୋଧର ମର୍ମ ହେଲେ ବି ସେ ତାହାଙ୍କୁ ମଣିଷର ହୃଦୟରେ ହିଁ ସର୍ବଦା ଦେଖୁଛନ୍ତି । ଯେତେ ସବୁ ସାଂପ୍ରଦାୟିକ ଧର୍ମ ମଣିଷ ମଣିଷ ଭିତରେ ଭେଦଭାବର ପ୍ରାଚୀର ଛିଡା କରାଇଛନ୍ତି ସେସବୁକୁ କବି ସର୍ବାନ୍ତକରଣରେ ବିରୋଧ କରିଛନ୍ତି । ମାନବିକ ଏକତ୍ୱ ଓ ଏକ ବିଶ୍ୱ-ଦୃଷ୍ଟି କବିଙ୍କ ଭାବମାନସର ଆଦର୍ଶ ହୋଇ ରହିଛି । କବିଙ୍କର ଈଶ୍ୱର-ପ୍ରେମ ଏକ ବିଶ୍ୱ-ଜୀବନ ଅନୁଭବରେ ରୂପାୟିତ ହୋଇଛି । ସବୁରି ହୃଦୟରେ ମାନବପ୍ରେମର ଏହି ଅନୁଭବଟି ରହିଲେ ବିଶ୍ୱର ମଙ୍ଗଳ ହୋଇପାରିବ । ଆମ ସଂସାରରେ ରହିଥିବା ନାନା ଭେଦଭାବ, ଅସହିଷ୍ଣୁତା ଓ ସଂକୀର୍ଣ୍ଣତାର ଦୂରୀକରଣ ପାଇଁ କବି ଏକ ମହତ୍ତର ଆକାଂକ୍ଷା ପୋଷଣ

କରିଛନ୍ତି । ମାନବ ପ୍ରୀତିର ଫୁଲ ଫୁଟାଇବାକୁ କବି ନିଜ ଅନ୍ତରରୁ ଆବେଦନ ଜଣାଇଛନ୍ତି । ଏହି ଫୁଲର ମହକ ଆମ ସଂସାରରୁ ସବୁ ବିଦ୍ୱେଷର ଗନ୍ଧକୁ ଦୂର କରିପାରିବ । କବିତା କରିଥାରେ କବି ଶାନ୍ତିର ବାର୍ତ୍ତା ଦେବାକୁ ପ୍ରୟାସ କରିଛନ୍ତି । କବିଙ୍କ ଭାଷାରେ =

ସଜନୀ ଆମର ପରମ ପ୍ରେମିକ ସଖା ନାହିଁ କୋଉ ପୂଜାପୀଠେ
କୋଉ ମସଜିଦ ଗିରିଜାରେ ଥିବା କୋଉ ଧରମର ଧ୍ୱଜା-ମଠେ
ସେ ତ ରହିଅଛି ଜଗତଜନଙ୍କ ଜୀବନ ପରାଏ ହୃଦୟରେ
ତାକୁ ଖୋଜିଲେ କି ମିଳିବ ମୋହିନୀ କାହିଁ ସାଧାରଣ ହାଟେ ବାଟେ ।

× × × ×

ପ୍ରତିଟି ପରାଣେ ଉଦେ ହେଲେ କନକ ଡୋରିରେ ବାନ୍ଧି ହୋଇ
ବିଶ୍ୱ ପାଇବ କେତେ ପରିତୋଷ ବିଶ୍ୱ-ଜୀବନ ଅନୁଭବ ।

ପ୍ରୀତି ଶତପଦୀ କାବ୍ୟଟିରେ ଶହେଆଠଟି ପଦରେ କବି ନିଜ ଭକ୍ତି, ପ୍ରେମ ଓ ଏକ ମାନବିକ ଦୃଷ୍ଟିର ଚିତ୍ର ଦେଇଛନ୍ତି । କବି ନିଜକୁ ପ୍ରେମିକାର ସ୍ଥାନରେ ରଖି କଳ୍ପନାର ଚରିତ୍ର 'ଶ୍ୟାମ ସଖା'କୁ ପ୍ରଣୟୀ କରି ଅନ୍ତରର ଆବେଗକୁ ବ୍ୟକ୍ତ କରିଛନ୍ତି । କେତେକ ବର୍ଣ୍ଣନାରେ ପ୍ରେମ ଉଦ୍ଭାସିତ ହୋଇଛି ଏକ ଭକ୍ତିକ ଏକାତ୍ମତାକୁ ଓ କେତେକ ବର୍ଣ୍ଣନାରେ ଏହା ମାନବିକ କାମାସକ୍ତ ଅନୁଭବର ଚିତ୍ର ଦେଇଛି । ପ୍ରେମ ଓ ପ୍ରଣୟକୁ ଯେତେ ନାଟକିଜ ରୂପ ଦେଲେ ମଧ୍ୟ ତାହା ବ୍ୟକ୍ତିର ସ୍ଥୂଳ ଶାରୀରିକ ସଂପର୍କକୁ ବାଦ୍ ଦେଇପାରେ ନାହିଁ । ତେବେ ବାସ୍ତବ ଅନୁଭବ ସହ ଏକ ଅମୂର୍ତ୍ତୀୟ କଳ୍ପନାର ସଂଯୋଗକୁ କବି ଆବେଗିକ ଶବ୍ଦ ମାଧ୍ୟମରେ ବ୍ୟକ୍ତ କରିଛନ୍ତି । ତାଙ୍କର "ସମର୍ପିତ କୁତଜ୍ଞତା" ଭିତରେ ଆତ୍ମା ଓ କବିର ଲିଙ୍ଗ ନାହିଁ ବୋଲି ପ୍ରକାଶ କରିଥିଲେ ମଧ୍ୟ ନିଜ ଆତ୍ମାକୁ ଶ୍ୟାମସଖାଙ୍କର ପ୍ରଣୟିନୀ ବୋଲି ବର୍ଣ୍ଣନା କରିଛନ୍ତି ଓ କବି ସମସ୍ତ ବର୍ଣ୍ଣନାରେ ନିଜକୁ ପ୍ରେମିକାର ସ୍ଥାନରେ ରଖିଛନ୍ତି । ଏହା ଏକ ବିରୋଧାଭାସର ଚିତ୍ର ଦେଇଥାଏ ।

କବି ଅପ୍ରାକୃତ ପ୍ରେମ ବିଷୟରେ ସୂଚନା ଦେଇଛନ୍ତି । ଯେଉଁ ପ୍ରୀତି ଭେଦରହିତ ଓ ଯାହା ସ୍ନିଗ୍ଧ ଆଲୋକର ବିକୀରଣ କରିଥାଏ ତାହା କବିଙ୍କ କଳ୍ପନାର ଅପ୍ରାକୃତ ପ୍ରେମ,

ଯାହା ଏତେ ସହଜ ନୁହେଁ ବୋଲି କବି କହିଛନ୍ତି । ଏହି ପ୍ରୀତି ଯଦି କେବଳ ଭାବର, ତେବେ କବି କାହିଁକି ଏତେ ମାନବିକ ପ୍ରେମର ଭାଷାରେ ସକଳ ବର୍ଣ୍ଣନାକୁ ରସୋତୀର୍ଣ୍ଣ କରିଛନ୍ତି ? କବିଙ୍କ କଳ୍ପନାରେ ସେହି ଶ୍ୟାମସଖା ଏକ ପରମପ୍ରେମିକ । ସେହି ପରମ ପ୍ରେମିକ କବିଙ୍କର ସୃଷ୍ଟି ଭିତରକୁ ଆକର୍ଷିତ ହୋଇ ଆସିଛନ୍ତି ପ୍ରୀତିର ଅମୃତ ଅନୁଭବ ଦେବାକୁ । ସେହି ଅମୃତ ଅନୁଭବ ହେଉଛି କବିଙ୍କର ରସାଙ୍କ କବିତା । କବି ଏକ ମଧ୍ୟବର୍ତ୍ତୀ ସ୍ଥାନରେ ରହିଛନ୍ତି । ଊର୍ଦ୍ଧ୍ୱରେ ଥିବା ଶ୍ୟାମସଖା କବିଙ୍କ ଚିତ୍ତଭୂମିରେ ଯେତିକି ପ୍ରକାଶିତ ହୁଅନ୍ତି, କବି ଭାଷାର ଲାଳିତ୍ୟରେ ତାକୁ କବିତାରେ ରୂପ ଦିଅନ୍ତି । ଏକ ଦାର୍ଶନିକ ତତ୍ତ୍ୱ ଭାବେ କବି ଡ. ଉଦ୍‌ଗାତା ଏପରି ଏକ ମତ ମୁଖବନ୍ଧ ରୂପକ ସମର୍ପିତ୍ କୃତଜ୍ଞତାରେ ବ୍ୟକ୍ତ କରିଛନ୍ତି । ଏକ ତାତ୍ତ୍ୱିକ ଭାବନାର ଏକ ବିକଳ୍ପ ତତ୍ତ୍ୱ ରହିବା ସମ୍ଭବ । ବିକଳ୍ପ ତତ୍ତ୍ୱଟି ହେଉଛି ଯେକୌଣସି ସ୍ରଷ୍ଟା ଯାହା ସୃଷ୍ଟି କରେ ତାହା ପଶ୍ଚାତରେ ତାହାର ପ୍ରତିଭା, ପ୍ରୟାସ ଓ ପ୍ରଜ୍ଞା ରହିଥାଏ । କୌଣସି ଶ୍ୟାମସଖା ସ୍ରଷ୍ଟାକୁ ମାଧ୍ୟମ କରି ସର୍ଜନର ଝଙ୍କାର ସୃଷ୍ଟି କରେ ନାହିଁ । କବି ବା ସ୍ରଷ୍ଟା ହିଁ କରେ ଓ ସ୍ରଷ୍ଟା ଯାହା କରେ ତାହା ପାଇଁ ସେ ଉତ୍ତରଦାୟୀ । କୌଣସି ଶ୍ୟାମସଖା ବା ପରମାର୍ଥିକ ସତ୍ତାର ଅନୁଭବରୁ କବିର ସୃଜନ ରୂପ ନିଏ କହିବା ଦ୍ୱାରା ସ୍ରଷ୍ଟା ନିଜର ତ୍ରୁଟିକୁ ଏଡାଇ ଯାଇଥାଏ । କାବ୍ୟ-ସୃଷ୍ଟି ଭିତରେ କବିର ଉଦ୍ୟମ ଓ ଗମ୍ଭୀର ସଂପୃକ୍ତି ରହିଥାଏ । ଶ୍ୟାମସଖା, ଈଶ୍ୱର, ଭଗବାନ ବା ବ୍ରହ୍ମ (କବି ଈଶ୍ୱର ବା ଭଗବାନ ଶବ୍ଦ କାବ୍ୟରେ ବ୍ୟବହାର କରିନାହାନ୍ତି, ବ୍ରହ୍ମ ଶବ୍ଦ ଥରଟିଏ ମାତ୍ର ବ୍ୟବହାର କରିଛନ୍ତି) କବି କଳ୍ପନାର ଏକ ତତ୍ତ୍ୱ । କବିର କଳ୍ପନା ଅଣୁଠାରୁ ବିଶ୍ୱ ବା ଭୂମା ପର୍ଯ୍ୟନ୍ତ ପରିବ୍ୟାପ୍ତ ହୋଇପାରେ ଓ ଏହି କଳ୍ପନା ସୀମାହୀନ ମନେହୁଏ । କଳ୍ପନା କ୍ଷେତ୍ରରେ ପ୍ରାଣର ଆବେଗ, ସୂକ୍ଷ୍ମାନୁଭୂତି, ନାନ୍ଦନିକତା ରହିପାରେ ଯେଉଁଥି ପାଇଁ କବିତା ପାଠକର ହୃଦୟକୁ ସ୍ପର୍ଶ କରିଥାଏ । ପ୍ରୀତି ଶତପଦୀ ଏହି ମାନଦଣ୍ଡରେ ଯେ ଏକ ଅମଳିନ ସାରସ୍ୱତ ସୃଷ୍ଟି ଏହା ନିଃସନ୍ଦେହରେ କୁହାଯାଇପାରେ ।





## ଲେଖକ ପରିଚୟ

ଧନେଶ୍ୱର ସାହୁଙ୍କର ଜନ୍ମ ୧୯୪୯ରେ ଢେଙ୍କାନାଳ ଜିଲ୍ଲାର ଭୁବନରେ। ୧୯୭୪ରେ ଦର୍ଶନ ବିଭାଗରେ ଅଧ୍ୟାପନା ଜୀବନ ଆରମ୍ଭ କରି ବିଭିନ୍ନ ସରକାରୀ ମହାବିଦ୍ୟାଳୟରେ କାର୍ଯ୍ୟକରି ୨୦୦୭ରେ ବିଜେବି ମହାବିଦ୍ୟାଳୟରୁ ଅବସର ଗ୍ରହଣ। ଜଣେ ପ୍ରାବନ୍ଧିକ, ସ୍ତମ୍ଭକାର, ହେତୁବାଦୀ ଚିନ୍ତକ, ସମାଜ ସଂସ୍କାରକ ଓ ପ୍ରଗତିଶୀଳ ବୁଦ୍ଧିଜୀବୀ ଭାବେ ଓଡ଼ିଶା ଓ ଓଡ଼ିଶା ବାହାରେ ପରିଚିତ।

ଇଂରାଜୀ ପୁସ୍ତକ ବ୍ୟତୀତ ଲେଖକଙ୍କର ଓଡ଼ିଆରେ ଆଠଟି ପ୍ରବନ୍ଧ ସଙ୍କଳନ (୧) ଧର୍ମ, ଦର୍ଶନ ଓ ସମାଜ (୨) ସଂସ୍କୃତି ଓ ସର୍ବୋଦୟ (୩) ଗାନ୍ଧୀ, ବିଜ୍ଞାନ ଓ ମାନବବାଦ (୪) ଜୀବନର ମୂଲ୍ୟ ଓ ହେତୁବାଦ (୫) ହେତୁବାଦୀ ଜୀବନବୋଧ (୬) ଜୀବନ ଜିଜ୍ଞାସା (୭) ଜୀବନ ଅନ୍ୱେଷା (୮) ସଂସ୍କୃତି ଜିଜ୍ଞାସା; ଚାରୋଟି ଗବେଷଣାଧର୍ମୀ ପୁସ୍ତକ (୯) ଆବ୍ରାହମ କୋଭୁର (୧୦) ଭାରତୀୟ ଦର୍ଶନରେ ନିରୀଶ୍ୱରବାଦ (୧୧) ବିନୋଦ କାନୁନଗୋ (୧୨) ଦାର୍ଶନିକ ବିଶ୍ଳେଷଣ; ଓ ପାଞ୍ଚଟି ଅନୁବାଦ ପୁସ୍ତକ (୧୩) ଧର୍ମର ଊର୍ଦ୍ଧ୍ୱରେ (୧୪) ଗୋରାଙ୍କ ଦୃଷ୍ଟିରେ ଗାନ୍ଧୀ ଓ ନିରୀଶ୍ୱରବାଦ (୧୫) ଭାରତରେ ଜାତିପ୍ରଥା (୧୬) ପେରିୟାରଙ୍କ ରଚନା (୧୭) ମାନବାଧିକାର ପ୍ରକ୍ରିୟା, ରହିଛି।

ଲେଖକ ଉତ୍କଳ ବିଶ୍ୱବିଦ୍ୟାଳୟ ସ୍ୱର୍ଣ୍ଣପଦକ, ୨୦୧୦ରେ ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର, ୨୦୧୪ରେ ପେରିୟାର ଇଣ୍ଟରନେସନାଲ ଆୱାର୍ଡ, ୨୦୧୭ରେ ଓଡ଼ିଶା ସରକାରଙ୍କ ପ୍ରଦତ୍ତ ବୟୋଜ୍ୟେଷ୍ଠ ନାଗରିକ ସମ୍ମାନ ଓ ୨୦୧୮ରେ ଗୋରା, ସରସ୍ୱତୀ ଗୋରା ଇଣ୍ଟରନେସନାଲ ଆଥେଇଷ୍ଟ ରିସର୍ଚ୍ଚ ସେଣ୍ଟର ଦ୍ୱାରା ପ୍ରଦତ୍ତ ପୁରସ୍କାର ଲାଭ କରିଛନ୍ତି।





**Publishing House**
Bhubaneswar, Odisha, India
Email : contact@gyanajuga.com,
website : www.gyanajuga.com

